(ଘ) ବନ୍ୟାମାର୍ତ୍ତଣ୍ଡକନ୍ୟାତଟନିକଟଭୁବଃ ପ୍ରେକ୍ଷଣଂ ନୈତ ପଥ୍ୟଂ,
ଭୂୟୋଽସ୍ମାଭିଃ ପ୍ରଯୁକ୍ତା ଶ୍ରବସି ନ ଲଗିତା ତୁଚ୍ଛକୁନ୍ଦ୍ରାଶିକ୍ଷା ।
ବୈଦ୍ୟେ ସଦ୍ୟଃ ସମୁଦ୍ୟଦ୍‌ଗଦହୃତି ଚତୁରେ ଯଦ୍ୟପେକ୍ଷାନବଦ୍ୟେ,
ଯାମଃ କାମସ୍ୟ ପୂର୍ତ୍ତୌ ଗତିରିହ ଜଗତଃ କେବଲଂ ତେଽବଲମ୍ବଃ ॥

ସ୍ୱାମିନ୍ୟନୁଜ୍ଞାନୁଲ୍ଲଙ୍ଘନଜଙ୍ଘାଲତୟୈବ ମାଦୃକ୍‌ପ୍ରିୟଜନପ୍ରଣୀତ-ପ୍ରଯତ୍ନାନାମନୁପଧିକାପରିଣତିଃ ପରମେଶ୍ୱରାଧୀନଂ ତର୍କ୍ୟୋଽଦର୍କମିତ୍ୟୁକ୍ତ୍ୱା ଶ୍ରୀକୃଷ୍ଣାନ୍ତିକଂ ପ୍ରବିଶ୍ୟ ବିଜ୍ଞାପୟାମାସ ଲଳିତା ।

---

ଟୀକା—(ଘ) ମାର୍ତ୍ତଣ୍ଡକନ୍ୟାୟାଃ ଯମୁନାୟାସ୍ତଟନିକଟଭୁବଃ କୂଳପରିସର-ଜାୟମାନାୟାଃ ବନ୍ୟା ଅରଣ୍ୟସ୍ୟ ପ୍ରେକ୍ଷଣମବଲୋକନଂ ନ ପଥ୍ୟଂ ନ ହିତକରମିତି ଅସ୍ମାଭିର୍ଭୂୟଃ ପ୍ରଯୁକ୍ତା ପୁନଃ ପୁନଃ କୃତା, ତୁଚ୍ଛା ଶୂନ୍ୟା କୁନ୍ଦ୍ରା ନିଦ୍ରା ଯସ୍ୟାଂ ସା ନିଦ୍ରାଶୂନ୍ୟା ଅନିନ୍ଦନୀୟା ଇତ୍ୟର୍ଥଃ, ଶିକ୍ଷା ଉପଦେଶରୂପା ତବ ଶ୍ରବସି ଶ୍ରବଣେ ନ ଲଗିତା ନ ସଂଲଗ୍ନା; ତ୍ୱଂ ତୁ ଅସ୍ମାକଂ ହିତବଚନଂ ନ ଶ୍ରୁତ୍ୱା ଯମୁନାତଟବନଂ ଅବଲୋକିତବତୀ ଇତ୍ୟର୍ଥଃ । ସଦ୍ୟଃ ତତ୍‌କ୍ଷଣାଦେବ ସମୁଦ୍ୟନ୍‌ ସଂଜାୟମାନେ ଯୋ ଗଦୋ ରୋଗସ୍ତସ୍ୟ ହୃତୌ ହରଣେ କ୍ଷଣାଦେବ ଯଃ ସଂଜାୟମାନଂ ରୋଗଂ ବିନାଶୟିତୁଂ କ୍ଷମଃ ଏବଂଭୂତେ ଚତୁରେ ସୁନିପୁଣେ ଅନବଦ୍ୟେ ନିର୍ଦ୍ଦୋଷେ ବୈଦ୍ୟେ ଭିଷଜି ଅପେକ୍ଷା ଆକାଙ୍‌କ୍ଷା ଚେତ୍‌ ତର୍ହି ବୟଂ ଯାମଃ ସାମ୍ପ୍ରତମେବ ଗଚ୍ଛାମଃ, ବୈଦ୍ୟାନ୍ୱେଷଣାର୍ଥମିତ୍ୟର୍ଥଃ । ଇହ କାମସ୍ୟ ପୂର୍ତ୍ତୌ ତବ ଅଭିଲାଷପୂରଣେ ଜଗତଃ ଗତିଃ ପରମେଶ୍ୱର ଏବ କେବଲଂ ତେ ଅବଲମ୍ବଃ ଆଶ୍ରୟ ଏବ । ଯଦି ଜଗତ୍‌ପତେରୀଶ୍ୱରସ୍ୟ ଅନୁଗ୍ରହଃ ସ୍ୟାତ୍‌ ତର୍ହି ଯୁବୟୋର୍ମିଳନଂ ସଂଭବେତ୍‌ ନାନ୍ୟଥେତି ଭାବଃ ।

ହେ ସ୍ୱାମିନି, ଅନୁଜ୍ଞାୟାଃ ଆଦେଶସ୍ୟ ଅନୁଲ୍ଲଙ୍ଘନାୟ ପାଳନାୟ ଇତି ଯାବତ୍‌ ଯା ଜଙ୍ଘାଲତା ବେଗବତ୍ତା ତୟୈବ ( ଜଙ୍ଘାଲୋଽତିଜବସ୍ତୁଲ୍ୟୌ ଜଙ୍ଘାକରିକଜାଙ୍ଘିକୌ ଇତ୍ୟମରଃ ) ମତ୍‌ ସଦୃଶ ପ୍ରିୟଜନକୃତଚେଷ୍ଟାନାଂ ଅନୁପଧିକା କପଟହୀନା ପରିଣତିଃ, ଅୟଂ ଭାବଃ—ଅହଂ ଚ ତେ ପ୍ରିୟଜନଃ, ତବୋପକାରାର୍ଥଂ ମୟାବଶ୍ୟମେବ ନିଷ୍କପଟୋ ଯତ୍ନଃ କରଣୀୟଃ, ତ୍ୱଦାଦେଶପାଳନାୟ ପୁନଃପୁନଃ କୃଷ୍ଣାନ୍ତିକଂ ଗମିଷ୍ୟାମୀତି ମେ ଯତ୍ନସ୍ୟ ପରିଣାମଃ; ଯତସ୍ତ୍ୱଂ ମେ ସ୍ୱାମିନୀ, ତତୋ ଜଙ୍ଘାବଲେନ ବହୁଶସ୍ତତ୍ର ଗତ୍ୱା ତ୍ୱତ୍ତଃ ଜୀବନୋପାୟଂ ଲପ୍ସ୍ୟେ ଇତି । କିନ୍ତୁ ଉଦର୍କଂ ଅସ୍ୟ କାର୍ଯ୍ୟସ୍ୟ ଉତ୍ତରଫଳଂ ପରିଣାମ ଇତି ଯାବତ୍‌ ( ଉଦର୍କଂ ଫଳମୁତ୍ତରଂ ଇତ୍ୟମରଃ ) ପରମେଶ୍ୱରାଧୀନଂ ଚିନ୍ତ୍ୟଂ, ଲଳିତା ଶ୍ରୀମତୀଂ ଇତ୍ୟୁକ୍ତ୍ୱା ଶ୍ରୀକୃଷ୍ଣାନ୍ତିକଂ ଗତ୍ୱା ତଂ ବିଜ୍ଞାପୟାମାସ ।



ରାଗ—ସିନ୍ଧୁକାମୋଦୀ ବା କୁମ୍ଭକାମୋଦୀ

ନୂଆନଟପଟଳୀମୁକୁଟ ହେ ନାହିଁ କି ଶ୍ରୀଅଙ୍ଗ ସୁଖ,
ନିପଟ ନିସ୍ତେଜ ଦିଶୁଛୁ ତ ଆଜ ନିରଳସ ଚନ୍ଦ୍ରମୁଖ । ପଦ ।
ନୀଳୋତ୍ପଳ ବାସି ହେଲା ପରି ଦିଶି ଯାଉଛୁ ତୁଚ୍ଛ ଶ୍ରୀଅଙ୍ଗ,
ନାସା ନୀଳ ତିଳଫୁଲରୁ ଅନିଳ ପ୍ରସରୁଛି ବେଗ ବେଗ । ୧ ।
ନୀପଉପବନ ନିକଟ ପବନସ୍ପର୍ଶରୁ ଯେବେ ଡର,
ନଦୀକୂଳସ୍ଥଳ ଏ ବଡ଼ ଶୀତଳ କୁହନ୍ତି ଆଠିକି ବିହାର । ୨ ।
ନିଦ ନାହିଁ କି ନୟନେ ନିଶି ଦିନ ଅହା ମରଇ ମୋ ଧନ,
ନବନୀତ ତହୁଁ ମୃଦୁ ଦେହେ କାହୁଁ ସମ୍ଭବିଲା ଏ କଦନ । ୩ ।
ନବ ହେମଦ୍ୟୁତି ଅମରୀଏ ନିତି ନିଅନ୍ତି ଫୁଲ ଏ ବନ୍ଧୁ,
ନେତ୍ରପଥେ ପଡ଼ିଗଲେ କି ସେ ଛାଡ଼ି ଯାଉ ନାହିଁ ଜ୍ୱର ମନ୍ଥୁ । ୪ ।
ନ ବିହର ଗୋପସଙ୍ଗୀ ଏ ପାପଗହନରେ କିଛି ଦିନ,
ନରେଶମଣ୍ଡନ ଶ୍ରୀହରିଚନ୍ଦନ ଜଗଦ୍ଦେବ ସ୍ତବ ଘେନ । ୫ ।

---

ଅନୁବାଦ—ଯମୁନାକୂଳବର୍ତ୍ତୀ ବନକୁ ଯିବା ତୁମ୍ଭ ପକ୍ଷରେ ହିତକର ନୁହେ, ଏହା ଆମ୍ଭେମାନେ ତୁମ୍ଭଙ୍କୁ ପୁନଃ ପୁନଃ କହିଲେହେଁ ତୁମ୍ଭେ ସେହି ହିତୋପଦେଶକୁ କାନରେ ଶୁଣିଲ ନାହିଁ । ଯେଉଁ ବୈଦ୍ୟ ରୋଗର ଆଶୁ ପ୍ରତିକାର ବିଧାନ କରି ପାରନ୍ତି, ସେଭଳି ବୈଦ୍ୟଠାରେ ତୁମ୍ଭର ଯେବେ ଅପେକ୍ଷା ଥାଏ, ତେବେ ଆମ୍ଭେମାନେ ବର୍ତ୍ତମାନ ତୁମ୍ଭ କାମନା ପୂରଣ କରିବାପାଇଁ ଯାଉଅଛୁଁ । ଜଗତ୍କର୍ତ୍ତା ପରମେଶ୍ୱରହିଁ ଏ ବିଷୟରେ ଏକା ତୁମ୍ଭର ପ୍ରଧାନ ଅବଲମ୍ବନ ।

ହେ କର୍ତ୍ତ୍ରି ! ମୁଁ ତୁମ୍ଭର ପ୍ରିୟଜନ, ଏପରି ଅବସ୍ଥାରେ ତୁମ୍ଭର ଆଦେଶ ପାଳନ କରି ଶ୍ରୀକୃଷ୍ଣଙ୍କ ନିକଟକୁ ପୁନଃ ପୁନଃ ଯିବା ଆସିବା କରିବାହିଁ ମୁଁ ମୋ କର୍ତ୍ତବ୍ୟର ନିଷ୍କପଟ ପରିଣାମ ବୋଲି ମନେ କରୁଅଛି । କିନ୍ତୁ ଏହାର ଉତ୍ତରଫଳ ଈଶ୍ୱରାଧୀନ; ଲଳିତା ଏହା କହି ଶ୍ରୀକୃଷ୍ଣଙ୍କ ନିକଟକୁ ଗମନ କଲେ ଏବଂ ତାଙ୍କୁ କହିବାକୁ ଆରମ୍ଭ କଲେ, "ନୂଆନଟପଟଳୀମୁକୁଟ" ଇତ୍ୟାଦି ।

---

(ଙ) ନୂଆନଟପଟଳୀମୁକୁଟ—ନୂତନ ନର୍ତ୍ତକମାନଙ୍କ ବା ଦୁଷ୍ଟ ଲୋକାଙ୍କ ମଧ୍ୟରେ ଶ୍ରେଷ୍ଠ; ନିପଟ—ଅତ୍ୟନ୍ତ; ନିରଳସ—ଆଳସ୍ୟହୀନ ଅର୍ଥାତ୍ ମନୋହର; ନୀଳୋତ୍ପଳ—ନୀଳକଇଁ; ବାସି—ମଉଳ ପଡ଼ିଥିବା ( ସଜର ବିପରୀତ ); ନୀଳ

(ଙ) ହା ହା ହନ୍ତ ହତାସ୍ମି କୈନ ଜ୍ୱଲସନ୍ନୀଳାଶ୍ମତେଜୋଘଟା
ଧୂର୍ଜଂ ପର୍ଯ୍ୟୁଷିତୋପୂଳାବଲିରୁଚ୍ଚ ମାସୀନ୍ନିଧିସ୍ତେ ବପୁଃ ।
ନାଽହ ସ୍ନିଗ୍ଧସ୍ୟ ପଞ୍ଚଶାଣ୍ୟପି ଦୁନାନ୍ୟମ୍ଭୋରୁହାକ୍ଷବର୍ଜ୍ଜିତାନ୍,
ବାର୍ତ୍ତାଂ ନେଦମଖଣ୍ଡଶୈତ୍ୟବିଭବଂ ମାର୍ତ୍ତଣ୍ଡପୁତ୍ର୍ୟାସ୍ତଟଂ ॥

ଚନ୍ଦ୍ରକାପୀଡ଼ସୁନ୍ଦରେନ୍ଦ୍ର କିଶୋରେନ୍ଦ୍ରଚୁଡ଼ାମଣେ ତାଦୃଙ୍ନୀଳସକୋମଳକଳାକଳାପଲାଳନଲାଳିତାୟୁ ବପୁରସ୍ତି ଭବତୋ ଭବତି ନ କିଂ ହୃତମଶ୍ରାନ୍ତଂ ବାହ୍ନୀଡ଼ତଟପର୍ଯ୍ୟଟନଂ ।

---

ଅଳସୀଫୁଲ—ନେଳିଆ ରଙ୍ଗଣିଫୁଲ; ଅନିଳ—ପବନ, ନିଶ୍ୱାସ; ବେଗ ବେଗ—ଅତି ଚଞ୍ଚଳ; ନୀପ ଉପବନ—କଦମ୍ବ ବଗିଚ୍ଚ; ନବନୀତ—ଲହୁଣୀ; ଉହୁଁ—ଠାରୁ; କଦନ—କଷ୍ଟ, ଯନ୍ତ୍ରଣା; ନବହେମଦ୍ୟୁତି—ଯେଉଁମାନଙ୍କ ଦେହଶୋଭା ନୂତନ ସୁନା ପରି ଉଜ୍ଜ୍ୱଳ; ଅମରୀଏ—ଅପ୍ସରୀମାନେ; ଜ୍ୱର—ସନ୍ତାପ; ଗୋପସର୍ବ୍ୱସ୍ୱ—ଗୋପନଗରର ସର୍ବସ୍ୱ; ଗହନରେ—ବନରେ; ନରେଶମଣ୍ଡନ—ନୃପତିଶ୍ରେଷ୍ଠ ।

ହେ ନବନାଗରଶ୍ରେଷ୍ଠ, ତୁମ୍ଭର ଶ୍ରୀଅଙ୍ଗ ଭଲ ନାହିଁ କି ? ତୁମ୍ଭର ମନୋହର ଚନ୍ଦ୍ରମା ବଦନ ତ କାହିଁକି ଆଜି ଏକାବେଳକେ ମଳିନ ଦିଶୁଅଛି ? ପଦ । ନୀଳକାନ୍ତି ମଉଳ ପଡ଼ିଲେ ଯେପରି ଦେଖାଯାଏ, ଦୂରରୁ ତୁମ୍ଭ ଶ୍ରୀଅଙ୍ଗ ତ କାହିଁକି ସେହିପରି ଦିଶୁଛି । ନୀଳବର୍ଣ୍ଣ ଅଳସୀଫୁଲ ପରି ଦିଶୁଥିବା ତୁମ୍ଭ ନାସିକାରୁ ତ କାହିଁକି ଆଜି ଅତି ବେଗରେ ନିଃଶ୍ୱାସ ବାହାରୁଛି । ୧ । କଦମ୍ବବଣ ପାଖ ପବନ ଦେହରେ ଲାଗିବାରୁ ଯେବେ ତୁମ୍ଭର ଶରୀର ଅସୁସ୍ଥ ହୋଇଥାଏ, ତେବେ ଏହି ଶୀତଳ ନଈକୂଳ ମଧ୍ୟ ତୁମ୍ଭର ବୁଲିବାର ଉପଯୁକ୍ତ ସ୍ଥାନ ନୁହେଁ, ( ଟିକି ନିଷ୍ପ୍ରୟୋଜକ ଅବ୍ୟୟ, ପ୍ରଶ୍ନାତ୍ମକ ନୁହେ ) । ୨ । ଆହା ମୋ ଧନ ! ମରିଯାଏଁ ! ଦିନରାତି ସବୁବେଳେ କଣ ଏ ଆଖିକି ନିଦ ମାଡ଼ୁନାହିଁ ? ଆହା ! ତୁମ୍ଭର ଏ ଶରୀର ଲହୁଣୀଠାରୁ ଆହୁରି କୋମଳ, ଏ ଶରୀରରେ ପୁଣି ଏତେ କଷ୍ଟ ସମ୍ଭବପର ହେଲା ! ଯେଉଁମାନଙ୍କ ଦେହର ବର୍ଣ୍ଣ ନୂଆ ସୁନା ପରି ମନୋହର, ସେହି ଅପ୍ସରୀମାନେ ପ୍ରତିଦିନ ଏ ବନରୁ ଫୁଲ ତୋଳିବାକୁ ଆସନ୍ତି, ତୁମ୍ଭ ଆଖିରେ ପଡ଼ି ସେମାନେ କଅଣ ରୁଚି ବୁଲିଗଲେ କି ? ସେ ଦିନରୁ କଣ ତୁମ୍ଭ ମନରୁ ସନ୍ତାପ ଦୂର ହେଉ ନାହିଁ ? ଅର୍ଥାତ୍ ତପ୍ତକାଞ୍ଚନବର୍ଣ୍ଣାଭା ଅପ୍ସରୀମାନଙ୍କୁ ଆଖିରେ ଦେଖିବା ଦିନୁ କଅଣ ତୁମ୍ଭେ ଏପରି ଆଧିଗ୍ରସ୍ତ ହୋଇ ପଡ଼ିଅଛ ? ଅତଏବ ହେ ଗୋପନଗରବାସୀଙ୍କ ଜୀବନସର୍ବସ୍ୱ, ଏ ପାପବନରେ ଆଉ ବୁଲ ନାହିଁ, ନୃପତି ଶ୍ରେଷ୍ଠ ଜଗଦେବ ହରିଚନ୍ଦନଙ୍କ ପ୍ରାର୍ଥନା ଗ୍ରହଣ କର । ୫ ।

ଟୀକା—(ଙ) ହା ହା ହନ୍ତ ହତାସ୍ମି, ଅହୋ ମ୍ରିୟମାଣାସ୍ମି, କେନ କଥଂ ଜ୍ୱଲସନ୍ତୀ ଶୋଭମାନା ଯା ନୀଳାଶ୍ମତେଜସ ଇନ୍ଦ୍ରନୀଳମଣିକାନ୍ତେଃ ଘଟା ସମୂହଃ

ତସ୍ୟ ଧୂର୍ଯ୍ୟଂ ବାହକଂ ଆସ୍ମଦମିତି ଯାବତ୍ ସୁଶୋଭନେନ୍ଦ୍ର ନୀଳମଣୀକାନ୍ତିଧାରି ତେ ବପୁଃ ତବ ଶରୀରଂ ପର୍ଯ୍ୟୁଷିତାନାଂ ମ୍ଳାନାନାମିତ୍ୟର୍ଥଃ ଉତ୍ପଳାବଳୀନାଂ ଇନ୍ଦୀବରାଣାଂ ରୁଗ୍ଣଂ ତେଜସାଂ ନିଧିଃ ସ୍ଥାନଂ ଆସୀତ୍ । ନୀଳତେଜୋମୟସ୍ୟ ତେ ଶରୀରସ୍ୟ ମଳିନତାଂ ଦୃଷ୍ଟ୍ୱା ମରଣ ଯନ୍ତ୍ରଣା ମେ ମନସି ଜାୟତେ ଇତି ଭାବଃ; ହେ ଅମ୍ବୋରୁହାକ୍ଷ, ହେ ନଳିନନେତ୍ର, ଅଦ୍ୟ ଅସ୍ମିନ୍ ସ୍ଥାନେ ପଞ୍ଚଷାଣି ( ପଞ୍ଚ ବା ଷଟ୍ ବା ପରିମାଣଂ ଏଷାଂ ପଞ୍ଚଷାଣି, ବହୁବଚନାନ୍ତୋଽୟଂ ଶବ୍ଦଃ ) ଦିନାନି ( କାଲାଧ୍ୱନୋରତ୍ୟନ୍ତସଂଯୋଗେ ଇତି ଦ୍ୱିତୀୟା ) ଅର୍ଭକାନ୍ ଗୋପଶିଶୂନ୍ ନ କ୍ରୀଡ଼ୟ, ତୈଃ ସହ ମା ବିହର, ତତ୍ର ହେତୁମାହ—ଇଦଂ ମାର୍ତ୍ତଣ୍ଡପୁତ୍ର୍ୟାଃ ଯମୁନାୟା ତଟଂ କୂଳପ୍ରଦେଶଃ ଅଖଣ୍ଡଃ ଶୈତ୍ୟବିଭବଃ ଯସ୍ମିନ୍ ତଥୋକ୍ତଂ ଅବିଚ୍ଛିନ୍ନଶୈତ୍ୟ-ନିଧାନମିତ୍ୟର୍ଥଃ, ଅତଏବ ନବାର୍ତ୍ତଂ ନ ନିରାମୟଂ ନ ସ୍ୱାସ୍ଥ୍ୟପ୍ରଦଂ ଭବତୀତି ଶେଷଃ । ( ବାର୍ତ୍ତୌ ନିରାମୟଃ କଲ୍ୟଃ ଇତ୍ୟମରଃ । )

ଚନ୍ଦ୍ରକେତି—ହେ ଚନ୍ଦ୍ରକାପୀଡ଼ ଶିଖଣ୍ଡଚୂଳ, ହେ ସୁନ୍ଦରେନ୍ଦ୍ର ରମଣୀୟ-ଶିରୋମଣେ, କିଶୋରଚନ୍ଦଂ ଯୁବକସମୂହଃ ତେଷାଂ ଚୂଡ଼ାମଣିଃ ତସ୍ୟ ସମ୍ବୋଧନେ ହେ ଯୁବଜନମୌଳିମଣ୍ଡନ, ଭବତଃ ତବ ତାଦୃକ୍ ନିରଳସଃ ଯଃ କେଳିକଳାକଲାପଃ କ୍ରୀଡ଼ାବିଭୂତିସମୂହଃ ତସ୍ୟ ଲାଳନଂ ପୋଷଣଂ ତେନ ଲଳିତାୟ ମନୋଜ୍ଞାୟ ବପୁଷେ ଶରୀରାୟ ( ହିତଯୋଗେ ଚ ଇତି ଚତୁର୍ଥୀ ) ଅଶ୍ରାନ୍ତଂ ସତତଂ ବାହ୍ନୀତଟପର୍ଯ୍ୟଟନଂ ନଦୀକୂଳଭ୍ରମଣଂ ହିତଂ ପଥ୍ୟଂ ନ କମିତି ପ୍ରଶ୍ନେ ।

ଅନୁବାଦ—ଆହା, ତୁମ୍ଭର ଯେଉଁ ଶରୀର ଇନ୍ଦ୍ରନୀଳମଣିର ତେଜ ଧାରଣ କରି ମନୋହରଣ କରୁଥିଲା, ଆଜି ତାହା କାହିଁକି ବାସି ନୀଳକଇଁ ପରି ଏଭଳି ମଳିନ ଦିଶୁଛି, ଏହା ଦେଖି ମୋ ମନରେ ବଡ଼ କଷ୍ଟ ହେଉଅଛି; ହେ ପଦ୍ମଲୋଚନ, ଏଠାରେ ପାଞ୍ଚ ଛଅ ଦିନ ଆଉ ଗୋପ ବାଳକମାନଙ୍କୁ ଖେଳାଅ ନାହିଁ, କାରଣ ଏ ଯମୁନା ନଈକୂଳରେ ଘୋର ଶୀତ, ଏହା ତୁମ୍ଭ ସ୍ୱାସ୍ଥ୍ୟପକ୍ଷରେ ଅନୁକୂଳ ନୁହେ ।

ହେ ଚନ୍ଦ୍ରକଚୂଳ, ହେ ସୁନ୍ଦର ଯୁବକ ଶ୍ରେଷ୍ଠ, ତୁମ୍ଭ ଶରୀର ମନୋହର ବିଳାସରେ ସର୍ବଦା ଅତୀବ ସୁକୁମାର, ଯମୁନାକୂଳରେ ନିରନ୍ତର ଭ୍ରମଣ କରିବା ତୁମ୍ଭର ସେହି ସୁକୁମାର ଶରୀର ପକ୍ଷରେ ହିତକର ହେଉ ନାହିଁ ପରା ! ଲଳିତାଙ୍କଠାରୁ ଏହି କଥା ଶୁଣି ଶ୍ରୀକୃଷ୍ଣ ତାଙ୍କୁ କହୁଛନ୍ତି :—

"ଗୃହିଁ ଗୃହିଁ ତୋ ସରଣୀ" ଇତ୍ୟାଦି ।



ରାଗ—ପଞ୍ଚମ ବରାଡ଼ି

ଚାହିଁ ଚାହିଁ ତୋ ସରଣୀ କକୁଭକୁ ରେ ତରୁଣି ଚିତ୍ରାର୍ପିତ ପରି ଥିଲି ବସି । ଚିତ୍ର ମଣିଲି ମୁଁ ତତେ, ଚାହିଁ ଯା ଅତର୍କିତେ ଚାରୁଚକ୍ଷୁ ମିଶାଇଲୁ ଆସି ରେ, ଚଳାପାଙ୍ଗି, ଚନ୍ଦ୍ରରୁ ଚିପୁଡ଼ି ସୁଧା ଝରି, ଚିତ୍ତତୃପ୍ତିକର ମୁରୁଛା ଭରି, ଚାତୁର୍ଯ୍ୟେ କୃପାଳୁ ଗୁଣ-ନିଧି ରଖିଲୁ କି ପ୍ରାଣ ଧେଣାଲି ମୁଁ ଏତେ ସରି କରି ରେ । ୧ ।

ଚେତା ଥିଲା ପରି କିଛି ପ୍ରତୀତ ତ ହେଉଅଛି, ଚିକ୍କଣ ତ ଦିଶୁଛି ମୋ ଦେହ । ଚିହ୍ନି କି ଲାଞ୍ଛନ ସତେ ଚାମରଚିକୁରୀ ମୋତେ ଚହକାଇ ପଚାରିଲୁ କହ ରେ, ଚଳାପାଙ୍ଗି, ଚୁମ୍ବି ରବିନନ୍ଦନୀର ନୀର, ଚନ୍ଦ୍ରକାନ୍ତ ତୁଷାର ସାର; ଚାରୁ ମାରୁତରୁ ତରୁ-ତଳ ଶୀତଳ ହେଉଛି, ଚିନାଏ ତ ଖେଦ ନାହିଁ ମୋର ରେ । ୨ ।

ଚାରି ହରିତରେ ଘେରି ଚରାଉଥାନ୍ତି ବାଛୁରୀ ଚୂଳମୁକୁଟିଆ ସଖାମାନେ । ଚରମରି ଶୃଙ୍ଗ ବେଣୁ, ବାଦ୍ୟନାଦ ଶୁଣୁ ଶୁଣୁ, ଚେଷ୍ଟ ହୁଏ ଦିନ ଦିନେ ଧେନେ ରେ, ଚଳାପାଙ୍ଗି, ଚୁମ୍ବି ବାରୁଣିକି ଦିନଦ୍ୟୁତି, ଚପଳେ ଅମ୍ବର ଚରିଜାନ୍ତି; ଚରମ ଭାଗ ମୋ ଭାରି, ଲାଗି ନାହିଁ ଭ୍ରମେ ଜରି ଚମକି ତ ନାହିଁ ମୋର ଚିତ୍ତ ରେ । ୩ ।

ଚାମୀକରଚାରୁ ଶିରି—ମଣି ସେ କେଉଁ ଅପସରି, ଚାହିଁ ନାହିଁ ଦିନେ ମୋ ନୟନ । ଚମତ୍କାର କଥା ଦେଖି ପେଟରେ କପଟ ରଖି, ତୋତୋ ନାକି ନ କହନ୍ତି ଧେନ ରେ, ଚଳାପାଙ୍ଗି, ଚରାଚର ଚାଲି ଭୟମୟ, ଚକିଟି ଦେଲୁ ମୋ ହୃଦାଶୟ, ଚରଣ ଯୁଗକୁ ତୋର, ବନ୍ଦେ ଅଷ୍ଟାଦୁର୍ଗେଶ୍ୱର, ଚୈର ନାହିଁ ଥିଲେହେଁ ବଞ୍ଚାଅ ରେ । ୪ ।

---

(ଚ) ସରଣୀ—ମାର୍ଗ, ବାଟ; କକୁଭ—ଦିଗ; ଚିତ୍ରାର୍ପିତ—ଚିତ୍ରରେ ଅଙ୍କିତ ପିତୁଳା ପ୍ରଭୃତି; ଚିତ୍ର—ଆଶ୍ଚର୍ଯ୍ୟ; ଅତର୍କିତେ—ଅଜ୍ଞାତସାରରେ, ଚଳାପାଙ୍ଗୀ—ଚଞ୍ଚଳନେତ୍ରା; ସୁଧାଝରି—ଅମୃତର ଝରେଇ, ( ପାତ୍ରବିଶେଷ ); ଲାଞ୍ଛନ—ଚିହ୍ନ; ଚାମରଚିକୁରୀ—( ଚାମର ପରି ଚିକୁର ଯାହାର ) ଦୀର୍ଘ ଘନକେଶଧାରିଣୀ; ଚହକାଇ—ଡରାଇ; ରବିନନ୍ଦନୀର ନୀର—ଯମୁନାପାଣି; ଚାରୁ ମାରୁତ—ମନୋହର ପବନ; ଚିନାଏ—ଟିକିଏ; ହରିତ—ଦିଗ; ଚୂଳମୁକୁଟିଆ—ମୟୂର

ଚୂଳମୁକୁଟଧାରୀ; ଚରିମରି—ଡିଆ ଡେଇଁ; ବାରୁଣୀ—ପଶ୍ଚିମଦିଗ; ଦିନଦ୍ୟୁତି—ସୂର୍ଯ୍ୟ; ଚପଳେ—ଅତି ଚଞ୍ଚଳ; ଅମ୍ବର—ଆକାଶ; ବର୍ଜନ୍ତ—ତ୍ୟାଗ କରନ୍ତି; ଚରମ ଭାଗ—ପୃଷ୍ଠଭାଗ; କିକ—କଅଣ ( ପ୍ରଶ୍ନସୂଚକ ଅବ୍ୟୟ ); ଚରାଚର ସ୍ଥଳ—ଚତୁର୍ଦ୍ଦିଗର ସ୍ଥିତି, ସଂସାରସ୍ଥିତି; ହୃଦାଶୟ—ଅନ୍ତଃକରଣ; ସ୍ୱୈର ନାହିଁ—ସ୍ୱୈରୀଇ ନାହିଁ ।

ଅୟି ଲଳିତେ, ତୋ ଆସିବା ବାଟକୁ ମୁଁ ଚିତ୍ରପ୍ରତିମା ପରି ସ୍ଥିରଭାବରେ ଚାହିଁ ବସିଥିଲି; ତୁ ଯାହା ଅତର୍କିତଭାବରେ ଆସି ଚାରିଚକ୍ଷୁ ମିଶାଇ ଦେଲୁ ଅର୍ଥାତ୍ ଦେଖା ଦେଲୁ, ଏଥିରେ ମୁଁ ଆଶ୍ଚର୍ଯ୍ୟ ହୋଇଗଲି; ହେ ଚଳାପାଙ୍ଗି ! ହେ ଚାତୁର୍ଯ୍ୟକୃପାଳୁ ଗୁଣନିଧି ( ଚତୁରତା ଓ ଦୟାଳୁ ଗୁଣ ଅର୍ଥାତ୍ କୃପାଳୁତା ଏହାର ନିଧି ଅର୍ଥାତ୍ ସ୍ଥାନ ) ଚନ୍ଦ୍ରରୁ ଅମୃତକୁ ଚପୁଡ଼ି ସେହି ଝରକୁ ( ପାନିକୁ ) ଚିରତୃଷାର୍ତ୍ତ ମୁହଁରେ ଢାଳି ଦେଇ ପ୍ରାଣ ରକ୍ଷା କଲୁ, ମୋତେ ଏହିପରି ଲାଗୁଛି । ଅର୍ଥାତ୍ ମୁଁ ତୋତେ ଦେଖିବା ପାଇଁ ବଡ଼ ବ୍ୟାକୁଳ ହେଉଥିଲି, ତୁ ହଠାତ୍ ଆସି ଏଠାରେ ଉପସ୍ଥିତ ହୋଇ ମୋର ବ୍ୟାକୁଳତା ଦୂର କଲୁ । ୧ । ( 'ଛ' ଗୀତରେ ଶ୍ରୀକୃଷ୍ଣଙ୍କ ଶରୀର ଅସୁସ୍ଥ ଥିବା ବିଷୟରେ ଲଳିତା ଯେଉଁ ସବୁ ପ୍ରଶ୍ନ କରିଥିଲେ, ବର୍ତ୍ତମାନ ଶ୍ରୀକୃଷ୍ଣ ତାହାର ଉତ୍ତର ଦେଉଅଛନ୍ତି ) । ହେ ଘନକେଶୀ, ମୋର ଜ୍ଞାନ ଥିବା ପରି ମୋତେ ତ ଜଣାପଡ଼ୁଛି । ମୋ ଦେହ ତ ଚିକ୍କଣ ଦିଶୁଛି, ବାସି ନୀଳକଇଁ ପରି ମଳିନ ଦିଶୁ ନାହିଁ ତ ! କି ଚିହ୍ନ ଦେଖି ତୁ ମୋତେ ଡରିଇ ଏ ସବୁ କଥା ପଚାରିଲୁ କହ । ହେ ଚଳାପାଙ୍ଗି ! ମୁଁ ଯମୁନା ଜଳ ପିଇ, ଚନ୍ଦ୍ର-କିରଣ ସମୂହର ତୁଷାରସାର ଅର୍ଥାତ୍ ଶୀତଳତାକୁ ସେବା କରି ଅର୍ଥାତ୍ ଚନ୍ଦ୍ର-କିରଣରେ ବୁଲି ମନୋହର ପବନ ହେତୁରୁ ଏ ସ୍ଥାନର ତରୁତଳ ବଡ଼ ଶୀତଳ ହୋଇଥିବାରୁ ଏଠାରେ ରହିଅଛି । ମୋର ତ ଏଠାରେ ଟିକିଏ ଦୁଃଖ ନାହିଁ । ମୟୂରପୁଚ୍ଛମୁକୁଟଧାରୀ ମୋର ବନ୍ଧୁ ଗୋପବାଳକମାନେ ଚାରିଆଡ଼େ ବୁଲି ବାଛୁରୀ ଚରଉଥାନ୍ତି, ସେମାନଙ୍କର ଡିଆଁ ଡେଇଁ ଦେଖୁ ଦେଖୁ ଶିଙ୍ଗା ଓ ବେଣୁ ବାଦ୍ୟାଦିର ଶବ୍ଦ ଶୁଣୁ ଶୁଣୁ ଦିନେ ଦିନେ ଦିନ ଶେଷ ହୋଇଯାଏ, ଏହି ସମୟରେ ସୂର୍ଯ୍ୟ ପଶ୍ଚିମ ଦିଗକୁ ଆଶ୍ରୟ କରି ଚଞ୍ଚଳ ଅସ୍ତ ହୋଇଯାଆନ୍ତି । ସାଧାରଣତଃ ଲୋକେ ଡରିଲେ ତାଙ୍କ ପିଠିପଟ ଭାରି ଲାଗେ, ମାତ୍ର ମୋ ପିଠି ଆଡ଼ ତ ଭାରି ହୋଇ ନାହିଁ, ଅଥବା ଭ୍ରମରେ ମୋର ଗ୍ରୀବା ତ କେଉଁଠାରେ ଡରି ନାହିଁ ଅର୍ଥାତ୍ କେବେହେଲେ ମୋ ହୃଦୟରେ ତ ମୁଁ ଭୟ ଅନୁଭବ କରି ନାହିଁ । ୩ । ଆଉ ମଧ୍ୟ ସୁନାପରି ସୁନ୍ଦର ଶ୍ରୀଯୁକ୍ତା କୌଣସି ଅପସରୀକୁ ତ ମୁଁ ଦିନେ ଦେଖି ନାହିଁ, ସଖି, ଏଭଳି ଗୋଟିଏ ଚମତ୍କାର କଥା ଦେଖି ପେଟରେ କପଟ ରଖି ତୋତେ କଅଣ କହନ୍ତି ନାହିଁ ? ହେ ଚଞ୍ଚଳାକ୍ଷି, ଏହା ସ୍ଥିର ବୋଲି ଗ୍ରହଣ କର । ସଂସାରର ସ୍ଥିତି ବଡ଼ ଭୟପୂର୍ଣ୍ଣ, ଏପରି ଅବସ୍ଥାରେ ମୋ ଅନ୍ତଃକରଣକୁ ଚକିତ ଦେଲୁ ଅର୍ଥାତ୍ ମୋ ମନରେ ବଡ଼ ଅଶାନ୍ତ ଜାତ କରିଦେଲୁ । ଆଠଗଡ଼ ରାଜା

(୮) କଲ୍ୟାଣଂ ବଲ୍ଲବାନାଂ ବଗଲିତବୟସାଂ କଂ ସ୍ୱଦାରୈରୁଦାରୈଃ
କଚ୍ଚିଦ୍‌ବାଲାବଲୀନାଂ ଶ୍ରିୟମନୁଭବସି ପ୍ରତ୍ୟହଂ ସତ୍ୟସନ୍ଧେ ।
ଦୀନଶ୍ଚିନ୍ତାମଣୀନାଂ ତତିମିବ ନିତରାଂ ତ୍ୱାଂ ପ୍ରପଦ୍ୟାସ୍ମି ତୃଷ୍ଣ-
ଶ୍ଚିରଂ ସନ୍ଧ୍ୟାତମାତ୍ରା ବଧୂମୁଖି ମମ ଯତ୍ ଯାସି ନେତ୍ରାତିଥିତ୍ୱଂ ।

କିମଦ୍ୟ ଲଳିତେ ଧରଣୀପୁତ୍ରଚରମସଞ୍ଚାରଚରାବଗ୍ରହଗ୍ରହିଲ ରବିଗ୍ରହକରନିକରବ୍ୟତିକରତପ୍ତାଙ୍କୁରକେଦାରଂ ପ୍ରତି ବୃଷ୍ଟ୍ୟେବ ଦଷ୍ଟ୍ୟାନ ପ୍ରବିଷ୍ଟଂ ସ୍ମୃତମାତ୍ରୟା ତ୍ୱୟା ।

---

ତୋ ଚରଣଦ୍ୱୟଙ୍କୁ ବନ୍ଦୁଅଛନ୍ତି; ମୁଁ କାହାର କିଛି ଲୋଡ଼ାଇ ନାହିଁ, ଯେବେ ସେପରି କିଛି ହୋଇଥାଏ, ତେବେ ମୋତେ ବଞ୍ଚାଅ ଅର୍ଥାତ୍ ରକ୍ଷା କର ।

ଟୀକା — ସ୍ୱପ୍ରଣୟିନ୍ୟାଃ ଶ୍ରୀରାଧାୟାଃ କୁଶଳଂ ଜିଜ୍ଞାସୁଃ ଶ୍ରୀକୃଷ୍ଣଃ ଶିଷ୍ଟାଚାର-ବ୍ୟାଜେନ ଆଦୌ ତାବତ୍ ବୃଦ୍ଧାନଂ ଗୋପପୁରବାସିନାଂ କୁଶଳଂ ପୃଚ୍ଛତି, ବଗଲି-ତେତି । ବଗଳିତଂ ବୟୋ ଯେଷାଂ ତେଷାଂ ବୃଦ୍ଧାନାଂ ବଲ୍ଲବାନାଂ ଗୋପାଳାନାଂ ଉଦାରୈରମିତଗୁଣୈଃ ସ୍ୱଦାରୈଃ ସ୍ୱପତ୍ନୀଭିଃ ସହ କୁଶଳଂ କଂ ? ଅୟି ସତ୍ୟସନ୍ଧେ ସତ୍ୟବାଦିନି, ତ୍ୱଂ ପ୍ରତ୍ୟହଂ ବାଲାବଲୀନାଂ ଗୋପଯୁବତୀନାଂ ଶ୍ରିୟଂ ସୁଷମାଂ ଅନୁଭବସି ପ୍ରତ୍ୟକ୍ଷୀକରୋଷି କଚ୍ଚିତ୍ ? ଅପି ଗୋପଯୁବତ୍ୟଃ ପ୍ରତ୍ୟହଂ ସର୍ବ-ସୌଖ୍ୟେନ ବର୍ତ୍ତନ୍ତେ ଇତି ତ୍ୱଂ ସର୍ବଥା ଜାନାସି କିମିତ୍ୟର୍ଥଃ । ଅୟି ବଧୂମୁଖି ଚନ୍ଦ୍ରାନନେ; ସନ୍ଧ୍ୟାତମାତ୍ରା ସ୍ମୃତିମାତ୍ରେଣ ତ୍ୱଂ ଯତ୍ ମମନେତ୍ରାତିଥିତ୍ୱଂ ମମଚକ୍ଷୁଷୋ ଗୋଚରତ୍ୱଂ ଯାସି ଏତଚ୍ଚିରଂ । ଦୀନୋ ଦୁର୍ଗତଶ୍ଚିନ୍ତାମଣୀନାଂ, ଯେ ହି ଚିନ୍ତିତଂ ବସ୍ତୁଜାତଂ ପ୍ରୟଚ୍ଛନ୍ତି ତେ ହି ଚିନ୍ତାମଣୟସ୍ତେଷାଂ ତତିଂ ସମୂହମିବ ତ୍ୱାଂ ପ୍ରପଦ୍ୟ ପ୍ରାପ୍ୟ ନିତରାଂ ନିରତିଶୟ ତୃଷ୍ଣୋଽସ୍ମି । ଯଥା ଚିନ୍ତାମଣିସ୍ତଦଧିକାରିଣେଽଭିଲଷିତଂ ପ୍ରଯଚ୍ଛତି ତଥା ତ୍ୱଂ ମମାଭିଲାଷଂ ପୂରୟିଷ୍ୟସୀତି ତ୍ୱଦ୍ଦର୍ଶନାତ୍ ମେ ନିବୃତ୍ତିଃ ।

ଅୟି ଲଳିତେ ! ଧରଣୀପୁତ୍ରସ୍ୟ ଭୌମଗ୍ରହସ୍ୟ ଚରମସଞ୍ଚାରେଣ ଯଶ୍ଚିରାବଗ୍ରହୋ ବହୁକାଲଂ ବୃଷ୍ଟିପ୍ରତିବନ୍ଧସ୍ତସ୍ମିନ୍ ଗ୍ରହିଲସ୍ୟ ଆଗ୍ରହଶାଳିନଃ ତତ୍ପରସ୍ୟେତି ଯାବତ୍ ରବିଗ୍ରହସ୍ୟ କରନିକରାଣାଂ କିରଣ ସମୂହାନଂ ବ୍ୟତି-କରେଣ ସମ୍ପର୍କେଣ ତପ୍ତା ଅଙ୍କୁରା ଯତ୍ର ତାଦୃଶ କେଦାରଂ ପ୍ରତି କେଦାରେ ଇତ୍ୟର୍ଥଃ ବୃଷ୍ଟ୍ୟା ଇବ ବର୍ଷଣେନେବ ସ୍ମୃତମାତ୍ରୟା ସ୍ମରଣମାତ୍ରେଣ ସମୁପସ୍ଥିତୟା ତ୍ୱୟା ଦଷ୍ଟ୍ୟା ଭାଗ୍ୟେନ ଅଦ୍ୟ ପ୍ରବିଷ୍ଟଂ ।

ଅନୁବାଦ — ଅୟି ଲଳିତେ । ବୃଦ୍ଧ ଗୋପାଳମାନେ ନିଜ ନିଜ ଉଦାର ସ୍ୱଭାବା ସ୍ତ୍ରୀମାନଙ୍କ ସଙ୍ଗରେ କୁଶଳରେ ଅଛନ୍ତି ତ ? ହେ ସତ୍ୟବାଦିନି, ଗୋପ ଯୁବତୀଗଣ ପରମ ସୁଖରେ ଅଛନ୍ତି ତ ? ହେ ବଧୂମୁଖି, ସ୍ମରଣ ମାତ୍ରକେ ତୁମ୍ଭେ



ରାଗ—ମୁଖାରୀ

ଛଳବାହିନୀଶ ହେ, ଛାଡ଼ ଏ ସାହସ ହେ ।ପଦ।
ଛବି ତ ଆବିଲ ଦିଶେ, ଛପିବାରେ ଅଛି କି ସେ ।୧।
ଛଟା କାହା କଟାକ୍ଷର, ଛୁରୀହେଲା କି ବକ୍ଷର ।୨।
ଛେଲରୁ ତ ଚାନ୍ଦା ବଳି, ଛାତିରେ ଗଲଣି ଗଳି ।୩।
ଛୁଟିଯାଇ ବିଚେତନା, ଛଟପଟ ହେବି ସିନା ।୪।
ଛନ୍ଦା ସୂଧା ପରି ଦିଶେ, ଛୁଇଁଦେଲେ ବିଷଠି ସେ ।୫।
ଛଳି ମନ ତୁମ୍ଭ ଗୁଣେ, ଛ ଦୁଇ ଦୁର୍ଗେଶ ଭଣେ ।୬।

---

ଯାହା ମୋ ପାଖରେ ଉପସ୍ଥିତ ହୋଇଗଲା ଏ ବଡ଼ ବିଚିତ୍ର କଥା । ଦରିଦ୍ର ଲୋକ ଏକାବେଳକେ ଅନେକଗୁଡ଼ିଏ ଚିନ୍ତାମଣି ପାଇଲେ ଯେପରି ଆନନ୍ଦିତ ହୁଏ ତୁମ୍ଭଙ୍କୁ ଏଠାରେ ପାଇ ମୁଁ ସେହିପରି ଆନନ୍ଦିତ ହେଉଅଛି, ଅର୍ଥାତ୍ ତୁମ୍ଭଙ୍କୁ ପାଇବାରୁ ମୁଁ ମନେ କରୁଅଛି, ମୋର ଅଭିଳାଷ ବିଷୟ ପୂର୍ଣ୍ଣ ହେବ ।

ଅୟି ଲଳିତେ ! ମଙ୍ଗଳଗ୍ରହ ଏକ ରାଶିରୁ ଅନ୍ୟ ରାଶିକୁ ଚଳିବା ବେଳେ ପ୍ରଖର ସୂର୍ଯ୍ୟରଶ୍ମି ଦ୍ୱାରା ଶସ୍ୟକ୍ଷେତ୍ରମାନଙ୍କରେ ମ୍ରିୟମାଣ ହୋଇ ପଡ଼ିଥିବା ଅଙ୍କୁରସମୂହ ପକ୍ଷରେ ପ୍ରବଳ ବୃଷ୍ଟିଧାରା ଯେପରି, ତୁମ୍ଭଙ୍କୁ ସ୍ମରଣ କରୁଥିବାବେଳେ ତୁମ୍ଭେ ସୌଭାଗ୍ୟକ୍ରମେ ଏଠାରେ ଆସି ଉପସ୍ଥିତ ହୋଇସିବାରୁ ମୁଁ ସେହିପରି ପୂର୍ଣ୍ଣମନୋରଥ ହେଲି ବୋଲି ମନେ କରୁଅଛି ।

ଶ୍ରୀକୃଷ୍ଣଙ୍କର ଏହି କଥା ଶୁଣି ଲଳିତା ତାହାଙ୍କୁ ପୁନର୍ବାର କହିଲେ—

ଛଳବାହିନୀଶ—କପଟରୂପ ନଦୀର ଈଶ ଅର୍ଥାତ୍ ହେ କପଟସାଗର; ଛବି—ରୂପ, ଆବିଳ—ମଳିନ; ଛପିବା—ଲୁଚିବା; ଛଟା—ଭଙ୍ଗୀ, କଟାକ୍ଷ—ଆଡ଼ଚାହାଣୀ, ଛେଲ—ଶଲ୍ୟ, ବାଣ; ଗଳିଗଲଣି—ପଶିଗଲଣି; ଛୁଟିଯାଇ—ଦୂର ହୋଇ; ବିଚେତନା—ଜ୍ଞାନ; ଛନ୍ଦି—ଆଚ୍ଛନ୍ନ କରି; ଛ ଦୁଇ—ଆଠ ।

ହେ କପଟସାଗର, ଏ ସାହସ ଛାଡ଼, ଅର୍ଥାତ୍ ଏପରି କପଟ କଥା ଦ୍ୱାରା ତୁମ୍ଭର ସାହସିକତା ଦେଖାଅ ନାହିଁ ।ପଦ। ତୁମ୍ଭ ରୂପ ତ ମଳିନ ଦିଶୁଅଛି, ଏହା କଣ ଲୁଚିବାର ଅଛି କି ? ଅର୍ଥାତ୍ ଏହା ଲୁଚିବାର କଥା ନୁହେଁ, ସ୍ପଷ୍ଟ ଜଣା ପଡ଼ୁଅଛି । କେଉଁ ସ୍ତ୍ରୀର ଚାହାଣୀ ଭଙ୍ଗୀ ତ ତୁମ୍ଭ ବକ୍ଷର ଛୁରୀ ହେଲାଣି, ଅର୍ଥାତ୍ କେଉଁ ସ୍ତ୍ରୀର ଚାହାଣୀଭଙ୍ଗୀ ତୁମ୍ଭ ବକ୍ଷରେ ପ୍ରବେଶ କରି ତୁମ୍ଭଙ୍କୁ ଘୋର ଯନ୍ତ୍ରଣା ଦେଉଅଛି ।୨। ବାଣରୁ ବଳି ସେହି ଚାହାଁ ତ ଛାତିରେ ପଶିଗଲଣି ।୩।

(ଛ) ଅଜ୍ଞାନାଭିନୟଂ ବିହାୟ ଋଜୁତାମାଲିଙ୍ଗୟିତ୍ୱା ମନ-
ଶ୍ଚାଞ୍ଚଲ୍ୟାଦ୍ ବିରମେତ୍ୟୁଦୀରୟ ଭବନ୍ନେତ୍ରାଞ୍ଚଲୋଦଞ୍ଚନଂ ।
ନୋଚେଦାଧିବଶାଦସାରଦଦଶାମେତ୍ୟେଦୃଶଂ ସୁନ୍ଦରଂ,
କାନ୍ତାସଞ୍ଚୟପଞ୍ଚସାୟକ ବପୁସ୍ତ୍ୱେଷାମତାମେଷ୍ୟତି ।

ମୋହନ ନଟପଟଳୋଦ୍‌ଭଟମୁକୁଟମଣେ ନାନ୍ତଃସନ୍ତାପମନ୍ତରେଣ ଫଳମିତି ପ୍ରତୀୟତେ ତବ କୈତବକୁଶଳତାଲତାୟାଃ ।

---

ତୁମ୍ଭର ହତାହତ ଜ୍ଞାନ ନିଶ୍ଚେଁ ଦୂର ହୋଇଯିବ, ତୁମେ ଖାଲି ଛଟପଟ ହେବ ସିନା ! କିନ୍ତୁ ମନେରଖ, ସେ ନାରୀ ବର୍ତ୍ତମାନ ତୁମ୍ଭଙ୍କ ତୃଣାସୁଧା ଅର୍ଥାତ୍ ବିମଳ ଅମୃତପର ଦିଶୁଅଛୁ, ଯେବେ ତାକୁ ଛୁଇଁଦେବ, ତେବେ ସେ ବିଷ ପାଲଟିଯିବ । ୫ । ତୁମ୍ଭର ଗୁଣରେ ମନକୁ ଆଚ୍ଛନ୍ନ କରି ଆଠଗଡ଼ର ରାଜା ଏହା ଭଣିଲେ । ୬ ।

ଟୀକା—ହେ କୃଷ୍ଣ, ଅଜ୍ଞାନାଭିନୟଂ ଅବିବେକଚେଷ୍ଟାଂ ବିହାୟ ତ୍ୟକ୍ତ୍ୱା, ଋଜୁତାଂ ସାରଲ୍ୟ ଆଲିଙ୍ଗୟିତ୍ୱା ସରଳତାଂ ଆଶ୍ରିତ୍ୟ ଇତ୍ୟର୍ଥଃ (ଆଲିଙ୍ଗଂ ଆଲିଙ୍ଗନଂ କରୋତି ଆଲିଙ୍ଗୟତି, "ତତ୍ କରୋତି, ତଦାଚଷ୍ଟେ" ଇତି ସୂତ୍ରେଣ ଣିଚ୍ ପ୍ରତ୍ୟୟାନ୍ତାତ୍ 'ଆଲିଙ୍ଗି' ନାମଧାତୋଃ ସମାନକର୍ତ୍ତୃକୟୋଃ ପୂର୍ବକାଳେ କ୍ତ୍ୱାଚ୍, ଇତି ସୁଧୀଭିର୍ବିଭାବ୍ୟଂ) ମନସଃ ଚାଞ୍ଚଲ୍ୟାତ୍ ଚିତ୍ତାସ୍ଥୈର୍ଯ୍ୟାତ୍ ବିରମ, ନିବୃତ୍ତୋଭବ, ଇତି ମଦୁପଦେଶଗ୍ରହଣରୂପଂ ଭବତଃ ତବ ନେତ୍ରାଞ୍ଚଳୟୋଃ ନୟନାପାଙ୍ଗୟୋଃ ଉଦଞ୍ଚନଂ ଊର୍ଦ୍ଧ୍ୱଗତିଂ ଉଦୀରୟ ପ୍ରକଟୟ, ଅପାଙ୍ଗସଞ୍ଚାଳନେନ ମଦୁପଦେଶଃ ଗୃହୀତ ଇତି ପ୍ରକାଶୟ ଇତ୍ୟର୍ଥଃ । ନୋଚେତ୍ ମଦୁକ୍ତଂ ନାଚରସି ଚେତ୍, ତବ ଈଦୃଶଂ (ହସ୍ତସଞ୍ଚାଳନେନ ନିର୍ଦ୍ଦିଶ୍ୟ) ସୁନ୍ଦରଂ ମନୋହରଂ, କାନ୍ତାସଞ୍ଚୟସ୍ୟ (ଯୁବତିଜନସମୂହସ୍ୟ) ସମ୍ବନ୍ଧି ପଞ୍ଚସାୟକବପୁଃ କନ୍ଦର୍ପରୂପଂ, ଯସ୍ମିନ୍ ଦୃଷ୍ଟେ ଯୁବତ୍ୟଃ କନ୍ଦର୍ପବଶବର୍ତ୍ତିନ୍ୟଃ ଭବନ୍ତି ତାଦୃଶଂ ତେ ଶରୀରଂ ଆଧିବଶାତ୍ ମନୋବ୍ୟାଧିକ୍ୟାତ୍, ଅସାରଂ ଦଦାତୀତି ଅସାରଦା ବଳହାରିଣୀ ତାଂ ଦଶାଂ ଅବସ୍ଥାମିତି ଯାବତ୍ ପ୍ରାପ୍ୟ କ୍ଷାମତାଂ କୃଶତାଂ ଏଷ୍ୟତି ପ୍ରାପ୍ସ୍ୟତି ।

ହେ ମୋହନ, ହେ ନଟାନାଂ ପଟଳସ୍ୟ ସମୂହସ୍ୟ ଉଦ୍‌ଭଟଃ ଉତ୍କୃଷ୍ଟଃ ମୁକୁଟମଣିଃ ତସ୍ୟ ସମ୍ବୋଧନେ ହେ ନର୍ତ୍ତକକୁଳଶେଖର, ଅନ୍ତଃସନ୍ତାପ ଅନ୍ତରେଣ ଅନ୍ତର୍ଦାହଂ ବିନା ତବ କୈତବେଷୁ କପଟାଚରେଷୁ ଯା କୁଶଳତା ନିପୁଣତା ସା ଏବ ଲତା ତସ୍ୟାଃ ଫଳଂ ନ ଭବିଷ୍ୟତୀତ୍ୟର୍ଥଃ ଇତି ପ୍ରତୀୟତେ ଅବବୁଧ୍ୟତେ ।

ଅନୁବାଦ—ହେ, କୃଷ୍ଣ ଅଜ୍ଞତା ଛଳନା ତ୍ୟାଗ କରି ସରଳ ହୁଅ ଏବଂ ମନଶ୍ଚଞ୍ଚଳତା ଦୂର କର ଏବଂ ମୋ କଥା ଗ୍ରହଣ କର, ଏହା ତୁମ୍ଭର ନେତ୍ର



ରାଗ—କେଦାର ବା ପୂନଙ୍ଗ

ଜାଣିଛୁ ମୁଁ ଏତେ ମାତ୍ର ଗୋ ଲଳିତେ ଯାହା ଇଚ୍ଛା ତୋର ତାହା କର,
ଜ୍ୱଳନରୁ ବଳି ସେହି ଦହୁ ଛେଳି କରେ ବିଭାବରୀନାହାକର । ପଦ ।
ଜଣ କେତେ ବ୍ରଜଶିଶୁ ଥିଲେ ନିଜ, ମୁରୁଁ ଆସିଥିଲି ଖେଳାଇ ସମଜ,
ଜମ୍ଭାରାତିମଣି ଗିରୀନ୍ଦ୍ରକୁ ଜିଣିବାର ପୂରେ ହେଲା ମୋ ନଜର । ୧ ।
ଜାତିକୁରୁବିନ୍ଦ ବାତାୟନବୃନ୍ଦ, ଅନାଇଁ ମୁଁ ଚାଲୁଥିଲି ମନ୍ଦ ମନ୍ଦ,
ଜଙ୍ଗମ ହେବାର ଜମ୍ବୁନଦସାର ଶିରୀ ସ୍ମରୁଁ ହେଲା ସେ କି ପ୍ରକାର । ୨ ।
ଜୀବନଦ ନୀଳଜଳଜଯୁଗଳ, ବିଧୁବିମ୍ବେ ହୋଇ ବିଳାସବିଲୋଳ,
ଜାତ କଲା ଗର ଜରଜର ଶର—ନିକର ବରଷା ଖରତର । ୩ ।
ଜହରକୁ ଗୋଳି ଦେଲାପରି ଗିଳି, ମୋହର ଦେହର ପୀଡ଼ା ଗଲା ବଳି,
ଜୀବନାଶା ଛାଡ଼ି ଯାଉଅଛୁ କଳି ପାରୁ ନାହିଁ ମୁଁ ମୋ ହୃଦନ୍ତର । ୪ ।
ଜନମନୋହାରୀ ସେ ବରତନୁ ଶିରୀ, କାହା ନେତ୍ରପାତେ ଯାଇ ନାହିଁ ପୂରି,
ଜଗଦ୍ଦେବ ହରଚନ୍ଦନ ମୋହର ନାମ କହୁଅଛୁ ନିରନ୍ତର । ୫ ।

---

ସଙ୍କେତଦ୍ୱାରା ପ୍ରକାଶ କର; ନଚେତ୍ ତୁମ୍ଭର ଏହି ଯେଉଁ ସୁନ୍ଦର ଶରୀରକୁ ଦେଖି ଯୁବତୀମାନେ କାମପରବଶ ହୁଅନ୍ତି, ସେହି ଶରୀରଟି ମନସ୍ତାପ ହେତୁରୁ ବଳହୀନ ହୋଇ ଏକାନ୍ତ କ୍ଷୀଣ ହୋଇଯିବ ।

ହେ ନର୍ତ୍ତକକୁଳଚୂଡ଼ାମଣି ମୋହନ, ତୁମ୍ଭେ ଯେଉଁ କପଟାଚରଣ କରୁଅଛ, ଅନ୍ତର୍ଦାହ ବିନା ସେହି କପଟତାରୂପ ଲତାରେ ଅନ୍ୟ ଫଳ ଫଳିବ ନାହିଁ । ଏହା ଶୁଣି ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି, "ଜାଣିଛୁ ମୁଁ ଏତେ" ଇତ୍ୟାଦି ।

---

(ଜ) ଜ୍ୱଳନ—ଅଗ୍ନି; ବିଭାବରୀନାହାକର—ଚନ୍ଦ୍ରକିରଣ; ସମଜ—ପଶୁସମୂହ; ଜମ୍ଭାରାତିମଣି—ଇନ୍ଦ୍ରମଣି; ଗିରୀନ୍ଦ୍ର—ବଡ଼ ପର୍ବତ; ନଜର—ଦୃଷ୍ଟି; ଜାତିକୁରୁବିନ୍ଦ—ଉତ୍କୃଷ୍ଟ ପଦ୍ମରାଗମଣି; ବାତାୟନବୃନ୍ଦ—ଝରକା ସବୁ; ମନ୍ଦ ମନ୍ଦ—ଧୀରେ ଧୀରେ; ଜଙ୍ଗମ ହେବା—ଚଳନ୍ତା, ଚଳୁଥିବା; ଜମ୍ବୁନଦ—ନଦୀ ବିଶେଷ, ଏଥିରୁ ଉତ୍ପନ୍ନ ହୁଏ ବୋଲି ସୁବର୍ଣ୍ଣକୁ ଜମ୍ବୁନଦସାର ବା ଜମ୍ବୁନଦ ବୋଲଯାଏ; ଶ୍ରୀ—ଶୋଭା; ଜୀବନଦ—ବର୍ଷୁକମେଘ; ନୀଳଜଳଜଯୁଗଳ—ଦୁଇଟି ନୀଳପଦ୍ମ; ବିଧୁବିମ୍ବ—ଚନ୍ଦ୍ରବିମ୍ବ; ବିଳାସବିଲୋଳ—କ୍ରୀଡ଼ାରେ ଚଞ୍ଚଳ; ଗର—ବିଷ; ଜର୍ଜର—ଲିପ୍ତ; ଶରନିକର ବାଣସମୂହ; ଜୀବନାଶା—ପ୍ରାଣର ଆଶା ।

(ଜ) ତ୍ୱତ୍‌ସ୍ନେହଜାଭ୍ୟୁଦୟିନା ତ୍ୱୟି ନାପଦେଶଃ,
ସମ୍ପୃଶ୍ୟତେ ମମ ହୃଦା କଥୟାମି ତଥ୍ୟଂ ।
ବସ୍ତ୍ରେ ୱକମସ୍ତ୍ୟପିତସୌଧିଲସଦ୍‌ବିଳାସମ୍
ତଦ୍‌ବୀକ୍ଷଣାଦ ଗଦ ଈଦୃଶ ଉଲ୍ଲାସ ।

ସଦର୍ଥଃ ଲଲିତେ, ବିମଳବଲଦଳନୋପଳପ୍ରାସାଦଚୂଳତେଳ-ବଲ୍ଲଗ୍ରିଖେଳାଲୋଲଲୋଚନେନ ମୟା ପିଷ୍ଟପୋଲ୍ଲଷ୍ଟା—ଚେଷ୍ଟାବିଶିଷ୍ଟା କାଚନ କାଞ୍ଚନମୟୀ ସଞ୍ଚାରଣୀ ପାଞ୍ଚାଳିକା ତଦଧଃ ସମୀରସୁନୋପକଣ୍ଠେ ଯତ୍ପ୍ରଭୃତ୍ୟବଲୋକି ତତ୍‌ପ୍ରଭୃତ୍ୟେତାଦୃଗବସ୍ଥେନ ମୟା ସ୍ଥୀୟତ ଇତି କେବଳଂ ଜାନାମି ।

---

ହେ ଲଳିତେ, ତୋର ଯାହା ଇଚ୍ଛା ତା କର, ସେହି ଦିନଠାରୁ ( ଯେଉଁ ଦିନ ରାଧାଙ୍କୁ ଦେଖିଲି ) ଚନ୍ଦ୍ରକିରଣ ମୋତେ ଅଗ୍ନିପରି ବୋଧ ହେଉଅଛି । ପଦ । ଦିନେ କେତେ ଜଣ ଗୋପାଳବାଳକ ମୋ ସାଙ୍ଗରେ ଥିଲେ, ମୁଁ ଘରୁ ଗାଈବାଛୁରି ପ୍ରଭୃତିଙ୍କୁ ଖେଳାଇ ଖେଳାଇ ଆସୁଥିଲି, ଏହି ସମୟରେ ( ବର୍ତ୍ତି ଓ ଉଚ୍ଚତାରେ ) ଇନ୍ଦ୍ରମଣି ପର୍ବତକୁ ଜିଣିଥିବା ଗୃହରେ ମୋ ଆଖି ପଡ଼ିଗଲା । ୧ । ଉତ୍କୃଷ୍ଟ ପଦ୍ମରାଗ-ମଣିରେ (ରକ୍ତବର୍ଣ୍ଣ ପ୍ରସ୍ତରରେ) ନିର୍ମିତ ହୋଇଥିବା ସେହି ଘରର ଝରକାଗୁଡ଼ିକୁ ଅନାଇ ଅନାଇ ମୁ ଧୀରେ ଧୀରେ ଗୃଲୁଥିଲି, ଏହି ସମୟରେ କି ଏକ ଅନିର୍ବଚନୀୟ ଶୁଦ୍ଧ ସୁବର୍ଣ୍ଣର ଗୋଟିଏ ଚଳନ୍ତା ତେଜ ସେହି ଘର ଭିତରେ ପ୍ରକାଶିତ ହେଲା ।୨। ବର୍ଷୁକ ମେଘପରି ନୀଳବର୍ଣ୍ଣ ପଦ୍ମ ଦିଓଟି ଚନ୍ଦ୍ରବିମ୍ବ ମଧ୍ୟରେ କ୍ରୀଡ଼ାରେ ଚଞ୍ଚଳ ହୋଇ ବିଷବୋଳା ଶରମାନଙ୍କୁ ବର୍ଷିଲା, ( ଚନ୍ଦ୍ରବିମ୍ବ ମଧ୍ୟରେ ପଦ୍ମର ବିଳାସ ବିଲୋଳତା ଅସମ୍ଭବ, କାରଣ ଚନ୍ଦ୍ରକିରଣରେ ପଦ୍ମ ବିକଶିତ ହୁଏ ନାହିଁ, କିନ୍ତୁ ଏଠାରେ ରାଧାଙ୍କ ମୁଖରୂପ ଚନ୍ଦ୍ରରେ ଚକ୍ଷୁରୂପ ନୀଳପଦ୍ମ ଦିଓଟି କ୍ରୀଡ଼ା କରୁଥିବା ଲକ୍ଷ୍ୟ ) ତହିଁରୁ ବିଷାକ୍ତ ଶରସମୂହ ବାହାରି ମୋତେ ବିଦ୍ଧ କରି ପକାଇଲା । ୩ । ବିଷକୁ ଗୋଳି ପିଇଦେଲେ ଦେହରେ ଯେପରି ଯନ୍ତ୍ରଣା ହୁଏ, ସେହି ଶର ବାଜିବାରୁ ମୋ ଦେହର ପୀଡ଼ା ତାହାଠାରୁ ବଳିଗଲା, ମୋ ଜୀବନର ଆଉ ଆଶା ନାହିଁ, ମୋ ହୃଦୟ ଭିତରେ କଅଣ ହେଉଅଛି ମୁଁ ତାହା ଜାଣି ପାରୁ ନାହିଁ । ୪ । ଆହା, ମନୁଷ୍ୟର ମନୋହରଣକାରିଣୀ ସେହି ବିଚିତ୍ର ଶୋଭାରେ କେଉଁ ଲୋକର ନେତ୍ରରୂପ ପାତ୍ର ପୂର୍ଣ୍ଣ ହୋଇ ନାହିଁ । ଅର୍ଥାତ୍ କେଉଁ ଲୋକ ସେହି ବିଚିତ୍ର ଶୋଭା ଦେଖି ପୂର୍ଣ୍ଣମନୋରଥ ହୋଇ ନାହିଁ ? ଜଗଦେବ ହରିଚନ୍ଦନ ମୋ ନାମକୁ ନିରନ୍ତର ଉଚ୍ଚାରଣ କରୁଅଛି । ୫ ।

ଟୀକା—ଅୟି ଲଲିତେ, ତ୍ୱତ୍‌ସ୍ନେହାତ୍ ଜାୟତେ ଯଃ ଅଭ୍ୟୁଦୟଃ ସୌଭାଗ୍ୟଂ ସ ଏବ ଅସ୍ୟାସ୍ତୀତି ତେନ ତ୍ୱତ୍‌ସ୍ନେହଜାଭ୍ୟୁଦୟିନା ମମ ହୃଦା



ରାଗ—ମୁଖାବରୀ ବା ତୋଡ଼ିପରଜ

ଝଗଡ଼ ମାନ ହେଲ ହେ ଶ୍ୟାମ, ଝିମ୍ଭୁଟ ହେବାକୁ ସହସ୍ର ଯାମ । ପଦ ।
ଝାଉଁଳିବା ନବ ତମାଲ ରମା, ଝିଙ୍କିଆଣି ଅଙ୍ଗେ କଲଣି ଜମା । ୧ ।
ଝଡ଼ିବ ବଲ କୋମଲ ଘ୍ଟଡରୁ, ଝଷଧ୍ୱଜପୀଡ଼ା ଝାଞ୍ଜି ତାଡରୁ । ୨ ।
ଝୁମି ଝୁମି ଲୁଠି ପୃଷ୍ଟେ ରସାର, ଝୁରିବାର ଏକା ହୋଇବ ସାର । ୩ ।
ଝଳ ପାଞ୍ଚାଳୀ ଝଟକେ ନାହିଁ କି ? ଝୋଲ ମାଇଲ ତୁମ୍ଭଙ୍କୁ କାହିଁକି । ୪ ।
ଝଲକ ଗଲ କୃଷ୍ଣ ଅକାରଣେ, ଝାଡ଼ଖଣ୍ଡ ଚସା ବାଦସା ଭଣେ । ୫ ।

---

ହୃଦୟେନ ତ୍ୱୟି ଅପଦେଶଃ କପଟବ୍ୟବହାରଃ ନ ଫଷ୍ଟ ଶ୍ୟତେ । ଯତୋଽହଂ ତ୍ୱଦୀୟସ୍ନେହଲମ୍ପଟଃ ତତସ୍ତ୍ୱୟି କପଟାଚରଣଂ ନ କରେମି ଇତ୍ୟର୍ଥଃ; ଅତଃ ତଥ୍ୟଂ କଥୟାମି—ଅସିତମୌଧେ ଇନ୍ଦ୍ରମଣିମୟେ ପ୍ରାସାଦେ ଲସନ୍ ଶୋଭମାନଃ ବିଳାସୋ ଯସ୍ୟ ତତ୍ ଏକଂ ବସ୍ତୁ ଅସ୍ତି ଈଦୃଶଃ ଗଦଃ ଏବଂଭୂତୋ ରୋଗଃ ତଦ୍‌ବୀକ୍ଷଣାଦ୍ ତସ୍ୟ ଦର୍ଶନସମୟାଦେବ ଉଲ୍ଲାସ ସଂଜାତ ଇତ୍ୟର୍ଥଃ ।

ସହଚର ଲଳିତେ, ବିମଳାଃ ବିଶୁଦ୍ଧାଃ ଯେ ବଳଦଳନୋପଳାଃ ଇନ୍ଦ୍ରମଣି-ପ୍ରସ୍ତରାଃ ତେନ ନିର୍ମିତସ୍ୟ ପ୍ରାସାଦସ୍ୟ ଚୂଳେ ଅଗ୍ରଭାଗେ ଯା ଚେଲବଲ୍ଲରୀ ପତାକା-ଲତା ତସ୍ୟାଃ ଖେଳାୟାଂ ବାତାନ୍ଦୋଳନଲୀଳାୟାଂ ଲେଲେ ସତୃଷ୍ଣେ ଲୋଚନେ ଯସ୍ୟ ତେନ ମୟା ପିଷ୍ଟପେ ଜଗତି ଯା ଉତ୍କୃଷ୍ଟଚେଷ୍ଟା ବିଳାସବିଭ୍ରମାଦୟଃ ତଦ୍‌ବିଶିଷ୍ଟା ତଦ୍‌ଯୁକ୍ତା କାଚନ ଅନିର୍ବଚନୀୟା ସଞ୍ଚାରିଣୀ ଗତିଶୀଳା କାଞ୍ଚନମୟୀ ପାଞ୍ଚାଳିକା ସୁବର୍ଣ୍ଣପୁତ୍ତଳିକା ତଦଧଃ ତସ୍ୟ ପ୍ରାସାଦସ୍ୟ ନିମ୍ନଭାଗେ ସମୀରାୟନୋପକଣ୍ଠେ ଗବାକ୍ଷ-ସମୀପେ ତତ୍ ପ୍ରଭୃତ ଯନ୍ମୂର୍ତ୍ତ୍ୟାଦବଲୋକ ଦୃଷ୍ଟା ତତ୍ ପ୍ରଭୃତ୍ୟେବ ତନ୍ମୂର୍ତ୍ତ୍ୟା-ଦେବମୟା ଏତାଦୃକ୍ ଅବସ୍ଥା ଯସ୍ୟ ତେନ କ୍ଷୀୟତେ ଇତି କେବଳଂ ଅହଂ ଜାନାମି ।

ଅନୁବାଦ— ଅୟି ଲଳିତେ, ତୋ ସ୍ନେହ ଏକା ମୋ ମନର ସମସ୍ତ ଆନନ୍ଦର କାରଣ । ଏପରି ଅବସ୍ଥାରେ ତୋ ପାଖରେ ମୁଁ ଆଦୌ କପଟାଚରଣ ନ କରି ସତ୍ୟ କହୁଅଛି—ଇନ୍ଦ୍ରନୀଳମଣି ପ୍ରାସାଦରେ କ୍ରୀଡ଼ା କରୁଥିବା କୌଣସି ବସ୍ତୁକୁ ଦେଖିବା ଦିନଠାରୁ ମୋର ଏହି ରୋଗ ଜାତ ହୋଇଅଛି ।

ସଖି ଲଳିତେ, ବିଶୁଦ୍ଧ ଇନ୍ଦ୍ରମଣି ପଥରରେ ନିର୍ମିତ କୋଠା ଉପରେ ପବନରେ ଖେଳୁଥିବା ପତାକାକୁ ଚାହିଁ ଚାହିଁ ମୁଁ ଯାଉଥିଲି, ଏହି ସମୟରେ ଦେଖିଲି—ଅଲୌକିକସାମାନ୍ୟସୌନ୍ଦର୍ଯ୍ୟଯୁକ୍ତା ଗୋଟିଏ ସୁବର୍ଣ୍ଣମୟୀ ପିତୁଳା

(୯) ଖର୍ବଃ ପାର୍ବଣଶର୍ବରୀଭବଗୁରୋରପୀନ୍ଦୋର୍ବିମ୍ବାଂ ସୁଧା,
ମର୍ତ୍ତ୍ୟଃ କ୍ୱାପି ସୁଧାମମୁନ୍ ବସୁଧାଲୋକେ ପିବତ୍ୟାତୁରଃ;
ବ୍ୟର୍ଥଂ ପ୍ରାର୍ଥନୟା କଦର୍ଥୟସି ମାଂ ଗତ୍ୱା ଦୁରାଶାଂ କଥମ୍,
ସା କ୍ୱଂ ମଦ୍‌ବଶମେତି ହନ୍ତ ବୟସ୍ୟତସ୍ତାରାଧିକା ରାଧିକା ।

କେଶବ ଲୂତାତନ୍ତୁବଲୟବାଗୁରାଭିଃ କଣ୍ଠୀରବରାଜୀବ ରାଜୀବ-ଲୋଚନା ସାସ୍ମାଦ୍ବଶୀଭବିତୁମଶକ୍ୟା ।

---

ତାହାର ତଳପାଖରେ ଥିବା ଝରକାବାଟେ ଚାଲି ଯାଉଅଛି, ସେହି ସମସ୍ତରୁ ମୋର ଅବସ୍ଥା ଏପରି ହୋଇଅଛି—ମୁଁ ଏତିକି ମାତ୍ର ଜାଣେ ।

ଏହା ଶୁଣି ଲଳିତା କହୁଅଛନ୍ତି, "ଝଗଡ଼ି ମାତ୍ର ହେଲି ହେ" ଇତ୍ୟାଦି ।

---

(୯) ଝଗଡ଼ି ହେବା—ବୃଥା ଧନ୍ଦା ପାଇବା, ଝିମୁଟ—ମୁହୂର୍ତ୍ତ, ଯାମ—ପ୍ରହର, ନବତମାଲ—ନୂଆ ତମାଲଗଛ, ରମା—ଶୋଭା, ଝିଙ୍କିଆଣି—ଓଟାରି ଆଣି, ଝଡ଼ିବ—ନଷ୍ଟ ହେବ, ଝଷଧ୍ୱଜ—ମୀନଧ୍ୱଜ, କନ୍ଦର୍ପ; ଝାଞ୍ଜି—ଉତ୍ତାପ, ଝୁମି ଝୁମି—ଘୂମାଇ ଘୂମାଇ, ଝଳ—ଚକ୍ ଚକ୍, ଦୀପ୍ତିଶୀଳ; ପାଞ୍ଚାଳୀ—ପିତୁଳା, ଝଟକିବା—ଶୋଭା ପାଇବା, ଝୋଲ ମାଇଲ—ଭ୍ରମ ବା ଅଜ୍ଞାନ ଜାତ ହେଲା, ଝଲକଗଲ—ଚମକ ପଡ଼ିଲ, ଝାଡ଼ଖଣ୍ଡ—ଅରଣ୍ୟ ଅଞ୍ଚଳ, ରସା—ପୃଥିବୀ, ବାଦସା—ରାଜା ।

ହେ ଶ୍ୟାମ, ତୁମ୍ଭେ ଅକାରଣରେ ସିନା ଏତେ କଷ୍ଟ ପାଇଲ, ଏଥିରେ ମୁହୂର୍ତ୍ତକ ତୁମ୍ଭଙ୍କୁ ସହସ୍ର ପ୍ରହର ପରି ସିନା ଜଣାଯିବ । ପଦ । ଝାଉଁଳି ପଡ଼ିଥିବା ଗଜା ତମାଲଗଛର ଶୋଭାକୁ ଓଟାରି ଆଣି ନିଜ ଦେହରେ ଜମା କଲଣି, ଅର୍ଥାତ୍ ଗଜା ତମାଲ ଗଛ ଝାଉଁଳି ପଡ଼ିଲେ ଯେପରି ଦିଶେ, ତୁମ୍ଭେ ଜାଣୁ ଜାଣୁ ସେହିପରି ଦିଶିଲଣି । ୧ । ଅତଏବ କନ୍ଦର୍ପପୀଡ଼ାଜନିତ ଉତ୍ତାପ ହେତୁରୁ ତୁମ୍ଭ କୋମଳ ଗାତ୍ରରୁ ବଳ କମିଯିବ ଅର୍ଥାତ୍ ତୁମ୍ଭେ କ୍ରମେ ଧୈର୍ଯ୍ୟଶୂନ୍ୟ ହୋଇଯିବ ।୨। ( ନିଶାରେ ) ଘୂମାଇବା ଭଳି ହୋଇ କେବଳ ମାଟିରେ ଗଡ଼ିବ ଏବଂ ଝୁରିବାଟା ମାତ୍ର ସାର ହେବ । ୩ । ତୁମ୍ଭେ ଗୋଟିଏ ଚଳନ୍ତା ସୁବର୍ଣ୍ଣପିତୁଳା ଦେଖି ଯାହା ଏପରି ହେଲ ବୋଲି କହିଲ—ଆଚ୍ଛା କହିନା ଦେଖି, ସୁନାର ପିତୁଳା କଅଣ ଚକଚକ ଦିଶେ ନାହିଁ ? ଏଥିରେ କାହିଁକି ତୁମ୍ଭଙ୍କୁ ଝୋଲ ମାଇଲା ? ୪ । ହେ କୃଷ୍ଣ ? ତୁମ୍ଭେ ବୃଥା ଚମକ ପଡ଼ିଲ, ଅରଣ୍ୟ ପ୍ରଦେଶର ରାଜା ଏଥିରେ ଭଣିଲେ । ୫ ।

ଟୀକା—ଅମୁଷ୍ମିନ୍ ବସୁଧାଲୋକେ ପୃଥିବ୍ୟାଂ କ୍ୱାପି ଖର୍ବଃ କ୍ଷୁଦ୍ରକାୟଃ ମର୍ତ୍ତ୍ୟଃ ମାନବଃ କ୍ଷୁଧା ବୁଭୁକ୍ଷୟା ଆତୁରଃ ସନ୍ ପାର୍ବଣଶର୍ବର୍ଯାଃ



ରାଗ—ତୋଡ଼ି ଜଙ୍ଗଲ ବା ମୋହନା

ନ ଭାଙ୍ଗ ରେ ଶୁଭାଙ୍ଗି, ଭାରତୀ ହୁଅ ସାହା । ପଦ ।
ନୋହିଲେ ତୁ ପରମାଣି, ନିର୍ଦ୍ଦୟ ମଦନ ବାଣି
ନିଃଶେଷ କଲାଣି ଦେହ ଲହା । ୧ ।
ନୀପକୁଞ୍ଜ ଉପକଣ୍ଠେ ନ୍ୟସ୍ତ କରିଅ ମୋ କଣ୍ଠେ
ନାଗରୀନ୍ଦ୍ର ନିରୁପମ ବାହା । ୨ ।
ନେତ୍ରାନ୍ତବିଳାସ ତାର, ନିଦାନ ଏ ଅବସ୍ଥାର
ନିରେଖି ଉଛାଳୁ ଥରେ ଆହା । ୩ ।
ନିଷ୍ଟୁର ଏ ଯୌବନ ଛଳେ, ନ ଜୀଇବି କଦାଚିତେ
ନ ବଢାଇଲେ ତୁ ସୁଖ ରାହା । ୪ ।
ନାଥ ଆଷ୍ଟାଦୁର୍ଗର ଯେ, ନିତ ସେ ମୋ ପାଦେ ଭଜେ,
ନିନ୍ଦବଟି ନ କଲେ ତୁ ତାହା । ୫ ।

---

ପୂର୍ଣ୍ଣିମାରଜନ୍ୟାଃ ରତିଭୂରେଃ ସ୍ୱାମିନଃ ପୂର୍ଣ୍ଣଚନ୍ଦ୍ରସ୍ୟ ଇତ୍ୟର୍ଥଃ ବିମ୍ବଂ ମଣ୍ଡଳଂ ଆପୀଡ୍ୟ ମର୍ଦ୍ଦୟିତ୍ୱା ସୁଧାଂ ଅମୃତଂ ପିବତି ? ନ କ୍ୱାପୀତ୍ୟର୍ଥଃ । ତ୍ୱଂ କଥଂ ଦୁରଶାଂ ଗତ୍ୱା ଦୁରଶାପୀଡିତଃ ସନ୍ ମାଂ ପ୍ରାର୍ଥୟସ୍ୱ ବ୍ୟର୍ଥଂ ଯଥା ସ୍ୟାତ୍ ତଥା କଦର୍ଥୟସି ପୀଡ଼ୟସି ? ହନ୍ତ ! ( ଖେଦେ ) ବସ୍ତୁତଃ ଆକାଶସ୍ୟ ତାରାଧିକା ସା ରାଧିକା କିଂ ମମବଶଂ ଏତି ? ଯଥା ଆକାଶସ୍ଥାଂ ତାରାଂ କୋଽପି ଗ୍ରହୀତୁଂ ନ ଶକ୍ନୋତି ତଥା ତାଂ ରାଧିକାଂ ଅହଂ ବଶେ ଆନେତୁଂ ନ ଶକ୍ନୋମି ଇତ୍ୟର୍ଥଃ ।

ହେ କେଶବ, ଲୂତାତନ୍ତୁବଲୟସ୍ୟବାଗୁରାଭିଃ ଲୂତାସୂତ୍ରପାଶୈଃ କଣ୍ଠୀରବରାଜୀବ ସିନ୍ଧୁରସମୂହ ଇବ, ରାଜୀବଲୋଚନା ପଦ୍ମନେତ୍ରା ସା ରାଧା ଅସ୍ମାଦୃଶୀଭିଃ ବଶୀକର୍ତ୍ତୁଂ ଅଶକ୍ୟା ।

ଅନୁବାଦ—ଏ ସଂସାରରେ ରହୁ କୌଣସି ବାସନାକୃତ କ୍ଷୁଧାତୁର ଲୋକ ପୂର୍ଣ୍ଣଚନ୍ଦ୍ରକୁ ଅମୃତ ଚପୁଡ଼ି ତାହାକୁ ପିଇ କ୍ଷୁଧା ନିବୃତ୍ତ କରେ କି ? ହେ କୃଷ୍ଣ, ତୁମ୍ଭେ ଦୁରଶରେ ପଡ଼ି ମୋତେ ଅକାରଣରେ ଏତେ ପ୍ରାର୍ଥନା କରୁଅଛ । ମନୁଷ୍ୟ ପକ୍ଷରେ ଆକାଶର ତାରା ପାଇବା ବରଂ ସମ୍ଭବପର, କିନ୍ତୁ ସେହି ରାଧିକାଙ୍କୁ ପାଇବା ସମ୍ଭବପର ନୁହେଁ, ଏପରି ଅବସ୍ଥାରେ ସେ କିଅଣ ମୋର ବଶବର୍ତ୍ତିନୀ ହେବ ?

(ଙ୍ଗ) ଦୃଢ଼ାଂ ନବ୍ୟାଂ ଭବ୍ୟାଂ ତରୁଣି ତରଣିଂ ତେ ମୃଦୁ ଗିରଂ,
କରିଷ୍ୟେ କନ୍ଦର୍ପାମ୍ବୁନିଧିତରଣାୟେତ୍ୟହମହଃ ।
ସ୍ଥିତା ଯାଶୋ ନାସାନ୍ତଲଲିତବିଲାସାୟୁ ନନୁ ତାଂ,
ରୁଷା ସାଙ୍ଗଂ ଭଙ୍ଗଂ ନ ନୟ ବହିରଙ୍ଗଂ ନ କୁରୁ ମାଂ ॥

ନୋଚିତଂ ସଖି, ସାଧାରଣେତରମୁଖମୌଦ୍ଧୋଦ୍ଧ୍ୱ ସଞ୍ଚାରଲୀଲୋ-ଦ୍ୟତସାହସିକସ୍ୟ ମମାଶାଧିରୋହଣୀହରଣଂ ।

---

ହେ କେଶବ, କୁଡ଼ୀଆଣିଜାଲରେ ସିଂହମାନଙ୍କୁ ଧରିବା ଯେପରି ଅସମ୍ଭବ, ପଦ୍ମନେତ୍ରା ରାଧା ଆମ୍ଭମାନଙ୍କ ଭଳି ଲୋକମାନଙ୍କର ବଶୀଭୂତ ହେବା ସେହିପରି ଅସମ୍ଭବ ଅଟେ ।

ଏହା ଶୁଣି ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି, “ନ ଭଙ୍ଗ ରେ ଶୁଭଙ୍ଗି” ଇତ୍ୟାଦି ।

---

(ଙ୍ଗ) ଶୁଭଙ୍ଗୀ—ସୁନ୍ଦରି, ଭାରତୀ—କଥା, ଅନୁରୋଧ; ସାହା—ସହାୟ, ପରିତ୍ରାଣ—ରକ୍ଷାକାରିଣୀ, ନତନୁ—ଅତନୁ, କନ୍ଦର୍ପ; ଲହା—ସାରାଂଶ, ସତ୍ତ୍ୱ; ଉପକଣ୍ଠେ ସମୀପରେ, ଅନୁପମ—ଅତୁଳନୀୟ, ବାହା—ବାହୁ, ନେତ୍ରାନ୍ତବିଳାସ ଆଖିକୋଣର ଭଙ୍ଗୀ, ନିଦାନ—କାରଣ, ନିରେଖି—ଦେଖି, ସୁଖରାହା—ସୁଖର ପଥ ।

ହେ ସୁନ୍ଦରି, ମୋ ଅନୁରୋଧ ଭଙ୍ଗ ଦେ ନା, ମୋର ସହାୟ ହୁଅ । ପଦ । ତୁ ମୋତେ ରକ୍ଷା ନ କଲେ ନିଷ୍ଠୁର କନ୍ଦର୍ପର ବାଣ ମୋ ଦେହର ସାରଅଂଶକୁ ନଷ୍ଟ କଲା ବୋଲି ମନେ କର । ୧ । ଏହି କଦମ୍ବବନ ନିକଟରେ ସେହି ସୁନ୍ଦରୀଶିରୋମଣି ରାଧାଙ୍କର ଅତୁଳନୀୟ ବାହୁକୁ ମୋ କଣ୍ଠଦେଶରେ ରଖାଇ ଦିଅ; ଅର୍ଥାତ୍ ରାଧାଙ୍କ ସଙ୍ଗେ ମୋର ମିଳନ କରାଅ । ୨ । ସେ ମୋତେ ନେତ୍ରଭଙ୍ଗୀରେ ଚାହିଁବାରୁ ମୁଁ ଏ ଦୁର୍ଦ୍ଦଶା ଭୋଗ କରୁଅଛି, ଏ କଥା ସ୍ୱଚକ୍ଷୁରେ ଦେଖି ଥରେ ସେ ‘ଆହା’ ବୋଲି ଉଚ୍ଚାରଣ କରୁ । ୩ । ହୃଦୟରେ ନିଶ୍ଚୟ ଜାଣ, ତୁ ଯେବେ ମୋର ସୁଖର ପନ୍ଥା ବତାଇ ନ ଦେବୁ, ତେବେ ମୁଁ ଆଉ କେବେହେଁ ବଞ୍ଚିବି ନାହିଁ । ୪ । ଅଷ୍ଟଦୁର୍ଗର ରାଜା ନିତି ମୋ ପାଦରେ ସେବା କରୁଅଛି, ତୁ ରାଧାଙ୍କୁ ମୋ ସଙ୍ଗରେ ମିଳାଇ ନ ଦେଲେ ସେ ତୋତେ ନିନ୍ଦା କରିବ । ୫ ।

ଟୀକା—ହେ ତରୁଣି, ଅହଂ ଅହରହଃ ସଦୈବ ତବ ମୃଦୁଗିରଂ ତବ ଲଳିତକଥାଂ କନ୍ଦର୍ପାମ୍ବୁନିଧିତରଣାୟ କାମସାଗରତଃ ଉଦ୍ଧାରାର୍ଥଂ ଦୃଢ଼ାଂ ଛିଦ୍ରାଦିରହିତାଂ ଭବ୍ୟାଂ ମଙ୍ଗଳମୟୀଂ ନବ୍ୟାଂ ନୂତନାଂ ତରଣିଂ ନୌକାଂ କରିଷ୍ୟେ, ସର୍ବଥୈବ ଅସ୍ମିନ୍ ବିଷୟେ ତବ ବଚନାନୁସାରେଣ ବର୍ତ୍ତିଷ୍ୟେ

# ଟ

ରାଗ—ବଙ୍ଗଳାଶ୍ରୀ ବା ବସନ୍ତ

ଟଙ୍କାର କି ଶ୍ରବସରଙ୍କ ବାସବକୋଦଣ୍ଡରୁ ଚଣ୍ଡ ଧନୁ,
ଟାଣି ବକ୍ରେ ଶମ୍ବରକୃଶ କଲମ୍ବ ତୁମ୍ଭଙ୍କୁ ଏକା ଅତନୁ ହେ । ୧ ।
ଟେକ ଏ ସୁନ୍ଦର ଶ୍ରୀମୁଖଟି ପରଘରବୁଡ଼ା ଫଇମାସ,
ଟିକାଏ ହେଲେ ଯେ ହୃଦୟସରୋଜେ ନୋହିଲ ବାସବିଳାସ ହେ ॥
ଟେକାଟେକି ମୋତେ କର ନାନାମତେ ତୁମ୍ଭ କାମନା ପୂରିବ,
ଟାଣି ଖୁଣ୍ଟା ଗୁରୁଜନ ଗଞ୍ଜନାରୁ ମୋ ପ୍ରାଣସଖୀ ସରିବ ହେ । ୩ ।
ଟପ ଥିବା ଗୃହ ବଚନ ଗୋଚର ଯେତେ ସମାଗୃହ ଗୋପେ,
ଟିମଦେଲେ କଂସ ଅଗେ କେ ନୃଶଂସ ନନ୍ଦବନ୍ଦୀ ହେବେ ଟୋପେ ହେ
ଟାକିଛ ସୁଧାଂଶୁକଳାକୁ ଅକାଶୁଁ ହରିବାକୁ ପାଣିଗତ,
ଟିକାୟିତ ଅଷ୍ଟାଦୁର୍ଗରେ କହଇ ଶ୍ୟାମ ଏ କି ଆଚରିତ ହେ । ୪ ।

---

ଇତ୍ୟର୍ଥଃ, ନନୁ ହେ, ନାସାନଳଲବିଳାସାୟ ପ୍ରାଣଧାରଣାୟ ମେ ଯା ଆଶା ସ୍ଥିତା ତାଂ ରୁଷା କୋପେନ ସାଙ୍ଗଂ ଭଙ୍ଗଂ ନ ନୟ, ତତ୍ ପ୍ରାପ୍ତ୍ୟର୍ଥଂ ଯା କାଚତ୍ ଆଶା ମେ ହୃଦି ବର୍ତ୍ତତେ, ଯସ୍ମାହଂ ଜୀବାମି ତାଂ ତ୍ୱଂ ସର୍ବଥା ବ୍ୟର୍ଥତାଂ ନ ପ୍ରାପୟ ଇତ୍ୟର୍ଥଃ ମାଂ ଚ ବହିରଙ୍ଗଂ ଅନାତ୍ମୀୟଂ ନ କୁରୁ !

ସଖି, ସାଧାରଣେତରଂ ସୁଖଂ ଯସ୍ୟାଂ ତଥୋକ୍ତାୟାଂ ସୌଧୋର୍ଦ୍ଧ୍ୱ ପ୍ରାସାଦୋପରି ସଞ୍ଚାରଲୀଳାୟାଂ ବିହାରବିଳାସେ ଉଦ୍ୟତ୍ ଜାୟମାନଂ ସାହସିକ୍ୟଂ ସାହସକର୍ମ ଯସ୍ୟ ତଥୋକ୍ତସ୍ୟ ମମ ଆଶାଧିରୋହଣୀହରଣଂ ଆଶାନିଃଶ୍ରେଣୀକା-ପନୟନଂ ତବ ନ ଉଚିତଂ ନ ଯୁଜ୍ୟତେ ।

ହେ ତରୁଣି, କନ୍ଦର୍ପ ସମୁଦ୍ର ପାର ହେବାପାଇଁ ତୁମ୍ଭର ମୃଦୁ କଥାକୁ ମୁଁ ନିଶ୍ଚେ ମଙ୍ଗଳମୟୀ ନୂତନ ଦୃଢ଼ ନୌକା କରିବି ଅର୍ଥାତ୍ ତୁମ୍ଭ କଥା ଅନୁସାରେ ଚଳି ଏ କାମଦୁଃଖରୁ ରକ୍ଷା ପାଇବି । ହେ ସଖି, ପ୍ରାଣ ଧାରଣ ପାଇଁ ଯେଉଁ ଆଶା ଟିକିକ ଧରିଅଛୁ, କ୍ରୋଧରେ ସେ ଆଶାକୁ ସର୍ବଥା ନଷ୍ଟ କର ନାହିଁ ଏବଂ ମୋତେ ପର ବୋଲି ଭାବ ନାହିଁ ।

ସଖି, ମୁଁ ଅସାଧାରଣ ସୁଖସୌଧର ଊର୍ଦ୍ଧ୍ୱରେ କ୍ରୀଡ଼ା କରିବାକୁ ସାହସ କରିଅଛୁ, ତହିଁର ଆଶାରୂପ ନିଶୁଣୀକୁ ହରଣ କରି ନେବା ଉଚିତ ନୁହେ । ଏହା ଶୁଣି ଲଳିତା କହୁଅଛନ୍ତି, "ଟଙ୍କାର କି ଶ୍ରବସରକି" ଇତ୍ୟାଦି ।

(୫) ଯାବନ୍ତୋ ବଲସନ୍ତ ଯୌବତମନଶ୍ଚୌରାଃ କିଶୋରାଃ ପୁରେ
ପକ୍ଷସ୍ତେଷୁ ସମୁତ୍‌ସୃଜନ୍ ରତିପତିଃ ପ୍ରକ୍ଷ୍ୱେଡ଼ନାନ୍ କୌସୁମାନ୍
ବାହାବାହବିପୂର୍ବକଂ ତ୍ୟଜତି କିଂ ତ୍ୱଯ୍ୟେବ ରକ୍ତାଶୟେ,
ହାହା ଶମ୍ବରଦମ୍ଭଜମ୍ଭରଭିଦାଲମ୍ବାନ୍ କଲମ୍ବାନ୍ ମୁହୁଃ ।

କେନ ବାନ୍ୟ କିଶୋରେଣ ବଲ୍ଲବନଗର୍ଯ୍ୟାମଚ୍ଛିଦ୍ରମବିନ୍ୟସ୍ତ-କାଉିସ୍ପରକ୍ଳନ୍ତିମପୁତ୍ତ୍ରିକାଃ କୃତନା କତି ନ ବିଲୋକ୍ୟନ୍ତେ ।

---

(୫) ଟଙ୍କାର—ଟଂ ଟଂ ଶବ୍ଦକରି, ଓଟାରି; ଶ୍ରବ—କାନ, ବାସବକୋଦଣ୍ଡ—ଇନ୍ଦ୍ରଧନୁ, ଚଣ୍ଡ—ଭୟଙ୍କର, ଶମ୍ବ—ବଜ୍ର, କଲମ୍ବ—ଶର, ଅତନୁ—କନ୍ଦର୍ପ, ପରଘରବୁଡ଼ା—ଅନ୍ୟ ଘରକୁ ନଷ୍ଟ କରିବା, ଫରମାସ—ବିବାଦ, ଟିକାଏ—ଟିକିଏ, ସାମାନ୍ୟ; ହୃଦୟସରୋଜେ—ହୃଦୟପଦ୍ମରେ, ଜାସବିଲାସ—ଭୟସମ୍ଭବ, ଟେକାଟେକି କରି—ଖୁସାମତ କରି, ଟାଣେଖୁଣ୍ଟା—ପୀଡ଼ାଦାୟକ, ଗଞ୍ଜନା—ଗଞ୍ଜଣା, ଟପା ଥିବା—ସମ୍ବାଦବାହକରୂପେ ଥିବା, ଗୁର—ଦୂତ, ଟିପିଦେବା—ଗୋପନରେ କହିଦେବା, ଟୋପେ—କାରାଗୃହରେ, ଟାକିଛ—ଅପେକ୍ଷା କରିଛ, ପାଣିଗତ—କରଗତ, ଟିକାସ୍ଥିତ—ଯୁବକ ରାଜା ।

ହେ କୃଷ୍ଣ, କନ୍ଦର୍ପ କିଣ ଇନ୍ଦ୍ରଧନୁ ଅପେକ୍ଷା ପ୍ରକାଣ୍ଡ ଧନୁର ଗୁଣକୁ କାନଯାଏ ଓଟାରି ଆଣି ବଜ୍ରତୁଲ୍ୟ ଶରକୁ ଅତିବେଗରେ ତୁମ୍ଭଙ୍କୁ ବିନ୍ଧୁଅଛି ? । ୧ । ଏ ସୁନ୍ଦର ଶ୍ରୀମୁଖଟିକୁ ଟେକି ପରଘର ନଷ୍ଟ କରିବାପାଇଁ ବିବାଦ କରୁଅଛ, ଏଥିରେ ତୁମ୍ଭ ହୃଦୟପଦ୍ମ ମଧ୍ୟରେ ଟିକିଏ ହେଲେ ଭୟ ହେଉ ନାହିଁ ? ୨ । ମୋତେ ଟେକାଟେକି କରି ତୁମ୍ଭ ଅଭିଳାଷ ପୂରାଇବ, କିନ୍ତୁ ମୋ ପ୍ରାଣସଖୀ ରାଧା ପୀଡ଼ାପ୍ରଦ ଶାଶୁ-ନଣନ୍ଦଙ୍କ ଗଞ୍ଜଣାରୁ କଷ୍ଟ ପାଇ ସରିଯିବ । ୩ । ଗୋପରେ ଯେତେ ଘଟଣା ଘଟୁଅଛି, ଡାକରୂପେ ରହିଥିବା ଦୂତମାନଙ୍କ କଥାରୁ ସେ ସବୁ କଂସ ଆଗରେ ଜଣାଯାଉଅଛି, ଯେବେ କୌଣସି ଖଳ ଲୋକ ଏ କଥା ଗୋପନରେ କଂସ ଆଗରେ କହି ଦିଏ, ତେବେ ନନ୍ଦ ନିଶ୍ଚୟ କଯ୍ୟେଦ ଘରେ ବନ୍ଦ ହୋଇ ରହିବେ । ୪ । ଆକାଶରୁ ଚନ୍ଦ୍ରକଳାକୁ ହାତରେ ଧରିବ ବୋଲି ତୁମ୍ଭେ ଅପେକ୍ଷା କରିଅଛ, ଆଠଗଡ଼ର ଯୁବକ ରାଜା କହୁଅଛନ୍ତି—ହେ କୃଷ୍ଣ, ତୁମ୍ଭର ଏ କି ଆଚରଣ ? ୫ ।

ଟୀକା—ହାହେତିଖେଦସୂଚକମବ୍ୟୟଂ, ଯୁବତୀନାଂ ସମୂହୋ ଯୌବତଂ ତସ୍ୟ ମନଶ୍ଚୌରାଃ ମନୋହାରିଣଃ ଯାବନ୍ତଃ ଯାବତ୍ ସଂଖ୍ୟକାଃ କିଶୋରାଃ ଯୁବକାଃ ପୁରେ ଅସ୍ମିନ୍ ଗୋପନଗରେ ବଲସନ୍ତ ରତିପତିଃ, ପକ୍ଷଃ ସନ୍ ସହାୟଃ ସନ୍ ତେଷୁ କିଶୋରେଷୁ କୌସୁମାନ ପ୍ରକ୍ଷ୍ୱେଡ଼ନାନ୍ କୁସୁମଶରାନ୍ ସମୁତ୍‌ସୃଜନ୍ ନିକ୍ଷିପନ୍



ରାଗ—ତୋଢ଼ି ବା ଦେଶାକ୍ଷ

ଠିକ ଠ ବର୍ତ୍ତୁଳ ଚନ୍ଦ୍ରାନନା ତୋ ଚିତ୍ତରେ । ପଦ ।

ଠକ ରୀତି ନ ଆଚର          ମୋ କଦନକୁ ବିଚର
ଅଙ୍ଗଯଷ୍ଠ ବାଣବିଦ୍ଧ ଜଗତରେ । ୧ । *

ଠଣା ଠୁଙ୍କି ଚାପ ବାସ,—          ମୁଣ୍ଡେ ମନମଥ ପାଶ—
ବନ୍ଧନ କର ତୁ ପରି ମୋଚିତରେ । ୨ ।

ଠଜରାଇ ଅବସର,          କଲେ ତୁ ପ୍ରସଙ୍ଗ ମୋର,
ଯିବ ରାଜୀବନେତ୍ରାଙ୍କୁ ରୁଚିତ ରେ । ୩ ।

ଠୋ କର ଛୁଣ୍ଡାଇ ଦେ ନା          ପ୍ରିୟସଖି ! ମୋ ବେଦନା
ନ ଲାଗଇ କାକି ତତେ କାଞ୍ଚିତରେ । ୪ ।

ଠାରଦେଲେ ନେତ୍ରାଞ୍ଚଳେ,          ବିଜନ ସ୍ଥଳେ ସେ ବଳେ,
ବିରାଜିବ କ୍ଷଣେରୁଚି ଜଗତରେ । ୫ ।

ଠାକୁର ଠାକୁରାଣୀଙ୍କ,          ପଦାମ୍ବୁଜଧ୍ୟାନରଙ୍କ,
ନୃପ ଜଗଦ୍ଦେବ କରେ ରଚିତ ରେ । ୬ ।

---

ରିଜ୍ୱାଣସ୍ତେ ସରଳାନ୍ତଃ କରଣେ ତ୍ୱଯ୍ୟେବ ଶମ୍ବକଦମ୍ବସ୍ୟ ବଜ୍ରସମୂହସ୍ୟ ଉମ୍ବରଭରଃ ଆଚ୍ଛୋପାଦିତଶସ୍ତ୍ରଃ ତଦାଲମ୍ବାନ୍ ତଦାଶ୍ରୟିଣଃ କଳମ୍ବାନ୍ ମାର୍ଗଣାନ୍ ବାହ୍ୱାବାହ୍ୱବି ଉଭୟତୋ ବାହୁଭ୍ୟାଂ ଯୁଦ୍ଧଂ ପୂର୍ବଂ ଯସ୍ମିନ୍ କର୍ମଣି ତତ୍ର ତଥୋକ୍ତଂ ମୁହୁଃ ପୁନଃ ପୁନଃ ତ୍ୟଜତି କଂ ? ନକ୍ଷିପତି କମ୍ ?

ଅଦ୍ୟ ବଲ୍ଲବନଗର୍ଯ୍ୟାଂ ଗୋପପୁରେ କତି ଅନ୍ତଃକୁକ୍ଷିମେ ସୌଧୋପରିତନ-ଗୃହେ ବିନ୍ୟସ୍ତାଃ ରକ୍ଷିତାଃ ଯା କାର୍ତ୍ତସ୍ୱରକୃତିମପୁତ୍ତ୍ରିକାଃ ସୁବର୍ଣ୍ଣପୁତ୍ତଳିକାଃ କୃତନା ଚତୁରେଣ କେନ ବା କଶୋରେଣ ନ ଅବଲୋକ୍ୟନ୍ତେ ।

---

* ଅନେକ ଛାପା ପୁସ୍ତକରେ ଏହି ଗୀତର ତୃତୀୟ ପାଦରେ ଦୁଇଗୋଟି ଲେଖାଏଁ ଅକ୍ଷର ଅଧିକ ଅଛି, ତାହା ଯେପରି ଭାବବିଘାତକ ସେହିପରି ମଧ୍ୟ ରାଗ ବା ସ୍ୱରର ସମ୍ପୂର୍ଣ୍ଣ ପ୍ରତିକୂଳ । ଗଞ୍ଜାମ ଜିଲ୍ଲାରୁ ହାତଲେଖା ଯେତେ ଖଣ୍ଡ ପୋଥି ଆମ୍ଭମାନଙ୍କର ହସ୍ତଗତ ହୋଇଅଛି, କାହିଁରେ ସେ ଅକ୍ଷର ଦୁଇଟି ନାହିଁ । ତେଣୁ ଆମ୍ଭେମାନେ ତାହା ବିସର୍ଜନ କରିଗଲୁଁ । ଆଠଗଡ଼ର ସୁପ୍ରସିଦ୍ଧ ଗାୟକ ପଣ୍ଡିତ ସାମନ୍ତ ଶ୍ରୀଗଙ୍ଗାଧର ପ୍ରହରାଜଙ୍କ ଦ୍ୱାରା ଲିଖିତ ଚମ୍ପୂରେ ମଧ୍ୟ ସେ ଦୁଇଟି ଅକ୍ଷର ନାହିଁ ।

(୦) ଏଣୀଦୃଶଃ ପ୍ରିୟସଖୀ ପ୍ରିୟବାଦନୀ ତେ—
ତ୍ୟାପଙ୍କନେନ ସଦୃଶୀତ ବିଶାରଦେତ;
ବିଶ୍ୱାସନଃସ୍ୱହୃଦୟଙ୍ଗମପାସ୍ୟ ତୁଭ୍ୟମ୍ ,
ଯଦ୍ରୋଚତେ କୁରୁ ସୁରୂପବତୀତ ବିଚ୍ନ ।

ଦୁର୍ଗତିଜନବର୍ଗୋପକାରଜନ୍ୟପୁଣ୍ୟଯଶୋଽପବର୍ଗନିର୍ଗତାଲସନସର୍ଗ ହି ଦୟାଳବୋ ହୃଦୟାଳବଃ ।

---

ଅନୁବାଦ—ଅହୋ ! ଏହି ଗୋପପୁରରେ ଯୁବତୀମଣ୍ଡଳୀରେ ଯେତେ ରସିକ ଯୁବକ ବିହାର କରନ୍ତି, କନ୍ଦର୍ପ ସେମାନଙ୍କ ପକ୍ଷ ହୋଇ ସେମାନଙ୍କୁ କଅଣ କେବଳ କୁସୁମଶର ମାରି ତୁମ୍ଭଙ୍କୁ ସରଳମତି ଦେଖି ବାହୁ ଯୁଦ୍ଧ କରି ତୁମ୍ଭ ପ୍ରତି ଖାଲି ବଜ୍ରସଦୃଶ ଶର ପୁନଃ ପୁନଃ ମାରୁଛୁ ?

କେଉଁ ଚତୁର କିଶୋର ଅବା ଗୋପପୁର କୋଠାମାନଙ୍କ ଉପରେ ରଖା-ଯାଇଥିବା କେତେ ସୁବର୍ଣ୍ଣନିର୍ମିତ ପିତୁଳା ଦେଖି ନାହାନ୍ତି ?

ଏହା ଶୁଣି ଶ୍ରୀକୃଷ୍ଣ କହୁଅଛନ୍ତି—"ଠିକ ଠ ବର୍ତ୍ତୁଳ" ଇତ୍ୟାଦି ।

---

(୦) ଠିକ ଠ ବର୍ତ୍ତୁଳ—ସମ୍ପୂର୍ଣ୍ଣ ରୂପେ ଠ ଅକ୍ଷର ପରି ଗୋଲ, ତୋ ଚିତ୍ତରେ—ତୋ ମନରେ, କନ୍ଦନ—କଷ୍ଟ, ଠଣା—ମୁଷ୍ଟିବଦ୍ଧ ଅଙ୍ଗୁଳିମାନଙ୍କ ଗ୍ରନ୍ଥିରେ ଆଘାତ, ଠକ୍କି—ମାରି, ଠଉରାଇ—ଖୋଜି, ଠୋ କରି—ଏକାବେଳକେ (ଶବ୍ଦ ସହିତ), କିକ—କଅଣ, ନେତ୍ରାଞ୍ଚଳ—ନେତ୍ରକୋଣ, ଅପାଙ୍ଗ; କ୍ଷଣରୁଚ—ବିଦ୍ୟୁତ୍ ।

ହେ ସଖି, ତୋ ମୁଖ 'ଠ' ଅକ୍ଷର ପରି ସମ୍ପୂର୍ଣ୍ଣରୂପେ ଗୋଲକାର ଚନ୍ଦ୍ରମାସଦୃଶ; ହୃଦୟ ମଧ୍ୟରେ ଠକପଣିଆ ଆଚରଣ ନ କରି ଏବଂ ମୋର ଏ କଷ୍ଟକୁ ବିଗୁଡ଼ କରି ଅକପଟଭାବରେ ମୋତେ ଉଦ୍ଧାର କରିବା ଉଚିତ ଅଟେ । ୧ । କନ୍ଦର୍ପ ସନ୍ତାପ ହେତୁରୁ ମୋର ଯେଉଁ ଭୟ ହେଉଅଛି, ସେହି ଭୟର ମସ୍ତକରେ ଠଣା ମାରି ତୁ ମୋତେ ମନ୍ମଥପାଶ ବନ୍ଧନରୁ ଉଦ୍ଧାର କର । ୨ । ଏବଂ ଯେବେ ସୁସମୟ ଦେଖି ତୁ ତାଙ୍କ ପାଖରେ ମୋର ପ୍ରସଙ୍ଗ କରନ୍ତୁ, ତେବେ ତାହା ରାଜୀବନେତ୍ରାଙ୍କୁ ରୁଚିଯିବ । ଅର୍ଥାତ୍ ପ୍ରୀତିକର ହେବ । ୩ । ହେ ପ୍ରିୟସଖି, ଏହାକୁ ଠୋ କରି ଛଡ଼ାଇ ଦେ ନା, ଅର୍ଥାତ୍ ଆମ୍ଭ ଦୁହିଙ୍କ ସମ୍ପର୍କ ଅନୁଚିତ ବୋଲି ହଠାତ୍ ଏ ପ୍ରସ୍ତାବ ଭାଙ୍ଗି ଦେ ନା । ମୋ ଦୁଃଖ କଅଣ ତୋତେ କେତେକ ପରିମାଣରେ ଲାଗେ ନାହିଁ ? । ୪ । ଯେବେ ତୁ ତାକୁ ଟିକିଏ ଆଖିକୋଣରେ ଠାରି ଦେବୁ, ତେବେ ସେ ଏ ନିର୍ଜନସ୍ଥାନରେ ବିଜୁଳି ପରି ବିରାଜିବ । ୫ । ଠାକୁରଠାକୁରାଣୀଙ୍କ ପାଦପଦ୍ମ-ଧ୍ୟାନକାରୀ ରାଜା ଜଗଦ୍ଦେବ ହରିଚନ୍ଦନଙ୍କ ଦ୍ୱାରା ଏହା ରଚିତ ହେଲା । ୬ ।



ରାଗ—ତୋଡ଼ି ପରଜ

ଡର ନାହିଁ କି ହେ, ପରତରୁଣୀ ହରଣୁ ;
ଡୋର ଲାଗି ଘେର ପଡ଼ିବ ଯେ ହେବ ଗ୍ରୈବ ପର ଅଚରଣୁ । ପଦ ।
ଡୋଲା ପ୍ରତିମାକୁ ପରାୟେ ତୁମ୍ଭଙ୍କୁ ଯଶୋଦା ଅଛନ୍ତି ପାଳି,
ଡୁବିବଟି ଧନ କେଳିକି ମୋହନ ନେଉଛ ଯେ କୁଳପାଳି । ୧ ।
ଡକା ଦେବା ଦନେ ଅରଷ୍ଟେ ଜନ୍ତ୍ରାନେ ଦେଖିଛୁଁ ଶକଟ ଦଶା,
ଡାକମଧମାକୁ ଡାକି ଆଣିବାକୁ ଏଠାକୁ କାହା ଭରସା । ୨ ।
ଡବ ଡବ ବାରି ନିଃସରିବ ଗୃର ପହରେ ନୟନଯୁଗ୍ମ,
ଡହ ଡହ ହେବ ମୃଦୁ ଅବୟବ ଶ୍ୟାମ ଶ୍ରୀଅଙ୍ଗୁଠି ଭୋଗୁ । ୩ ।
ଡାକି ତ ଜାଣି ମୋହନ ବଂଶୀରବେ ବିହର ସୁଖେ ଏ ବଚନ,
ଡୁଇଁ ହେବୁ ସିନା ଅମ୍ଭେ ଫଳ ବିନା ନ ପଡ଼ୁ ତା ଅମ୍ଭ କାନେ । ୪ ।
ଡାଳିମ୍ବମଞ୍ଜିମଞ୍ଜୁଳଦଶନା ସେ ଖେଳୁଥାଉ ତୁମ୍ଭ ତୁଲେ,
ଡେଉଁଥାଅ ବନପାକ ତୁମ୍ଭ ମନ ଶ୍ରୀହରିଚନ୍ଦନ ବୋଲେ । ୫ ।

---

ଟୀକା—ଏଣୀଦୃଶଃ ମୃଗନୟନାୟାଃ ରାଧାୟାଃ ପ୍ରିୟସଖୀ ପ୍ରିୟବାଦିନୀ ପ୍ରିୟଂବଦା ଚ ଇତି ହେତୋଃ ଆପତ୍ତିନେନ ସଦୃଶୀ ଆପଦର୍ଥଂ ସଞ୍ଚିତଧନେନ ତୁଲ୍ୟା ବିଶାରଦା ଝଂଟିତ୍ୟୁପାୟଚତୁରା ଚ ଇତି ସ୍ୱରୂପବତୀ ଶୋଭନାକୃତି-ଶାଲୀନୀତି 'ଯତ୍ରାକୃତିସ୍ତତ୍ର ଗୁଣା ବସନ୍ତି' ଇତି ସ୍ମରଣାତ୍ ବିଶ୍ୱାସନଃସ୍ୱଦସ୍ତ୍ୱଂ ବିଶ୍ୱାସଶୂନ୍ୟ ହୃଦ୍ଭାବଂ ଅପାସ୍ୟ ଦୂରୀକୃତ ବିଶ୍ୱାସମବଲମ୍ବ୍ୟେତ ଯାବତ୍ ଦର୍ପ୍ପି ସ୍ୱାନ୍ତବେଦନାକାରଣ ତୁଭ୍ୟଂ ବିଜ୍ଞାପୟାମି, ଯତ୍ ରୋଚତେ ତତ୍ କୁରୁ ।

ଯେ ତୁ ଦୟାଳବଃ ଦୟାର୍ଦ୍ରାଃ ହୃଦୟାଳବଃ ପ୍ରଶସ୍ତହୃଦୟଯୁକ୍ତାଃ ତେ ହି ଦୁର୍ଗତଜନବର୍ଗସ୍ୟ ଅକିଞ୍ଚନଜନସମୂହସ୍ୟ ଉପକାରାତ୍ ଜନ୍ୟାନାଂ ପୁଣ୍ୟଯଶସାଂ ଅପବର୍ଗେ ଫଳନିଷ୍ପତ୍ତୌ ଫଣିତୌ ବିଷୟେ ନିର୍ଗତାଳସଃ ନିରଳସଃ ନିସର୍ଗଃ ସ୍ୱଭାବୋ ଯେଷାଂ ଯେ ତଥୋକ୍ତାଃ ଭବନ୍ତି ।

ଅନୁବାଦ—ତୁମ୍ଭେ ମୃଗନୟନା ରାଧାଙ୍କର ପ୍ରିୟସଖୀ; ଏହି ହେତୁରୁ ନିଶ୍ଚୟ ପ୍ରିୟବାଦିନୀ ଓ ବିପତ୍କାଳ ନିମିତ୍ତ ସଂଚିତ ଧନସ୍ୱରୂପ ହିତକାରିଣୀ, ଆଉ ମଧ୍ୟ ଉପାୟ ନିରୂପଣରେ ଚତୁରା ଅଟ, ତୁମ୍ଭର ମନୋହର ଆକୃତିରୁ ଏହା

(କ) କଂସଃ ପୁଂସାଂ ନୃଶଂସାନା ବତଂସଃ ଶାସ୍ତି କାଶ୍ୟପୀମ୍
ଦୁଷ୍ପଥେ ଧନିନଃ ସୂନୋ କଥଂ ଯାସ୍ୟଧ୍ୱନୀନତାମ୍ ।

ଅବର୍ଣ୍ଣାମ୍ବୁବୋଦ୍‌ଗୀର୍ଣ୍ଣ କଲ୍ଲୋଲମାଲାଦୋଲିତସ୍ୱମପି କିଂ ମ୍ଲାନ-ସ୍ତବ୍ଧଣି ତରଣିତ୍ୱମୁଗ୍ରୀକରଣୀୟମିତ୍ୟୁପଦାଶ୍ୟ ମାମପି କୁଳକୂଳଦବସ୍ଥାଂ ବାଧାୟ ମଙ୍କ୍ଷ୍ୟିତୁଂ ବଗ୍ଧ୍ରମାରଭସେ ।

---

ଜଣାଯାଏ, ଏଣୁ ଅବିଶ୍ୱାସ ଭାବ ପରିତ୍ୟାଗ କରି ମୁଁ ନିଜର ଅନ୍ତର୍ବେଦନା ତୁମ୍ଭ ଆଗରେ କହିଲି, ବର୍ତ୍ତମାନ ତୁମ୍ଭଙ୍କୁ ଯାହା ଭଲ ଲାଗେ ତାହା କର ।

ଯେଉଁମାନେ ପ୍ରକୃତରେ ଦୟାଳୁ ଓ ହୃଦୟବାନ୍ ସେମାନଙ୍କ ସ୍ୱଭାବ ଦୁଃଖୀ ଲୋକମାନଙ୍କ ଉପକାର କରିବାରୁ ଜାତ ହେବା ପବିତ୍ର ଯଶର ଫଳ ସାଧନ ବିଷୟରେ ସାଧାରଣତଃ ନିରଳସ ହୋଇଥାଏ, ଅର୍ଥାତ୍ ଉଦାରଚେତା ଲୋକମାନେ ସ୍ୱଭାବତଃ ପରୋପକାରୀ ହୁଅନ୍ତି ।

---

(ଠ) ଡୋର—ବାନ୍ଧିବା ଦଉଡ଼ି, ଘୋର ପଦ୍ଧତି—ବନ୍ଧାହେବ, ଡୋଳା ପ୍ରତମା—ଚକ୍ଷୁର ପୁତ୍ତଳିକା, କନୀନିକା; ଜୁବିବଟି ଧନ—ସମସ୍ତ ନଷ୍ଟ ହେବ, କୁଳପାଳି—ସାଧ୍ୱୀ ସ୍ତ୍ରୀ, ଅରିଷ୍ଟେ—ସୂତିକାଗୃହରେ, ଶକଟ—କଂସପ୍ରେରିତ ଅସୁରବିଶେଷ, ଉତ୍ତାନେ—ଚିତ୍ହୋଇ, ଡାକମଧମା—ଡମରୁମଧ୍ୟା ଅର୍ଥାତ୍ କ୍ଷୀଣକଟି, ତବ ତବ—ଅବିରଳଭାବରେ, ତହ ତହ—ପ୍ରଜ୍ୱଳିତ, ଭୋଗୁ—ଭୋଗ କାମନାରୁ, ତ୍ରୁଈ ହେବୁଁ—କଷ୍ଟ ପାଇବୁଁ, ବ୍ୟାକୁଳ ହେବୁଁ; ତାଳମ୍ବମଞ୍ଜିମଞ୍ଜୁଳଦଶନା—ତାଳମ୍ବ ମଞ୍ଜି ପରି ସୁନ୍ଦର ଦନ୍ତ ଯାହାର ।

ହେ କୃଷ୍ଣ, କି ଆଶ୍ଚର୍ଯ୍ୟ କଥା; ପରସ୍ତ୍ରୀ ହରଣ କାର୍ଯ୍ୟରେ ତୁମ୍ଭର ଆଦୌ ଡର ନାହିଁ ? ଏହି ଚୌର୍ଯ୍ୟାଚରଣ ହେତୁରୁ ତୁମ୍ଭେ ଦଉଡ଼ିରେ ବନ୍ଧା ହେବ । ପଦ । ତୁମ୍ଭ ମା ଯଶୋଦା ଆଖିର ପିତୁଳା ପରି ତୁମ୍ଭଙ୍କୁ ଅତି ଯତ୍ନରେ ପାଳନ କରିଅଛନ୍ତି; ତୁମ୍ଭେ ବର୍ତ୍ତମାନ ସତୀକୁଳନାରୀଙ୍କୁ କ୍ରୀଡ଼ାସଙ୍ଗିନୀ କରିବାକୁ ଖୋଜୁଥିବାରୁ ମୁଁ ମନେ କରୁଅଛି ତାଙ୍କର ସେହି ଧନ ନଷ୍ଟ ହୋଇଯିବ । ୧ । ତୁମ୍ଭେ ଯେତେବେଳେ ଇନ୍ତୁଡ଼ିଶାଳରେ ଚିତ୍ହୋଇ ଶୋଇ ତକାପାଡ଼ୁଥିଲ, ସେ ଅବସ୍ଥାରେ ମଧ୍ୟ ଶକଟାସୁରକୁ ମାରିଥିଲ ଏହା ଆଖିରେ ଦେଖିଅଛୁଁ ; ଏପରି ଅବସ୍ଥାରେ ସେହି କ୍ଷୀଣକଟି ସ୍ତ୍ରୀକୁ ଏଠାକୁ ଡାକି ଆଣିବା ପାଇଁ କାହାର ସାହସ ହେବ ? ଅର୍ଥାତ୍ ଯେ ପିଲାଦିନେ ଏଡ଼େ ବଡ଼ ଅସୁରକୁ ମାରିଅଛି, ସେ ଯେ ଏ ବୟସରେ ଗୋଟିଏ କ୍ଷୀଣକଟି ସ୍ତ୍ରୀକୁ ରଖିବ ଆମ୍ଭମାନଙ୍କର ଏ ଭରସା ନାହିଁ । ୨ । ଯେବେ ତୁମ୍ଭ ସଙ୍ଗେ



ରାଗ—ଦେଶାକ୍ଷ

ତାଳେ ତ ତାଳନ୍ତି ନାହିଁ କୃପାସୁଧା ଝରିକି ରେ । ପଦ ।
ଚକ୍‌କା ବାଜୁଥାଇ ବ୍ରଜେ, ଲଳିତାର ହୃଦମ୍ବୁଜେ,
କରୁଣା ଅଛୁ ବୋଲି ଯା ନେଲ କେ ତା ହରିକି ରେ । ୧
ଭୋଳାଇଲା ମର ଛଳି, ଉଳେ ପଡ଼ିଥିବା ଭଳି,
ହେଲନି ଯେ କୁନ୍ଦକଳିଦଶନା ଏ ସରିକି ରେ ।
ଲୁକାଇ ଦେଲେ ଭୂଷିତ, ଚକୋର ଚଞ୍ଚୁରେ ଶୀତ-
ଭାନୁଚନ୍ଦ୍ରକାନ୍ତ୍ରି ଦିଅ ଯାଏ କିଛି ସରିକି ରେ । ୩ ।
ଡୋଲୁଚିନ୍ତି ସିନା ହଟି, ମୋ ସାର ଯାଉଛି ତୁଟି,
ପିଇ ଦିଅନ୍ତ୍ର କି ଗୋଟିଯାକ ସେ କଶୋରୀକି ରେ । ୪ ।
ଚବା-ତନାବରୁ ଗୋପ—ନଗରୀର ବନ୍ଦେ ଭୂପ
ବାଲ୍ଲକେଶ ଦେବ ନୀପକୁଞ୍ଜପୁଞ୍ଜସରିକି ରେ । ୫ ।

---

ତାଙ୍କର ମିଳନ ହୁଏ, ତେବେ ତୁମ୍ଭର ଏହି ଶ୍ୟାମଳବର୍ଣ୍ଣ ସୁନ୍ଦର ଅଙ୍ଗ ଭୋଗ କରିବା ହେତୁରୁ ତାଙ୍କର ଘୋର କଷ୍ଟ ହେବ, ଗାଢ ଗୃହପଦ୍ମରଯାକ ଯନ୍ତ୍ରଣାରେ ତାଙ୍କ ଚକ୍ଷୁରୁ ଡବ ଡବ ହୋଇ ଲୋତକ ପଡ଼ିବ, ତାଙ୍କର କୋମଳ ଶରୀରରେ ଘୋର ଦାହ ଜାତ ହେବ । ମୁଁ ତାଙ୍କୁ କେବେହେଁ ଡାକ ଆଣିବି ନାହିଁ । ତୁମ୍ଭେ ତ ବଂଶୀସ୍ୱରରେ ଡାକ ଜାଣ, ତାଙ୍କୁ ଏଠାକୁ ଡାକ ଆଣ; କିନ୍ତୁ ମୁଁ ଦେଖୁଛି, ସେଥିରେ ଆଦୌ ଫଳ ହେବ ନାହିଁ, ତେଣୁ ତାହା ଆମ୍ଭ କାନରେ ନ ପଡ଼ୁ ଏବଂ ଆମ୍ଭେମାନେ ବ୍ୟାକୁଳ ନ ହେଉଁ । ୪ । ( ଯେବେ ଫଳ ହୁଏ ) ସେ ତାଳମୂଳଦେଲ୍ନୀ ଏଠାରେ ତୁମ୍ଭ ସଙ୍ଗେ ଖେଳୁ, ତୁମ୍ଭ ମନ ଅନୁସାରେ ତୁମ୍ଭେ ଏ ବଣରେ ଡେଉଁଥାଅ; ହରଚନ୍ଦନ ଏହା ରଚନା କଲେ । ୫ ।

ଟୀକା---ହେ କୃଷ୍ଣ, ନୃଶଂସାନାଂ ହଂସ୍ରାଣାଂ ପୁଂସା ପୁରୁଷାଣାଂ ବତଂସଃ ଭୂଷଣଂ ଘାତୁକଶ୍ରେଷ୍ଠ ଇତ୍ୟର୍ଥଃ କଂସଃ କାଶ୍ୟପୀଂ ପୃଥିବୀଂ ଶାସ୍ତି; ହେ ଧନନଃ ସୁନୋ ହେ ଧନକପୁତ୍ର ! ତ୍ୱଂ କଥଂ ଦୁଷ୍ଟପଥେ ଅଧ୍ୱାନଗତାଂ ପଥିକତ୍ୱଂ ଯାସି ? କଥଂ କୁମାର୍ଗେ ପଥିକୋ ଭବସୀତ୍ୟର୍ଥଃ ।

ତ୍ୱଂ ଅବର୍ଣ୍ଣାର୍ଣ୍ଣବେ ଅପବାଦସମୁଦ୍ରେ ଉଦ୍‌ଗୀର୍ଣ୍ଣୟା ଉତ୍ଥିତୟା କଲ୍ଲୋଳ-ମାଲୟା ତରଙ୍ଗପରମ୍ପରୟା ଆନ୍ଦୋଳିତଃ ବ୍ୟାକୁଳିତୋଽସି, ହେ ତରୁଣି, ତ୍ୱୟା ତରଣୀତ୍ୱଂ ଅପବାଦସମୁଦ୍ରୋତ୍ତରଣାୟ ନୌକାଭବୋଽଙ୍ଗୀ କରଣୀୟଃ ଇତ୍ୟୁପଦକ୍ଷ୍ୟ

(ଚ) ଗୃହ୍ୟଂ ଗୃହ୍ୟଂ ମଯ୍ୟୋକ୍ତୈଃ କଥିତମକପଟଂ ଗୃହ୍ନୁମାକର୍ଣ୍ୟ ଭୂୟଃ,
ପାଯ୍ୟଂ ପାଯ୍ୟଂ ଚ ଦୃଷ୍ଟ୍ୟା ମମତନୁମତନୁ ସ୍ଫୁରନାରଚଭେନ୍ନାଂ;
ସାନ୍ଦ୍ରକୋଣେନ ସାନ୍ଦ୍ରଗହମହହ ମମ ପ୍ରାଣବଣ୍ଡାଣନୋଲ୍ଲା—
ମିଚ୍ଛାଂ ତୁଚ୍ଛାଂ ବିଧାୟ କ୍ଷିପସି ସୁମୁଖି କିଂ ରୋଷରୁଷଂ କଟାକ୍ଷମ୍ ।

ମୀନାଙ୍କକଙ୍କପଦଭୂନାମ୍ନଃ କଥାମାଭିସ୍ୟ ବିପସ୍ୟେ କାଭିସ୍ୱର-ଗୌରାଙ୍ଗୀଭିରକାରୁଣିକହୃଦୟବୃତ୍ତଭୂମୁଖୀକିଯ୍ୟତ ଇତି ବ୍ରୁବତି କିଶୋର-ଶିରୋମଣୌ ସସ୍ମିତଭ୍ରୂଂ ଲଳିତା ।

---

ଶିକ୍ଷୟିତ୍ୱା ମାମପିକୂଳଂ ବଂଶଃ ତଦ୍ରୂପାତ୍ କୂଳାତ୍ ତଟାତ୍ ଦବୀୟାଂ ଦୂରତରଂ ବିଧାୟ କୃତ୍ୱା ମଜ୍ଜୟିତୁମପବାଦସମୁଦ୍ରେ ଇତି ଶେଷଃ କିଂ ପୁନଃ ବିସ୍ତର ମାରଭସେ ? କଥଂ ପୁନଃ ଚଳୟସି ।

ଅନୁବାଦ — ହେ କୃଷ୍ଣ, କଂସ ନୃଶଂସମାନଙ୍କ ମଧ୍ୟରେ ଶ୍ରେଷ୍ଠ, ସେ ବର୍ତ୍ତମାନ ପୃଥିବୀ ଶାସନ କରୁଅଛି । ଏପରି ଅବସ୍ଥାରେ ତୁମ୍ଭେ ଜଣେ ଧନୀ ଲୋକର ପୁଅ ହୋଇ କାହିଁକି ଅପଥରେ ପଥିକ ହେଉଅଛ ।

ତୁମ୍ଭେ ବର୍ତ୍ତମାନ ଅପବାଦସମୁଦ୍ରରୁ ଉଠୁଥିବା ଲହରୀରେ ଆନ୍ଦୋଳିତ ହେଉଅଛ, ସେହି ସମୁଦ୍ର ପାରି ହେବାପାଇଁ, ହେ ଯୁବତି ! ତୁମ୍ଭେ ମୋର ନୌକା ହୁଅ ବୋଲି ଉପଦେଶ ଦେଇ ମୋତେ ପୁଣି କାହିଁକି କୂଳରୁ ଦୂରକୁ ଠେଲି ଦେଇ ସେହି ଅପବାଦସମୁଦ୍ରରେ ବୁଡ଼ାଇବାକୁ ବିସ୍ତର କରୁଅଛ ?

ଏହା ଶୁଣି ଶ୍ରୀକୃଷ୍ଣ କହୁଅଛନ୍ତି, "ଢାଳେ ତ ଢାଳିଲୁ ନାହିଁ" ଇତ୍ୟାଦି ।

---

(ଚ) ଢାଳେ—ଥରେ, ଝରି—ସୁରେଇଆକୃତିର ଜଳପାତ୍ରବିଶେଷ, ଢକ୍କା—ବାଦ୍ୟବିଶେଷ, ବଡ଼ ଢୋଲ; ହୃଦମ୍ବୁଜେ—ହୃଦୟରୂପ ପଦ୍ମରେ, ଢୋଳାଇଲି—ଘୂମାଇଲି, କୁନ୍ଦକଳିଦଶନା—କୁନ୍ଦଫୁଲର କଢ଼ି ପରି ଦାନ୍ତ ଯାହାର, ଢୁକାଇଦେଲେ—ପିଆଇଦେଲେ, ଚଞ୍ଚୁ—ଅଣ୍ଟ, ଶୀତଭାନୁ—ଚନ୍ଦ୍ର, ଢୋକୁଟିକୁ—ଥରେମାତ୍ର ପିଇବାକୁ, ସାର—ବଳ, ଢବା – କୋଠାଘର, ଢନାବି—ଝରକା ।

ଅୟି ଲଳିତେ, ତୋତେ ଏତେ ଅନୁନୟ କରି କହିଲି, ତଥାପି ତୁ ଥରେ ହେଲେ ଦୟାରୂପ ଅମୃତ ଝରୀକୁ ଢାଳିଲୁ ନାହିଁ, ଅର୍ଥାତ୍ ଟିକିଏ ହେଲେ କୃପା କଲୁ ନାହିଁ ? ପଦ । ଏ ଗୋପପୁରରେ ଢକ୍କା ( ଢୋଲ ) ବାଜୁଥାଏ ଯେ; ଅର୍ଥାତ୍ ଗୋପପୁରରେ ସମସ୍ତେ ଜାଣନ୍ତି ଯେ, ଲଳିତାର ହୃଦପଦ୍ମରେ ଦୟା ଥାଏ ବା ଲଳିତା ଦୟାବତୀ ବୋଲି ଗୋପପୁରରେ ସମସ୍ତଙ୍କୁ ଜଣା; ସେ

# ୩

ରାଗ—ସୋମ

ଅତସୀ କୁସୁମସମ ଶ୍ୟାମ ହେ ମୁଁ ଗଲିଚି । ପଦ ।
ଅଳି ଭ୍ରମର ନିବଡ଼, ଅସହ୍ୟ ଶ୍ରୁ ସେ ଯେ ବଡ଼,
ଅବଶ୍ୟ ତା ଶ୍ରୁମୁରେ ମୁଁ ନିବେଦନ କଲିଚି । ୧ ।
ଅଧ ଅଧରରେ ସ୍ମିତ ଉଲ୍ଲାସି ହେଲେ ଲକ୍ଷିତ
ଉଦ୍ଭବ ଏହିଚି ବୋଲି କୃପାକଲ୍ପବଲ୍ଲୀଚି । ୨ ।
ଆରକତ କଲେ ମୁଖ, ଅଖଣ୍ଡ ସୁଧାମୟୂଖ,
ଆବୁରି ସରଦ ମୋର ଜୀଇଲେ ହେଁ ମଲିଚି । ୩ ।
ଅଦୃଷ୍ଟିବନ୍ତୁଁ କିଶୋରୀ, ଅଙ୍ଗୀକାର କଲେ ସରି,
ଅଭ୍ରବେ ଉଚ୍ଛନ୍ନ ହେବ ଏ ବଲ୍ଲବପଲ୍ଲୀଚି । ୪ ।
ଉତ୍ତାନିର୍ଦ୍ଦେଶ ନୃପର ଉପବନ ଗୋପପୁର
ଆଶ୍ରୟ ନୋହିବ ଗୋବର୍ଦ୍ଧନଗିରିଦରୀଚି । ୫ ।
ଅଷ୍ଟଦୁର୍ଗନାଥ ଭୂପେ, ଆହା ଧ୍ୟାନେ କି ଶୋଭା ସେ
ଅଖିଳ ଜନନୀ ନାସାମୃଗମଦକଲିଚି । ୬ ।

---

ଦସ୍ତାକୁ କିଏ ହରଣ କରିନେଲା କି ? ୧ । ହେ କୁନ୍ଦଦନ୍ତ, ଘୂମାଇ ଚଳି କରି ତଳେ ପଡ଼ିଯିବା ଭଳି ମୋର ଦଶା ହେଲଣି । ୨ । ତୃଷାର୍ତ୍ତ ଚକୋର ଅଣ୍ଡରେ ଯେବେ ଚନ୍ଦ୍ରକିରଣକୁ ପିଆଇ ଦିଆଯାଏ, ତେବେ କିଛି ସମ୍ପତ୍ତି ସରିଯାଏ କି ? ୩ । ସାମାନ୍ୟ ଚୋକିକ ପାଇଁ ସିନା ମୋ ବଳ ହଟି ଯାଉଛି; ଅର୍ଥାତ୍ ମୋର ସର୍ବନାଶ ହେଉଅଛି; ଆଛା କହ ଭଲ, ମୁଁ କଣ ସେ କିଶୋରୀକି ଗୋଟିକ ଯାକ ପିଇ ଦିଅନ୍ତି ? ୪ । ରାଜା ଦାଲୁଙ୍କେଶ ଦେବ ଗୋପନଗରୀର କୋଠାଘର ଝରକାଠାରୁ ( ଯେଉଁ ଝରକାବାଟେ ଶ୍ରୀକୃଷ୍ଣ ରାଧାଙ୍କୁ ଦେଖିଥିଲେ ) କଦମ୍ବ କୁଞ୍ଜସମୂହ ପର୍ଯ୍ୟନ୍ତ ( କୃଷ୍ଣ ବର୍ତ୍ତମାନ ଯେଉଁଠାରେ ଅଛନ୍ତି ) ସେହି ସମଗ୍ର ପଥକୁ ନମସ୍କାର କରୁଅଛି ।

ଟୀକା—ଅୟି ସୁମୁଖି; ସାନୁକ୍ରୋଶେନ ଦାନେନ ମୟା ଉଚ୍ଚୈଃ ଅତ୍ୟନ୍ତଂ ଅକପଟଂ ସବିଶ୍ରମ୍ଭଂ ଯଥା ସ୍ୟାତ୍ ତଥାକଥିତଂ ନିବେଦିତଂ ରହସ୍ୟଂ ବସ୍ତୁ ଗୁପ୍ତଂ ଗୁପ୍ତଂ ହୃଦି ନିଧାୟ ଭୂୟଃ ପୁନଃ ସ୍ପଷ୍ଟଂ ଆକର୍ଣ୍ଣ୍ୟ ଶ୍ରୁତ୍ୱା, ଅତନୋଃ କନ୍ଦର୍ପସ୍ୟ ସ୍ଫୁରନାରାଚଭିନ୍ନାଂ ନିଷ୍ଠୁରଶରବିଦୀର୍ଣ୍ଣାଂ ମମ ତନୁଂ ମଚ୍ଛରୀରଂ ଦୃଷ୍ଟ୍ୟା ଚକ୍ଷୁଷା ସାନୁଗ୍ରହଂ ଅନୁଗ୍ରହପୂର୍ବକଂ ପାୟଂ ପାୟଂ ପୀତ୍ୱା ପୀତ୍ୱା ପୁନଃ ପୁନଃ ଦୃଷ୍ଟ୍ୱା

(ଣ) ଯାମି ପ୍ରତୀପମନୁକୂଲୟିତୁଂ ପ୍ରଯତ୍ନୈ—
କ୍ଷେତ୍ରତଃ ସରୋରୁହସହୋଦରଲୋଚନାୟାଃ,
ସାମିପ୍ରସନ୍ନମପିଚେଦଭବଂ କୃତାର୍ଥୀ,
ନୋ ଚେତ୍ତ୍ୱଦାସ୍ୟବିଧୁବୀକ୍ଷଣମେତଦେବ ।

ନନ୍ଦନନ୍ଦନ କର୍ହିଚିଲ୍ଲାଘବଲବସ୍ୟାପ୍ୟସ୍ଥିତୌ ତମନୁଭୂୟ ଭୂୟ-ସ୍ତନ୍ମୁଖସୁନ୍ଦରେନ୍ଦୁସନ୍ଦର୍ଶନକନ୍ଦଳିତାନନ୍ଦସନ୍ଦୋହାନୁଭବମନ୍ଦାଦରସ୍ୟା ବାମସ୍ୟା ଭାବ୍ୟମିତି ନିବେଦ୍ୟ ନିଷ୍କ୍ରମ୍ୟ ସବାଧଂ ଶ୍ରୀରାଧାୟାଃ ପ୍ରବିଶ୍ୟ ତାଂ ପ୍ରତି ।

---

ଇତ୍ୟର୍ଥଃ, ଅହହ ମମ ପ୍ରାଣବିଶ୍ରାଣନୋତ୍କାଂ ମମ ପ୍ରାଣଦାନେ ସମୁତ୍ସୁକାଂ ଇଚ୍ଛାଂ ତୁଚ୍ଛାଂ ବିଧାୟ କିଂ କଥଂ ରୋଷରୂଷଂ କୋପେନ କର୍କଶଂ କଟାକ୍ଷଂ କ୍ଷିପସି ପାତୟସି ମୟି ଇତି ଶେଷଃ ।

ମୀନାଙ୍କସ୍ୟ କନ୍ଦର୍ପସ୍ୟ କଙ୍କପତ୍ରୈଃ ବାଣୈଃ ଦୂନଃ ପରିତାପିତଃ ଆତ୍ମାଯସ୍ୟ ତସ୍ୟ ଆର୍ତ୍ତିସ୍ୟ ବ୍ୟାକୁଳସ୍ୟ ମମ ବିଷୟେ, କାର୍ତ୍ତସ୍ୱରଂ ସ୍ୱର୍ଣ୍ଣଂ ତଦ୍ବତ୍ ଗୌରାଣି ଅଙ୍ଗାନି ଯାସାଂ ତାଭିଃ ତ୍ୱାଦୃଶୀଭିଃ କଥଂ ଅକାରୁଣିକା ନିର୍ଦ୍ଦୟା ହୃଦୟବୃତ୍ତିଃ ଯାସାଂ ତାସାଂ ଭାବଃ ତତ୍ତ୍ୱଂ ଉରୀକ୍ରିୟତେ, ସ୍ୱୀକ୍ରିୟତେ ? କିଶୋରଶିରୋମଣୌ କିଶୋରତିଲକେ ଶ୍ରୀକୃଷ୍ଣେ ଇତି ବ୍ରୁବତି କଥୟତି ସତି ଲଳିତା ସସ୍ମିତତ୍ୱରଂ ସ୍ମିତତ୍ୱରାଭ୍ୟାଂ ସହ କଥୟତି ।

ଅନୁବାଦ—ସଖି, ମୁଁ ଦୀନ ହୋଇଥିବାରୁ ମନ ଖୋଲି ସ୍ପଷ୍ଟରୂପେ ଯାହା ପ୍ରକାଶ କଲି, ସେ ସବୁ କଥାକୁ ଗ୍ରହଣ କରି, ପୁଣି ମୋ ଗୃଢ଼ ଉକ୍ତିକୁ ବାରମ୍ବାର ଶୁଣି, କନ୍ଦର୍ପର ନିର୍ଦ୍ଦୟ ବାଣଦ୍ୱାରା ବିଦୀର୍ଣ୍ଣ ହୋଇଯାଇଥିବା ମୋର ଏହି ଶରୀରକୁ ଅନୁଗ୍ରହ କରି ନିଜ ଚକ୍ଷୁରେ ଦେଖି ମଧ୍ୟ ତୁ ପୁଣି ମୋ ଜୀବନ ରଖିବାରେ ଜାତ ହେଉଥିବା ଉତ୍କଣ୍ଠାକୁ ବୃଥା କରି ଅର୍ଥାତ୍ ମୋ ଜୀବନ ରକ୍ଷାରେ ମୋଟେ ଇଚ୍ଛା ନ କରି କାହିଁକି କୋପକର୍କଶ ଦୃଷ୍ଟିକୁ ମୋ ଉପରେ ପକାଉଅଛୁ ?

ଯେଉଁ ଲୋକ କନ୍ଦର୍ପବାଣରେ ଏକାନ୍ତ ସନ୍ତପ୍ତ ହୋଇଅଛୁ, ସେହି ଆର୍ତ୍ତିମାନଙ୍କୁ ରକ୍ଷା କରିବାରେ ତୁମ୍ଭ ପରି ତପ୍ତକାଞ୍ଚନବର୍ଣ୍ଣାଭା ସୁନ୍ଦରୀମାନଙ୍କ ହୃଦୟ ଏଡ଼େ ନିର୍ଦ୍ଦୟ କାହିଁକି ? କିଶୋରତିଲକ ଶ୍ରୀକୃଷ୍ଣ ଏହା କହି ନିବୃତ୍ତ ହୁଅନ୍ତେ ଲଳିତା ହସି ହସି ଚଞ୍ଚଳ ତାଙ୍କୁ କହୁଅଛନ୍ତି,—"ଅତସୀକୁସୁମ ସମ" ଇତ୍ୟାଦି ।

---

(ଣ) ଅତସୀକୁସୁମ—ପେଶୀଫୁଲ, ଅଳି—ସନ୍ନିବନ୍ଧ ଅନୁରୋଧ, ନିବିଡ଼—ଦୃଢ଼, ଅଧ ଅଧରରେ—ତଳ ଓଠରେ, ଉହିବ—ତର୍କିବ, ଅନୁମାନ କରିବ;

କଳ୍ପବଲ୍ଲୀ—କଳ୍ପଲତା, ଅଖଣ୍ଡସୁଧାମୟୂଖ—ପୂର୍ଣ୍ଣଚନ୍ଦ୍ର, ଆଦୁର—ମହତ୍ତ୍ୱ, ସର—ଭଲ ହେଲା ( ଗଞ୍ଜାମ ଅଞ୍ଚଳର ପ୍ରୟୋଗ ), ବଲ୍ଲବପଲ୍ଲୀ—ଗୋପାଳଗାଆଁ, ଗୋପପୁର; ଉଗ୍ରନିର୍ଦ୍ଦେଶ—ନିଷ୍ଠୁର ଆଦେଶ, ମୃଗମଦକଳ—କସ୍ତୁରୀଚିହ୍ନ ।

ହେ ଅତସୀଫୁଲ ପରି ନୀଳବର୍ଣ୍ଣ ଶରୀରଧାରୀ କୃଷ୍ଣ ମୁଁ ବର୍ତ୍ତମାନ ବାଦ୍ଧାରିଲି । ପଦ । ଏକପକ୍ଷରେ ତୁମ୍ଭର ସମ୍ବନ୍ଧ ଅନୁରୋଧ, ଅନ୍ୟ ପକ୍ଷରେ ସେ ରାଧା ବଡ଼ ଅସହିଷ୍ଣୁ ଅର୍ଥାତ୍ ପରପ୍ରୀତି କଥା ଆଦୌ ସହିପାରେ ନାହିଁ, ଏପରି ଅବସ୍ଥାରେ ଦୁଇଆଡ଼ ରକ୍ଷା କରିବା ମୋ ପକ୍ଷରେ ବଡ଼ କଠିନ, ତଥାପି ତୁମ୍ଭ କଥା ଅନୁସାରେ ତା ଆଗରେ ଏ ବିଷୟ ନିବେଦନ କଲି ବୋଲି ଜାଣ । ୧ । ଯେବେ ସେ ମୋ ପ୍ରାର୍ଥନା ଶୁଣି ଭଲଓଠରେ ହସକୁ ପ୍ରକାଶ କରି ଲକ୍ଷିତ ହେଲା ଭଳି ହେବ, ତେବେ ତାହାକୁ ଅନୁଗ୍ରହର କଳ୍ପଲତା ବୋଲି ଅନୁମାନ କରିବ, ଅର୍ଥାତ୍ ତୁମ୍ଭ ପ୍ରତି ନିଶ୍ଚେ ଅନୁଗ୍ରହ କରିବ ବୋଲି ମନେ କରିବ । ୨ । କିନ୍ତୁ ଯେବେ ତାହାର ପୂର୍ଣ୍ଣଚନ୍ଦ୍ର ମୁଖକୁ ରକ୍ତବର୍ଣ୍ଣ କରିଦେବ, ଅର୍ଥାତ୍ ରାଗିଯିବ ତେବେ ମୋ ମହତ୍ତ୍ୱ ସରିଗଲା, ମୁଁ ଜୀଇଲେହେଁ ମଲି ବୋଲି ଜାଣିବ । ୩ । ଶୁଭାଦୃଷ୍ଟବଶରୁ ଯେବେ କିଶୋରୀ ଅଙ୍ଗୀକାର କରେ, ତେବେ ତ ସରି ( ଭଲ ହେଲା ) ନଚେତ୍ ଏ ଗୋପପୁର ଉଚ୍ଛନ୍ନ ହୋଇଯିବଟି । ୪ । କଂସର ଆଦେଶ ନିଷ୍ଠୁର ଅଟେ; ଯେବେ ସେ ଏ କଥା ଜାଣିବ, ତେବେ ବନ ନିକଟରେ, କି ଗୋପପୁରରେ କିମ୍ବା ଗୋବର୍ଦ୍ଧନ ପର୍ବତ ଗହ୍ୱରରେ କୌଣସିଠାରେ ଆଶ୍ରୟ ମିଳିବ ନାହିଁ । ୫ । ଆଠଗଡ଼ର ରାଜା କହୁଅଛନ୍ତି, "ଅଖିଳଜନନୀ ଯେ ପୃଥିବୀ ତାହାଙ୍କର ନାସିକାର ମୃଗମଦକଳା ସଦୃଶ ଯେ କୃଷ୍ଣଚନ୍ଦ୍ର, ଧ୍ୟାନରେ ତାହାଙ୍କର ଶୋଭା କି ମନୋହର ଅଟେ ।" ( ଅଥବା ନିଖିଳ ମାତୃମଣ୍ଡଳୀଙ୍କର ଶୀର୍ଷସ୍ଥାନୀୟା ରାଧାଙ୍କ ଶୋଭା ଧ୍ୟାନରେ କି ସୁନ୍ଦର ଅଟେ ) । ୬ ।

ଟୀକା—ପ୍ରସନ୍ନୈଃ ଆତ୍ୟନ୍ତିକଚେଷ୍ଟାଭିଃ ସରୋରୁହଂ ପଦ୍ମଂ ତସ୍ୟ ସହୋଦରେ ତତ୍ତୁଲ୍ୟେ ଲୋଚନେ ଯସ୍ୟାଃ ତସ୍ୟାଃ ଶ୍ରୀରାଧାୟାଃ ଇତ୍ୟର୍ଥ୍ୟ ପ୍ରତୀପଂ ଚେତଃ ବିରୁଦ୍ଧଭାବାପନ୍ନଂ ମନଃ ଅନୁକୂଳୟିତୁଂ ତ୍ୱଦନୁକୂଳଂ କର୍ତ୍ତୁଂ ଯାମି ତତ୍‌ଚେତଃ ଯାମିପ୍ରସନ୍ନଂ ଈଷତ୍ ପ୍ରସନ୍ନଂ ଚେତ୍ କୃତାର୍ଥା ଅଭବଂ, ନୋଚେତ୍ ତ୍ୱଦାସ୍ୟବିଧୁବୀକ୍ଷଣଂ ତବ ମୁଖଚନ୍ଦ୍ରାବଲୋକନଂ ଏତଦେବ । ଅକୃତକାର୍ଯ୍ୟା ଚେତ୍‌ପୁନଃ ତ୍ୱତ୍‌ସମୀପଂ ନାଗମିଷ୍ୟାମୀତ୍ୟର୍ଥଃ ।

ହେ ନନ୍ଦନନ୍ଦନ, କର୍ହିଚିତ୍ ଲଘବଲବସ୍ୟ ସ୍ୱଳ୍ପାୟାଃ ଅପି ହୀନତାୟାଃ ଉପସ୍ଥିତୌ ଅପି ତଂ ଲଘବଲବଂ ଅନୁଭୂୟ ଭୂୟଃ ପୁନଃ ତବ ମୁଖଂ ଏବ ସୁନ୍ଦରେନ୍ଦୁଃ ତସ୍ୟ ସନ୍ଦର୍ଶନେନ କନ୍ଦଳିତଃ ଉଚ୍ଛଳିତଃ ଯାଃ ଆନନ୍ଦସନ୍ଦୋହଃ ତସ୍ୟ ଅନୁଭବେ ମନ୍ଦଃ ଶିଥିଳଃ ଆଦରଃ ଯତ୍ନଃ ଯସ୍ୟାଃ ତଥାଭୂତାୟା ବାମୟା ବିମୁଖ୍ୟା ଭାବ୍ୟଂ ଭବିଷ୍ୟତେ ମୟା ଇତି ଶେଷଃ, ଯଦି ମେ ମନୋରଥସିଦ୍ଧିଃ ନ



ରାଗ—କାନଡ଼ଗୌଡ଼ା ବା କନଡ଼ା

(ସଖି ରେ) ତୋ ଘେନି ତମାଳଶ୍ୟାମ ମୋ ମରଜି କଷିଲ ରେ,
ତଥାପି ତ ଛଳେ ହେଲେ ତୋ ସ୍ନେହେ ନ ରସିଲ ରେ । ପଦ ।
ତଳେ ବସନ ପ୍ରସାରି, ତୃଣ ଦଶନାନ୍ତେ ଧରି,
କହିଲେହେଁ ଅନୁସରି, ରାଜି ତ ନ ଦ୍ରବିଲ ରେ । ୧ ।
ତନ୍ତୁଁ କି ବିଷମଭାବ, ତର୍କିଲି ମୋ ଗୁରୁ ଗରବ—
ତଟକୁ ଘଟନ୍ତେ ଅବଧାନ ବିନା ହସିଲ ରେ । ୨ ।
ତପନଜାତଟକୁ ତୁ, ତରୁଣୀଟା କେଉଁ କୁତୁ—
ହଳରୁ ଆସିଲୁ ହେତୁ, କହ ବୋଲି ଘୋଷିଲ ରେ । ୩ ।
ତାର ତୋର ସୁଲୋଚନା, ତାରତମ୍ୟ ବିବେଚନା—
ଲବ ହୋଇ ନାହିଁ ତହିଁ, ତୋ ଚିତ୍ତ କେ ପେଷିଲ ରେ । ୪ ।
ତିରସ୍କାର ପୂର୍ବଭାଷା, ତରଳାଇ ସୁଖ ଆଶା,
ତୋଠିକି ଚୁମ୍ବିଲି ତୃଷା ତମିର ବିଳସିଲା ରେ । ୫ ।
ତୁଚ୍ଛସ୍ନେହମନ ଜନ, ତୋ ସଙ୍ଗକୁ କି ଭାଜନ,
ପ୍ରପନ୍ନ ହରିଚନ୍ଦନ ଜଗଦ୍ଦେବ ଭାଷିଲା ରେ । ୬ ।

---

ସ୍ୟାତ୍ ତର୍ହି ହୀନତାମପ୍ୟନୁଭୂୟ ପୁନସ୍ତ୍ୱନ୍ମୁଖଂ ନ ପଶ୍ୟାମୀତ୍ୟର୍ଥଃ । ଲଳିତା ଇତି ନିବେଦ୍ୟ ଶ୍ରୀକୃଷ୍ଣଂ ବିଜ୍ଞାପ୍ୟ ନିଷ୍କ୍ରମ୍ୟ ତଦନ୍ତିକାତ୍ ବହିର୍ଗତ୍ୟ ଶ୍ରୀରାଧାୟାଃ ସବିଧଂ ସମୀପଂ ପ୍ରବିଶ୍ୟ ଗତ୍ୱା ତାଂ ପ୍ରତି କଥୟତୀତି ଶେଷଃ ।

ଅନୁବାଦ—ହେ କୃଷ୍ଣ, ପଦ୍ମନେତ୍ରା ରାଧାଙ୍କର ବିପରୀତଭାବାପନ୍ନ ମନକୁ ନାନା ଚେଷ୍ଟାରେ ତୁମ୍ଭ ପ୍ରତି ଅନୁରକ୍ତ କରିବାକୁ ମୁଁ ଯାଉଅଛି । ଯେବେ ତାଙ୍କ ମନ ଅର୍ଦ୍ଧମାତ୍ରାରେ ପ୍ରସନ୍ନ ହୁଏ, ତେବେ ମୁଁ କୃତାର୍ଥ ହେଲି ବୋଲି ମନେ କରିବି; ଅନ୍ୟଥା ତୁମ୍ଭ ଚନ୍ଦ୍ରମୁଖ ଦର୍ଶନ ଏହିଠାରେ ମୋର ଶେଷ ହେଲା ।

ହେ ନନ୍ଦନନ୍ଦନ, ଉଦ୍ଦେଶ୍ୟ ସିଦ୍ଧିରେ ନୀଚତା ମଧ୍ୟ ଅଙ୍ଗୀକାର କରିବି । କିନ୍ତୁ ତୁମ୍ଭ ମୁଖଚନ୍ଦ୍ର ଦର୍ଶନରେ ଯେଉଁ ଆନନ୍ଦ ଅନୁଭବ କରୁଥିଲି, ତହିଁରେ ଆଉ ମୋର ଉତ୍ସାହ ରହିବ ନାହିଁ, ମୁଁ ସେ ବିଷୟରେ ବିମୁଖ ହୋଇ ରହିବି ସିନା ! ଲଳିତା ଶ୍ରୀକୃଷ୍ଣଙ୍କୁ ଏହିପରି କହିବା ପରେ ରାଧାଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କୁ କହିଲେ, "ତୋ ଘେନି ତମାଳ ଶ୍ୟାମ" ଇତ୍ୟାଦି ।

(ତ) ଘଟ୍ୟାଂ ତ୍ୱଦ୍ ଭ୍ରୂଜଦମ୍ବହେମଲତୟୋର୍ଗ୍ରନ୍ଥିତ୍ୟ ନୀତ୍ୟଂ ସ୍ଥିତାମ୍,
ପାଯ୍ୟାନ୍ତାମଧୁନାପି ତନ୍ମ୍ ଭବତୀ ଭକ୍ତାଧିକାନ୍ତାଘବାତ;
ଆୟ୍ୟାସଃ ସଖି କେବଳଂ ଫଳମଭୂତ୍ ବାଧାପ୍ୟସାଧାରଣୀ,
ଚେତସ୍ୟାବିରଭୂଦ୍‌ବଭୂବ ନ ପୁନସ୍ତ୍ୱଲ୍ଲାଳସୋଲ୍ଲାସନମ୍ ।

ଦସ୍ତ୍ୟା କଦାଚିଦ୍‌ଭବଦୀୟାଭୀଷ୍ଟସିଦ୍ଧୌ ସମୃଦ୍ଧାୟାମପି ବନ୍ଧ୍ୟାତ୍ୱମୁତ୍‌ପତ୍ସ୍ୟତେ କଲ୍ୟାଣବଲ୍ଲ୍ୟାଃ ।

---

(ତ) ତୋ ଯେନ—ତୋ ପାଇଁ ବା ତୋ ହେତୁରୁ, ତମାଲଶ୍ୟାମ—ତମାଲ ଗଛର ପତ୍ରପରି ବର୍ଣ୍ଣ ଯାହାର, କୃଷ୍ଣ; ମରଜ—ଇଚ୍ଛା, ହୃଦ୍‌ଭାବ; କଷିଲ—ପରୀକ୍ଷା କରି ନେଲା, ବସନ—ବସ୍ତ୍ର, ରାଜ ଦିଶିଲ ନାହିଁ—ସମ୍ମତ ହେବା ଭଳି ଜଣାଗଲା ନାହିଁ, ଶ୍ରବଣତଟକୁ—କାନ ପାଖରେ, ତପନଜାତଟ—ଯମୁନାକୂଳ, କୁତୂହଳରୁ—କୌତୁକ ହେତୁରୁ, ତାରତମ୍ୟ ବିବେଚନା—ନ୍ୟୂନତା ଓ ଆଧିକ୍ୟ ଜ୍ଞାନ, ତିରସ୍କାର ପୂର୍ବଭାଷା—ଗାଳିଦେଇ କହିବା, ତରଳାଇ—ନାଶକରି ବା ଦୂରକରି, ତୋଟି—କଣ୍ଠ, ତୁଚ୍ଛସ୍ନେହମନ ଜନ—ଯାହା ମନରେ ଆଦୌ ସ୍ନେହ ନାହିଁ, ସ୍ନେହଶୂନ୍ୟ ଲୋକ; ପ୍ରପନ୍ନ—ଆଶ୍ରିତ ।

ହେ ସଖି, ସେହି ତମାଲବୃକ୍ଷର ପତ୍ର ପରି ଶ୍ୟାମଳବର୍ଣ୍ଣ କୃଷ୍ଣ ତୋ ସକାଶେ ମୋ ହୃଦୟକୁ ପରୀକ୍ଷା କରିନେଲା, ତଥାପି ଟିକିଏ ହେଲେ ତୋ ପ୍ରତି ଅନୁରାଗ ପ୍ରକାଶ କଲା ନାହିଁ । ପଦ । ମୁଁ ତଳେ ଲୁଗା ପକାଇ ଦାନ୍ତରେ କୁଟା ଧରି ଯେତେ ଅନୁସରଣ କରି କହିଲି, ସେ ତହିଁରେ ରାଜି ହେଲା ନାହିଁ । ୧ । ତତ୍ପରେ ମୋର ଗୁପ୍ତ କଥା ଯେତେବେଳେ ତା କାନ ପାଖରେ ପହଞ୍ଚିଲା, ଅର୍ଥାତ୍ ତା କାନରେ ପଡ଼ିଲା ସେତେବେଳେ ତହିଁରେ ସେ ଗୋଟିଏ ବିରୁଦ୍ଧ ଭାବ ଅନୁମାନ କଲା ଏବଂ ତହିଁରେ ଆଦୌ ମନ ନ ଦେଇ ହସିବାକୁ ଆରମ୍ଭ କଲା । ୨ । ଏବଂ ବାରମ୍ବାର କହିଲା, ତୁ ମୁବତୀ ସ୍ତ୍ରୀଟାଏ, କି କୌତୁକରୁ ଯମୁନାକୂଳକୁ ଆସିଲୁ କହ । ୩ । ହେ ସୁଲୋଚନେ, ତୁ କେଡ଼େ ଅଜ୍ଞାନ, ସେ କେଡ଼େ ବଡ଼, ଏ ବିଷୟର ତୁ ଟିକିଏ ସୁଦ୍ଧା କରି ନାହୁଁ, ଏପରି ଅବସ୍ଥାରେ ତୋ ମନ କିପରି ତା ପ୍ରତି ଅନୁରକ୍ତ ହେଲା ? ୪ । ସେ ଯେତେବେଳେ ଗାଳି ଦେଇ କଥା କହିଲା, ସେତେବେଳେ ମୋର ସବୁ ସୁଖ ଆଶା ଭାଙ୍ଗିଗଲା; ମୋ କଣ୍ଠ ଶୁଖିଗଲା ଏବଂ ମୋତେ ଚାରିଆଡ଼ ଅନ୍ଧାର ଦିଶିଲା । ୫ । ଯେଉଁ ଲୋକର ମନ ସ୍ନେହଶୂନ୍ୟ ସେ କଅଣ ତୋ ସଙ୍ଗର ଉପଯୁକ୍ତ ପାତ୍ର ? ଆଶ୍ରିତ ହରିଚନ୍ଦନ ଜଗଦ୍ଦେବ ଏହା କହିଲେ । ୬ ।

# ଥ

ରାଗ—ଝଂଝୋଟି ବା ତୋଡ଼ୀ ଜଙ୍ଗଲ

ଥାପିରେ କହ ଉଥାପିରେ ପ୍ରିୟସଖି ଥିବ କି ଛାଡ଼ିବ ପ୍ରାଣ । ପଦ ।
ଥିଲା ପର ସ୍ନେହ, ଲଗିଲା କି କହ, ଅଛନ୍ତି ତୋତେ ମୋ ରାଣ । ୧ ।
ଥକାଇ ତୁ ରହୁ, କହୁ ଧୃତ ରହୁ, ନାହିଁଟି ମୋହର ଜାଣ । ୨ ।
ଥୋକାଏ ତୋ ପ୍ରୀତି-ବଧିକ ସମ୍ମତ କଲେ କି ମୋ ପରିତ୍ରାଣ । ୩ । *
ଥରେ ହେଲେ ବଳ, ହେବ ମୋତେ ନକି ବଞ୍ଚାଇବ ପଞ୍ଚବାଣ । ୪ ।
ଥୋଇ ହୃଦେ ଛଳ, ନ କର ବିକଳ, କହେ ଅଷ୍ଟଦୁର୍ଗରାଣ । ୫ ।

---

**ଟୀକା**—ହେ ତନ୍ଵ, ତବ ଭ୍ରୂକ୍ଷୌ ଏବ ଦମ୍ଭହେମଲତେ ବ୍ୟାଜସ୍ପର୍ଷିଲତେ ତୟୋଃ ଶ୍ରୁସ୍ଥାଂ ଆଶ୍ରିତ୍ୟ ନିତ୍ୟଂ ସ୍ଥିତାଂ ମାଂ ଭବତୀ ତ୍ୱଂ ଭକ୍ତାଧିକାତ୍ ଭକ୍ତାସ୍ତ୍ରଘାତାଦଧିକପୀଡ଼ାପ୍ରଦାତ୍ ଲଘବାତ୍ ଅଗୌରବାତ୍ ଅଧୁନାପି ପାପ୍ୟାତ୍ ରକ୍ଷେତ୍ ହେ ସଖି, ଆୟାସଃ ପରିଶ୍ରମଃ କେବଲଂ ଫଲଂ ଅଭୂତ୍, ଅସାଧାରଣୀ ଅଲୌକିକା ବାଧାପି ଚେତସି ଆବିରଭୂତ୍ ସଂଜାତା, କିନ୍ତୁ ତ୍ୱୟି ଲାଲସାୟାଃ ଉଲ୍ଲାସନଂ ଅନୁରାଗ ପ୍ରକାଶଃ କୃଷ୍ଣସ୍ୟ ଇତି ଶେଷଃ ନ ବଭୂବ ।

ଦିଷ୍ଟ୍ୟା ଭାଗ୍ୟବଲେନ ଭବଦୀୟାଭିଷ୍ଟସିଦ୍ଧୌ ସମ୍ଭାବ୍ୟାୟାଂ ଅପି ତବାଭିଲାଷେ ପରିପୂର୍ଣ୍ଣେଽପି କଲ୍ୟାଣବଲ୍ଲ୍ୟାଃ ମଙ୍ଗଲଲତାୟାଃ କଦାଚିତ୍ ବନ୍ଧ୍ୟାତ୍ୱଂ ଉତ୍ପଦ୍ୟତେ ସତ୍ୟପି ଭବତ୍ୟା ସହ ତସ୍ୟ ମିଲନେ ପରିଣାମୋ ନ ସୁଖାବହୋ ଭବିଷ୍ୟତୀତ୍ୟର୍ଥଃ ।

ଅନୁବାଦ—ହେ ସୁନ୍ଦରି, ମୁଁ ତୁମ୍ଭର ନିତ୍ୟ ଅନୁଗତ, ଗୌରବହୀନ ହେବାରୁ ମୋତେ ପ୍ରାଣାନ୍ତକ କଷ୍ଟ ହେଉଅଛି, ତହିଁରୁ ତୁମ୍ଭେ ମୋତେ ରକ୍ଷା କର; ମୋର ପରିଶ୍ରମ ମାତ୍ର ସାର ହେଲା ଏବଂ ହୃଦୟସ୍ଥରେ ଅସାଧାରଣ କଷ୍ଟ ଜାତ ହେଲା; କିନ୍ତୁ ତୁମ୍ଭ ଆଶା ପୂରଣ ହେଲା ନାହିଁ ।

ଭାଗ୍ୟବଶରୁ ଯେବେ କେତେବେଳେ ତୁମ୍ଭ ଅଭିଲାଷ ପୂର୍ଣ୍ଣ ହୁଏ ତେବେ ଶେଷଫଳ ଭଲ ହେବ ନାହିଁ ।

---

(ଥ) ଥାପି—ସ୍ଥିର କର, ଲଗିଲା—ଜଣାଗଲା, ଥକାଇ—ରହ ରହ, ଧୃତ—ଧୈର୍ଯ୍ୟ, ଥୋକାଏ—ଟିକିଏ, ପରିତ୍ରାଣ—ରକ୍ଷାକାରୀ, ନକି—ସତେ କି ?

ହେ ସଖି; ସ୍ଥିର କରି କହ, ବଞ୍ଚିବି କି ପ୍ରାଣତ୍ୟାଗ କରିବ । ପଦ । ତୋତେ ମୋ ରାଣଟି ସତ କରି କହ; ମୋଠାରେ ତାଙ୍କର ସ୍ନେହ ଥିଲା ପର

---

* ପାଠାନ୍ତର—ଥୋକାଏ ମୋ ପ୍ରୀତିବଧିକ ସମ୍ମତ ନ କଲେ କି ପରିତ୍ରାଣ ।

(ଥ) ସ୍ମିତସୁଭଗମୁଖଃ ଶିଖଣ୍ଡମୌଳିର୍ବଦ କିମୁରୀକୃତବାନ୍ ମଦଙ୍ଗସଙ୍ଗମ୍;
କଥୟ ସଖି ଯଦା ତୃଣାୟ ମେନେ ବପୁରଥ କିଂ ବିସୃଜାମି ଧାରୟାମି॥

ସହଚରି ଲଳିତେ । ଦମ୍ଭସମ୍ଭୃତସମୁଜ୍ଜୃମ୍ଭଣମନ୍ତରେଣ ବିଲମ୍ବ-ମନବଲମ୍ବ୍ୟ ବ୍ରୂହି ସବିଶ୍ରମ୍ଭଂ ଜୀବାମି ବା କତିଦିନାନ୍ୟଥବା ତାପିଞ୍ଛଶାଖି-ଶାଖାୟାମୁଦ୍‌ବନ୍ଧନମଙ୍ଗୀକରିଷ୍ୟାମି ।

---

ଜଣାଗଲା ତ । ୧ । ତୁ ରହି ରହି କଥା କହିବାରୁ ମୁଁ ଧୈର୍ଯ୍ୟ ଧରି ପାରୁ ନାହିଁ । ୨ । ତୁ ଯେପରି ଭାବରେ ମିଳନର ବିଧାନ କଲୁ ତହିଁରେ ଟିକିଏ ହେଲେ କଅଣ ମୋର ରକ୍ଷାକର୍ତ୍ତା ( ଶ୍ରୀକୃଷ୍ଣ ) ସମ୍ମତ ପ୍ରକାଶ କଲେ ନାହିଁ । ୩ । ମୁଁ ଥରେ ହେଲେ ଏ ଜୀବନକୁ ତାଙ୍କ ଶ୍ରୀଚରଣରେ ବିକିଦିଅନ୍ତି, ଅନ୍ୟଥା ମୋତେ କନ୍ଦର୍ପ ବଞ୍ଚାଇବ କି ।୪। ହୃଦୟରେ କପଟ ରଖି ମୋତେ ବିକଳ କର ନା; ଅଷ୍ଟଦୁର୍ଗର ରାଜା ଏହା କହିଲେ । ୫ ।

ଟୀକା—ହେ ସଖି; ସ୍ମିତେନ ମୃଦୁହାସ୍ୟେନ ସୁଭଗଂ ସୁନ୍ଦରଂ ମୁଖଂ ଯସ୍ୟ ସଃ ମୃଦୁହାସ୍ୟବିମଣ୍ଡିତମୁଖମଣ୍ଡଳଃ; ଶିଖଣ୍ଡଃ ମୟୂରପୁଚ୍ଛଃ ମୌଳୌ ଯସ୍ୟ ସଃ ଶ୍ରୀକୃଷ୍ଣଃ ମଦଙ୍ଗସଙ୍ଗଂ ଉରୀକୃତବାନ୍ ସ୍ୱୀକୃତବାନ୍ କିଂ ? ବଦ ଯଦା ଯଦି ବା ତୃଣାୟ ମେନେ ତୃଣବତ୍ ଅକିଞ୍ଚିତ୍କରଂ ଅମଂସ୍ତ କଥୟ କିଂ ବପୁଃ ଇଦଂ ଶରୀରଂ ବିସୃଜାମି ତ୍ୟଜାମି ଅଥ ଅଥବା ଧାରୟାମି ମ୍ରିୟେ ବା ଜୀବାମି କଥୟ ଇତ୍ୟର୍ଥଃ ।

ସହଚରି ଲଳିତେ; ଦମ୍ଭସଂଭୃତ୍ୟା କପଟବ୍ୟବହାରସମୂହସ୍ୟ ସମୁଜ୍ଜୃମ୍ଭଣଂ ପ୍ରକାଶଃ ତଦନ୍ତରେଣ କପଟାଗ୍ରୂରଂ ବିନା ଇତ୍ୟର୍ଥଃ; ବିଲମ୍ବଂ ଅନବଲମ୍ବ୍ୟ ଅବିଲମ୍ବଂ ଯଥାସ୍ୟାତ୍ ତଥା ସବିଶ୍ରମ୍ଭଂ ବିଶ୍ୱାସସହିତଂ ବ୍ରୂହି କଥୟ, କତିଦିନାନି ବ୍ୟାପ୍ୟ ଜୀବାମି ବା ତାପିଞ୍ଛଶାଖିଶାଖାୟାଂ ତମାଲବୃକ୍ଷଶାଖାୟାଂ (ଶ୍ରୀକୃଷ୍ଣସ୍ୟ ତମାଲଶ୍ୟାମତ୍ୱାତ୍) ଉଦ୍‌ବନ୍ଧନଂ ଅଙ୍ଗୀକରିଷ୍ୟାମି; ଉଦ୍‌ବନ୍ଧନେନ ପ୍ରାଣାନ୍ ତ୍ୟକ୍ଷ୍ୟାମି ।

ଅନୁବାଦ—ଅୟି ସଖି ଲଳିତେ, ସତ କହ, ମୟୂରଚୂଳିଆ ସ୍ମିତସୁନ୍ଦରବଦନ ଶ୍ରୀକୃଷ୍ଣ ତୋ ପ୍ରସ୍ତାବକୁ ଅଙ୍ଗୀକାର କଲେଟି । କିମ୍ବା ମୋ ଅଙ୍ଗସଙ୍ଗକୁ ଅତି ସାମାନ୍ୟ ବୋଲି ମନେ କଲେ, ଏ ଦେହକୁ ରଖିବି କି ଛାଡ଼ିବି କହ ।

ସହଚରି, ହୃଦୟରେ କପଟ ନ ରଖି ଆଉ ବିଳମ୍ବ ନ କରି ସତ କରି କହ, ତମାଲଗଛ ଡାଳରେ ଦଉଡ଼ିଦେଇ ପ୍ରାଣ ହରାଇବି କି ଆଉ କିଛି ଦିନ ବଞ୍ଚିବି ?

ଏହା ଶୁଣି ଲଳିତା କହିଲେ;—"ରେ ଦୁଃଖିଧନ" ଇତ୍ୟାଦି ।



ରାଗ—ଭଟିଆର

ରେ ଦୁଃଖିଧନ, ଦମ୍ଭ ଦେଖିବାକୁ ସିନା କଲି ଛନ,
ଦୁଃଖମୟ ନ କର ସରସ ମନ । ପଦ ।

ଦୂରୁ ମୁଁ ଯିବାର ଜାଣି ହରି, ଦରିଦ୍ର ନିଧି ଲଭିଲା ପରି,
ଦ୍ୱିଗୁଣ ଆଦରେ ପ୍ରମୋଦନଦରେ ମଜ୍ଜି ଘେନିଗଲେ କରଧରି । ୧ ।
ଦୟାକରକର କରି ଚିତ୍ତ, ଦନ୍ତବାସେ ରଖି ଦରସ୍ମିତ,
ଦଶବାର ଅନାମୟ ମୋତେ ଘେନାଘେନି କରି ପଚାରିଲେ ମିତ । ୨ ।
ଦେଖିଲି ଯାହା ଶ୍ରୀଅଙ୍ଗଦ୍ୟୁତି, ଦଳି ହୋଇଗଲା ମୋର ଧୃତି,
ଦ୍ୱିତୀୟାର ଶଶି-ଲେଖା ପରି ଦଶିଗଲେନି ସେ ଇନ୍ଦ୍ରନୀଳଦ୍ୟୁତି । ୩ ।
ଦୁର୍ବାର ତୋ ନେତ୍ରାଞ୍ଚଳଶର, ଦେବାରୁ ଦୁଃଖ ଦୁଃସହତର
ଦୁର୍ବାଳ ହେବାର ଦେହମଜ୍ଜାସାର ଜାଣି ନା ହେଲା ମାନସ ମୋର । ୪ ।
ଦୁର୍ବଳ ସାଳସ ଦେଖି ମୁଁ ଲୋ, ଦୁରୁହରେ କିଛି ପଚାରିଲି,
ଦୀର୍ଘ ତପତ ନାସାନିଳ ତେଜିଲେ ଅହା ମରଇ ତ ବୋଲି ରିଲି । ୫ ।
ଦେବ ଦଇବ ତୋ ଅଭିମତ, ଦୂର କର ଦ୍ୱାପରକୁ ଚେତ, *
ଦବିଷ୍ଠ ଏ କଷ୍ଟପାକ ହେବ ଅଷ୍ଟଦୁର୍ଗନାଥର ଏ ବାରଣତ । ୬ ।

---

(ଧ) ଛନ କଲି—ଡରାଇଲି, ପ୍ରମୋଦନଦରେ—ଆନନ୍ଦସାଗରରେ, ଦୟା—ସ୍ନେହ, ଦନ୍ତବାସେ—ଓଠରେ, ଦରସ୍ମିତ—ଅଳ୍ପହାସ, ଅନାମୟ—କୁଶଳପ୍ରଶ୍ନ, ଘେନାଘେନି କରି—ଠେକାଠେକି କରି, ଦ୍ୟୁତି—ଶୋଭା, ଶଶିଲେଖା—ଚନ୍ଦ୍ରକଳା, ଇନ୍ଦ୍ରନୀଳଦ୍ୟୁତି—ଇନ୍ଦ୍ରନୀଳମଣିଶୋଭାଧାରୀ, ହସ୍ତୀପରି ଆକୃତି-ବିଶିଷ୍ଟ ସେହି ଶ୍ରୀକୃଷ୍ଣ; ଦୁର୍ବାର—ଅନିବାର୍ଯ୍ୟ, ଯନ୍ତ୍ରଣାପ୍ରଦ; ଦୁର୍ବାଳ—ଦୁର୍ବଳ, ମଜ୍ଜା—ହୃଦୟସାରବଳ, ସାଳସ—ଆଳସ୍ୟଯୁକ୍ତ, ଦ୍ୱାପର—ସନ୍ଦେହ (ଦ୍ୱାପରଟି ଯୁଗ ସଂଶୟେ), ଚେତ—ମନେରଖ, ଦବିଷ୍ଠ—ଦୂରତମ ।

ହେ ଦୁଃଖିଧନ, ତୋ ଧୈର୍ଯ୍ୟ ଦେଖିବାପାଇଁ ମୁଁ ଏପରି ସିନା ଡରାଇ ଦେଲି, ତୋର ସରସମନକୁ ତୁ ଦୁଃଖିତ କର ନା । ପଦ । ଶ୍ରୀକୃଷ୍ଣ ଦୂରରୁ ମୋ ଯିବା ଜାଣିପାରି ଦରିଦ୍ର ଲୋକ ନିଧି ପାଇଲେ ଯେପରି ଆନନ୍ଦିତ ହୁଏ ସେହିପରି ଆନନ୍ଦସାଗରରେ ବୁଡ଼ି ଅନ୍ୟ ସମୟରେ ତୋତେ ଯେତେ ଆଦର କରନ୍ତି ତାହାର

---

* ପାଠାନ୍ତର—'ଚେତ' ସ୍ଥାନରେ 'ମିତ' ।

(ଦ) ସମାଶ୍ୱସିହି ମାନିନି ତ୍ୱଦତିଧୈର୍ଯ୍ୟଜିଜ୍ଞାସୟା,
ନଟତ୍ୱକପଟପାଟବଂ ତବ ପୁରଃ ପ୍ରଣୀତଂ ବଚଃ;
ଅମନ୍ଦମଧୁମନ୍ଦିରଂ କମଳବିନ୍ଦବୃନ୍ଦଂ ବିନା—
ନୁବିନ୍ଦତି ମୁଦଂ ହୃଦନ୍ତରଗତାଂ ମିଳିନ୍ଦୋ ଯୁବା ।

ମୁକ୍ଷିତାଂ ମାକନ୍ଦମଞ୍ଜରୀଂ ବନପ୍ରିୟଇବ, ସରୋଜିନୀଂ ଯୁବରୋଲମ୍ବ ଇବ, ଚନ୍ଦ୍ରିକାଂ ଚକୋର ଇବ, ପ୍ରତ୍ୟଗ୍ରମ୍ବୁଧରମଣ୍ଡଳୀଂ ଚାତକ ଇବ, ଚିନ୍ତାମଣିମକଞ୍ଚନ ଇବ, ତ୍ୱାମନବରତଂ ବଲ୍ଲବମହୀମହେନ୍ଦ୍ରନନ୍ଦନାନନ୍ଦଃ ସ୍ମରନ୍ କିଶୋରଃ ସୀଦତି, ତ୍ୱଂ କଥଂ ରୋଦନେନ ରୋଦୟସି ରୋଦସୀ ।

---

ଦୁଇ ଗୁଣ ଆଦରରେ ହାତ ଧରି ମୋତେ ଘେନିଗଲେ । ୧ । ଗୋ ମିତ, ଚକ୍ଷୁକୁ ସ୍ନେହପୂର୍ଣ୍ଣ କରି, ଓଷ୍ଠରେ ମନ୍ଦହାସ୍ୟକୁ ପ୍ରକାଶ କରି ମୋତେ ଟେକାଟେକି କରି ସେ ଦଶ ଥର ତୁମ୍ଭର କୁଶଳ ପ୍ରଶ୍ନ ପଚାରିଲେ । ୨ । ଆହା, ସଖି, ତାଙ୍କର ଶ୍ରୀଅଙ୍ଗ ଶୋଭା ଯାହା ଦେଖିଲି, ସେଥିରେ ମୋ ଛାତି ଫାଟିଗଲା । ସେହି ନୀଳହୀରାଭଳି ଲୋକ ବର୍ତ୍ତମାନ ଦ୍ୱିତୀୟା ତିଥିର ଚନ୍ଦ୍ରକଳା ପରି କ୍ଷୀଣ ହୋଇଗଲେଣି । ୩ । ତୋର ଅପାଙ୍ଗଶର ଅତ୍ୟନ୍ତ ଦୁଃଖଦେବାରୁ ତାଙ୍କର ଦେହ, ହୃଦୟ ଓ ବଳ କ୍ଷୀଣ ହୋଇଗଲାଣି, ଏହା ମୁଁ ଜାଣିପାରିବାରୁ ମୋର ମନ ଯାହା ହେଲା—ତା ଆଉ କିଏ କହିବ ? ୪ । ତାଙ୍କର ଦୁର୍ବଳ ଓ ଆଲସ୍ୟପୂର୍ଣ୍ଣ ଧୀର ଚାଲି ଦେଖି ମୁଁ ଅତି ଦୁଃଖରେ କିଛି ପଚାରିଲି, ମାତ୍ର ସେ ଦୀର୍ଘ ଉଷ୍ଣ ନିଃଶ୍ୱାସ ତ୍ୟାଗ କରନ୍ତେ ମୁଁ ବୁଝିଲି, ଏ ଦୁଃଖ ଦେଖି ମୋର ମରିଯିବା ଉଚିତ । ୫ । ଗୋ ସଖି ! ଦୈବ ତୋ ଅଭିଳାଷ ପୂର୍ଣ୍ଣ କରିବ, ମନରୁ ସନ୍ଦେହ ଦୂରକର ଏବଂ ମନେ ରଖ, ଦିନେ ତୋର ଏ କଷ୍ଟସାକ ଦୂର ହୋଇଯିବ । ଆଠଗଡ଼ର ରାଜା ଏହା ରଚନା କଲେ । ୬ ।

ଟୀକା—ଅୟି ମାନିନି ମାନବତି ରାଧିକେ, ସମାଶ୍ୱସିହି ସମ୍ୟକ୍ ଆଶ୍ୱସ୍ତା ଭବ, ତ୍ୱଦତିଧୈର୍ଯ୍ୟଜିଜ୍ଞାସୟା ତବ ଧୈର୍ଯ୍ୟାତିଶୟ୍ୟଂ ଜିଜ୍ଞାସୟା ଜ୍ଞାତୁମିଚ୍ଛୟା ତବ ପୁରଃତ୍ୱଦଗ୍ରେ ନଟତ୍ୱ ଚଳସିତଂ କପଟାନାଂ ପାଟବଂ ପଟୁତ୍ୱଂ ଯତ୍ର କଳ୍ପିତ-କାପଟ୍ୟପୂର୍ଣ୍ଣ ମିତ୍ୟର୍ଥ, ବଚଃ ପ୍ରଣୀତଂ ମୟା ଇତି ଶେଷଃ, ଯୁବା ମିଳିନ୍ଦଃ ଭ୍ରମରଃ ଅମନ୍ଦସ୍ୟ ପ୍ରକୃତସ୍ୟ ମଧୁନଃ ମନ୍ଦିରଂ ସ୍ଥାନଂ ଅରବିନ୍ଦାନାଂ ବୃନ୍ଦଂ ବିନା ପଦ୍ମୋ-ଦରଂ ବିନା ହୃଦନ୍ତରଗତାଂ ଅନ୍ତରାହ୍ଲାଦିନୀଂ ମୁଦଂ ଆନନ୍ଦଂ ଅନୁବିନ୍ଦତି କିଂ ଲଭତେ କିଂ ? (ଲଭେ ବିନ୍ଦତି ବିନ୍ଦତେ ) ଲଭତି ଇତ୍ୟର୍ଥଃ ।

ବନପ୍ରିୟଃ କୋକିଳଃ ମୁକ୍ଷିତାଂ ମୁକୁଳିତାଂ ମାକନ୍ଦମଞ୍ଜରୀଂ ଚୂତ-ମୁକୁଳମିବ, ଯୁବରୋଲମ୍ବଃ ତରୁଣଭ୍ରମରଃ ସରୋଜିନୀଂ ପଦ୍ମିନୀମିବ; ଚକୋର

# ଧ

ରାଗ—କାନଡ଼ାକାଫି ବା ଚୋଡ଼ଜଙ୍ଗଲା

ଧୀରା ରେ କି ଧନ ତୁ ନ ଦେଲୁ ଅଜ
ଧଇଲେ କି ସତେ କର ଯୁବରାଜ । ପଦ ।

ଧରମ ବନ୍ଧୁ କି ମୋର, ଧୂପି ଦେଇ ନିଜ କର,
କୋଳକୁ ଅଣିଲୁ କଳାଦ୍ୱିଜରାଜ । ୧ ।
ଧୁରନ୍ଧର ସେ ଇଙ୍ଗିତେ, ଧରଷିଲୁ କେହ୍ନେ ସତେ,
ଧମକାଇଲୁ ନାହିଁ କି କିଛି ଲାଜ । ୨ ।
ଧରାରେ ଯେତେ ପୁରୁଷେ, ଧୂଈ ତାହାଙ୍କ ଗୁରୁ ସେ
ଧନକୁ ଯେ ବଢେ ତାହାଙ୍କର ବ୍ୟାଜ । ୩ ।
ଧୃତ ହୋଇ ବଳହୀନ, ଧୂସର ହୋଇବା ମନ,
ଧୋଇ ଚିନ୍ତା କଳଙ୍କସମାଜ ମାଜ । ୪ ।
ଧରଣୀନ୍ଦ୍ର ଜଗଦ୍ଦେବ, ଧ୍ୟାନେ ବଲ୍ଲବୀବଲ୍ଲବ-
ଧରାଧୂଳି କରେ ମସ୍ତକରେ ତାଜ । ୫ ।

---

ଚନ୍ଦ୍ରିକାମିବ, ଚାତକଃ ପ୍ରତ୍ୟଗ୍ରମୁଦିରମଣ୍ଡଳୀଂ ନବମେଘମାଳାମିବ, ଅକିଞ୍ଚନଃ ଦରିଦ୍ରଃ ଚିନ୍ତାମଣିଂ ଈପ୍ସିତାର୍ଥଦାୟିମଣିମିବ, ବଲ୍ଲବମହ୍ୟାଃ ଗୋପଜନପଦସ୍ୟ ମହେନ୍ଦ୍ରଃ ରାଜା ତସ୍ୟ ନନ୍ଦନାନନ୍ଦଃ ଆନନ୍ଦବର୍ଦ୍ଧକଃ କିଶୋରଃ ତ୍ୱାଂ ଅନବରତଂ ସ୍ମରନ୍ ସୀଦତି ବିଷଣ୍ଣୋ ଭବତି । ଅତଏବ କଥଂ ତ୍ୱାଂ ରୋଦନେନ କ୍ରନ୍ଦନେନ ରୋଦସୀ ଦ୍ୟାବାପୃଥିବ୍ୟୌ ରୋଦୟସି ।

ଅନୁବାଦ—ଅୟି ମାନିନି ରାଧେ, ଆଶ୍ୱସ୍ତ ହୁଅ; ତୋର ଧୈର୍ଯ୍ୟ ଜାଣିବା ଇଚ୍ଛାରେ ମୁ ତୋ ଆଗରେ ଯେପରି କପଟତାପୂର୍ଣ୍ଣ କଥା କହିଲି ସିନା ! ଭ୍ରମର-ଯୁବକ ମଧୁପରିପୂର୍ଣ୍ଣ ପଦ୍ମପୁଷ୍ପର ଅଭ୍ୟନ୍ତର ଛଡ଼ା ଅନ୍ୟତ୍ର ହୃଦୟବିମୋହନ ଆନନ୍ଦ ପାଏ କି ?

କୋକିଳ ଯେପରି ପୁଷ୍ପିତ ଚୂତମଞ୍ଜରୀକୁ, ଭ୍ରମର ଯୁବକ ଯେପରି ପଦ୍ମିନୀକୁ, ଚକୋର ଯେପରି ଚନ୍ଦ୍ରିକାକୁ, ଚାତକ ଯେପରି ନବ ମେଘମାଳକୁ, ଦରିଦ୍ର ଯେପରି ଚିନ୍ତାମଣିକୁ ସର୍ବଦା ସ୍ମରଣ କରି ଦୁଃଖରେ କାଳ କଟାନ୍ତି, ସେହିପରି ନନ୍ଦନନ୍ଦନ କିଶୋର ଶ୍ରୀକୃଷ୍ଣ ସବୁବେଳେ ତୋତେ ସ୍ମରଣ କରି କରି ଦୁଃଖିତ ହୋଇ ରହିଅଛନ୍ତି । ଏହିପରି ଅବସ୍ଥାରେ ତୁ କାହିଁକି କାନ୍ଦି କାନ୍ଦି ଆକାଶ ପୃଥିବୀକୁ କନ୍ଦାଉଅଛୁ ।

---

(ଧ) ଭୁତିରଦ୍ୟ ସଖି କିଂ ନ ବିତୀର୍ଣ୍ଣା, ଯନ୍ମମ ଶ୍ରବଣସୀମ୍ନି ବିକୀର୍ଣ୍ଣା,
ବୀଜରାଜରିବ ଶର୍ମଲତାୟାଃ, ସସ୍ମିତେନ୍ଦୁମୁଖି ବାଗନୁକୂଳା ।

ଘର୍ମୈର୍ମିତପ୍ରାଙ୍କୁରଶ୍ରେଣ୍ୟାଃ ପ୍ରତ୍ୟଗ୍ରବୃଷ୍ଟିରିବ, ରଜନ୍ୟାଃ କୌମୁଦୀବ, ତମଃସମୂହକବଳିତଶ୍ରିୟୋ ଗୃହଲେଖାୟା ଦୀପଶିଖେବ, ଯତଚତ୍ତବୃତ୍ତେବ୍ରହ୍ମାନନ୍ଦଧାରେବ ସାମ୍ପ୍ରତଂ ମମ ଭ୍ରମସି ।

---

(ଧ) ଧୀର ରେ—ହେ ପଣ୍ଡିତା, ଯୁବରାଜ—ଯୁବକଶ୍ରେଷ୍ଠ, ଧୂପିଦେଇ—ବଢ଼ାଇ ଦେଇ, କଳାଦ୍ୱିଜରାଜ—କୃଷ୍ଣଚନ୍ଦ୍ର, ଧୂରନ୍ଧର—ନିପୁଣ, ଇଙ୍ଗିତେ—ଅଙ୍ଗଠା କରିବାରେ, ଧରଷିଲୁ—ସାହସ କଲୁ, କେହି—କପରି, ଧମକାଇଲା—ଡରାଇଲା, ବ୍ୟାଜ—ସୁଧ ବା କଳାନ୍ତର ( ହିନ୍ଦୀ—ବେଆଜ ), ଧୂସର—ମଳିନ, କଳଙ୍କ-ସମାଜ—ଖେଦସମୂହ, ମାଜ—ପରିଷ୍କାର କରିଦିଅ, ବଲ୍ଲବୀ—ଗୋପୀ, ରାଧା; ବଲ୍ଲବ—ଗୋପାଳ, ଶ୍ରୀକୃଷ୍ଣ; ଧରାଧୂଳି—ବାସସ୍ଥାନର ଧୂଳି, ତାଜ—ମୁକୁଟ, ଭୂଷଣ ।

ହେ ପଣ୍ଡିତା, ତୁ ମୋତେ ଆଜି କି ଧନ ନ ଦେଲୁ ? ସତେ କି ଯୁବକମଣି କୃଷ୍ଣଚନ୍ଦ୍ର ତୋ ହାତ ଧରିଲେ ? ପଦ । ମୋ ଧର୍ମବଳରୁ କଅଣ ତୁ ଡେଇଁ ପଡ଼ି ହାତ ବଢ଼ାଇ କୃଷ୍ଣରୂପ ଚନ୍ଦ୍ରଙ୍କୁ କୋଳକୁ ଆଣିଲୁ ? ୧ । ସେ ତ ପରିହାସ କରିବାରେ ବଡ଼ ନିପୁଣ, ଅର୍ଥାତ୍ ସେ ଅଙ୍ଗଠିଲ ଅଟନ୍ତି, ତୁ କପରି ସାହସ କରି ତାଙ୍କ ମନକଥା ବୁଝିଲୁ, ତୋତେ ସେ ଅଙ୍ଗଠା କଲାବେଳେ କିଛି ଲାଜ ମାଡ଼ିଲା କି ? ୨ । ପୃଥିବୀରେ ଯେତେ ଧୂର୍ତ୍ତ ପୁରୁଷ ଅଛନ୍ତି, ସେ ସମସ୍ତଙ୍କର ଗୁରୁ ଅଟନ୍ତି, ତାଙ୍କର ମୂଳଧନରୁ ସୁଧ ବେଶୀ, ଅର୍ଥାତ୍ ସେ ଏପରି ଚତୁର ଯେ, ଯେତେ ମୂଳ ଦିଅନ୍ତି, ତହିଁରୁ ଅଧିକ ସୁଧ ଆଦାୟ କରନ୍ତି, ଅର୍ଥାତ୍ ସେ ପ୍ରକୃତ କଥା ଯାହା କହନ୍ତି ଅନ୍ୟଠାରୁ ତହିଁରୁ ଅଧିକ କଥା ଆଦାୟ କରି ନିଅନ୍ତି । ୩ । ମୋର ଧୈର୍ଯ୍ୟ ନଷ୍ଟ ହୋଇ ଯାଇଥିବାରୁ ମନ ମଳିନ ହୋଇ ଯାଇଅଛି, ତାହାକୁ ନିର୍ମଳ କରି ଚିନ୍ତାଜନିତ ଖେଦସମୂହକୁ ମୋ ହୃଦୟରୁ ପରିଷ୍କାର କରି ଦେ । ୪ । ରାଜା ଜଗଦ୍ଦେବ ସେହି ଗୋପୀ ଓ ଗୋପୀନାଥଙ୍କ ବାସଭୂମିର ଧୂଳିକୁ ମସ୍ତକରେ ଭୂଷଣ କରୁଅଛି, ଅର୍ଥାତ୍ ଧ୍ୟାନରେ ସେହି ପବିତ୍ର ସ୍ଥାନ ଉଦ୍ଦେଶ୍ୟରେ ମସ୍ତକ ଅବନତ କରୁଅଛି । ୫ ।

ଟୀକା—ହେ ସସ୍ମିତେନ୍ଦୁମୁଖି, ସସ୍ମିତଂ ଈଷଦ୍ଧାସ୍ୟଯୁକ୍ତଂ ଇନ୍ଦୁମୁଖଂ ଚନ୍ଦ୍ରମୁଖଂ ଯସ୍ୟା ତତ୍ସମ୍ବୁଦ୍ଧୌ, ହେ ସଖି, ଶର୍ମଲତାୟାଃ କୁଶଳବଲ୍ଲର୍ଯ୍ୟାଃ ବୀଜରାଜିରିବ ଅନୁକୂଳା ପ୍ରିୟତର ବାକ୍ ମମ ଶ୍ରବଣସୀମ୍ନି ଶ୍ରବଣଭୂବି ବିକୀର୍ଣ୍ଣା ଯତ୍ ତତ୍ ଭୂତିଃ ଐଶ୍ୱର୍ଯ୍ୟଂ ଅଦ୍ୟ ନ ବିତୀର୍ଣ୍ଣା କିଂ, ଅପିତୁ ଦତ୍ତୈବ ।



ରାଗ—କାମୋଦୀ

ନବବିଳାସିନି ରେ, ନକ୍ଷତ୍ରେଶ-ହାସିନି । ପଦ ।

ନାହିଁ ବୋଲିବା ବାଣୀ, ନିପଟ ନାହିଁ ଶୁଣି,
ନଳିନାକ୍ଷି ରେ ହୋଇ କିସ ହେବ,
ନନ୍ଦନନ୍ଦନ ପ୍ରେମା, ପ୍ରେମାରେ ନୁହେ ଜମା
ନିତମ୍ବିନୀଙ୍କି ଯେବେ ଗତି ଥିବ । ୧ । *
ନିଷ୍ଠୁରଗୁଣ କୁଳି— ଗରୁ ପଢ଼ନ୍ତୁ ବଳି,
ନିଷ୍ଟସ୍ୱ ତନି ବର୍ଣ୍ଣି ନାହିଁ ଲେଖି,
ନାଗରୀବମୋହନ, ମନ୍ତ୍ର ମାନଙ୍କ ମନ
କପଟ ସମ୍ପୁଟରେ ଅଛି ରଖି । ୨ ।

---

ଘର୍ମେଣ ଗ୍ରୀଷ୍ମାତପେନ ତପ୍ତାୟାଃମ୍ରିୟମାଣାୟାଃ ଅଙ୍କୁରଶ୍ରେଣ୍ୟାଃ ପ୍ରତ୍ୟଗ୍ରବୃଷ୍ଟି ନବବର୍ଷଣମିବ; ରଜନ୍ୟାଃ କୌମୁଦୀ ଚନ୍ଦ୍ରିକା ଇବ; ତମଃସମୂହ-କବଳିତଗ୍ରସ୍ତଃ ତମିସ୍ରାଚ୍ଛନ୍ନାୟାଃ ଗୃହଲେଖାୟାଃ ଗୃହସମୂହସ୍ୟ ( ବୀଥ୍ୟାଳିରାବଳିଃ ପଂକ୍ତିଃ ଶ୍ରେଣୀ ଲେଖାସ୍ତୁ ରାଜୟଃ ଇତ୍ୟମରଃ) ଦୀପଶିଖା ଇବ, ଯତୀନାଂ ତପସ୍ୱିନାଂ ଚିତ୍ତବୃତ୍ତେଃ ମନୋବ୍ୟାପାରସ୍ୟ ବ୍ରହ୍ମାନନ୍ଦଧାରା ଇବ ସାମ୍ପ୍ରତଂ ମମ ତ୍ୱମସି ।

ଅନୁବାଦ—ହେ ସଖି, ତୁ ଏହି କଥାଗୁଡ଼ିକ କହି ମୋତେ ଆଜି କି ସମ୍ପତ୍ତି ନ ଦେଲୁ ? ହେ ହର୍ଷମୁଖି ଚନ୍ଦ୍ରାନନେ, ତୋର ଏହି ଅନୁକୂଳ ବାକ୍ୟ ଗୁଡ଼ିକ ମୋ ସୁଖରୂପ ଲତାର ବୀଜସମୂହ ବା ମୂଳକାରଣ ପରି ହୋଇଅଛି ।

ପ୍ରଚଣ୍ଡ ଗ୍ରୀଷ୍ମରେ ମଳି ପରି ହୋଇଥିବା ବୃକ୍ଷର ଅଙ୍କୁର ପକ୍ଷରେ ନବବୃଷ୍ଟି ଧାରା ପରି, ରାତ୍ରିପକ୍ଷରେ ଚନ୍ଦ୍ରକିରଣ ପରି, ଅନ୍ଧକାରାଚ୍ଛନ୍ନ ଗୃହସମୂହ ପକ୍ଷରେ, ଦୀପଶିଖା ପରି ଏବଂ ସଂଯତଚିତ୍ତ ମୁନିଙ୍କ ପକ୍ଷରେ ବ୍ରହ୍ମାନନ୍ଦଧାରା ପରି ତୁ ବର୍ତ୍ତମାନ ମୋ ପକ୍ଷରେ ଅତ୍ୟନ୍ତ ଆନନ୍ଦଦାୟିନୀ ହେଲୁ ।

ଏହା ଶୁଣି ଲଳିତା କହିଲେ,—"ନବବିଳାସିନି ରେ" ଇତ୍ୟାଦି ।

(ନ) ନବବିଳାସିନି—ହେ ନବରସିକେ; ନକ୍ଷତ୍ରେଶହାସିନି—ହେ ଚନ୍ଦ୍ରହାସିନି; ନିପଟ—ଆଦୌ, କେବେହେଁ; ନଳିନାକ୍ଷି—ହେ ପଦ୍ମନେତ୍ରି; ପ୍ରେମା—ପ୍ରେମ;

---

* ପାଠାନ୍ତର—ନନ୍ଦନନ୍ଦନ ପ୍ରେମ-ବଶେ ନୋହିବ ଭ୍ରମ; ନିତମ୍ବିନୀଙ୍କ ଯେବେ ଗତି ଥିବ ।

ନିରନ୍ତରାୟ ରସ— ପ୍ରସାରଣେ ପୀୟୂଷ-
ଧାରାଧିକ୍କାରକାରୀ ପରି ଲାଗେ,
ନିମିଷକରେ ଜ୍ୱାଳା, ଜନ୍ମାଏ ଜିଣି ହାଳା—
ହଳକୁ ଯେ—ସଙ୍ଘାଳି ମହାନାଗେ । ୩ ।
ନିଶି ଦିନ ଶୟନ, ନ ଜାଣଇ, ନବୀନ
ବିସିନୀଦଳ ଶେଯ ଯାଏ ଜଳି,
ନୀପବନ ପବନ, ନିର୍ଧୂମଶିଖ ଧନ—
ଞ୍ଜୟ ଶ୍ୱାସରୁ କରେ କଟୁକେଳି । ୪ ।
ନିଦାର ନିକେତନ, ହୋଇବୁ ରେ ନୂତନ-
ମନ୍ଦାର-ବିମ୍ବ-କୁରୁବିନ୍ଦାଧରା,
ନିଶା-ରମଣ-କର— କଳିକା-କଣ ଚୋର,
ହୋଇଯିବ କଳ୍ପାନ୍ତକାଳ ଖରା । ୫ ।

---

( ସଂସ୍କୃତରେ ପ୍ରେମନ୍ ଶବ୍ଦ ପୁଂଲିଙ୍ଗ ଓ କ୍ଲୀବଲିଙ୍ଗ, ଏଠାରେ ପୁଂଲିଙ୍ଗ ପ୍ରୟୋଗ ); କିମ୍ପା—ଆଦୌ; ନିତମ୍ବିନୀ—ନିତମ୍ବବତୀ ଯୁବତି ସ୍ତ୍ରୀ; କୁଳିଶ—ବଜ୍ର; ମନକପଟ-ସମ୍ପୁଟରେ—ମନରୂପ କପଟ ସରୁଆରେ; ନିରନ୍ତରାୟ—ଅନ୍ତରାୟ ରହିତ ଅର୍ଥାତ୍ ବାଧାଶୂନ୍ୟ; ରସ ପ୍ରସାରଣେ—ଭାବ ବିସ୍ତାର କରିବାରେ; ହାଳାହଳ—ବିଷ; ସଙ୍ଘାଳି—ପ୍ରିୟବସ୍ତୁ; ବିସିନୀଦଳ—ପଦ୍ମପତ୍ର; ନୀପବନପବନ—କଦମ୍ବକାନନସଞ୍ଜାତ ବାୟୁ; ନିର୍ଧୂମଶିଖ—ଧୂଆଁ ନ ଥିବା ଶିଖା ଯାହାର; ଧନଞ୍ଜୟ—ଅଗ୍ନି; ମନ୍ଦାରବିମ୍ବକୁରୁବିନ୍ଦାଧରା—ମନ୍ଦାର ( ମନ୍ଦାରଫୁଲ ), ବିମ୍ବ ( କଇଁଶିକାକୁଡ଼ି ) ଓ କୁରୁବିନ୍ଦ (ପଦ୍ମରାଗ ମଣି) ଏମାନଙ୍କର ବର୍ଣ୍ଣ ପରି ଅଧର ଅର୍ଥାତ୍ ଓଠ ଯାହାର; ନିଶାରମଣକର କଳିକାକଣ—ଚନ୍ଦ୍ରକିରଣବିନ୍ଦୁ; ନ ବରଷରୁ ଊଣା କାଳୁ—୯ ବର୍ଷରୁ ଅଳ୍ପ ବୟସ ହୋଇଥିବା ସମୟରୁ; ଉଦ୍ଧରିଲି—ଟେକି ଧରିଥିଲି; ନବନୀରଜକୋଷନିଭ—ନୂତନ ପଦ୍ମକଢ଼ି ସଦୃଶ; କଣ୍ଠୀରବମଧ୍ୟା—ସିଂହକଟି ଅର୍ଥାତ୍ କ୍ଷୀଣକଟି, କୃଶାଙ୍ଗୀ; କରକଞ୍ଜ—କରପଦ୍ମ; ନିଦ୍ରାହାରେ—ଶୋଇବାରେ ଓ ଖାଇବାରେ; ନୀଳବାହା—ନୀଳବର୍ଣ୍ଣ ବାହୁର, ( ଶ୍ରୀକୃଷ୍ଣଙ୍କର ); ମୁଦ୍ରାହାରେ—ଆଲିଙ୍ଗନରୂପ ହାରରେ ।

ହେ ଚନ୍ଦ୍ରହାସିନୀ ନବରସିକେ, ମୁଁ ତାଠାରୁ 'ନାହିଁ' ବୋଲି କଥା ଆଦୌ ଶୁଣି ନାହିଁ, ହେ ପଦ୍ମନେତ୍ରି 'ହୋଇ' ବା କଅଣ ହେବ ଅର୍ଥାତ୍ ହେଲେ କି ହେବ ? ଯେବେ ନିତମ୍ବିନୀ ଯୁବତି ସ୍ତ୍ରୀମାନଙ୍କର ଅନ୍ୟ ଉପାୟ ଥାଏ, ତେବେ ସେମାନେ ବୁଝିବେ ଯେ ନନ୍ଦନନ୍ଦନର ପ୍ରୀତି ଆଦୌ ପ୍ରୀତି ପଦବାଚ୍ୟ ନୁହେ । ୨ ।

ନ ବରଷରୁ ଊଣା    କାଳୁ ତ ଅଛୁ ଜଣା
ନଖାଗ୍ରେ ଉଦ୍ଧରିଲା ଗୋବର୍ଦ୍ଧନ,
ନବନୀରଜ କୋଷ—    ନିଭ ତୋ କୁଚ କିସ
ଅଣ୍ଟିବ କଣ୍ଠୀରବମଧ୍ୟା ଘେନ । ୬ ।
ନିବେଦନ କରୁଛି    କରକଞ୍ଜ ଧରୁଛି,
ହେଲେ ହେଉ ଅରୁଚି ନିଦ୍ରାହାରେ,
ନରନାଥ ଶ୍ରୀହରି—    ଚନ୍ଦନ ବନ୍ଦେ ଗୋରି
ନ ରସ ନୀଳବାହା ମୁଦ୍ରାହାରେ । ୭ ।

---

ତାହାର ଗୁଣଗୁଡ଼ିକ ଏଡ଼େ ନିଷ୍ଠୁର ଯେ, ତାହା ବଜ୍ର ଅପେକ୍ଷା ଆହୁରି କଠିନ ଏବଂ 'ନିଷ୍ଟସ୍ଥ' ଏହି ଅକ୍ଷର ତିନିଗୋଟି ସେ ଆଦୌ ଲେଖି ନାହିଁ ଅର୍ଥାତ୍ 'ନିଷ୍ଟସ୍ଥ' ଶବ୍ଦ ତାକୁ ସମ୍ପୂର୍ଣ୍ଣରୂପେ ଅଜଣା, ମନରୂପ କପଟପଟରୁଆରେ କେବଳ ସ୍ତ୍ରୀମାନଙ୍କୁ ବଶୀଭୂତ କରିବାର ମନ୍ତ୍ରକୁ ସେ ରଖିଛି, ତେଣୁ ସେ ନାରୀମାନଙ୍କୁ ସହଜରେ ବଶୀଭୂତ କରିନିଏ, କିନ୍ତୁ କାହାରିଠାରେ 'ନିଷ୍ଟସ୍ଥ' ସ୍ନେହ ବା ସ୍ଥିର ପ୍ରେମ ରଖେ ନାହିଁ । ୨ । (ଅନୁରାଗ ପ୍ରକାଶ କଲାବେଳେ) ନିର୍ବାଧ ଭାବରେ ରସ-ବିସ୍ତାର କାର୍ଯ୍ୟରେ ଅମୃତଧାରାକୁ ତୁଚ୍ଛ କଲାପରି ବୋଧହୁଏ ଅର୍ଥାତ୍ ତା ଅନୁରାଗ ନିକଟରେ ଅମୃତଧାରା ତୁଚ୍ଛ ବସ୍ତୁପରି ବୋଧ ହୁଏ, କିନ୍ତୁ ନିମିଷକ ମଧ୍ୟରେ ମହାନାଗ ସାପର ସଙ୍ଗୀନ ବିଷଠାରୁ ବଳି ଯନ୍ତ୍ରଣା ଦିଏ । ୩ । ତୋ ବିରହରେ ସେ ବର୍ତ୍ତମାନ ରାତି ଦିନ କିଦ କଅଣ ଜାଣିପାରୁ ନାହିଁ, ଅର୍ଥାତ୍ ଦିନ ରାତିରେ ଆଦୌ ଶୋଉ ନାହିଁ, ନୂଆ ପଦ୍ମପତ୍ରର ଶେଯ ବିରହତାପରେ ଜଳି ଯାଉଅଛି ଏବଂ କେଳିକଦମ୍ବ ବନର ପବନ ତାକୁ ଧୂଆଁ ନ ଥିବା ନିଆଁ ଶିଖାର ଝାସଠାରୁ ବେଶୀ ତୀବ୍ର ବୋଧ ହେଉଅଛି । କିନ୍ତୁ ହେ ରକ୍ତାଧାରା ସଖି, ତୁ ଯେବେ ତା ପ୍ରତି ଅନୁରକ୍ତ ହେଉ, ତେବେ ତୁ ନିନ୍ଦାର ସ୍ଥାନ ହେବୁ ଅର୍ଥାତ୍ ସମସ୍ତେ ତୋତେ ନିନ୍ଦା କରିବେ ଏବଂ ଚନ୍ଦ୍ରକିରଣର ବିନ୍ଦୁ ମଧ୍ୟ ତୋ ପକ୍ଷରେ ପ୍ରଳୟ କାଳର ଖରାପରି ଅସହ୍ୟ ହେବ । ୪ । ଯେତେବେଳେ ତାର ବୟସ ୯ ବର୍ଷରୁ ଅଳ୍ପ ଥିଲା, ସେତେବେଳେ ସେ ପରା ନଖଅଗରେ ଗୋବର୍ଦ୍ଧନ ପର୍ବତକୁ ଟେକି ଧରିଥିଲା, ଏ କଥା ସମସ୍ତଙ୍କୁ ଜଣାଅଛି, ଏପରି ଅବସ୍ଥାରେ ହେ ସିଂହକଟି (ଅତଏବ ଦୁର୍ବଳା) ସଖି, ତୋର ନୂଆ ପଦ୍ମକଢ଼ି ପରି କୁଚ ତାକୁ ଅଣ୍ଟିବ କି ? ଏହା ମନରେ ଗ୍ରହଣ କର । ୬ । ମୁଁ ତୋ କରପଦ୍ମ ଧରି ନିବେଦନ କରୁଅଛି, ହେ ସଖି, ଖାଇବା ପିଇବାରେ ଅରୁଚି ହେଉ ପଛକେ ସେହି ଶ୍ରୀକୃଷ୍ଣ ନୀଳ-ବାହାର ଆଲିଙ୍ଗନରୂପ ହାରରେ ତୁ ଆଉ ଅନୁରକ୍ତ ହୁଅ ନା ଅର୍ଥାତ୍ ଶ୍ରୀକୃଷ୍ଣଙ୍କ

(ନ) ମଦ୍‌ବିଜ୍ଞାପନମାଦରେଣ ମହତା ସ୍ମିତ୍ୱାନଯୁତ୍ କେଶବଃ,
କର୍ଣ୍ଣାଭ୍ୟର୍ଣ୍ଣମପଶ୍ୟମୀଶ୍ୱର ତଥା ଭଙ୍ଗୀସ୍ତଦଙ୍ଗୀକୃତେଃ;
ସତ୍ୟଂ ତାବଦତଂ ତଥାପି ସୁଦୃଶାଂ ଗତ୍ୟନ୍ତରଂ ଚେଦ୍‌ଭୁବି,
ପ୍ରେମା ତତ୍ର ବଟେ ଶିଖଣ୍ଡମୁକୁଟେ ଧ୍ୟେୟୋ ନ ହେୟଃ ପରଂ ।

କୃଷ୍ଣଂ କୃଷ୍ଣବର୍ତ୍ମାନମିବ ଶଲଭରାଜୀରାଶ୍ରିତ୍ୟ ତ୍ୱାଦୃଶାଂ ବାମଭ୍ରୁବାଂ ଚେତୋବୃତ୍ତୟଃ ଶର୍ମେତରୋର୍ମିମନୁଭବନ୍ତି ।

---

ଭୁଜାଲିଙ୍ଗନରୂପ ହାର ତୋ ପକ୍ଷରେ ମଙ୍ଗଳପ୍ରଦ ହେବ ନାହିଁ । ରାଜା ହରିଚନ୍ଦନ ନମସ୍କାର କରୁଅଛୁ । ୭ ।

ଟୀକା—ହେ ଈଶ୍ୱରି, କେଶବଃ ସ୍ମିତ୍ୱା ଈଷଦ୍ଧାସଂ କୃତ୍ୱା ମଦ୍‌ବିଜ୍ଞାପନଂ ମହତା ଆଦରେଣ କର୍ଣ୍ଣାଭ୍ୟର୍ଣ୍ଣଂ ଶ୍ରବଣସମୀପଂ ଅନୟତ୍, ଅତ୍ୟାଦରେଣ ମତ୍ ପ୍ରାର୍ଥନାଂ ଶ୍ରୁତବାନ୍ ଇତ୍ୟର୍ଥଃ, ତଥା ତଦଙ୍ଗୀକୃତେଃ ତସ୍ୟ କୃଷ୍ଣସ୍ୟ ଅଙ୍ଗୀ-କୃତେଃ ଅଙ୍ଗୀକାରସ୍ୟ ଭଙ୍ଗୀଃ ରୀତୀଃ ଅପଶ୍ୟଂ । ଇଦଂ ମଦୁକ୍ତଂ ତାବତ୍ ସର୍ବତୋଭାବେନ ସତ୍ୟଂ ଯଦ୍ୟପି ଇତି ଶେଷଃ, ତଥାପି ଭୁବି ଅସ୍ମିନ୍ ସଂସାରେ ସୁଦୃଶାଂ ତ୍ୱାଦୃଶାଂ ସୁ-ଲୋଚନାନାଂ ନାରୀଣାଂ ଅନ୍ୟା ଗତିଶ୍ଚେତ୍, ତର୍ହି ତସ୍ମିନ୍ ଶିଖଣ୍ଡମୁକୁଟେ ମୟୂରପୁଚ୍ଛମୁକୁଟଧାରିଣି ବଟେ ଧୂର୍ତ୍ତେ ପ୍ରେମା ପ୍ରୀତିଃ ନ ଧ୍ୟେୟଃ ନ ଚିନ୍ତନୀୟଃ, ଅପିତୁ ପରଂ ସର୍ବଥା ହେୟଃ ତ୍ୟାଜ୍ୟ ଇତ୍ୟର୍ଥଃ ।

ଶଲଭରାଜୀଃ ପତଙ୍ଗାବଳୀଃ କୃଷ୍ଣବର୍ତ୍ମାନଂ ଅଗ୍ନିମାଶ୍ରିତ୍ୟ ଯଥା ଶର୍ମେତ-ରୋର୍ମିଂ ଦୁଃଖଜାଳଂ ଅନୁଭବନ୍ତି, ତଥା ତ୍ୱାଦୃଶାଂ ବାମେ ସୁନ୍ଦରେ ଭ୍ରୁବୌ ଯାସାଂ ତାସାଂ ସୁନ୍ଦରୀଣାଂ ଚେତୋବୃତ୍ତିଃ କୃଷ୍ଣଂ ଆଶ୍ରିତ୍ୟ ଦୁଃଖଜାଳଂ ଅନୁଭବନ୍ତି ।

ଅନୁବାଦ—ହେ ଈଶ୍ୱରି, କେଶବ ମୋ ପ୍ରାର୍ଥନାକୁ ହସି ହସି ଅତି ଆଦରରେ ଶୁଣିଲେ ଏବଂ ତାହାର ଅଙ୍ଗୀକାରଭଙ୍ଗୀ ମଧ୍ୟ ପ୍ରତ୍ୟକ୍ଷ କଲି ଏହା ସତ୍ୟ, ତଥାପି ଏ ସଂସାରରେ ସୁନ୍ଦରୀ ନାରୀମାନଙ୍କର ଯେବେ ଅନ୍ୟ ଗତି ଥିବ, ତେବେ ସେମାନେ ସେହି ମୟୂରଚୂଳିଆ ଧୂର୍ତ୍ତଠାରେ ପ୍ରେମକଥା କେବେହେଲେ ମନେ କରିବେ ନାହିଁ, ବରଂ ତାକୁ ହେୟ ଜ୍ଞାନ କରିବେ ।

ଯେପରି ପତଙ୍ଗକୁଳ ଅଗ୍ନିକୁ ଆଶ୍ରୟ କରି ଘୋର ଦୁଃଖ ଅନୁଭବ କରନ୍ତି, ସେହିପରି ତୋ ଭଳି ସୁନ୍ଦରୀ ନାରୀମାନଙ୍କର ଚିତ୍ତବୃତ୍ତି କୃଷ୍ଣଙ୍କୁ ଆଶ୍ରୟ କରି ଘୋର ଦୁଃଖ ଅନୁଭବ କରୁଅଛୁ ।

ଏହା ଶୁଣି ଘୋରସଂଶୟାକୁଳ ହୋଇ ରାଧା ଦୂତୀଙ୍କୁ କହୁଅଛନ୍ତି'—
"ପ୍ରିୟସହି, ପରମାଦ ବଡ଼ ରୁହି ଗୋ" ଇତ୍ୟାଦି ।

# ପ

ରାଗ—ଭୈରବ

ପ୍ରିୟସହି, ପରମାଦ ବଡ଼ ତୁହି ଗୋ,
ପାରୁ କେତେ ଛନ୍ଦେ ମୋହି ଗୋ । ପଦ ।

ପରମପଦରେ ଦେଇ ଜାଣୁ ତୁ ବସାଇ, ପୁଣି ତହୁଁ ଜାଣୁ ତଳାତଳକୁ ଖସାଇ
ପାଶୋରାଇ ମନୁ ନାନା କଦନ ଲସାଇ, ପୀଡ଼ୁ ଅଶ୍ରୁ ବରଷାଇ ଗୋ । ୧ ।
ପ୍ରପଞ୍ଚଯାକରେ ଜଣା ନ ଥାଇ ସଂଶୟ, ପସନ୍ଦ ନୁହଇ ପରପୁରୁଷରେ ସ୍ନେହ,
ପରବଶ ହେବ ଯେବେ ପ୍ରାଣତୁଲେ ଦେହ, ପ୍ରାଣୀ କି କରିବ କହ ଗୋ ।୨।
ପରବଚନ୍ଦ୍ରରୁ ପୂର୍ଣ୍ଣ ପିଇବା ପୀୟୂଷ, ପରିଣତ ସମୟେ ସେ ହେବ ଯେବେ ବିଷ,
ପ୍ରପନ୍ନ ହେବା ଗଙ୍ଗାରେ ଜନ୍ମିଲେ କଲ୍ମଷ, ପ୍ରୟୋଗ କରିବା କିସ ଗୋ ।୩।
ପିଆଇ ଦୂହିଙ୍କି ଥରେ ଦୁହିଙ୍କ ଅଧର, ପଚ୍ଛେ କହ ଆଚରଣ ପୂତନା ବଧର,
ପୀତପଟ୍ଟନଠ ନାଁ ମୋ ଆଗରେ ନ ଧର, ପାଳିଏ ମାନ ଉଦ୍ଧର ଗୋ । ୪ ।
ପୁରନ୍ଦରମଣି ଶ୍ୟାମେ ଅଛୁ ମୋ ତରସ, ପରପରିବାଦମୁଣ୍ଡେ ଚଟାକର ବରଷ,
ପୃଥ୍ୱୀଚକ୍ରବାଳ ପରିବୃଢ଼ ବାଲ୍ମକେଶ, ପ୍ରସରାଇଲେ ଏ ରସ ଗୋ । ୫ ।

---

( ପ ) ପରମାଦ—ପ୍ରମାଦ, ଏଠାରେ ଦୁଃଖଦାୟିନୀ; ପରମପଦ—ସର୍ବୋତ୍କୃଷ୍ଟ ସ୍ଥାନ, ସ୍ୱର୍ଗ; ତଳାତଳ—ପାତାଳ; କଦନ—ଦୁଃଖ, କଷ୍ଟ; ଲସାଇ—ତରଳାଇ, ଏଠାରେ ଦୂର କରି; ପୀଡ଼ୁ—ପୀଡ଼ା ଦେଉ; ପ୍ରପଞ୍ଚ—ସଂସାର; ତୁଲେ—ସହିତ; ପରବଚନ୍ଦ୍ର—ପୂର୍ଣ୍ଣିମାଚନ୍ଦ୍ର; ପରିଣତ ସମୟେ—ପରିପାକବେଳେ; ପ୍ରପନ୍ନ—ଆଶ୍ରିତ, ଯାହାକୁ ଆଶ୍ରୟ କରନ୍ତି ( କର୍ମବାଚ୍ୟରେ କ୍ତ ); କଲ୍ମଷ—ପାପ; ପୀତପଟ୍ଟ—ପୀତବସ୍ତ୍ର ପରିଧାନକାରୀ; ନଠ—ନଷ୍ଟ, ଦୁଷ୍ଟ; ନାଁ—ନାମ; ପାଳିଏ—ଥରେ; ତରସ—ପୂର୍ଣ୍ଣ ଇଚ୍ଛା; ପରପରିବାଦ—ପରନିନ୍ଦା, ଚଟାକର—ମୁଷ୍ଟିବଦ୍ଧ ଅଙ୍ଗୁଳିଗ୍ରନ୍ଥି ଦ୍ୱାରା ଆଘାତ କରିବା, ଠଣା; ପୃଥ୍ୱୀଚକ୍ରବାଳ—ଚକ୍ରବାଳବ୍ୟାପୀ ସମଗ୍ର ଭୂଖଣ୍ଡ; ପରିବୃଢ଼—ପ୍ରଭୁ ( ଅଧିଭୂର୍ନାୟକୋ ନେତା ପ୍ରଭୁଃ ପରିବୃଢୋଽଧିପଃ ଇତ୍ୟମରଃ । )

ହେ ସଖି, ତୁ ବଡ଼ ଦୁଃଖ ଦେଉଛୁ, କେତେ ଛଳରେ ତୁ ମନକୁ ବ୍ୟାକୁଳ କରୁଛୁ । ପଦ । ତୁ କଥା କହୁ ପ୍ରଥମେ ସ୍ୱର୍ଗରେ ବସାଇ ଦେଇ ପରେ ପୁଣି ପାତାଳକୁ ଖସାଇ ପାରୁ, ହୃଦୟରୁ ଦୁଃଖ ଦୂରକରି ଏବଂ ସବୁ ଯନ୍ତ୍ରଣାରୁ ଭୁଲାଇ ପୁଣି କନ୍ଦାଇ କନ୍ଦାଇ ମାରୁଛୁ । ୧ । ପରପୁରୁଷରେ ସ୍ନେହ

(ପ) ମାମଭ୍ରଂଲିହନବ୍ୟଦିବ୍ୟବଡ଼ଭୀନାର୍ଯ୍ୟ ହପର୍ଯ୍ୟଙ୍କିକା—
ସଂବିଷ୍ଟାଂ ପ୍ରବିଧାୟ କ୍ଷିପସି କିଂ ତସ୍ମାଦଧୋଽଧଃ ପୁନଃ ।
ଆର୍ତ୍ତିସ୍ୟାତପିପାସୟାମୃତଝରୀବାର୍ତ୍ତାଂ ନିବେଦ୍ୟ ଶ୍ରୁତୌ,
ଭୂୟଃ ଶମ୍ବୁକଦମ୍ବକେଳିକଠିନାଂ କିଂ ଭାରତୀଂ ଭାଷସେ ।

ଜନ୍ତୋଃ ସନ୍ତତଚନ୍ଦ୍ରାରୁନ୍ତୁଦକୁନ୍ତମୁଖାଗ୍ରଦଳିତହୃଦୟସ୍ୟ ପିପାସାର୍ତ୍ତିସ୍ୟ ବଦନାନ୍ତିକେ ସୁଧାସୁଧାରାଂ ବିନ୍ୟସ୍ୟ ମନ୍ତୁମନ୍ତରେଣ ପୁନରାଚ୍ଛିଦ୍ୟ କୋ ବା ନିମୀଷତି ।

---

ଉଚିତ ନୁହେ, ଏହା ନିଃସନ୍ଦେହଭାବରେ ସାରା ସଂସାରରେ ଜଣା, କିନ୍ତୁ କହ ଦେଖି ଯେବେ ପ୍ରାଣ ସହିତ ଦେହ ପରବଶ ହୁଏ, ତେବେ ପ୍ରାଣୀ କଅଣ କରି ପରେ ? ପୂର୍ଣ୍ଣିମାଚନ୍ଦ୍ରକୁ ଚିପୁଡ଼ି ଯେଉଁ ଅମୃତ ପାନ କରାଯାଏ, ତାହା ଯେବେ ପରିପାକ ହେଲାବେଳେ ବିଷ ହୋଇ ଉଠେ କିମ୍ବା ଯେବେ ଆଶ୍ରୟ କରିଥିବା ଗଙ୍ଗାରେ ସ୍ନାନ କଲେ ପାପ ହୁଏ, ତେବେ କଅଣ କରାଯାଏ । ୩ । ତୁହିଙ୍କି ଥରେ ତୁହିଙ୍କ ଅଧର ପିଆଇ ପରେ ପୂତନାବଧର କଥା କହିବୁ ଅର୍ଥାତ୍ ସେ ଯେ ସ୍ତ୍ରୀହତ୍ୟା କରିଅଛନ୍ତି ସେ କଥା ପରେ ପଛକେ କହିବୁ, ବର୍ତ୍ତମାନ ତୁହିଙ୍କୁ ପରସ୍ପର ମିଳାଇ ଦେ । ତାଙ୍କର 'ପୀତପଟ୍ଟନଟ' ନାମ ଅର୍ଥାତ୍ ହଳଦିଆ ଲୁଗାପିନ୍ଧା ନଟଙ୍କ ଶିରୋମଣି—ଏହା ମୋ ଆଗରେ କହ ନା, ଥରେ ମାତ୍ର ଏ ଦୁଃଖରୁ ପରିତ୍ରାଣ କର । ଇନ୍ଦ୍ରନୀଳମଣିକାନ୍ତିଧାରୀ ଶ୍ୟାମ ଶ୍ରୀକୃଷ୍ଣଙ୍କଠାରେ ମୋର ପୂର୍ଣ୍ଣ ଅଭିଳାଷ ରହିଅଛି, ପରନିନ୍ଦାମୁଣ୍ଡରେ ଟାକର ବର୍ଷା କର ଅର୍ଥାତ୍ ପରନିନ୍ଦା ପ୍ରତି ଆଦୌ ଲକ୍ଷ୍ୟ କର ନା; ଚକ୍ରବାଳବ୍ୟାପୀ ଭୂଖଣ୍ଡର ପ୍ରଭୁ ବାଲ୍ମୀକେଣ ଏ ରସକୁ ପ୍ରସ୍ତୁତ କଲେ । ୫ ।

ଟୀକା—ହେ ସଖି, ମାଂ ଅଭ୍ରଂଲିହାୟାଃ ଆକାଶସ୍ପର୍ଶିନ୍ୟାଃ ନବ୍ୟାୟାଃ ନୂତନାୟାଃ ଦିବ୍ୟବଡ଼ଭ୍ୟାଃ ମନୋହର ଚନ୍ଦ୍ରଶାଳାୟାଃ ହର୍ମ୍ୟ ହପର୍ଯ୍ୟଙ୍କିକାୟାଂ ମଣ୍ଡବାରଣବିଶିଷ୍ଟପଲଙ୍କେ ସଂବିଷ୍ଟାଂ ନିଦ୍ରିତାଂ ବିଧାୟ କୃତ୍ୱା ତସ୍ୟା ଅଧୋଽଧଃ କିଂ କ୍ଷିପସି ସଂପାତୟସି ? ଅତ ପିପାସୟା ଆର୍ତ୍ତିସ୍ୟ ଜନସ୍ୟ ଶ୍ରୁତୌ ଶ୍ରବଣେ ଅମୃତ-ଝରୀବାର୍ତ୍ତାଂ ଅମୃତଧାରାସଂବାଦଂ ନିବେଦ୍ୟ କଥୟିତ୍ୱା ଭୂୟଃ ପୁନଃ ଶମ୍ବୁକଦମ୍ବାନାଂ ବିନ୍ତୁସମୂହାନଂ କେଳିଃ କ୍ରୀଡ଼ା ତଦ୍ୱତ୍ କଠିନାଂ କର୍କଶାଂ ଭାରତୀଂ କିଂ କଥଂ ଭାଷସେ କଥୟସି ।

ସନ୍ତତଚନ୍ଦ୍ରା ଏବ ଅରୁନ୍ତୁଦଃ ଯନ୍ତ୍ରଣାପ୍ରଦଃ କୁନ୍ତଃ ଅସ୍ତ୍ରବିଶେଷଃ ତସ୍ୟ ମୁଖାଗ୍ରେଣ ଦଳିତଂ ହୃଦୟଂ ଯସ୍ୟ ତସ୍ୟ ଜନ୍ତୋ ବଦନାନ୍ତିକେ ମୁଖସମୀପେ ସୁଧାୟାଃ ଅମୃତସ୍ୟ ସୁଧାରାଂ ସୁନ୍ଦରପ୍ରବାହଂ ବିନ୍ୟସ୍ୟ ସଂସ୍ଥାପ୍ୟ ମନ୍ତୁ ଅପରାଧଃ

# ଫ

ରାଗ—ମୁଖରୀ ବା ଚୋଖିପରଜ

ଫାଟି ପଡ଼ିବାର ନିକୁଞ୍ଜସଞ୍ଚାର ଶ୍ରମୁଁ ମୋ ଚରଣତଳ,
ଫଣୀଶ୍ୱରଖୋର ଅଧରକୁ ହେବାର ଏହି ଏକା ଏଥୁ ଫଳ,
ରେ କିଶୋର, ଫିଟିଗଲା ଯେ ସନ୍ଦେହ,
ଫୁଲିଗଲା ଫୁଲିଲାମରସିକା ଜାଣି ପରା ଶ୍ୟାମସ୍ନେହ ରେ । ୧ ।
ଫନ୍ଦାଇ ନାନା ବିନୟେ କହି ଦନ୍ତେ ତୃଣ ଧରିବାର ଗଲା,
ଫଟା କପାଳରେ କୁଟିଳ ହୃଦୟା ବୋଲାଇବା ଲେଖା ଥିଲା,
ରେ କିଶୋର, ଫନ୍ଦାଧନ ତୁ ତ ମୋର,
ଫରିଆଦ କାହିଁ ତୋ ନାମେ କରିବି ନିନ୍ଦାକଲେ, ପଛେ କର ରେ ॥
ଫଲୁଆରେ ପରି ଉରଜରେ ଭରି ରଖି ସେ ନୀଳମଣିକି,
ଫଉଜତୁଲେ କୁଞ୍ଜଦ୍ୱାରେ ରଖାଅ ବେଣୀବଲ୍ଲୀଧାରିଣୀକି,
ରେ କିଶୋର, ଫରମାସ ମନେ ମନେ,
ଫେଇଦିଅ ତୁ ମୋ ଆବୁର ମୁଁ ଯେବେ ଯିବି ସେ ଦିଗକୁ ଦିନେ ରେ ॥

---

ତମନ୍ତ୍ରରେଣ ବିନାପରାଧମିତ୍ୟର୍ଥଃ କୋ ବା ଜନଃ ତାଂ ସୁଧାଧାରାଂ ପୁନଃ ଆଚ୍ଛିଦ୍ୟ ଆକ୍ଷିପ୍ୟ ନିନୀଷତି ନେତୁମିଚ୍ଛତି ? ନ କୋଽପି ଇତ୍ୟର୍ଥଃ ।

ଅନୁବାଦ—ହେ ସଖି, ମୋତେ ଆକାଶସ୍ପର୍ଶୀ ନୂତନ ସମୁଚ୍ଚ ସୁନ୍ଦର ଚନ୍ଦ୍ରଶାଳା ଉପରସ୍ଥ ବାଢ଼ି ଥିବା ପଲଙ୍କରେ ଶୁଆଇ ଦେଇ କାହିଁକି ପୁଣି ତହିଁରୁ ତଳକୁ ଖସାଇ ପକାଇ ଦେଉଅଛୁ ? ଯେଉଁ ଲୋକ ଶୋଷରେ ଅତି ବିକଳ ହେଉଅଛି ତା କାନପାଖରେ ଅମୃତଧାରା ମିଳିବାର ସମ୍ବାଦ ଦେଇ ପୁଣି କପଟ ବଜ୍ରପରି କର୍କଶ କଥାମୁଢ଼ାଏ କହୁଅଛୁ ।

ନିତ୍ୟଚନ୍ଦ୍ରରୂପ କୃତ୍ତାନ୍ତର ମୁଖଦ୍ୱାରା ବିଦ୍ଧ ହୋଇ ଯାହାର ହୃଦୟ କଷ୍ଟ ପାଉଅଛି ସେଭଳି ଜୀବର ମୁଖ ପାଖରେ ଅମୃତଧାରା ଢାଳି ବିନା ଦୋଷରେ ପୁଣି ତାକୁ ତ ଆଗରୁ କାଢ଼ି ନେବାକୁ କେଉଁ ଲୋକ ଇଚ୍ଛା କରେ ?

ଏହା ଶୁଣି ଲଳିତା କହିଲେ,—"ଫାଟି ପଡ଼ିବାର ନିକୁଞ୍ଜସଞ୍ଚାର ଶ୍ରମ" ଇତ୍ୟାଦି ।

---

ଫଜିତ ହୋଇ ଦୂରରେ ଥିଲେ ତୋତେ ଭଜିତ ଥିବାର ସତ,
ଫେଡ଼ନ୍ତୁ ତୋ କଷ୍ଟ ସୁଖ ଦେଇ ଅଷ୍ଟଶ୍ରୁତି ଏ ଆମ୍ଭ ବାଞ୍ଛିତ,
ରେ କିଶୋର, ଫୁରୁଣା ହୋଇ ତୁ ରସ,
ଫେରିଆସି ମାନ ଆମ୍ଭ ଆଗେ ନେତ୍ରକଞ୍ଜୁ ନୀର ନ ବରଷ ରେ । ୪ ।
ଫୋଟକା ହେଉଛି ସିଞ୍ଚିବା କର୍ପୂରଚନ୍ଦନମିଶ୍ରିତ ବାରି, *
ଫୁଙ୍କିଦେଲେ ଉଡ଼ିଯିବା ପରି ସଢ଼ି ଅଛନ୍ତି ତନୁ ବଲ୍ଲରୀ,
ରେ କିଶୋର, ଫୁକାରି ନୋହୁ ଜଗତେ,
ଫତୁଆ ନୁହଇଁ ବୋଲେ ଜଗଦ୍ଦେବ ହରିଚନ୍ଦନ ଏ ଗୀତେ । ୫ ।

---

(ଫ) ନିକୁଞ୍ଜସଞ୍ଚାରଶ୍ରମୁ—କୁଞ୍ଜବନକୁ ଯିବା ଆସିବା ପରିଶ୍ରମରୁ, ଚରଣତଳ—ତଳିପା, ଫତୁରିଖୋର—ମିଥ୍ୟାଭାଷିଣୀ, ଆଖରକୁ—ଶେଷକୁ, ଫଲ-ଲଲମରସିକା—ପୁଷ୍ପଭୂଷଣପ୍ରିୟା, ଫନ୍ଦାଇ—ଭୁଲାଇ, ଫନ୍ଦାଧନ—ଉପାର୍ଜନର ଆଶ୍ରୟ, ଫରିଆଦ—ଅଭିଯୋଗ, ନାଲିଶ; ଉରୋଜ—କୁଚ, ଫଉଜ—ସୈନ୍ୟ, ବେତ୍ରବଲ୍ଲୀଧାରିଣୀ—ବେତ ଧରିଥିବା ପ୍ରତିହାରୀ ବା ଦ୍ୱାରପାଳିକା, ଫରମାସ—ବରାଦ କର, ଆଦେଶ କର; ଫେଇଦିଅ—ସାରିଦିଅ ବା ଖୋଲିଦିଅ, ଫଜିତ—ଅପମାନିତ, ଅଷ୍ଟଶ୍ରୁତି—ବ୍ରହ୍ମା, ପ୍ରଜାପତି ( ସ୍ତ୍ରୀ ପୁରୁଷଙ୍କର ମିଳନବିଧାୟକ ଦେବତା ) ଫୁରୁଣା—ପୂର୍ଣ୍ଣମନୋରଥ, ନେତ୍ରକଞ୍ଜୁ—ଚକ୍ଷୁରୂପ ପଦ୍ମରୁ, ସଢ଼ିଅଛୁ—ଦୁଃଖରେ ଶୀର୍ଣ୍ଣ ହୋଇଅଛି, ତନୁବଲ୍ଲରୀ—ଶରୀରରୂପ ଲତା, ଫୁକାରି—ପ୍ରଗଲ୍ଭ, ଫତୁଆ—ଅକୃତକାର୍ଯ୍ୟ ।

ହେ କିଶୋର, ତୋ ପାଇଁ ନିକୁଞ୍ଜକୁ ଯିବା ଆସିବା କରିବା ପରିଶ୍ରମରୁ ମୋ ତଳିପା ଫାଟି ଗଲାଣି, ଶେଷରେ ମୁଁ ମିଛୁଆ ବୋଲି ଅପବାଦ ପାଇଲି, ଏହାହିଁ ତାହାର ଶେଷ ଫଳ ହେଲା । ହେ ପୁଷ୍ପଭୂଷଣପ୍ରିୟେ, ଏବେ ସନ୍ଦେହ ଦୂର ହୋଇଯିବାରୁ ତୁ ଶ୍ୟାମସ୍ନେହ ଜାଣି ପାରି ଫୁଲିଗଲୁ ପରା ! ( ଅର୍ଥାତ୍ ତୋ ମନ କୁଣ୍ଠେ ମୋଟ ହୋଇଗଲା ପରା ) । ମୁଁ ନାନା ବିନୟରେ କୃଷ୍ଣଙ୍କୁ ଭୁଲାଇଲି ଏବଂ ଶେଷରେ ଦାନ୍ତରେ କୁଟା ପର୍ଯ୍ୟନ୍ତ କାମୁଡ଼ିଲି, ଏ ସବୁ କୁଆଡ଼େ ଗଲା, ଫଳରେ କୁଟିଳ ହୃଦୟା ବୋଲି ମୋ ଫଟା କପାଳରେ ଅପବାଦ ବି ଥିଲା । ହେଉ, ମୁଁ ଆଉ କାହା ଆଗରେ ନାଲିଶ କରିବି ? ତୁ ତ ମୋର ଜୀବିକା ନିର୍ବାହର ଆଶ୍ରୟ, ନିନ୍ଦା କରିବୁ ପଛକେ କର । ୨ । ତୁ ଏବେ ସେ ( ଶ୍ରୀକୃଷ୍ଣରୂପ ) ନୀଳମଣିକି ଫତୁଆରେ ରଖିଲା ପରି କୁଚ ମଧ୍ୟରେ ପୁରାଇ ରଖ ଏବଂ ପଳାଇ ନ ଯିବାପାଇଁ କୁଞ୍ଜ ଦ୍ୱାରରେ ବେତ ଧରିଥିବା ପ୍ରତିହାରୀମାନଙ୍କୁ ସୈନ୍ୟମାନଙ୍କ

---

* ପାଠାନ୍ତର—ଫୋଟକା ହେଉଛି ଶ୍ରୀଅଙ୍ଗେ ସିଞ୍ଚିଲେ କର୍ପୂରଚନ୍ଦନ ବାରି ।

(ଫ) ଆକୁଞ୍ଜଂ ଭଗନାଦ୍ୱନବାଦପି ତବାପ୍ରୋଦ୍ଧୁଙ୍ଗ ସୌଧୋଦରଂ,
ଯାତାୟାତ ପଦାନ୍ତପାତଜଫଳଂ ଲବ୍ଧଂ ମୟେତଃ ପରଂ ।
ଅନ୍ୟାପେକ୍ଷିତଶୂନ୍ୟମୀଶ୍ୱର ଯୁବାମନୋ୍ୟାନ୍ୟଦୌତ୍ୟେନ ତତ୍,
ସୌଭାଗ୍ୟଂ ବ୍ରତତଂ ମୁଦାନୁଭବତଂ ନାୟାମି ମାୟାବନୀ ।
ହାହା ଚନ୍ଦ୍ରକଚୂଡ଼ାନନ୍ଦନଚରିତେ, ମାମପ୍ରତ୍ୟୟଦୂତ୍ୟବର୍ଣ୍ଣିଷ୍ଠଂ ନ
ନିବଦ୍ଧତ୍ୟ ପ୍ରତ୍ୟହଂ ପ୍ରତ୍ୟୂହପ୍ରତହନ୍ୟମାନମନୋରଥମଞ୍ଜରୀଫଳଲାଭାସି ।

---

ପର କଗାଅ । ଏ ସବୁ ମନେ ମନେ ବିଗ୍ରବ କର ଏବଂ ମୁଁ ଯେବେ ଆଉ ବନେ ସିଆଡେ ଯିବ, ତେବେ ତୁ ମୋର ମହତ୍ତ୍ୱ ସାର ଦେ । ୩ । ଆମ୍ଭେମାନେ ଅପମାନିତ ହୋଇ ଦୂରରେ ଥିଲେହେଁ ତୋତେ ନଷ୍ଟେ ଆଗ୍ରା କରିଥିବୁ, ଆମ୍ଭର ବାଞ୍ଛା ଯେ, ପ୍ରଜାପତି ତୋର ଏ କଷ୍ଟ ଦୂର କରନ୍ତୁ ଅର୍ଥାତ୍ ପ୍ରଜାପତିଙ୍କ ଦୟାରୁ ତୁମ୍ଭ ଦୁହିଙ୍କର ଶୁଭ ମିଳନ ହେଉ ଏବଂ ତୁ ଇଚ୍ଛାନୁରୂପ ରସରେ ମତ୍ତ ହୁଅ । କିନ୍ତୁ ଦେଖ୍, ସେଠାରୁ ଫେରିଆସି ଯେପରି ଆମ୍ଭ ଆଗରେ ଆଖିରୁ ଲୁହ ନ ବୁହାଅ । ୪ । ବର୍ତ୍ତମାନ ତୋ ଦେହରେ କର୍ପୂର ଓ ଚନ୍ଦନ ମିଶା ଶୀତଳ ଜଳ ସିଞ୍ଚିଲେ ଫୋଟକା ହୋଇ ଯାଉଅଛୁ, ତୋ ଦେହଲତା ଏପରି ଶୁଖି ଯାଇଛୁ ଯେ, ଫୁଙ୍କିଦେଲେ ଉଡ଼ିଯିବ; ହେ କିଶୋର, ଏକଥା ଆଉ ଜଗତରେ ପ୍ରସିଦ୍ଧ ନ ହେଉ, କିମ୍ବା ତୁ ଜଗତରେ ଅକୃତକାର୍ଯ୍ୟ ହୁଅ ନା । ଜଗଦ୍ଦେବ ହରିଚନ୍ଦନ ଏ ଗୀତରେ କହିଲେ । ୫ ।

ଟୀକା—ଯଦ୍ୟହଂ ତବାଭିଳାଷପୂର୍ତ୍ତୌ ବ୍ୟାଘାତକାରିଣୀ ତର୍ହି ଦୂରଂ ଗଚ୍ଛାମୀତ୍ୟପେକ୍ଷାୟାମାହ ଆକୁଞ୍ଜମିତଃ—ହେ ଈଶ୍ୱରି, ତବ ଭବନାତ୍ ଆକୁଞ୍ଜଂ କୁଞ୍ଜପର୍ଯ୍ୟନ୍ତଂ ଅପି ପୁନଃ ବନାତ୍ କୁଞ୍ଜଶୋଭିତବନଭାଗାତ୍ ଇତ୍ୟର୍ଥଃ ଆପ୍ରୋଦ୍ଧୁଙ୍ଗ ସୌଧୋଦରଂ ତବୋନ୍ନତପ୍ରାସାଦମଧ୍ୟପର୍ଯ୍ୟନ୍ତଂ ଯାତାୟାତପଦାନ୍ତପାତଜଫଳଂ ଗମନେ ଆଗମନେ ଯଃ ପଦାନ୍ତପାତଃ ପଦପ୍ରାନ୍ତପତନଂ ତଜ୍ଜନିତଂ ଫଳଂ ମୟା ଲବ୍ଧଂ । ଇତଃ ପରଂ ଯୁବାଂ ଭବନ୍ତୌ ଅନ୍ୟାପେକ୍ଷିତଶୂନ୍ୟଂ ନିରପେକ୍ଷଂ ଯଥା ସ୍ୟାତ୍ ତଥା ଅନ୍ୟୋଽନ୍ୟଦୌତ୍ୟେନ ପରସ୍ପରଦୂତତ୍ୱାଚରଣେନ ଚିରାଭିଳଷିତଂ ସୁଚିରମନୋରଥବିଷୟୀଭୂତଂ ବ୍ରତତଂ ବିସ୍ତୃତଂ ତତ୍ ସୌଭାଗ୍ୟଂ ଦାମ୍ପତ୍ୟଂ ମୁଦା ସାନନ୍ଦଂ ଅନୁଭବତଂ ମାୟାବନୀ କପଟିନୀ ଅହଂ ନ ଆୟାମି ନାଗଚ୍ଛାମି ।

ହା ହା ଇତି ଖେଦେ, ହେ ଚନ୍ଦ୍ରକଚୂଡ଼ଂ ଶ୍ରୀକୃଷ୍ଣଂ ଆନନ୍ଦୟତୀତି ତାଦୃଶଂ ଚରିତଂ ଆଚରଣଂ ଯସ୍ୟାଃ ତତ୍ ସମ୍ବୁଦ୍ଧୌ ମାଂ ଅପ୍ରତ୍ୟୟଦୂତ୍ୟବର୍ଣ୍ଣିଷ୍ଠାଂ ଦୌତ୍ୟକର୍ମଣି ଅବିଶ୍ୱାସିନୀଂ ନ ନିବଦ୍ଧତ୍ୟ ନ ଦୂରୀକୃତ୍ୟ ତଦ ନ ପ୍ରେଷ୍ୟ ଇତ୍ୟର୍ଥ ପ୍ରତ୍ୟହଂ ଅହନ୍ୟହନି ପ୍ରତ୍ୟୂହେନ ବିଘ୍ନେନ ପ୍ରତିହନ୍ୟମାନଃ ବାଧିତଃ ମନୋରଥ-ମଞ୍ଜର୍ଯ୍ୟାଃ ଅଭିଳାଷପରମ୍ପରାୟାଃ ଫଳଲାଭୋ ଯସ୍ୟାଃ ତଥୋକ୍ତାସି ।



ରାଗ—ସାବେରୀ

ବିଚକ୍ଷଣୀ ରେ, ବିନା ତୋ ପ୍ରୀତି କେ ଗତି ଅଛି ଜଗତୀରେ । ପଦ ।
ବୋଲି ଦେଲି ସିନା ଗେଲେ ହସି, ବିଶ୍ୱେ ତୋ ସମ କାହିଁ ବିଶ୍ୱାସୀ,
ବାନ୍ଧିବାକୁ ମୋ ମନ ତୁ ପାଶି,
ବିଶେଷରେ ମୋ ହୃଦନ୍ତର ତୋତେ ଜଣା ରେ । ୧ ।
ବିଶ୍ୱମ୍ଭରାରଜଖେଳକାଳୁଁ, ବହିଃ-ପ୍ରାଣ ପରି ପରିପାଳୁ
ବିଧିବଶୁ ନିସର୍ଗକୃପାଳୁ,
ବୃଜେ ହୋଇଅଛୁ ଏହି ଭଗ୍ନିମ ବାଜଣୀ ରେ । ୨ ।
ବିକେ କଣେ ଯେ ଯାହାକୁ ସ୍ନେହେ, ବଡ଼ ତାଠାରୁ ଜୀବନ ନୋହେ,
ବଳ ତାହାଠାରେ ସିନା ସହେ,
ବହିରଙ୍ଗେ ବୁଲୁଛନ୍ତି ଦେଖି ଅଗଣୀ ରେ । ୩ ।
ବୋଲେ ଅଷ୍ଟାଦୁର୍ଗର ମଘବା, ବଲ୍ଲୀନିକଟକୁ ଚାଲି ଯିବା,
ବଂଶୀଗୀତ ପୀୟୂଷ ପିଇବା,
ବିଭବରି ନ ପାହୁଁ ଆସିବା ଅଜଣାରେ । ୪ ।

---

ଅନୁବାଦ—ହେ ଈଶ୍ୱର, ମୁଁ ତୁମ ଘରୁ କୁଞ୍ଜ ପର୍ଯ୍ୟନ୍ତ ଏବଂ କୁଞ୍ଜବନରୁ ତୁମ ଘର ପର୍ଯ୍ୟନ୍ତ ଯିବା ଆସିବା କରିବାରେ ଯେଉଁ ପାଦଶ୍ରମ କରିଥିଲି, ତାହାର ଫଳ ପାଇଲଣି, ଏହା ପରେ ତୁମେ ଦୁହେଁ ଅନ୍ୟକୁ ଅପେକ୍ଷା କରି ନିଜେ ନିଜର ଦୂତ ହୋଇ ସ୍ୱ ସ୍ୱ ସୌଭାଗ୍ୟସୁଖ ଅନୁଭବ କର, ମୁଁ ମାଯ୍ୟାବିନୀ ଆଉ ଆସିବି ନାହିଁ ।

କି ଦୁଃଖର କଥା । ହେ କୃଷ୍ଣପ୍ରମୋଦନ, ଅବିଶ୍ୱାସିନୀ ମୋତେ ଦୂତୀ କରିବାରୁ ତୁମ୍ଭେ ପ୍ରତିଦିନ ବିଫଳମନୋରଥ ହେଉଅଛ ସିନା ।

ଏହା ଶୁଣି ରାଧା ଉତ୍ତରରେ କହୁଅଛନ୍ତି—"ବିଚକ୍ଷଣୀ ରେ" ଇତ୍ୟାଦି ।

---

(ବି) ବିଚକ୍ଷଣୀ—ହେ ବୁଦ୍ଧିମତି, ଜଗତୀରେ—ସଂସାରରେ, ପାଶି—ଫାଶ, ବିଶ୍ୱମ୍ଭରାରଜଖେଳାକାଳୁଁ—ପୃଥିବୀରେ ଧୂଳି ଖେଳିବା ସମୟରୁ ଅର୍ଥାତ୍ ପିଲାଦିନୁଁ, ବହିଃପ୍ରାଣ—ତୋ ନିଜ ଜୀବନ ଯାହା କି ତୋ ଭିତରେ ନ ଥାଇ ବାହାରେ ଅଛି, ବହିରଙ୍ଗେ—ଯେଉଁମାନେ ଅନ୍ତରଙ୍ଗ ବା ଆତ୍ମୀୟ ନୁହନ୍ତି ସେମାନେ, ଅଗଣୀ—ଅସଂଖ୍ୟ, ବଲ୍ଲୀ—ଲତା, ବିଭବରି ନ ପାହୁ—ରାତି ନ ପାହୁଣୁ, ମଘବା—ଇନ୍ଦ୍ର, ରାଜା ।

(ବ) କୌତୁକାଲ୍ଲପିତମୀଷଦତଥ୍ୟଂ କୌ ତୁ କା ହୃଦି ଦଧାତି ବୟସ୍ୟା,
ପିଷ୍ଟପେ ମମ ଯଥା ତ୍ୱମହେସ୍ୟା, ପିଷ୍ଟପେଷଣଭୟାନ୍ନ ବଦାମି ।

ରସିକାଂ ପ୍ରାଣାଧିକାଂ ତ୍ୱାଂ ବିନାନ୍ୟ ନଗର୍ଯ୍ୟାଂ ମଦୁକ୍ତନୈଷ୍ଠୁର୍ଯ୍ୟନିଦାନପର୍ଯ୍ୟାଲୋଚନଗୃତ୍ନୁର୍ଯ୍ୟଧୂର୍ଯ୍ୟା କା ବାନ୍ୟାଭୀରକନ୍ୟାସ୍ତୀତି ଧୈର୍ଯ୍ୟମବଲମ୍ବ୍ୟ ଯଦୂକ୍ତମନୁଚିତଂ ତଦ୍ବିସୃଜ୍ୟାଗଚ୍ଛାବାଂ ଗତ୍ୱା କୁସୁମଚନ୍ଦ୍ରିଲ୍ଲୀୟ ଯୌବତଜୀବନାନ୍ତର୍ଗୀତନାଯତମାନକଟାକ୍ଷଲୀଲସ୍ୟାପି ତସ୍ୟାଖଣ୍ଡଶିଖଣ୍ଡମଣ୍ଡିତଶେଖରସ୍ୟ ଭ୍ରମଣରମଣୀୟାୟା ଭୁବଃ ସୁଷମାମବଲୋକୟିଷ୍ୟାବ ଇତି ବିଡମ୍ବିତସୂନକଲମ୍ବବିଜୟଡଣ୍ଡିମାଡମ୍ବରାବଲମ୍ବିଚରଣମଣ୍ଡନଂ ନିଃସୃତ୍ୟ କଦମ୍ବକୁଞ୍ଜକାନନାନ୍ତର୍ବିବିଶତୁଃ ।

---

ହେ ବୁଦ୍ଧିମତି, ତୋ ସ୍ନେହ ଛଡ଼ା ଏ ସଂସାରରେ ମୋର ଆଉ କିଏ ଗତି ଅଛି ? ପଦ । ମୁଁ ସିନା ଗେଲରେ ହସି କହିଦେଲି, ପ୍ରକୃତରେ ଏ ବିଶ୍ୱରେ ତୋ ପରି ବିଶ୍ୱାସୀ କାହିଁ ? ଅର୍ଥାତ୍ କେହି ନାହିଁ । ମୋ ମନକୁ ବାନ୍ଧିବାରେ ତୁ ଫାଶ ପରି ଅଟୁ ଅର୍ଥାତ୍ ସୁକୌଶଳରେ ମୋ ମନକୁ ତୁ ବାନ୍ଧି ରଖିଅଛୁ, ବିଶେଷତଃ ମୋ ହୃଦୟର ଅଭ୍ୟନ୍ତର କଥା ତୋତେ ଜଣା ଅଛି । ୧ । ପୃଥିବୀ ଉପରେ ଧୂଳିଖେଳି ଖେଳିବା ଦିନରୁ ଅର୍ଥାତ୍ ପିଲାଦିନରୁ ତୁ ମୋତେ ବହିଃପ୍ରାଣ ପରି ପାଳି ଆସୁଅଛୁ ଅର୍ଥାତ୍ ତୋର ନିଜର ଜୀବନ ତୋ ଦେହଭିତରେ ଅଛି, ମୁଁ ତୋର ବାହାରେ ଥିବା ପ୍ରାଣ ସଦୃଶ ଅଟେ । ଆଉ ମଧ୍ୟ ବିଧାତାଙ୍କ ଦୟାରୁ ତୁହି ସ୍ୱଭାବତଃ ଦୟାଶୀଳା—ଗୋପନଗରରେ ଏହି ଡିଣ୍ଡିମ ( ନାଗରା ) ବାଜୁଅଛି ଅର୍ଥାତ୍ ତୁ ଅତି ଦୟାଳୁ ବୋଲି ଗୋପପୁରରେ ସମସ୍ତେ ଜାଣନ୍ତି । ୨ । ଯେ ଯାହାକୁ ସ୍ନେହରେ ବିକେ ଓ କିଣେ ଅର୍ଥାତ୍ ସ୍ନେହାଧୀନ କରି ରଖେ, ତା ଠାରୁ ଜୀବନ ଅଧିକ ନୁହେଁ, ପ୍ରକୃତରେ ସେହି ଲୋକଠାରେ ସିନା ସ୍ନେହ ଥାଏ; ଦେଖ, ଯେଉଁମାନେ ପ୍ରକୃତ ଆତ୍ମୀୟ ନୁହନ୍ତି, ସେପରି ଅସଂଖ୍ୟ ଲୋକ ବୁଲୁଅଛନ୍ତି । ୩ । ହେ ସଖି, ଚାଲ ଲତା ନିକଟକୁ ଯିବା, ବଂଶୀଗୀତରୂପ ଅମୃତକୁ ପିଇବା ଏବଂ ରାତି ନ ପାହୁଣୁ ଲୋକଙ୍କ ଅଜ୍ଞାତସାରରେ ଚାଲି ଆସିବା । ଆଠଗଡ଼ର ରାଜା ଏହା ରଚନା କଲେ । ୪ ।

ଟୀକା—ତ୍ୱଂ ମେ ଦ୍ୱିତୀୟଜୀବନଂ, ତସ୍ମାତ୍ କ୍ଷମସ୍ୱେତ୍ୟାହ କୌତୁକେତି । କୌ ପୃଥିବ୍ୟା ( ଗୋତ୍ରା କୁଃ ପୃଥିବୀ ପୃଥ୍ୱୀ କ୍ଷ୍ମାବନିର୍ମେଦିନୀ ମହୀ ଇତ୍ୟମରଃ ) ତୁ କା ବୟସ୍ୟା ସଖୀ କୌତୁକାତ୍ ପରିହାସାତ୍ ଲପିତଂ କଥିତଂ ଈଷତ୍ କିଞ୍ଚିତ୍ ଅତଥ୍ୟଂ ଅସତ୍ୟଂ ହୃଦି ହୃଦୟେ ଦଧାତି ? ଇହ ନ କାପି ସଖୀ ଈଷଦତଥ୍ୟଂ

କୌତୁକବିକ୍ଷଣଂ ସତ୍ୟମବଧାରୟତ୍ବିତ୍ୟର୍ଥଃ । ପିଷ୍ଟପେଷେ ଭୂବି ତ୍ୱଂ ଯଥା ମମ ଅହେସ୍ତ୍ୱା ଅତ୍ୟାଜ୍ୟାପି ପିଷ୍ଟପେଷଣଭୟାତ୍ ପୁନରୁକ୍ତଭୟାତ୍ ତତ୍ ନ ବଦାମି, ନ କଥୟାମି ।

ରସିକାଂ ପ୍ରାଣାଧିକାଂ ତ୍ୱାଂ ବିନା ଅନ୍ୟା କା ଆଭୀରକନ୍ୟା ଗୋପବାଲା ଅସିନଗର୍ଯ୍ୟାଂ ଗୋପପୁରେ, ମଦୁକ୍ତେ ନୈଷ୍ଠୁର୍ଯ୍ୟଂ ତସ୍ୟ ନିଦାନସ୍ୟ କାରଣସ୍ୟ ପର୍ଯ୍ୟାଲୋଚନାୟାଃ ସମ୍ୟକ୍ ଆଲୋଚନାୟାଃ ଗୃତ୍ରୁର୍ଯ୍ୟେ ଧୂର୍ଯ୍ୟା ନିପୁଣା ଅସ୍ତି ? ନାସ୍ତି ଇତ୍ୟର୍ଥଃ, ଇତି ହେତୋଃ ଧୈର୍ଯ୍ୟଂ ଅବଲମ୍ବ୍ୟ ମୟା ଯତ୍ ଅନୁଚିତଂ ଉକ୍ତଂ ତତ୍ ବିସ୍ମୃତ୍ୟ ଆଗଚ୍ଛ, ଆବାଂ ଗତ୍ୱା କୁତ୍ରଚିତ୍ ଲତାନ୍ତରାଲେ ନିଳୀୟ ରହସି ସ୍ଥିତ୍ୱା ଯୌବତସ୍ୟ ଯୁବତିସମୂହସ୍ୟ ଜୀବନାନ୍ତର୍ଯାତନାୟାଂ ପ୍ରାଣବିନାଶନବେଦନାପ୍ରଦାନେ ଯତମାନା ଉଦ୍‌ମୁକ୍ତା କଟାକ୍ଷଲୀଳା ଯସ୍ୟ, ତସ୍ୟ ଅଖଣ୍ଡେନ ଶିଖଣ୍ଡେନ ମୟୂରପୁଚ୍ଛେନ ମଣ୍ଡିତଃ ଶେଖରଃ ଶିରୋଭୂଷଣଂ ଯସ୍ୟ ଏବଂଭୂତସ୍ୟାପି ଶ୍ରୀକୃଷ୍ଣସ୍ୟ ଭ୍ରମଣରମଣୀୟସ୍ୟାଃ ସଗ୍ୟରମନୋରମାୟାଃ ଭୁବଃ ଭୂଖଣ୍ଡସ୍ୟ ସୁଷମାଂ ଶୋଭାଂ ଅବଲୋକୟିଷ୍ୟାବଃ ଅନ୍ୟୋଽନ୍ୟଂ ଦର୍ଶୟିଷ୍ୟାବଃ ଇତି ନିଶ୍ଚିତ୍ୟ ତେ ଦ୍ୱେ ବିଜୃମ୍ଭିତଃ ଅନୁକୃତଃ ସୂନକଲମ୍ବସ୍ୟ ପୁଷ୍ପଧନ୍ୱନଃ କନ୍ଦର୍ପସ୍ୟ ଯଃ ବିଜୟଡ଼ିଣ୍ଡିମଃ ଜୟଢକ୍‌କା ତସ୍ୟ ଆଡ଼ମ୍ବରଂ ଅବଲମ୍ବତେ ଇତି କନ୍ଦର୍ପଜୟଡ଼ିଣ୍ଡିମାନୁକାରି ଚରଣମଣ୍ଡନଂ ନୂପୁରଂ ନିଃସୃତ୍ୟ ଚରଣାଭ୍ୟାଂ ନିଃସାର୍ଯ୍ୟ ଅଭିସାରିକାଭାବାତ୍, କଦମ୍ବକୁଞ୍ଜକାନନାନ୍ତ କଦମ୍ବକୁଞ୍ଜ-କାନନାଭ୍ୟନ୍ତରଂ ବିବଶତୁଃ ପ୍ରବିଷ୍ଟେ ।

ଅନୁବାଦ—ଅୟି ସଖି, ପରିହାସରେ କହିବା ସାମାନ୍ୟ ଅତଥ୍ୟ କଥାକୁ ଏ ପୃଥିବୀରେ କେଉଁ ସଖୀ ହୃଦୟରେ ଧରି ରଖେ ? ସଂସାରରେ ତୁ ମୋର କପଟ ଦୂଶ୍ଛେଦ୍ୟ ବନ୍ଧୁ, ସମସ୍ତେ ଜାଣନ୍ତି; କଥାରେ କହିଲେ ପିଷ୍ଟପେଷଣ ବା ପୁନରୁକ୍ତ ହେବ ସିନା !

ତୋ ପରି ରସିକା ପ୍ରାଣବନ୍ଧୁ ଛଡ଼ା ଏ ଗୋପପୁରରେ ଏପରି କୌଣସି ନିପୁଣା ଗୋପକନ୍ୟା ଅଛି, ଯେ କି ମୋ କଥାରେ ନିଷ୍ଠୁରତା ଆଲୋଚନା କରି ପାରିବ ? ସଖି ଟିକିଏ ଧୈର୍ଯ୍ୟ ଧର, ଯେବେ କିଛି ଅନୁଚିତ କଥା କହିଅଛି ତେବେ ତାହା ଭୁଲିଯାଇ ଆ ସିବା; ଲତା ଆଡୁଆଳରେ ଲୁଚି ରହି ଯେଉଁ ସ୍ଥାନରେ ସେ ଯୁବତୀଜନଙ୍କର ଜୀବନବିନାଶ କରିବାପାଇଁ କଟାକ୍ଷଲୀଳା ବିସ୍ତାର କରୁଅଛନ୍ତି ଏବଂ ତାଙ୍କର ଭ୍ରମଣ ବିଳାସରେ ଯେଉଁ ସ୍ଥାନ ରମଣୀୟ, ସେହି ଅରଣ୍ୟଖଣ୍ଡର ଶୋଭା ପରସ୍ପରକୁ ଦେଖାଇବା । ଏହା ନିଶ୍ଚୟ କରିବା ପରେ ରାଧା କନ୍ଦର୍ପର ବିଜୟଡ଼ିଣ୍ଡିମ ଶବ୍ଦକୁ ଅନୁକରଣ କରୁଥିବା ନୂପୁର ଯୁଗଳକୁ ଚରଣରୁ ବାହାରକରି କଦମ୍ବକୁଞ୍ଜ-କାନନ ମଧ୍ୟକୁ ଲଳିତାଙ୍କ ସଙ୍ଗେ ପ୍ରବେଶ କଲେ ।

ଲଳିତା ଲତା ଆଡ଼ୁଆଳରେ ରହି ଶ୍ରୀକୃଷ୍ଣଙ୍କର ଶୋଭା ରାଧିକାକୁ ଦେଖାଇ କହୁଅଛନ୍ତି,—"ଭଙ୍ଗୀ ଗୁହାଁ" ଇତ୍ୟାଦି ।

---



ରାଗ—କେଦାରଗୌଡ଼ା

ଭଙ୍ଗୀ ଗୁହାଁ, ଭ୍ରୂନୀଳଭୁଜଙ୍ଗୀ-ଭ୍ରମର, ଜୀବସଙ୍ଗି । ପଦ ।
ଭାଗ୍ୟ ଏ ଜନଅଖି, ଜନନରହିଁ ସଖି, ଜାଣ ରେ,
ଭରମି ନ ଯା ତୁ ମନ୍ମଥ ବାଣରେ,
ଭୁଜପାଶିକୁ ଛନ୍ଦ ମୋ ଗଳେ, ଭଡ଼େ ପଦକଞ୍ଜ ଖଞ୍ଜ ଧରଣୀ ତଳେ,
ଭୁମଣ୍ଡନା ରେ,
ଭଲ ମଣୁଛୁ ଦେଖ ମୁଖସୁଧାମୟୂଖ,
ଅଳକତଳ ଅଖ— ଣ୍ଡିତ ଗୋରୋଚନାରେଖ,
ତିଳକେ ଦୃଷ୍ଟି ରଖି, ସଖି ରେ, କି ଦଶେ ଚଳାଚଳ, ଶିଖିଚନ୍ଦ୍ରକଚୂଳ ।୧।
ଭର୍ତ୍ସିତନବରବି, କୁଣ୍ଡଳଯୁଗଛବି, ଗଣ୍ଡରେ,
ଭଦୁର ଏହାଠି ବିବେକମୁଣ୍ଡରେ,
ଭବ୍ୟଦାୟକ ମାଣିକ୍ୟବର, ଭ୍ରମ ଜାତ କରୁଅଛୁ ମଧୁରାଧର,
ଭୁମଣ୍ଡନା ରେ,
ଭ୍ରଷ୍ଟ ହବଟି ସତୀ- ବ୍ରତ ନିୟମ ଧୃତ,
ଶ୍ରୀଅଙ୍ଗସଙ୍ଗ ମତ ବିନା ଅନାଅ ଦ୍ୟୁତ,
ମଦଦ୍ୱିରଦଗତି, ସଖି ରେ, ଶୋଭାନିଧି ତୋ ଗାତ୍ର, ନ ଚୁମ୍ବୁ ଶ୍ୟାମନେତ୍ର ॥୨।

---

(ଭ) ଭ୍ରୂନୀଳଭୁଜଙ୍ଗୀ—ଭ୍ରୂଲତାରୂପ ନୀଳସର୍ପୀ; ଭ୍ରମର—ଭ୍ରମଣର ବା ଚଳନର; ଜୀବସଙ୍ଗି—ହେ ପ୍ରାଣବନ୍ଧୁ; ଜନନ—ଜନ୍ମ; ଭୁଜପାଶି—ବାହୁରୂପ ଫାଶ; ଭଡ଼େ—ଦୃଢ଼ରୂପେ; ପଦକଞ୍ଜ—ପାଦରୂପ ପଦ୍ମ; ଖଞ୍ଜ—ସ୍ଥାପନ କର; ସୁଧାମୟୂଖ—ଚନ୍ଦ୍ର; ଅଳକତଳ—ଚୂର୍ଣ୍ଣକୁନ୍ତଳର ନିମ୍ନଦେଶ; ଅଖଣ୍ଡିତ-ଗୋରୋଚନାରେଖ—ଆଦୌ ଖଣ୍ଡିଆ ହୋଇ ନ ଥିବା ଗୋରଚନାର ରେଖା ବା ଗାର ଯହିଁରେ ଅଛି, (ତିଳକର ବିଶେଷଣ) । ଚଳାଚଳ—ଗତିଶୀଳ; ଚନ୍ଦ୍ରକଚୂଳ—ମୟୂରପୁଚ୍ଛନିର୍ମିତ ମୁକୁଟ; ଭର୍ତ୍ସିତନବରବି—ତିରସ୍କୃତ ବା ପରାଜିତ ହୋଇଅଛି ନବୋଦିତ ସୂର୍ଯ୍ୟ ଯାହାଦ୍ୱାରା, (କୁଣ୍ଡଳଯୁଗର ବିଶେଷଣ) । ଭଦୂର—ବକ୍ର; ଭବ୍ୟଦାୟକ—ସୁଖପ୍ରଦ; ଧୃତ—ଧୈର୍ଯ୍ୟ; ଦ୍ୟୁତ—ଶୋଭା; ମଦଦ୍ୱିରଦଗତି—ମତ୍ତଗଜଗମନା; ଭରାଜି—ନକ୍ଷତ୍ରସମୂହ; ଭର୍ଗସମାଧି—ଶିବଙ୍କର ଯୋଗଜନିତ ସ୍ଥିରତା; ଭଲେ—ଅକ୍ଳେଶରେ;

ଭଙ୍ଗୀନିଯୁରେ ଉଭା, ହେବାର କେଡ଼େ ଶୋଭା, ପ୍ରକାଶେ
ଭବିଲ୍ଲ କି ହାର ସେ ବକ୍ଷ ଆକାଶେ,
ଭର୍ଗସମାଧି ଭଙ୍ଗ କରିବ, ଭଲେ ଏହା କରକମଳ ବଂଶୀରବ,
ଭ୍ରୂମଣ୍ଡନା ରେ,
ଭୂତଭୂଷ-ବିପକ୍ଷ— ପ୍ରକ୍ଷ୍ୱେଡ଼ନରୁ ତୀକ୍ଷ୍ଣ,
ଏ କିଶୋର କଟାକ୍ଷ, କନକାଚଳ ବକ୍ଷ,
କେବଳ ଏହା ଲକ୍ଷ୍ୟ, ସଖି ରେ, କହ ବିଗୁରି ସତେ, ଯୁବତୀଧୃତି କେତେ ।୩।
ଭାଷିଲେ ଅଷ୍ଟ ଦୁର୍ଗ-ସ୍ଥିତ କପଟସ୍ୱର୍ଗ, ମଘବା,
ଏ ଶୃଙ୍ଗାର ସୁଧାବରଷୀ ମେଘ ବା,
ଭୃତ୍ୟପଣରେ ହେଲେ ଏହାର, ଭୁଜଭୁଜଗେନ୍ଦ୍ର କରନ୍ତା କଣ୍ଠେ ହାର,
ଭ୍ରୂମଣ୍ଡନା ରେ,
ଭଜିଥାନ୍ତା ରଜନୀ, ଦିବସେ ପିକବାଣୀ,
ଖଟି ଏ କୃପା ଘେନି, ସାର୍ଥ ହୁଅନ୍ତା ଜନି,
ସତେ ଜଳଜଯୋନି, ସଖି ରେ, କରିବେ ଅନୁଗ୍ରହ, ଏ ମୋହନ ବିଗ୍ରହ ।୪।

---

ଭୂତଭୂଷବିପକ୍ଷ—ମହାଦେବଙ୍କ ଶତ୍ରୁ, କନ୍ଦର୍ପ; ପ୍ରକ୍ଷ୍ୱେଡ଼ନ—ଶର; ତୀକ୍ଷ୍ଣ—ତୀକ୍ଷ୍ଣ; କନକାଚଳବକ୍ଷ—ସ୍ୱର୍ଣ୍ଣପର୍ବତ ପରି ହୋଇଥିବା କୁଚଯୁକ୍ତ ବକ୍ଷଦେଶ; ଭୁଜଭୁଜଗେନ୍ଦ୍ର—ବାହୁରୂପ ଶ୍ରେଷ୍ଠ ନାଗ; ଘେନି—ପାଇଁ; ଜନି—ଜନ୍ମ; ଜଳଜଯୋନି—ବ୍ରହ୍ମା, ବିଧାତା ।

ଲଳିତା ରାଧିକାଙ୍କୁ ଶ୍ରୀକୃଷ୍ଣଙ୍କ ଶୋଭା ଦେଖାଇ କହୁଅଛନ୍ତି—ହେ ପ୍ରାଣସଙ୍ଗିନି ! ଶ୍ରୀକୃଷ୍ଣଙ୍କର ନୀଳସର୍ପୀ ସଦୃଶ ହୋଇଥିବା ଭ୍ରୂଲତାର ଚଳନର ଭଙ୍ଗୀକୁ ଚାହାଁ । ପଦ । ଆହା ସଖି, ମନୁଷ୍ୟର ଆଖିର ଜନ୍ମ ହେବାର ଭାଗ୍ୟଟି ଅର୍ଥାତ୍ ଏ ମୂର୍ତ୍ତିକୁ ଦେଖିଲେ ଚକ୍ଷୁର ଜନ୍ମ ସାର୍ଥକ ହୁଏ । ଏ ମୂର୍ତ୍ତିକୁ ଦେଖି ତୁ ଆଉ ମନ୍ମଥବାଣରେ ଭ୍ରାନ୍ତ ବା ବ୍ୟାକୁଳ ହୋଇ ପଡ଼ ନା । ହାତକୁ ଫାଶ ପରି କରି ମୋ ଗଳାରେ ଛନ୍ଦ ପାଦପଦ୍ମକୁ ପୃଥିବୀ ଉପରେ ଦୃଢ଼ରୂପେ ସ୍ଥାପନ କର । ହେ ଭ୍ରୂମଣ୍ଡନା, ମୁଖରୂପ ଚନ୍ଦ୍ରଟି କି ସୁନ୍ଦର ଦିଶୁଅଛି । ଚୂର୍ଣ୍ଣକୁନ୍ତଳ ତଳଦେଶସ୍ଥ ଅକ୍ଷୁଣ୍ଣ ଗୋରୋଚନାର ରେଖାଯୁକ୍ତ ତିଳକ ଆଡ଼କୁ ଆଖି ପକା, ସଖି, ଗତିଶୀଳ ସୁନ୍ଦର ମୟୂରପୁଚ୍ଛନିର୍ମିତ ମୁକୁଟ କି ସୁନ୍ଦର ଦିଶୁଅଛି ।୧। ଉଜ୍ଜ୍ୱଳତାରେ ନବୋଦିତ ସୂର୍ଯ୍ୟକୁ ବଳି ପଡ଼ୁଥିବା କୁଣ୍ଡଳଦ୍ୱୟର ଛବି ଗଣ୍ଡରେ କି ମନୋହର । ବିବେକ ମସ୍ତକରେ ଏହା ବଜ୍ରଟି, ଅର୍ଥାତ୍ ଏହାକୁ ଦେଖିଲେ ବିବେକ ନଷ୍ଟ ହୋଇଯାଏ । ଆହା, ମନୋହର ଅଧର ସର୍ବସୁଖପ୍ରଦ ଶ୍ରେଷ୍ଠ ମାଣିକ୍ୟର

(୭) କୁଳାଙ୍ଗନାଧୈର୍ଯ୍ୟବ୍ୟସ୍ତକରଣଧୂର୍ଯ୍ୟସ୍ତିଲବୋ
ଦଧନ୍ନୀପାଭ୍ୟାସେ ଭୁବନନୟନାସେଚନକତାଂ ।
ହରଃ ସୋଽୟଂ କାଲାମ୍ବୁଦନଭଚମାଲାଗମହ୍ରଚଃ,
କୃତଚ୍ଛୈର୍ଯ୍ୟନ୍ୟାସଂ ଗତନମିଷୟା ସପିବ ତୃଷା ॥

ଇତ ବିଜ୍ଞାପ୍ୟ ରାଧାଙ୍ଗସୌରଭଲବଧାରବଧାନଙ୍ଗମଙ୍ଗଳସଙ୍ଗୀତ ମଧୁକରନିକରବିକାଶିତସୁବଳାସପୂର୍ଣ୍ଣନିକୁଞ୍ଜପୁଞ୍ଜ ଅସ୍ମାନଂ ହରେର୍ଲୋଚନ-ଗୋଚରୀକୃତ୍ୟ କୁସୁମନିଚୟାବଚୟସମ୍ପଦଂମାଭିଦଧ୍ୟେନ ତତୋ ଲତିକାନ୍ତରଂ ପ୍ରତି ଚଳିତାୟାଂ ଲଳିତାୟାଂ—

---

ଭ୍ରମ ଜାତ କରୁଅଛୁ, ଅର୍ଥାତ୍ ଅଧରକୁ ଦେଖିଲେ ସୁଖଦାୟୀ ମାଣିକ୍ୟ ପର ବୋଧ ହେଉଅଛୁ । ସଖି, ଏହାକୁ ଦେଖିଲେ ସତୀ ସ୍ତ୍ରୀର ମଧ୍ୟ ବ୍ରତ, ନିୟମ ଓ ଧୈର୍ଯ୍ୟ ଏକାବେଳକେ ନଷ୍ଟ ହୋଇଯିବ । ହେ ମତ୍ତଗଜଗାମିନି, ତାଙ୍କର ଶ୍ରୀଅଙ୍ଗସଙ୍ଗ ଲଭ କରିବାକୁ ମନ ନ ବଳାଇ ତାଙ୍କ ଶରୀରକାନ୍ତିକୁ ମାତ୍ର ଚୁହାଁ; ହେ ଶୋଭନାଧି, ଶ୍ୟାମଙ୍କ ନେତ୍ର ତୋ ଗାତ୍ରକୁ ନ ଚୁମ୍ବୁ ଅର୍ଥାତ୍ ତାଙ୍କ ଆଖି ତୋ ଉପରେ ନ ପଡ଼ୁ । ୨ । ଏ ତ୍ରିଭଙ୍ଗୀଠାଣିରେ ଠିଆ ହୋଇଥିବାରୁ କି ବିଚିତ୍ର ଶୋଭା ପ୍ରକାଶ ପାଉଅଛୁ । ଏହାଙ୍କ ବକ୍ଷରୂପ ଆକାଶରେ ହାରଗୁଡ଼ିକ ନକ୍ଷତ୍ର-ସମୂହ କି ? ଏହାଙ୍କ କରକମଳରେ ଶୋଭା ପାଉଥିବା ବଂଶୀର ଶବ୍ଦ ଅକ୍ଳେଶରେ ମହାଦେବଙ୍କର ଧ୍ୟାନନିରତ ଚିତ୍ତସ୍ଥୈର୍ଯ୍ୟକୁ ମଧ୍ୟ ନଷ୍ଟ କରିଦେବ ଅର୍ଥାତ୍ ଏହାଙ୍କ ବଂଶୀର ରବ ଶୁଣିଲେ ମହାଦେବଙ୍କର ମଧ୍ୟ ଯୋଗ ଭାଙ୍ଗିଯିବ । ହେ ଭ୍ରୂମଣ୍ଡନା, କନ୍ଦର୍ପର ଶରରୁ ଏ କିଶୋରଙ୍କର କଟାକ୍ଷ ବା ବାଙ୍କଚାହାଣି ତୀକ୍ଷ୍ଣତର ଅଟେ । ହେ ସଖି, ବିଚାର କରି ପ୍ରକୃତରେ କହ ତ, ଏହା ଆଗରେ ଯୁବତୀର ଧୈର୍ଯ୍ୟ କେତେ ମାତ୍ର ଥିବା ? ଅର୍ଥାତ୍ ଏହାଙ୍କୁ ଦେଖିଲେ କୌଣସି ଯୁବତୀ ଧୈର୍ଯ୍ୟଧରି ରହି ପାରିବ ନାହିଁ । ୩ । ଅଷ୍ଟଦୁର୍ଗକ୍ଷିତି କପଟସ୍ୱର୍ଗରାଜ୍ୟ ପରି, ତହିଁର ମଘବା (ଇନ୍ଦ୍ରସ୍ଥାନୀୟ ରାଜା) କହନ୍ତୁ, ଏ (ଶ୍ରୀକୃଷ୍ଣ) ଶୃଙ୍ଗାରରୂପ ଅମୃତକୁ ବର୍ଷା କରୁଥିବା ମେଘ କି ? ତେବେ କୌଣସି ଯୁବତୀ ଭକ୍ତ୍ୟପଣରେ ସୁଦ୍ଧା ଏହାର ଭୁଜରୂପ ଅନନ୍ତକୁ ( ଶ୍ରେଷ୍ଠନାଗକୁ ) କଣ୍ଠରେ ହାର କରନ୍ତା ଓ ଦନ ସ୍ଥିତ ପିକଦାମୀ ଧରି ଖଟି ଭଜିଆଆନ୍ତା, ତେବେ ସେ ଏ କୃପା ଘେନ ଆପଣା ଜନ୍ମକୁ ସାର୍ଥକ କରନ୍ତା, ସତେ ବିଧାତା ଏ ମୋହନବିଗ୍ରହକୁ ଅନୁଗ୍ରହ କରିବେ ଅର୍ଥାତ୍ ଦୟାକରି ପ୍ରାପ୍ତ କରାଇବେ ।

ଟୀକା—କୁଳାଙ୍ଗନାଣାଂ କୁଳୀନନାଂ ଗୋପବାଳାନାଂ ଧୈର୍ଯ୍ୟବ୍ୟସ୍ତ-କରଣେ ଧୃତିବିନାଶକରଣେ ଧୂର୍ଯ୍ୟଃ ଦକ୍ଷଃ ସ୍ମିତଲବଃ ଈଷଦ୍ଧାସକଣଃ ଯସ୍ୟ

# ମ

ରାଗ—କାମୋଦୀ ବା ମରୁଆ

ମଧୁରେ, ମନ୍ଦ ମନ୍ଦ ହୋଇ ଗନ୍ଧବହ ପ୍ରସରିଲା କଦମ୍ବ ନିକୁଞ୍ଜସୀମାରେ,
ମରନ୍ଦ ସେକେ ଚମକ୍କା ଲୋକେ ଭ୍ରମିଲେ ଇଷି ମାରେ;
ମିଳିନ୍ଦଲତା ଦନ୍ତୁବନିତା ବଦନେ ମିଶି ମାରେ,
ମଣ୍ଡିତ ହେଲା ସେ ବନସ୍ଥଳ, ମହାରଜତ ମହେନ୍ଦ୍ର ନୀଳ-
ମୟୂଖ ଶିଶ୍ରିମୟ ମଞ୍ଜରୀ ବସର ସୁଷମାରେ । ପଦ ।
ମିଶିଲା ଗୁରୁ ଲୋଚନ ବାରି- ଲୁହ ମଦନ୍ତୁ ଲଭିଲା ଗୁରୁ
ମିଳିଲା ଶ୍ୟାମ ଗଉର ଦୁଇ ମହ,
ମଧୁପ ଯୁଥ ଲଭିଲା ଅବା ନବ ସରସୀରୁହ,
ମାନସ ଅଙ୍ଗଭେଦ ଭ୍ରମଗ ଭଙ୍ଗ ରଚିଲା ସ୍ନେହ,
ମଜ୍ଜିଲାଗଲା ଶେଷ ମାତ୍ତ୍ୱିକ ଧୂଡ଼ନଧୁନ ସାଂଖ୍ୟକଥାକ
ମନ୍ଥାଳି ଦେଲା ଦୁହିଙ୍କ ମନ ମହାମୋଦପ୍ରବାହ । ୧ ।

---

ତଥାଭୂତଃ, ଭୁବନନୟନସ୍ୟ ଜଗଜ୍ଜନନେତ୍ରସ୍ୟ ଆସେଚନକତାଂ ତୃପ୍ତିସାଧନତାଂ ଦଧତ୍ ଧାରୟନ୍ କାଳାମ୍ବୁଦନିଭଃ କୃଷ୍ଣମେଘସଦୃଶଃ ତମାଲାରାମରୁଚଃ ତମାଲାରାମସ୍ୟ ତମାଲତରୋଃ ରୁଚଃ କାନ୍ତିରିବ ରୁଚର୍ଯସ୍ୟ ଚ ଅସ୍ତଂ ହରିଃ ନୀପାଭ୍ୟାସେ କେଳିକଦମ୍ବସମୀପେ ବର୍ତ୍ତିତ ଇତି ଶେଷଃ । ହେ ସଖି, କୃତଃ ସମ୍ପାଦିତଃ ସ୍ଥୈର୍ଯ୍ୟସ୍ୟ ଧୀରତାୟାଃ ନ୍ୟାସଃ ଅବଲମ୍ବନଂ ଯସ୍ମିନ୍ କର୍ମଣି ତତ୍ ଯଥା ତଥା ଦୃଢ଼ତୟା ସହିତମିତ୍ୟର୍ଥଃ ଗତନିମିଷୟା ନିର୍ନିମିଷୟା ଦୃଶା ଚକ୍ଷୁଷା ପିବ ଆଲୋକୟ ଇତ୍ୟର୍ଥଃ ।

ଲଳିତା ରାଧିକାଂ ଇତି ବଜ୍ଞାପ୍ୟ ରାଧାୟାଃ ଅଙ୍ଗସୌରଭସ୍ୟ ଲବ୍ଧ୍ୱା ପ୍ରାପ୍ତ୍ୟା ଆରବ୍ଧଂ ଅନଙ୍ଗମଙ୍ଗଳସଙ୍ଗୀତଂ କାମୋଦ୍ଦୀପକଜୟଗୀତଃ ଯେନ, ତଥାଭୂତଃ ମଧୁକରାଣାଂ ଭ୍ରମରାଣାଂ ନିକରଃ ସମୂହଃ ତସ୍ୟ ବଜାଗତ୍ୱବଳାସପୂର୍ତ୍ତେ ଉନ୍ମତ୍ତ-ତ୍ୱାତ୍ ବିବିଧକ୍ରୀଡ଼ାପୂର୍ତ୍ତେ ନିକୁଞ୍ଜପୁଞ୍ଜେ ଆତ୍ମାନଂ ହରେଃ ଶ୍ରୀକୃଷ୍ଣସ୍ୟ ଲୋଚନ-ଗୋଚରୀକୃତ୍ୟ ଆତ୍ମାନଂ ଶ୍ରୀକୃଷ୍ଣଂ ଦର୍ଶୟିତ୍ୱା କୁସୁମନିଚୟସ୍ୟ ପୁଷ୍ପସମୂହସ୍ୟ ଅବଚୟଃ ଚୟନଂ ତସ୍ୟ ସମୁଦ୍ୟମାଭିନୟେନ ପୁଷ୍ପଚୟନବ୍ୟାଜେନ ଇତ୍ୟର୍ଥଃ ତତଃ ଲତାନ୍ତରଂ ଅନ୍ୟାଂ ଲତାଂ ପ୍ରତି ଲଳିତାୟାଂ ଚଳିତାୟାଂ ସତ୍ୟାଂ—

ଅନୁବାଦ—ଯେ ମନ୍ଦହାସରେ ଗୋପକୁଳବାଳାମାନଙ୍କର ଧୈର୍ଯ୍ୟ ଲୋପକରି ପାରନ୍ତି, ସେହି ଘନନୀଳକାନ୍ତି ତମାଲଶ୍ୟାମ ଶ୍ରୀହରି କେଳିକଦମ୍ବ ମୂଳରେ ବର୍ତ୍ତ-

ମଦଦ୍ୱିରଦ ମଥିତହ୍ରଦ, ମୂର୍ଚ୍ଛିତ ମହୋତ୍ପଳ ଆମୋଦ,
ଫୁଲ୍ଲପରାଗ ଶ୍ରୀଅଙ୍ଗରାଗ ବାସ,
ମୃଗଲାଞ୍ଛନ ମରୀଚି ଚୂର୍ଣ୍ଣ ଧାବଲ୍ୟ ପରକାଶ,
ମଧୁମାଦକ ଗୁଣସୂଚକ କୋକିଳ କଳଘୋଷ,
ମଣିମଣ୍ଡିତ କିଙ୍କିଣୀଯୁତ ମଞ୍ଜୁ ମଞ୍ଜୀର ଭୂଷାଶିଞ୍ଜିତ
ରସନା ରଣତ୍କାର ଶ୍ରବଣ କଲା ବିବେକ ମୋଷ । ୨ ।
ମଧୁ ମଧୁର ବଧୂ ଅଧର କିଶୋରବର ରଦନାମ୍ବର,
ବିମ୍ବ ଚୁମ୍ବନ ଚୁଁ କୃତ ସ୍ୱନମେଳା,
ମୃଦୁ ମନ୍ମଥ ଧ୍ୱନି ଜନନ କଲାଟି କ୍ରୋଡ଼ଖେଳା,
ମହେନ୍ଦ୍ର ମଣି, ବଳୟ ଶ୍ରେଣୀ ରହିଲା ହୋଇ ଲୋଲା;
ମନୋଜ୍ଞ ଗୂଢ଼ପୀୟୂଷମୟ, ମିଶ୍ରିତ ହେଜ ହେଜ ସମୟ
ମାର ମହତ୍ତ୍ୱ ଗଲାକି ନାହିଁ ହେଲା ସଂଶୟଦୋଳା । ୩ ।
ମନ୍ଦାର ବନ ସେ ବନ ରସା—ଚହେ ରଚିଲା ସୁମ ବରଷା,
ରସିଲେ ସର୍ବ ଗନ୍ଧର୍ବମାନେ ଗାନେ;
ମାତି ତାଣ୍ଡବ ରଚିଲେ ଦେବଦାସୀଏ ସାବଧାନେ,
ମର୍ଦ୍ଦଳ ଘୋଷ ହେଲା ତ୍ରିଦଶ ମଣ୍ଡଳେ ସବୁସ୍ଥାନେ,
ମୂକତ ପ୍ରାପ୍ତ ହେଲା ତ୍ରିଲୋକ ମାନସୁ ମ୍ଳାନ କଲେ ପାତକ,
ଶ୍ରୀ ଜଗଦ୍ଦେବ ହରିଚନ୍ଦନ ସେ ମହୋତ୍ସବ ଧ୍ୟାନେ । ୪ ।

---

ଜନନୟନମୋହନ ରୂପ ଧାରଣ କରି ଅବସ୍ଥାନ କରୁଅଛନ୍ତି । ହେ ସଖି, ଦୃଢ଼ରୂପେ ଧୈର୍ଯ୍ୟ ଧାରଣ କରି ନିମେଷଶୂନ୍ୟ ଦୃଷ୍ଟିରେ ସେହି ରୂପକୁ ପାନ କର ।

ଲଳିତା ଏହା କହି ପୁଷ୍ପଚୟନ ବ୍ୟାଜରେ ଶ୍ରୀକୃଷ୍ଣଙ୍କୁ ଦେଖାଇ ଦେଇ ଅନ୍ୟ ଲତା ଆଡ଼କୁ ଚାଲିଗଲେ । ରାଧା ଯେଉଁ କୁଞ୍ଜରେ ଥିଲେ, ସେହି କୁଞ୍ଜରେ ତାଙ୍କର ଅଙ୍ଗସୌରଭରେ ଆକୃଷ୍ଟ ହୋଇ ଭ୍ରମରମାନେ ବିବିଧ ବିଳାସପୂର୍ଣ୍ଣ କାମୋଦ୍ଦୀପକ ମଙ୍ଗଳ ସଙ୍ଗୀତ ଆରମ୍ଭ କରିଦେଲେ । ଏହି ସମୟରେ "ମଧୁରେ, ମନ୍ଦ ମନ୍ଦ ହୋଇ ଗନ୍ଧବହ ପ୍ରସରିଲା"—ଇତ୍ୟାଦି ।

---

(୨) ମଧୁରେ—ବସନ୍ତରେ, ଗନ୍ଧବହ—ମଳୟପବନ, ମରନ୍ଦ-ସେକେ—ମକରନ୍ଦ ବା ପୁଷ୍ପମଧୁ ପଡ଼ିବାରୁ, ମାରେ—ମାର ଅର୍ଥାତ୍ କାମର

ଉଦ୍ଦୀପନାରୁ, ମିଳନ୍ଦ—ଭ୍ରମର, ଲତାଦମ୍ଭବନ୍ଧତା—ଲତାମାନେ ବ୍ୟାଜ ବନ୍ଧତାଶ୍ଲାଘାସ୍ଥ, ଲତାରୂପିଣୀ ସ୍ତ୍ରୀମାନେ; ମହାରଜତ—ସୁବର୍ଣ୍ଣ, ମହେନ୍ଦ୍ରନୀଳ—ଇନ୍ଦ୍ରନୀଳମଣି, ମୟୂଖଶ୍ରୀମୟ—କିରଣଶୋଭାପୂର୍ଣ୍ଣ, ମଞ୍ଜରୀ—କଣ୍ଠ, ବିସର—ବିସ୍ତାର, ସଞ୍ଚାର; ସୁଷମା—ପରମ ଶୋଭା, ଲୋଚନବାରିରୁହ—ଚକ୍ଷୁରୂପ ପଦ୍ମ, ମଦନୁ—କାମୋଦ୍ଦୀପନା ହେଲାରୁ । ଲଗ୍ବିର—( ଗ୍ରାମ୍ୟ ଶବ୍ଦ ) ପରସ୍ପର ମିଶ୍ରଣ ବା ଏକୀଭାବ । ମହ—ତେଜ, ସରସୀରୁହ—ପଦ୍ମ, ସାତ୍ତ୍ୱିକ—ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, କମ୍ପନ୍ନ, ବିବର୍ଣ୍ଣତା, ଅଶ୍ରୁ ଓ ମୂର୍ଚ୍ଛା ଏହି ଆଠ ପ୍ରକାର ବିକାର । ମୃଡ଼—ମହାଦେବ, ମୃଡ଼ନସ୍ୱନ ସଂଖ୍ୟକଯାକ—ଡମ୍ବରୋଟି, ମଦ-ଦ୍ୱିରଦମଥିତ—ମତ୍ତହାତୀ ଦ୍ୱାରା ଘଣ୍ଟା ହୋଇଥିବା, ମୂର୍ଚ୍ଛିତ—ବର୍ଦ୍ଧିତ, ବିସ୍ତାରିତ; ଫଲ୍ଲ—ଫୁଟନ୍ତା, ଶ୍ରୀଅଙ୍ଗରାଗବାସ—ଶ୍ରୀଅଙ୍ଗସୌରଭ, ମୃଗଲାଞ୍ଛନମରୀଚି—ଚନ୍ଦ୍ରଙ୍କର କିରଣ, ଚୂର୍ଣ୍ଣଧାବଲ୍ୟ—ଚୂନ ପରି ଧବଳତା, ମଞ୍ଜୀର—ନୂପୁର, ଶିଞ୍ଜିତ—ରୁଣୁ ରୁଣୁ ଧ୍ୱନି, ( ଅଳଙ୍କାର ଶବ୍ଦ ) । ରସନା—ଅଣ୍ଟାସୂତା ବା ଚନ୍ଦ୍ରହାର, ମୋଷ—ଚୋରି, ଲେପ; ରଦନାମ୍ବର—ଓଷ୍ଠ, ଚୁଁକୃତ—ଚୁଁ ଚୁଁ ଶବ୍ଦ, ମନ୍ମନଧ୍ୱନି—ମନୋହର ଅସ୍ପଷ୍ଟ ଗଦ୍‌ଗଦ ଶବ୍ଦ ବା ଅବ୍ୟକ୍ତ ମଧୁର ଧ୍ୱନି, ମନ୍ଦାରବନ—ନନ୍ଦନ କାନନ, ରସାତଳେ—ଭୂମଣ୍ଡଳରେ, ସୂନବର୍ଷା—ପୁଷ୍ପବୃଷ୍ଟି, ମାତି—ପ୍ରେମୋନ୍ମତ୍ତ ହୋଇ, ଦେବଦାସୀଏ—ଅପସରାମାନେ, ମର୍ଦ୍ଦଳଘୋଷ—ମୃଦଙ୍ଗ ଶବ୍ଦ, ତ୍ରିଦଶମଣ୍ଡଳେ—ସ୍ୱର୍ଗରାଜ୍ୟରେ ।

( ପ୍ରକୃତିରୂପିଣୀ ରାଧାଙ୍କ ସଙ୍ଗେ ପୁରୁଷରୂପୀ ଶ୍ରୀକୃଷ୍ଣଙ୍କର ମିଳନାରମ୍ଭରେ ଅକସ୍ମାତ୍ ବସନ୍ତ ଋତୁର ଆବିର୍ଭାବ ହେବାରୁ କବି ବର୍ଣ୍ଣନା କରୁଅଛନ୍ତି) । ପ୍ରଥମେ କଦମ୍ବନିକୁଞ୍ଜର ପ୍ରାନ୍ତଭାଗରେ ବସନ୍ତକାଳୀନ ମଳୟାନିଳ ଧୀରେ ଧୀରେ ପ୍ରବାହିତ ହେଲା । ପୁଷ୍ପମାନଙ୍କରୁ ମକରନ୍ଦ ବହିବାରୁ ଲୋକମାନେ ଚମକି ପଡ଼ି କାମୋଦ୍ଦୀପନା ହେତୁରୁ 'ଇଷି ଇଷି' ଶବ୍ଦ କଲେ । ଭ୍ରମରମାନେ ଲତାରୂପିଣୀ ସ୍ତ୍ରୀମାନଙ୍କ ମୁଖରେ ମିଶି ଅର୍ଥାତ୍ ଦଳ ଦଳ ହୋଇ ମାଇଲେ ( ଆକ୍ରମଣ କଲେ ) ବା ଗୁଣୁ ଗୁଣୁ ଶବ୍ଦ କରି ଦଳ ଦଳ ହୋଇ ଲତା ଉପରେ ବସିଲେ, ସେ ବନ ପ୍ରଦେଶ ରାଧିକାଙ୍କର ସ୍ୱର୍ଣ୍ଣବର୍ଣ୍ଣ ତେଜ ଓ ଶ୍ରୀକୃଷ୍ଣଙ୍କର ଇନ୍ଦ୍ରନୀଳମଣି ସଦୃଶ ନୀଳବର୍ଣ୍ଣ କିରଣକଳାକାର ସଞ୍ଚାର ଶୋଭାରେ ଭୂଷିତ ହେଲା । ପଦ୍ମ । ସ୍ୱର ଲୋଚନରୂପ ପଦ୍ମ ମିଳିତ ହେଲା, ଅର୍ଥାତ୍ କୃଷ୍ଣ ଓ ରାଧାଙ୍କର ଗୃହଚକ୍ଷୁ ମିଳିଗଲା ବା ଦୁହେଁ ଦୁହିଁଙ୍କୁ ଭେଟିଲେ. କାମୋଦ୍ଦୀପନା ହେତୁରୁ ଶ୍ୟାମଳ ତେଜ ( କୃଷ୍ଣଙ୍କର ) ଓ ଗୌରତେଜ ( ରାଧାଙ୍କର ) ଲଗ୍ବିର ଲଭି ଅର୍ଥାତ୍ ପରସ୍ପର ଏକୀଭୂତ ହୋଇ ମିଶିଗଲା । ତରୁଣ ଭ୍ରମର ନୂତନ ପଦ୍ମ ପାଇଲା କି ? ସ୍ନେହ ( ପ୍ରେମ ) ମାନସଭେଦ ଓ ଅଙ୍ଗଭେଦ ପ୍ରସଙ୍ଗର ଭଙ୍ଗକୁ ରଚିଲା ( ଘଟାଇଲା ), ଅର୍ଥାତ୍ ସ୍ନେହାଧିକ୍ୟ ହେତୁରୁ ମାନସିକ ପ୍ରସଙ୍ଗ ଓ ଶାରୀରିକ ପ୍ରସଙ୍ଗର ପ୍ରଭେଦ



(୨) ପ୍ରାପଞ୍ଚିକାନ୍ଧତମସାକୁଟିଚଣ୍ଡପାତାତ୍
ପ୍ରାୟଃ ସମାକୁଳବିବେକଦୃଶାଂ ଜନାନାଂ ।
ଚାମୀକରପ୍ରକରପୀତମୟୂଖଲେଖା,
ନୀଲୋତ୍ପଳାଂଶୁମୟମସ୍ତୁ ବିନାୟ ତେଜଃ ।

ଶିଶୁପଭୃକ୍ରୁଷିପ୍ତାଂ ମାଳାମିବ ଶାଣୋଲ୍ଲୀଢ଼ାଂ ମଣିମିବ, ତମସାଗ୍ରସ୍ତ ଗଳିତାଂ ଚନ୍ଦ୍ରିକାମିବ, ଗଜେନ୍ଦ୍ରଦଳିତୋଜ୍ଝିତାଂ ସରୋଜିନୀମିବ, ମୃଗେନ୍ଦ୍ର ଗୃହୀତମୁକ୍ତାଂ ମୃଗୀମିବାନଙ୍ଗସଙ୍ଗରରଙ୍ଗମଙ୍ଗଳମହୋତ୍ସବାତିଶୟାୟସ୍ତାଂ ଭୁଯସ୍ତାମଙ୍କମାରୋପ୍ୟ କୃଷ୍ଣଃ ।

---

ଭାଙ୍ଗିଗଲା ଅର୍ଥାତ୍ ଦୁହିଁଙ୍କର ଦେହ ଓ ମନ ଏକ ହୋଇଗଲା । ବିବର୍ଣ୍ଣତା, ଅଶ୍ରୁ ଓ ମୂର୍ଚ୍ଛା ଏହି ଶେଷ ତିନିଗୋଟି ସାତ୍ତ୍ୱିକବିକାର ମଳିନ ହୋଇଗଲା, ଅର୍ଥାତ୍ ଦେଖାଗଲା ନାହିଁ । କେବଳ ପ୍ରଥମ ପାଞ୍ଚଗୋଟି ଅର୍ଥାତ୍ ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ ଓ ବେପଥୁ ( କମ୍ପନ ) ରହିଗଲା, ମହା-ଆନନ୍ଦ-ନଦୀ ଦୁହିଁଙ୍କ ମନକୁ ମଜ୍ଜାଇ ଦେଲା ଅର୍ଥାତ୍ ସାନ୍ଦ୍ର ପ୍ରେମରସରେ ପ୍ଲାବିତ ବା ଅଭିଭୂତ କରିଦେଲା । ମତ୍ତହସ୍ତୀଦ୍ୱାରା ଘଣ୍ଟା ଚକଟା ହୋଇଥିବା ହ୍ରଦର ପଦ୍ମମାନଙ୍କର ସୁବାସ ପ୍ରସ୍ଫୁଟିତ ପଦ୍ମରେଣୁ ସଙ୍ଗେ ମିଶି ଯେପରି ଚତୁର୍ଦ୍ଦିଗରେ ବିସ୍ତୃତ ହୋଇଯାଏ ସେହିପରି ପରସ୍ପର ଅନୁରାଗବର୍ଦ୍ଧକ ସେମାନଙ୍କ ଶ୍ରୀଅଙ୍ଗସୌରଭ ଚତୁର୍ଦ୍ଦିଗରେ ଚହଟି ଗଲା, ଚୂନ ପରି ଶୁକ୍ଳ ବର୍ଣ୍ଣ ଚନ୍ଦ୍ରକିରଣ ପ୍ରକାଶିତ ହେଲା; ବସନ୍ତର ଉନ୍ମାଦନା-ଗୁଣପ୍ରକାଶକ କୋକିଳର କୁହୁ କୁହୁ ଶବ୍ଦ ଶୁଣାଗଲା । ମଣିଭୂଷିତ କିଙ୍କିଣୀର ନାଦ ସଙ୍ଗେ ମନୋହର ନୂପୁରଧ୍ୱନି ଓ କଟିମେଖଳାର ରଣରଣ ଶବ୍ଦ ବିବେକକୁ ଚୋରି କରି ନେଲା ବା ଲୋପ କରିଦେଲା । ୨ । ମଧୁ ପରି ସୁମିଷ୍ଟ ବିଧୁ ରାଧାଙ୍କର ଅଧର ଓ କିଶୋରବର ଶ୍ରୀକୃଷ୍ଣଙ୍କର ଅଧରବିମ୍ବର ଚୁମ୍ବନଜନିତ ଚୁମ୍କାର ଶବ୍ଦର ଏକତ୍ର ମିଳନ ହେଲା, କୋଡ଼ରେ କ୍ରୀଡ଼ା ଆରମ୍ଭ ହେବାରୁ ଇନ୍ଦ୍ରନୀଳମଣି ନିର୍ମିତ ବଳୟମାନେ ଇତସ୍ତତଃ ଚଳିତ ହେଲେ, ତେଣୁ ସେହି ସବୁ ବଳୟ-ଶ୍ରେଣୀରୁ ମନ୍ମନ ଧ୍ୱନି ଅର୍ଥାତ୍ ଅବ୍ୟକ୍ତ ମଧୁର ଧ୍ୱନି ଜାତ ହେଲା, ପରସ୍ପରଙ୍କର ଅମୃତ ତୁଲ୍ୟ ମନୋହର ଚାଟୁବାକ୍ୟ ଯଥାକାଳରେ ମିଶ୍ରିତ ହେଉ ହେଉ ( ଆଦାନପ୍ରଦାନ କରାଯାଉ ଯାଉ ) କନ୍ଦର୍ପର ମହତ୍ତ୍ୱ ଗଲା କି ନାହିଁ ଏହା ସଂଶୟ ଦୋଳା ଜାତ ହେଲା, ଅର୍ଥାତ୍ ରାଧାକୃଷ୍ଣ ପରସ୍ପର ପ୍ରତି ଅମୃତମୟ ଚାଟୁବାକ୍ୟ ପ୍ରୟୋଗ କଲାବେଳେ କାମର ମହତ୍ତ୍ୱ ଲୋପ ହେଲା କି ଅକ୍ଷୁଣ୍ଣ ରହିଲା ଏହି ସନ୍ଦେହ ଭାବୁକ ମନରେ ଜାତ ହେଲା, ( ସେ ମିଳନରେ କାମବିକାରର ଗନ୍ଧ ସୁଦ୍ଧା ନ ଥିଲା, ପ୍ରକୃତ ଆଧ୍ୟାତ୍ମିକ ଓ ପବିତ୍ର ପ୍ରେମହିଁ ଏଠାରେ ବର୍ଣ୍ଣିତ ବିଷୟ ) । ୩ । ସେହି ବନପୂର୍ଣ୍ଣ ଭୂଖଣ୍ଡରେ ସ୍ୱର୍ଗର ନନ୍ଦନକାନନରୁ ପୁଷ୍ପବୃଷ୍ଟି

ହେଲା; ସ୍ୱର୍ଗରେ ଗନ୍ଧର୍ବମାନେ ଗାନରେ ରତ ହେଲେ, ଦେବଦାସୀମାନେ ପ୍ରେମୋନ୍ମତ୍ତ ହୋଇ ଅତି ସାବଧାନତା ସହ ନୃତ୍ୟ କଲେ ଏବଂ ସେଠାରେ ସର୍ବତ୍ର ମୃଦଙ୍ଗଧ୍ୱନି ହେଲା; ଏହି ପ୍ରକୃତିପୁରୁଷଙ୍କ ମିଳନରେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଏହି ତିନି ଲୋକର ଅଧିବାସୀମାନଙ୍କର ମନ ପାପମୁକ୍ତ ହେଲା ପରି ଜଣାଗଲା । ଜଗଦ୍ଦେବ ହରିଚନ୍ଦନ ସେ ମହୋତ୍ସବର ଧ୍ୟାନରେ ମନରୁ ପାପମାନଙ୍କୁ କ୍ଷୟ କଲେ । ୪ ।

ଟୀକା—ଗୃମୀକରପ୍ରକରସ୍ୟ ସ୍ୱର୍ଣ୍ଣସମୂହସ୍ୟ ଯା ପୀକମୟୂଖଲେଖା ଗୌର ତେଜୋମଣ୍ଡଳୀ ଶ୍ରୀରାଧାରୂପା ଇତ୍ୟର୍ଥଃ, ପୁନଃ ନୀଳୋତ୍ପଳାଂଶୁମୟଂ ଇନ୍ଦ୍ରନୀଳମୟୂଖ-ମୟଂ ଶ୍ରୀକୃଷ୍ଣରୂପଂ ଇତ୍ୟର୍ଥଃ, ତେଜଃ ମହଃ, ପ୍ରାୟଃ ବାହୁଲ୍ୟେନ ସମାକୁଳା ସଂବୃତା ବିବେକ ଏବ ଦୃକ୍ ଚକ୍ଷୁଃ ଯେଷାଂ ତେଷାଂ ଜନାନାଂ ପ୍ରାପଞ୍ଚିକଂ ସାଂସାରିକଂ ଅନ୍ଧ-ତମସ ଗାଢ଼ଧ୍ୱାନ୍ତଂ ଯସ୍ମିନ୍ ଇତ୍ୟୋକ୍ତସ୍ୟ ଅନ୍ଧୋଃ କୂପସ୍ୟ ସଂସାରକୂପସ୍ୟ ଇତ୍ୟର୍ଥଃ ପିଚଣ୍ଡେ ଗର୍ଭେ ଯଃ ପାତଃ ପତନଂ ତସ୍ମାତ୍ ଅବନାୟ ରକ୍ଷଣାୟ ଅସ୍ତୁ ଭବତୁ । ଶ୍ରୀରାଧାକୃଷ୍ଣମୟଂ ତେଜଃ ସଂସାରଦୁଃଖହରତୁ ଇତ୍ୟର୍ଥଃ ।

ଶିଶୁନା ବାଲକେନ ଆଦାବୁପଭୁକ୍ତାଂ ପଶ୍ଚାତ୍ କ୍ଷିପ୍ତାଂ ମାଲାମିବ ପୁଷ୍ପସ୍ରଜ-ମିବ, ଶାଣେନ ଉଲ୍ଲୀଢ଼ାଂ ଘୃଷ୍ଟାଂ ମଣିମିବ, ତମସା ରାହୁଣା ( ରାହୌଧ୍ୱାନ୍ତେଗୁଣେ ତମଃ ) ଆଦୌ ଗ୍ରସ୍ତାଂ ପଶ୍ଚାତ୍ ଗଳତାଂ ମୁକ୍ତାଂ ଚନ୍ଦ୍ରିକାଂ କୌମୁଦୀମିବ, ଗଜେନ୍ଦ୍ରେଣ ଦଳିତାଂ ମର୍ଦ୍ଦିତାଂ ଉଜ୍ଝିତାଂ ତ୍ୟକ୍ତାଂ ସରୋଜିନୀଂ ପଦ୍ମିନୀମିବ, ମୃଗେନ୍ଦ୍ରେଣ ସିଂହେନ ଗୃହୀତାଂ ଆକ୍ରାନ୍ତାଂ ପଶ୍ଚାତ୍ ମୁକ୍ତାଂ ମୃଗୀଂ ହରିଣୀମିବ, ଅନଙ୍ଗସଙ୍ଗରଙ୍ଗଃ କନ୍ଦର୍ପସମରକ୍ରୀଡ଼ା ସୈବ ମଙ୍ଗଳମହୋତ୍ସବାଡମ୍ବରଃ ତେନ ଆୟସ୍ତାଂ କ୍ଳାନ୍ତାଂ ତାଂ ରାଧାଂ ଭୂୟଃ ପୁନଃ ଅଙ୍କମାରୋପ୍ୟ କ୍ରୋଡ଼ୀକୃତ୍ୟ କୃଷ୍ଣଃ ବକ୍ତୀତି ଶେଷଃ ।

ଅନୁବାଦ—ଶ୍ରୀରାଧାଙ୍କ ସ୍ୱର୍ଣ୍ଣାଭ କିରଣମାଳା ଓ ଶ୍ରୀକୃଷ୍ଣଙ୍କ ଶରୀରର ନୀଳୋତ୍ପଳମୟ ତେଜଃପୁଞ୍ଜ, ସଂସାରର ଘୋରମୋହାନ୍ଧକାର ଦ୍ୱାରା ଯେଉଁମାନଙ୍କର ବିବେକଦୃଷ୍ଟି ସମାବୃତ ହୋଇଅଛି, ସେହି ସଂସାରୀମାନଙ୍କୁ ମୋହରୂପ କୂପଗର୍ଭରେ ପଡ଼ିବାରୂପ ଦୁର୍ଦ୍ଦଶାରୁ ରକ୍ଷା କରୁ; ଅର୍ଥାତ୍ ରାଧା ଓ କୃଷ୍ଣଙ୍କ ତେଜୋଦ୍ୱୟ ମୋହାନ୍ଧ ସଂସାରୀମାନଙ୍କୁ ମୋହକୂପରୁ ରକ୍ଷାକରୁ ।

ପିଲ ପିନ୍ଧି ସାରି ଫୋପାଡ଼ି ଦେଇଥିବା ଫୁଲମାଳ ପରି, ଶାଣରେ ଘଷା ଯାଇଥିବା ମଣିପରି, ରାହୁଗ୍ରାସରୁ ମୁକ୍ତ ଚନ୍ଦ୍ରିକା ପରି, ମତ୍ତହସ୍ତୀ ଦଳିକରି ଛାଡ଼ି ଯାଇଥିବା ପଦ୍ମନାଡ଼ ପରି, ସିଂହ ଧରି ଛାଡ଼ି ଦେଇଥିବା ହରିଣୀ ପରି, କାମକ୍ରୀଡ଼ା-ରଙ୍ଗରେ ଆୟାସପ୍ରାପ୍ତା ରାଧାଙ୍କୁ ଶ୍ରୀକୃଷ୍ଣ କୋଳରେ ବସାଇ କହୁଅଛନ୍ତି—"ଯୋଷିଦବର ରେ" ଇତ୍ୟାଦି ।

---

# ଯ

ରାଗ—ମୁଖାବରୀ

ଯୋଷାବର ରେ, ଯଥାର୍ଥରେ ଜାଣ ମୁଁ ତୋହର ରେ,
ଯାମଳଭୂଧରନିଭପୟୋଧର ମରଦନିଆ ଗ୍ଭକର ରେ । ପଦ ।
ଯାବକ ତୋ ପଦକଞ୍ଜର ସମଦଗଜଗତି ମୋ ଶେଖର ରେ,
ଯତୀନ୍ଦ୍ରସମାଧିଖଣ୍ଡନା ତୁ ନିଧି ମୁଁ ରଙ୍କମାନଙ୍କ ବର ରେ । ୧ ।
ଯମକ କି ତୁହି ପୂର୍ଣ୍ଣଚନ୍ଦ୍ରମୁହିଁ ମୋ ମହାଶୁଭଦଶାର ରେ,
ଯତ୍ନେ ସମ୍ପାଦିବା ଚିନ୍ତାମଣି ଅବା ମୋ କରେ ଦେଲୁ ସୁସାରରେ । ୨ ।
ଯୁବତୀକଦମ୍ବରାଜା ଅବଲମ୍ବ ହୋଇଲୁ ଯେବେ ନିକର ରେ;
ଯୁଦ୍ଧକୁ ସନ୍ନଦ୍ଧ ହେଉ ଅତି କ୍ରୁଦ୍ଧ ହୋଇ ପଞ୍ଚେ ପଞ୍ଚଶର ରେ । ୩ ।
ଯମୁନାବାହିନୀ ତଟରୁହବନୀ ଅବନୀ ବନାଇବାର ରେ,
ଯଶ ରଖିନ୍ଥିନିନ୍ଦାପଟଳୀରୁ ବୃନ୍ଦା କରାଇଲା ତ ନିବାର ରେ । ୪ ।
ଯଶୋଦାକୁମର ଗିରେ ରାଧା ଶିର ନୁଆଁଇଲେ ଲଜ୍ଜାଭର ରେ;
ଯୁଗଳ ବିରହ କର ଅନୁଗ୍ରହ ଅଷ୍ଟାଦୁର୍ଗ-ପୁରନ୍ଦର ରେ । ୫ ।

---

( ଯ ) ଯୋଷାବର—ନାରୀରତ୍ନ, ଯଥାର୍ଥ—ପ୍ରକୃତ, ଯାମଳଭୂଧରନିଭ-ପୟୋଧର—ଯାଆଁଳା ବା ଯୋଡ଼ା ପର୍ବତ ପରି ସ୍ତନ; ମରଦନିଆ—ମର୍ଦ୍ଦନକାରୀ, ଯାବକ—ଅଳତା, ପଦକଞ୍ଜର—ପାଦପଦ୍ମର, ସମଦଗଜଗତି—ମତ୍ତଗଜଗମନା, ଶେଖର—ଶିରୋଭୂଷଣ, ଯତୀନ୍ଦ୍ରସମାଧିଖଣ୍ଡନା—ହେ ମହାଯୋଗୀଙ୍କର ଯୋଗଭଙ୍ଗ-କାରିଣୀ, ଯମକ—ପୁନରାବୃତ୍ତି, ସୁସାରରେ—ଅତି ଆଦରରେ, ଯୁବତୀକଦମ୍ବରାଜା—ଯୁବତୀସମୂହଶ୍ରେଷ୍ଠ, ଅବଲମ୍ବ—ଆଶ୍ରୟ, ନିକର—ନିଶ୍ଚୟ, ସନ୍ନଦ୍ଧ ହେଉ—ସାଜୁ ପିନ୍ଧୁ, ନିବାର—ନିବାରଣ ।

ହେ ନାରୀରତ୍ନ, ମୋତେ ଯାଉଁଳ ପର୍ବତ ପରି ଦେଖା ଯାଉଥିବା ତୋ କୁଚଦ୍ୱୟର ମର୍ଦ୍ଦନକାରୀ ଗ୍ଭକର ବୋଲି ପ୍ରକୃତରେ ଜାଣ । ପଦ । ହେ ମତ୍ତ-ଗଜଗମନା, ତୋ ପାଦପଦ୍ମର ଅଳତା ମୋର ଶିରୋଭୂଷଣ ସ୍ୱରୂପ, ହେ ମହାଯୋଗୀଙ୍କର ଯୋଗଭଙ୍ଗକାରିଣୀ, ତୁ ନିଧି ଅର୍ଥାତ୍ ମୂଲ୍ୟବାନ୍ ରତ୍ନ ପରି ଅଛୁ ଏବଂ ମୁଁ ମହାଦରିଦ୍ର ପରି । ହେ ପୂର୍ଣ୍ଣଚନ୍ଦ୍ର ମୁହିଁ, ତୁ ମୋ ମହାଶୁଭଦଶାର ପୁନରାବୃତ୍ତି ଅଛୁ କି ? ଅର୍ଥାତ୍ ଶୁଭଦଶା ଆସିଲେ ସବୁପ୍ରକାର ସୁଖ ଯେପରି ପୁନଃ ପୁନଃ ମିଳିଯାଏ, ତୁ କଅଣ ମୋର ସେହିପରି ? ଆହା, ହେ ସଖି,

(ଘ) ଅଦ୍ୟ ପ୍ରଭୃତ୍ୟନଲସେନ୍ଦୁ ସହୋଦରାସ୍ୟେ,
ଦାସ୍ୟେ ତବାସ୍ମ୍ୟହମହର୍ନିଶମେବ ଯୁକ୍ତଃ ।
ଆଗୋ ଲତା ନ ଗଣୟତ୍ୟକୃଶଂ ଯଥାଳେ-
ର୍ବାଲେ ମମ ତ୍ୱମପି ତତ୍ ସତତଂ କ୍ଷମସ୍ୱ ॥

ଇତ୍ଥଂ ପ୍ରତ୍ୟଙ୍ଗଚୁମ୍ବୋଇଯୁତରୋଇଇରିତଚୁମ୍ବତ୍କାରଚମତ୍କାରଣୈଃ ସଚଟୁଲଗୁଟୁଲ୍ଲପଟିମାଟୋପପୁଟିତୈର୍ମୃଦୁଭିର୍ବଚନୈଶ୍ଚେଲାଞ୍ଚଲବ୍ୟଜନବୀଜ - ନୈଷ୍ଠାହନାବସାନାୟାଂ କ୍ଷଣଦାୟାଂ ମଞ୍ଜୁଲକେଳିମଞ୍ଜିରିନିଳୟଦ୍ୱାର ନିଳୀୟ କାଚିତ୍ ବ୍ରଜଦେବୀ ।

---

ତୁ ଅତି ଯତ୍ନରେ ଯେଉଁ ପ୍ରେମରୂପକ ଚିନ୍ତାମଣି ସଞ୍ଚୟ କରି ରଖିଥିଲୁ, ମୋ ହାତରେ ତାକୁ ଅତି ଆଦରରେ ଅର୍ପଣ କଲୁ କି ? ହେ ଯୁବତୀସମୂହଶ୍ରେଷ୍ଠ, ତୁ ଯେବେ ନିଶ୍ଚୟ ମୋର ଆଶ୍ରୟ ହେଲୁ, ତେବେ ଅତି ଯୁଦ୍ଧ ହୋଇ ଏବେ କନ୍ଦର୍ପ ଯୁଦ୍ଧ କରିବାକୁ ସାଜୁ ପିନ୍ଧୁ ଅର୍ଥାତ୍ ମୋ ସଙ୍ଗେ ଯୁଦ୍ଧ କରିବାକୁ ମଦନ ତା ସାଜକୁ ପିନ୍ଧୁ; ମୁଁ ତା ସଙ୍ଗେ ଯୁଦ୍ଧ କରିବାକୁ ପ୍ରସ୍ତୁତ ଅଛି । ମୋର ଆଉ ମଦନକୁ ଡର ନାହିଁ । ୩ । ବୃନ୍ଦାସଖୀ ଯମୁନା ନଦୀକୂଳରେ ଜାତ ହୋଇଥିବା ବନୀ ଅର୍ଥାତ୍ ବନକୁ ଅବନୀ ଅର୍ଥାତ୍ ପୃଥିବୀ ବା ଲୀଳାସ୍ଥଳୀ ରଚନା କରିବାରେ ( ବୃନ୍ଦାବନ କରିବାରେ ) ଯଶ ରଖି ( କୃତକାର୍ଯ୍ୟ ହୋଇ ) ନିନ୍ଦାସମୂହରୁ ନିବାରଣ କଲା; ଅଥବା ଏ ବନର ଅଧିଷ୍ଠାତ୍ରୀ ଦେବତା ବୃନ୍ଦାଙ୍କ ଅନୁଗ୍ରହରୁ ଏ ଯମୁନାକୂଳ ବନ ବୃନ୍ଦାବନରେ ପରିଣତ ହେଲା, ସେ ଯଶସ୍ୱିନୀ ହେଲେ ଏବଂ ମୁଁ ଲୋକନିନ୍ଦାରୁ ରକ୍ଷା ପାଇଲି । ୪ । ଯଶୋଦା-କୁମର ଶ୍ରୀକୃଷ୍ଣଙ୍କର ଏହି କଥା ଶୁଣି ଲଜ୍ଜାରେ ରାଧା ମୁହଁ ତଳକୁ କଲେ । ହେ ଯୁଗଳବିଗ୍ରହ ( ରାଧାକୃଷ୍ଣରୂପୀ ) ଆଠଗଡ଼ର ରାଜାଙ୍କୁ ଅନୁଗ୍ରହ କର । ୫ ।

ଟୀକା—ଅନଲସଃ ନିରିବରଣଃ ଯଃ ଇନ୍ଦୁଶ୍ଚନ୍ଦ୍ରଃ ତସ୍ୟ ସହୋଦରଂ ତତ୍ତୁଲ୍ୟଂ ଆସ୍ୟଂ ବଦନଂ ଯସ୍ୟ ତତ୍ ସମ୍ବୋଧନେ; ଅୟି ଶରଚ୍ଚନ୍ଦ୍ରାନନେ, ଅଦ୍ୟପ୍ରଭୃତି ଅଦ୍ୟାରଭ୍ୟ ଅହର୍ନିଶଂ ଅହୋରାତ୍ରଂ ସତତଂ ତବଦାସ୍ୟେ ଭୃତ୍ୟତ୍ୱେ ଯୁକ୍ତଃ ନିଯୁକ୍ତଃ ଅସ୍ମି ଏବ । ଅୟି ବାଲେ, ଯଥା ଯେନ ପ୍ରକାରେଣ ଲତା ପୁଷ୍ପିତା ଇତି ଯାବତ୍ ଅଳେଃ ଭ୍ରମରସ୍ୟ ଅକୃଶଂ ମହତ୍ ଆଗଃ ଅପରାଧଂ ( ଆଗୋଽପରାଧୋ ମନ୍ତୁଶ୍ଚ ଇତ୍ୟମରଃ, ଆଗଃ ସାନ୍ତଂ କ୍ଲୀବେ ) ନ ଗଣୟତି ମନସି ନ ଦଧାତି ତ୍ୱମପି ମମ ତତ୍ ଆଗଃ ସତତଂ କ୍ଷମସ୍ୱ, ଯଥା ଭ୍ରମରବିମର୍ଦ୍ଦିତା ପୁଷ୍ପଲତା ଭ୍ରମରସ୍ୟ ଚୁମ୍ବନପରିରମ୍ଭଣାଦିଜନିତଂ ଅପରାଧଂ ନ ହୃଦି ଦଧାତି ତଥା ମଦଙ୍ଗସଙ୍ଗକ୍ଲିଷ୍ଟା ତ୍ୱମପି ମମାପରାଧଂ ହୃଦି ନ ଧାସ୍ୟସୀତି ମେ ପ୍ରାର୍ଥନା ।

# ର

ରାଗ—କେଦାର

ରସାଳସା ରେ, ରସି ପ୍ରାଣି ଏ କି ଲୋକହସା ରେ । ପଦ ।
ରକ୍ତିମା ଚୁମ୍ବିଲା ଇନ୍ଦ୍ର ଅଶାରେ, ରାଜୀବେ ପ୍ରଫୁଲ୍ଲ ହେଲେ କାସାରେ । ୧ ।
ରତିନାଥ ସମର ପ୍ରଶଂସାରେ, ରମଣୀ କେ ନ ରସନ୍ତି ସଂସାରେ । ୨ ।
ରସନ୍ତି ରସିକେ ସିନା ନିଶାରେ, ରଜନୀ ଶେଷରେ ଏ କି ଦଶାରେ । ୩ ।
ରମଣୀୟ ହେମକୁ ସୁଦ୍ଭୂଶା ରେ, ରଖିଲୁ କେଡ଼େ ନିବଡ଼େ ମସାରେ ।
ରହୁନା ଅଯଶ ଅଭି ରସାରେ, ରସାଳୁହରୁ ଲତାକୁ ଖସା ରେ । ୫ ।
ରାଜା ଅଷ୍ଟାଦୁର୍ଗର ଏ ଭାଷା ରେ, ରଚେ ଏବେ ବିଜେ ହେଉ ସୁସାରେ ।୬ ।

ଇତ୍ଥଂ ଅନେନ ପ୍ରକାରେଣ ରାଧାୟାଃ ଅଙ୍ଗଂ ଅଙ୍ଗଂ ପ୍ରତି ପ୍ରତ୍ୟଙ୍ଗଂ ତସ୍ମିନ୍ ଚୁମ୍ବାନାଂ ଉଚ୍ଚୟଃ ସମୂହଃ ତସ୍ୟ ଚର୍ଚ୍ଚା ରଚନା ତସ୍ମା ଉଚ୍ଚଣ୍ଡାଃ ସ୍ଫୁରିତାଃ ଯେ ଚୁମୁତ୍କାରାଃ ତେଷାଂ ଚମତ୍କରଣୈଃ ଅନିର୍ବଚନୀୟାନନ୍ଦୈଃ ସଚଟୁଲାଃ ପ୍ରେମଯୁକ୍ତା ଗୃଢ଼ୁକ୍ତୟଃ ତାସାଂ ଯଃ ପଦ୍ଧିମାନପୂର୍ଣତ୍ୱଂ ତସ୍ୟ ଆଟୋପପୁଷ୍ଟିତୈଃ ଆଡ଼ମ୍ବରଗ୍ରଥିତୈଃ ମୃଦୁଭିଃ କୋମଳୈର୍ବଚନୈଃ ପୁନଃ ଚେଲାଞ୍ଚଳଃ ପରିହିତ-ଶାଟିକାପ୍ରାନ୍ତଭାଗଃ ଏବ ବ୍ୟଜନଂ ତସ୍ୟ ବୀଜନୈଃ ସଞ୍ଚାଳନୈଃ ଆଭିଃ କ୍ରିୟାଭିଃରତି ଶେଷଃ, କ୍ଷଣଦାୟାଂ ରଜନ୍ୟାଂ ଆସନ୍ନଂ ସମୀପବର୍ତ୍ତୀ ଅବସାନଂ ଶେଷଃ ଯସ୍ୟାଃ ତସ୍ୟାଂ ସତ୍ୟାଂ ମଞ୍ଜୁଲା ମନୋହାରଣ୍ୟଃ ଯାଃ କେଳିମଞ୍ଜର୍ଯ୍ୟଃ ଲତାବିଶେଷାଃ ତା ଏବ ନିଲୟଃ ନିକୁଞ୍ଜଃ ତସ୍ୟ ଦ୍ୱାରଦେଶେ, କାଚିତ୍‌ବ୍ରଜଦେବୀ ରାଧାପ୍ରିୟସଖୀ ନିଳୀୟ ରହସି ସ୍ଥିତ୍ୱା କଥୟତୀତି ଶେଷଃ ।

ଅନୁବାଦ—ହେ ପୂର୍ଣ୍ଣଚନ୍ଦ୍ରମୁଖି, ଆଜଠାରୁ ଦିନରାତି ସର୍ବଦା ତୋ ଗୁଙ୍କର ବୋଲି ମୋତେ ଜାଣିବୁ, ଲତା ଯେପରି ଭ୍ରମରର ଚୁମ୍ବନାଦିଜନିତ ମହାଅପରାଧକୁ ଧରେ ନାହିଁ, ହେ ସୁନ୍ଦରି, ତୁ ସେପରି ମୋର ସମସ୍ତ ଅପରାଧକୁ ସର୍ବଦା କ୍ଷମା କରିବୁ ।

ଶ୍ରୀକୃଷ୍ଣ ରାଧିକାଙ୍କର ପ୍ରତ୍ୟଙ୍ଗକୁ ଚୁମ୍ବନ କଲାବେଳେ ଉଠିବା ଚୁଁକାର ଶବ୍ଦରେ ଅନିର୍ବଚନୀୟ ଆନନ୍ଦ ଜାତ ହେଲା; ଏହିପରି ମନୋହର ଗୂଢ଼ୋକ୍ତିପୂର୍ଣ୍ଣ ସୁମଧୁର ବାକ୍ୟ କହୁଁ କହୁଁ ଏବଂ କାନିପଣନ୍ତରେ ବିଞ୍ଚି ହେଉ ହେଉ ରାତି ପାହିଗଲା । ଏହି ସମୟରେ ଜଣେ ବ୍ରଜାଙ୍ଗନା ସେହି ମନୋହର କେଳିମଞ୍ଜରୀ-କୁଞ୍ଜର ଦ୍ୱାରଦେଶରେ ଆଡ଼େଇ ହୋଇ ରହି ଶ୍ରୀରାଧାଙ୍କୁ ସମ୍ବୋଧନ କରି କହିଲେ—"ରସାଳସା ରେ" ଇତ୍ୟାଦି ।

(୭) ଅନାଦୃତ୍ୟାଲୀନାଂ ପ୍ରିୟବଚନମାଲାମକଠିନାଂ,
ହଠାତ୍ ପ୍ରେୟଃଶଙ୍କାର୍ଗଳନବଡ଼ରୁଦ୍ଧାସି ସଖି ଚେତ୍ ।
ଇଦାନୀମପ୍ୟାତ୍ମାବନମବନୀଭୂଷାଙ୍ଘ୍ରି ସୁଷମେ,
ଯଥା ଭୂୟାଦ୍ ଯତ୍ନାତ୍ କୁରୁ କୃଶସପତ୍ନୀସ୍ୟହସିତଂ ॥

ତତସ୍ତଦାକର୍ଣ୍ୟ କର୍ଣ୍ଣାଭ୍ୟର୍ଣ୍ଣଚୁମ୍ବି ତୂର୍ଣ୍ଣକ୍ରୀଡ଼ନ୍ଲୋଲଲୋଚନାଂ ଦାବୋତ୍ତୀର୍ଣ୍ଣସ୍ୱର୍ଣ୍ଣସାବର୍ଣ୍ୟପୂର୍ଣ୍ଣବର୍ଣ୍ଣା ଶୀର୍ଣ୍ଣକନ୍ଧୁବନୋତ୍ସାହାତିରେକା ସା ପ୍ରକୀର୍ଣ୍ଣମାଲ୍ୟମୁତ୍ଥାପ୍ୟ ସନ୍ଧାସନ୍ଧପଂ କିଶୋରେଶ୍ୱରଂ ପ୍ରତି ।

---

(୭) ହେ ରସାଳସା—ରସାଧିକ୍ୟ ଯୋଗୁଁ ଆଳସ୍ୟପ୍ରାପ୍ତା; ଇନ୍ଦ୍ରଆଶା—ପୂର୍ବଦିଗ; ରାଜୀବେ—ପଦ୍ମମାନେ; କାସାରେ—ପୋଖରୀରେ; ମସାରେ—ନୀଳମଣି ମଧ୍ୟରେ; ରସାରେ—ପୃଥିବୀରେ; ରସାରୁହରୁ—ବୃକ୍ଷରୁ; ସୁସାରେ—ବନା ଆପତ୍ତିରେ ।

ହେ ରସାଳସା, ରସି ଅର୍ଥାତ୍ ରସରେ ଅନୁରକ୍ତ ହୋଇ ପୁଣି ଏ କି ଲୋକହସା ( ହଟହଟା ) ହେଲୁ । ପଦ । ପୂର୍ବଦିଗ ଆକାଶକୁ ଏବେ ରକ୍ତିମା ଚୁମ୍ବିଲାଣି ଅର୍ଥାତ୍ ପୂର୍ବାକାଶ ଅରୁଣ ବର୍ଣ୍ଣ ଧରିଲାଣି ଏବଂ ପଦ୍ମମାନେ ପୋଖରୀରେ ଫୁଟିଲେଣି । ୧ । ଏ ସଂସାରରେ ଭଲ କେଉଁ ସ୍ତ୍ରୀ କାମକ୍ରୀଡ଼ାର ପ୍ରଶଂସାରେ ଅନୁରକ୍ତ ନ ହୁଅନ୍ତି ? ଅର୍ଥାତ୍ ରମଣୀଗଣ କାମ-ସମରରେ ଜୟଲାଭ କରି କାମଦେବଙ୍କ ପ୍ରଶଂସା କରିବାରେ ଲଗିଥାନ୍ତି । ୨ । ମାଘ ରାତିରେ ଯିନା ରସିକମାନେ ରସନ୍ତି, ରାତି ଶେଷରେ ଏ କି ଦଶା ଉପସ୍ଥିତ ହେଲା ! ଅର୍ଥାତ୍ ରସିକମାନଙ୍କର ରସକ୍ରୀଡ଼ାର ବେଳ ଯିନା ରାତି, ରାତି ପାହିଗଲାଣି, ତେବେ ସୁଦ୍ଧା ତୋର ରସକ୍ରୀଡ଼ା ଶେଷ ହେଲା ନାହିଁ । ୩ । ହେ ସୁନେତ୍ରା, ସୁନ୍ଦର ସୁବର୍ଣ୍ଣକୁ ( ସୁନ୍ଦର ସୁବର୍ଣ୍ଣ ସଦୃଶ ତୋ ଶରୀରକୁ ) କେତେ ଦୃଢ଼ରୂପେ ମସାର ମଧ୍ୟରେ ( ଇନ୍ଦ୍ରନୀଳମଣି ତୁଲ୍ୟ କୃଷ୍ଣଙ୍କ ଶରୀରରେ ) ରଖିଲୁ ? ( ସୁବର୍ଣ୍ଣ ମଧ୍ୟରେ ଯିନା ନୀଳମଣିକୁ ରଖାଯାଏ, ନୀଳମଣି ମଧ୍ୟରେ ସୁବର୍ଣ୍ଣ କପରି ରହିଛୁ ମ ? ) । ୪ । ପୃଥିବୀରେ ଆଉ ଅଯଶ ବା ଅପବାଦ ନ ରହୁ, ରସାରୁହରୁ ( ଶ୍ରୀକୃଷ୍ଣଙ୍କ ଶରୀର ରୂପ ବୃକ୍ଷରୁ ) ( ତୋ ଅଙ୍ଗ ରୂପ ) ଲତାକୁ ଖସା ଅର୍ଥାତ୍ ତାଙ୍କ ଶ୍ରୀଅଙ୍ଗସଙ୍ଗ ତ୍ୟାଗ କର । ୫ । ଅଷ୍ଟଦୁର୍ଗର ରାଜା ଏହାକୁ ଭାଷାରେ ରଚନା କଲେ, ଏବେ ବନା ଆପତ୍ତିରେ ବାହାର ଆ । ୬ ।

ଟୀକା—ହେ ସଖି, ଆଲୀନାଂ ସଖୀନାଂ ଅକଠିନାଂ କୋମଲାଂ ପ୍ରିୟବଚନମାଲାଂ ସୁମଧୁରବାକ୍ୟାବଳୀଂ ଅନାଦୃତ୍ୟ ହଠାତ୍ ପ୍ରେୟସଃ ପ୍ରିୟତମସ୍ୟ ଶଙ୍କା ଏବ ଅର୍ଗଲଃ ତେନ ନବଢ଼ଂ ଯଥାସ୍ୟାତ୍ ତଥା ରୁଦ୍ଧାଅସି ଚେତ୍ ଅବନେଃ ପୃଥିବ୍ୟାଃ ଭୂଷା ଅଳଂକାରସ୍ୱରୂପା ଅଂଘ୍ରି ସୁଷମା ପାଦଶୋଭା ଯସ୍ୟାଃ ତସ୍ୟାଃ ସମ୍ବୋଧନେ, ଯଥା ଇଦାନୀଂ ଆତ୍ମନଃ ଅବନଂ ଆତ୍ମରକ୍ଷଣଂ ଭୂୟାତ୍ ତଥା



ରାଗ—ଖଣ୍ଡକାମୋଦୀ—ଅବକାଶ

ଲୀଳାନିଧି ହେ, ଲକେ ମୁଁ ଗଲିଣି ସଢ଼ି ।
ଲୁଗୁଇଛ କାହିଁ ଶ୍ୟାମ ହେ ଦିଅ ମୋ ଲଗିଶାଢ଼ି । ପଦ ।
ଲଭି ତୁମ୍ଭଙ୍କୁ ପ୍ରାଣବନ୍ଧୁ କର, ଲୋକହସାରେ ଯେବେ ଯିବ ସର,
ଲସିବ ଯେବେ ପାଇ ନିନ୍ଦା ଦାଉ, ଲଗିଲି ଅପଣଙ୍କୁ କେହି ଆଉ । ୧ ।
ଲକ୍ଷ ଲକ୍ଷ ଗୁଣ ଅଛୁଟି ମୋର, ଲଲାମ ଅଦ ଭୂଷା ସଜ କର,
ଲଭିଥିବ ଭୁରୁ ମଧ୍ୟ ତିଳକ, ଲେଖିଦିଅ ବେଗେ ନ ଦେଖୁ ଲୋକ । ୨ ।
ଲୋଭୀ, ଶ୍ରୀଭୁଜବାନ୍ଧ ଶିଥିଳାଅ, ଲତା ଗହଳେ ଗହନେ ପଳାଅ,
ଲଗିଛୁ ଲଘା ମୁକୁଟ ଶିଖଣ୍ଡେ, ଲଜ କଥା ଲୋକେ ଦେଖିଲେ ଦାଣ୍ଡେ । ୩ ।
ଲଗାଇଛ ହଟ ଯେଉଁ ରସରେ, ଲୁଟିବ ସିନା କାଲି ପ୍ରଦୋଷରେ,
ଲଙ୍ଘି ଅଶ୍ରିତେ ଥିବା କୃପାସିନ୍ଧୁ, ଲଙ୍ଘୁଅଛି କେଡ଼େ ହେଲ ହେ ବନ୍ଧୁ । ୪ ।
ଲଳିତା ନୋହେଛି ଯେ ଡାକୁଅଛୁ, ଲକ୍ଷେ ଦୁଷ୍ଟେ ରଖିଅଛୁ, ମୁଁ ବାଛୁ,
ଲଘୁ କରିଦେବ ଦେଖିବା କ୍ଷଣେ, ଲେଖାଧିପ ଅଷ୍ଟାଦୁର୍ଗରଂଭଣେ ।

---

କୁଣଂ କ୍ଷୀଣଂ ସପତ୍ନୀନାଂ ଶତ୍ରୂଣାଂ ଆସ୍ୟହସିତଂ ଯସ୍ମିନ୍ କର୍ମଣି ତଦ୍ ଯଥା ତଥା ଯତ୍ନାନ୍ କୁରୁ, ଏବଂ ଯତ୍ନାନ୍ କୁରୁ ଯଥା ଶତ୍ରବସ୍ତେ ନ ହସିଷ୍ୟନ୍ତି ଆତ୍ମରକ୍ଷା ଚ ଭବିଷ୍ୟତୀତ୍ୟର୍ଥଃ ।

ତତଃ ତଦନନ୍ତରଂ ତତ୍ର ଆକର୍ଣ୍ଣ୍ୟ ଶ୍ରୁତ୍ୱା କର୍ଣ୍ଣୟୋଃ ଅଭ୍ୟର୍ଣ୍ଣଂ ସମୀପଂ ଚୁମ୍ବତଃ ଇତି କର୍ଣ୍ଣାଭ୍ୟର୍ଣ୍ଣଚୁମ୍ବିନୀ ଆକର୍ଣ୍ଣବିସ୍ତୃତେ ଇତ୍ୟର୍ଥଃ ତୂର୍ଣ୍ଣଂ ଯଥା ସ୍ୟାତ୍ ତଥା କ୍ରୀଡ଼ନ୍ତ୍ୟୌ ଲୋଲେ ଚଞ୍ଚଲେ ଲୋଚନେ ଯସ୍ୟାଃ ସା, ଆକର୍ଣ୍ଣବିସ୍ତୃତଚଞ୍ଚଲ ନୟନା ଇତ୍ୟର୍ଥଃ, ଦାହାତ୍ ଅଗ୍ନିମଧ୍ୟାତ୍ ଉତ୍ତୀର୍ଣ୍ଣଂ ବହିର୍ଗତଂ ଯତ୍ ସ୍ୱର୍ଣ୍ଣଂ ତସ୍ୟ ସବର୍ଣ୍ଣସ୍ୟ ଭାବଃ ସାବର୍ଣ୍ଣ୍ୟଂ ତେନ ପୂର୍ଣ୍ଣଃ ବର୍ଣ୍ଣଃ ଯସ୍ୟାଃ ସା; ତପ୍ତକାଞ୍ଚନବର୍ଣ୍ଣା ଇତ୍ୟର୍ଥଃ, ଶୀର୍ଣ୍ଣଃ, କ୍ଷୀଣଃ ନିଧୁବନୋତ୍ସାହସ୍ୟ ରତକ୍ରୀଡ଼ାୟାଃ ଅତିରେକଃ ଆଧିକ୍ୟଂ ଯସ୍ୟାଃ ସା ପୂର୍ଣ୍ଣସୁରତ-କାମା ସା ରାଧା ପ୍ରକୀର୍ଣ୍ଣଂ ଇତସ୍ତତଃ ବିକ୍ଷିପ୍ତଂ ମାଲ୍ୟଂ ଯଥା ତଥା ଭ୍ରଷ୍ଟମାଲ୍ୟମିତ୍ୟର୍ଥଃ ଉତ୍ଥାୟ ସହାସହାସଂ ସଭୟଂ ସଲଜ୍ଜଂ ଚ କିଶୋରେଶ୍ୱରଂ ଶ୍ରୀକୃଷ୍ଣଂ ପ୍ରତି ବଦତି ଇତି ଶେଷଃ ।

ଅନୁବାଦ—ହେ ସଖି, ସଖୀମାନଙ୍କର ହିତ କଥାକୁ ଆଦର ନ କରି ଯେବେ ଶୀଘ୍ର ପ୍ରିୟତମଙ୍କର ସ୍ନେହପାଶରେ ଆବଦ୍ଧ ହୋଇ ପଡ଼ିଅଛୁ, ତେବେ

(ଲ) ଲମ୍ବମମ୍ବରମାରକ୍ତଂ ପ୍ରାଚୀ ପ୍ରାଚୀକଟତ୍ କଟୌ,
ବାଲାତ୍ବଦୟୂପଞ୍ଚୈଷୋ ମୃଞ୍ଚ ମତ୍କଞ୍ଚୁକାଞ୍ଚଲଂ ।

ଅମନ୍ଦାନନ୍ଦପୀୟୂଷନିସ୍ୟନ୍ଦସନ୍ଦୋହତୁନ୍ଦିଲସ୍ୟନ୍ଦନପଦଦମ୍ଭନିନଦୈ—ର୍ନିଶାଚରମଦଶାସ୍ମାରକବନେଚରଚରଣାୟୂଧଧ୍ୱନିଭର୍ଯମୁନାବାଃପୁରଵକରୁଚଵନ୍ଦବୃନ୍ଦତୁନ୍ଦମରନ୍ଦପାନପ୍ରମୂଦଛାଲପାଳିପ୍ରଣୀତଝଙ୍କାରୈର୍ନନ୍ଦମନ୍ଦିରଗୋପୁରାବଲମ୍ବବନ୍ଦନିକୁରମ୍ବସ୍ତବପାଠପାଟବୈର୍ବାହ୍ୟନ୍ୟବଗାହାଗତଗୋପୀଜନାଭରଣରଣତ୍କରଣୈଃ ପରଭ୍ୟମାଣପ୍ରାଭାତକଡ଼ମ୍ବରବାଡ଼ମ୍ବରୈଷ୍ଟ୍ରତେଽପ୍ୟମ୍ବରତଳେ ଶନୈର୍ନିକୁଞ୍ଜାନ୍ନିଷ୍କ୍ରାନ୍ତାଂ କାନ୍ତାଂ ପ୍ରତି ସଖ୍ୟଃ ।

---

ହେ ସୁନ୍ଦର, ଯେପରି ଶତ୍ରୁମାନେ ନ ହସନ୍ତି, ସେପରି ଆତ୍ମରକ୍ଷା କରିବାକୁ ଯତ୍ନ କର ।

ଅନନ୍ତର ଏହି କଥା ଶୁଣି ସେହି ଆକର୍ଷିତବସ୍ତ୍ରଚଞ୍ଚଳନେତ୍ରା, ତପ୍ତକାଞ୍ଚନବର୍ଣ୍ଣା ରତିକ୍ରୀଡ଼ାକ୍ଲାନ୍ତା ରାଧା ଫୁଲମାନଙ୍କୁ ଏଣେ ତେଣେ ଫିଙ୍ଗି ଦେଇ ଲଜ୍ଜା ଓ ଭୟ ସହିତ ଉଠି ଶ୍ରୀକୃଷ୍ଣଙ୍କୁ କହିଲେ—"ଲୀଳାନିଧି ହେ" ଇତ୍ୟାଦି ।

---

( ଲ ) ଲୀଳାନିଧି—ଲୀଳାପ୍ରିୟ; ସଢ଼ି ଗଲି—ଅବସନ୍ନ ହୋଇଗଲି; ଲୁଗିଶାଢ଼ୀ—ପିନ୍ଧାଶାଢ଼ୀ; ଲସିବ—ଅବନତ ହେବ; ନିନ୍ଦାଦାଉ—ଅପବାଦର ଯନ୍ତ୍ରଣା; କେନ୍ଦି—କିପରି; ଲଲାମ—ଲଲାଟଭୂଷଣ; ଭୂଷା—ଅଳଙ୍କାର; ଗହନ—ବନ; ମୁକୁଟଶିଖଣ୍ଡେ—ମୟୂରଚୂଳମୁକୁଟରେ; ଲକ୍ଷା—ଅଳତା; ଲୁଟିବ—ଲୁଟିକରିବ; ଲଘୁ କରିଦେବ—ଅପମାନିତ କରିଦେବ; ଲେଖାଧିପ—ଇନ୍ଦ୍ର, ରାଜା ।

ହେ ଲୀଳାପ୍ରିୟ ! ମୁଁ ଲାଜରେ ସଢ଼ି ଗଲି, ହେ ଶ୍ୟାମ ମୋ ପିନ୍ଧା ଶାଢ଼ୀକୁ କେଉଁଠାରେ ଲୁଚାଇଅଛ ଦିଅ । ପଦ । ତୁମ୍ଭଙ୍କୁ ପ୍ରାଣବନ୍ଧୁରୂପେ ପାଇ ମୁଁ ଯେବେ ଲୋକହସାରେ ସରିଯିବି ଏବଂ ଅପବାଦ ଯନ୍ତ୍ରଣା ପାଇ ନିତାନ୍ତ ନ୍ୟୂନ ହୋଇଯିବି, ତେବେ ମୁଁ ଆପଣଙ୍କୁ ଆଉ କିପରି ଲାଗିଲି ? ଅର୍ଥାତ୍ ଆଉ ମୋତେ ତୁମ୍ଭେ କିପରି ସମ୍ଭାଳିଲ ? ୧ । ମୋର ଲକ୍ଷ ଲକ୍ଷ ଗୁଣ ଅଛି; ମୋର ଲଲାଟଭୂଷଣ ପ୍ରଭୃତି ଅଳଙ୍କାର ସଜ କର ( ଯାହା କି ଅସ୍ତବ୍ୟସ୍ତ ହୋଇଅଛି, ତାକୁ ଯଥା ସ୍ଥାନରେ ସଜାଡ଼ି ଦିଅ ), ମୋର ଭ୍ରୂଲତା ମଧ୍ୟରେ ଥିବା ତିଳକକୁ ( ଯାହା ଲିଭିଯାଇଅଛି ଓ ଯାହାର ଲିଭିବା ଦାଣ୍ଡଲୋକେ ଦେଖିଲେ ନାନା ଅପବାଦ ଦେବେ ତାକୁ ) ଲୋକ ଦେଖିବା ଆଗରୁ ଲେଖିଦିଅ । ୨ । ହେ ଲୋଭୀ, ତୁମ୍ଭର ସୁନ୍ଦର ବାହୁପାଶକୁ ମୋ ଦେହରୁ ହୁଗୁଳାଇ ଦିଅ ଅର୍ଥାତ୍ ମୋତେ

ତୁମ୍ଭ ଆଲିଙ୍ଗନରୁ ମୁକ୍ତ କର, ବନ ମଧ୍ୟରେ ଲତା ଗହ୍ୱଳରେ ଅର୍ଥାତ୍ ଲତାପୂର୍ଣ୍ଣ ଗହନ ବନ ଭିତରେ ଭିତରେ ପଳାଇ ଯାଅ । ତୁମ୍ଭର ମୟୂରପୁଚ୍ଛ ମୁକୁଟରେ ଅଳତା ଲାଗିଛି, ଲୋକେ ଦାଣ୍ଡରେ ଦେଖିଲେ ବଡ଼ ଲାଜ କଥା ହେବ । ୩ । ଯେଉଁ ରସରେ ହଟ ଲଗାଇ ଅଛ ଅର୍ଥାତ୍ ଯେଉଁ ରସ ଆଶାରେ ଶାଢ଼ୀ ଲୁଗ୍ଭଇ ଏତେ କୌତୁକ କରୁଅଛ, କାଲି ସନ୍ଧ୍ୟାବେଳେ ସେ ରସ ଲୁଟି କରିବ ଅର୍ଥାତ୍ ସେ ରସ ଉପଭୋଗ କରିବ । ( ଆଜି ମୋ ଶାଢ଼ୀ ଦେଇ ପକାଅ ) କିନ୍ତୁ ହେ କୃପାସିନ୍ଧୁ, ଆଶ୍ରିତ ହୋଇଥିବା ଲୋକକୁ ଏପରି ଲଙ୍ଘନ କରି ଅର୍ଥାତ୍ ଏପରି ହଇରାଣ କରି, ହେ ବନ୍ଧୁ, ତୁମ୍ଭେ କେତେ ଲାଞ୍ଛୁଆ ହେଲଟି ! ( କାଲି ସନ୍ଧ୍ୟାରେ ଆସିବ—ଏହା ସ୍ୱୀକାର କଲେ ଶାଢ଼ୀ ଦେବ—ଏହାହିଁ ଲାଞ୍ଛ ) । ୪ । ଯେ ଲତା ଦ୍ୱାରରେ ଡାକୁଛ, ସେ ଲଳିତା ନୁହେ, ଲକ୍ଷେ ଦୁଷ୍ଟଙ୍କ ମଧ୍ୟରେ ମୁଁ ତାକୁ ଜଣେ ବୋଲି ବାଛି ଅଛି । ସେ ମୋତେ ଦେଖିଲକ୍ଷଣି ନିଶ୍ଚେ ଅପମାନିତ କରିଦେବ, ଆଠଗଡ଼ର ରାଜା ଏହା ଭଣିଲେ ।

ଟୀକା—ପ୍ରାଚୀ ପୂର୍ବାଦିକ୍ ସ୍ତ୍ରୀତି ଧ୍ୱନ୍ୟତେ, କଟୌ କଟିଦେଶେ ଲମ୍ବଂ ଦିଗ୍‌ବଳୟବ୍ୟାପି ଆରକ୍ତଂ ସର୍ବତୋରକ୍ତବର୍ଣ୍ଣଂ ଚ ଅମ୍ବରଂ ଆକାଶଂ ବସ୍ତ୍ରଂ ଚେତି ଧ୍ୱନ୍ୟତେ ପ୍ରାଚୀକଟତ୍ ପର୍ଯ୍ୟାୟତ୍ । ପୂର୍ବାଦିଗରୁଣିତାଭବଦିତ୍ୟର୍ଥଃ । ହେ ବାଲାନାଂ ଯୁବତୀନାଂ ହୃଦୟସ୍ୟ ପଞ୍ଚେଷୋ କନ୍ଦର୍ପ, ହେ ଯୁବତୀମାନସମଦନେ-ତ୍ୟର୍ଥଃ, ମତ୍‌କଞ୍ଚୁକାଞ୍ଚଳଂ ମମ କଞ୍ଚୁକସ୍ୟ ଉଲ୍ଲୋଗ୍ୟପରପର୍ଯ୍ୟାୟସ୍ୟ ଅଞ୍ଚଳଂ ମୁଞ୍ଚ ତ୍ୟଜ ।

ଅମନ୍ଦେନ ଅନଳ୍ପେନ ଆନନ୍ଦସନ୍ଦୋହେନ ତୁନ୍ଦିଳୟୋଃ ପରିପୂର୍ଣ୍ଣୟୋଃ ସ୍ୟନ୍ଦନପଦଦର୍ମିତୟୋଃ ରଥାଙ୍ଗମିଥୁନସ୍ୟ ନିନଦୈଃ ଆରାବୈଃ, ନିଶାୟାଃ ରାତ୍ରେଃ ଚରମଦଶାୟାଃ ଅବସାନସ୍ୟ ସ୍ମାରକୈ ବନେଚରସ୍ୟ ଅରଣ୍ୟଗୃହଣଃ ଚରଣାୟୁଧସ୍ୟ ବନ୍ୟକୁକ୍‌କୁଟସ୍ୟ ଧ୍ୱନିଭିଃ ଯମୁନାୟାଃ ବାଃ ପୁରେ ଜଳପ୍ରବାହେ ( ଆପଃ ସ୍ତ୍ରୀ ଭୂମ୍ନି ବାର୍ବାରି ସଲିଲଂ କମଲଂ ଜଳମିତ୍ୟମରଃ ) ବିକଚାନାଂ ପ୍ରସ୍ଫୁଟିତାନାଂ ଅରବିନ୍ଦବୃନ୍ଦାନାଂ ପଙ୍କଜପଟଲାନାଂ ମରନ୍ଦପାନେନ ମକରନ୍ଦା ସ୍ୱାଦନେନ ପ୍ରମୁଦିତୟା ପ୍ରମତ୍ତୟା ଅଳିପାଲ୍ୟା ଭ୍ରମରପଂକ୍ତ୍ୟା ପ୍ରଣୀତୈଃ ବିହିତୈଃ ଝଙ୍କାରୈଃ, ନନ୍ଦମନ୍ଦିରାଣାଂ ଗୋପୁରଂ ପୁରଦ୍ୱାରଂ ଅବଲମ୍ବଃ ଆଶ୍ରୟୋ ଯସ୍ୟ ତସ୍ୟ ବନ୍ଦିନାଂ ସ୍ତୁତିପାଠକାନାଂ ନିକୁରମ୍ବସ୍ୟ ସମୂହସ୍ୟ ସ୍ତବପାଠପାଟବୈଃ ପ୍ରଶସ୍ତିଗାନାଡ଼ମ୍ବରୈଃ, ବାହିନ୍ୟାଂ ଯମୁନାୟାଂ ଅବଗାହାୟ ଆଗତାନାଂ ଗୋପୀ ଜନାନାଂ ଆଭରଣରଣତ୍ କରଣୈଃ ଭୂଷଣଶିଞ୍ଜାନୈଶ୍ଚ ପରିରଭ୍ୟମାଣୈଃ ସଂଶ୍ଳିଷ୍ଟୈଃ ମିଶ୍ରିତୈରିତି ଯାବତ୍ ପ୍ରାଭାତିକଡିଣ୍ଡିମାନାଂ ପ୍ରଭାତଜ୍ଞାପକବାଦ୍ୟ-ବିଶେଷାଣାଂ ରବାଡ଼ମ୍ବରୈଃ ନାଦାଟୋପୈଃ ଅମ୍ବରତଳେ ଗଗନଭାଗେ ସଂବୃତେ



## ରାଗ—ସାବେରୀ

ବିଚିତ୍ର ବେଶ ମଞ୍ଜୁଳା ରେ ବାଳା, ବିବିଧ ଶୃଙ୍ଗାରଶୀଳା,
ବିଭାବରୀ ଅର୍ଦ୍ଧେ ଏକାକୀ ଏକାକୀ ହୋଇ ରଚୁ ଫୁଲତୋଳା ରେ
ବିଳାସକୁଶଳା ରେ, ବଲ୍ଲୀନିଳୟବିହାରଲୋଳା । ୧ ।
ବାଳକାନ୍ତ ବାସ ପର ରେ ବାଳା, ବଞ୍ଚିଥିଲୁଁ ଅନୁସରି,
ବିଲକ୍ଷଣ ବନବିହାରଉତ୍ସବ ବେଳେ ଯା ଦେଲୁ ପାଶୋରି ରେ,
ବିସ୍ମର ତ ଗୋରି ରେ, ବିଶ୍ୱେ କାହିଁକି ପ୍ରୀତି ଆଚରି । ୨ ।
ବ୍ୟସ୍ତ ହୋଇ ଶିହରୁଛୁ ରେ ବାଳା, ବ୍ରଣଗଣ ତ ଦିଶୁଛି,
ବିମ୍ବାଧରୁ ନବପଲ୍ଲବମାନଙ୍କୁ ବାଣ୍ଟିଲୁ କି କିଛି କିଛି ରେ
ବିଶ୍ଳଥ ହୋଇଛି ରେ, ବାସ ପିନ୍ଧିଅଛ ପରା କାଛି । ୩ ।
ବଲ୍ଲୀକି ଅନାଇ ଦୂରୁ ରେ ବାଳା, ବାସରେ ତ ଭୟ କରୁ,
ବ୍ରଜେ ଆଜ ଶୁଣି ଅସିଲୁ ତୁ ପୁଣି ପ୍ରତିରାତି ଆସି ଘରୁ ରେ,
ବିଜନେ ସଞ୍ଚରୁ ରେ, ବଡ଼ ବିଷମ ଏ ଯାମିନ ଡରୁ । ୪ ।
ବିନୟନୟନବସତି ରେ ବାଳା, ବିମୋହନ କଳାବତି;
ବିରୂପାକ୍ଷ ଦେବ ବିପକ୍ଷକୁ ଜିଣି ଯଶେ ମଣ୍ଡିଲୁ କି କ୍ଷିତି ରେ;
ବଲ୍ଲବଯୁବତି ରେ, ବନ୍ଦେ ଅଷ୍ଟଦୁର୍ଗଧରାପତି । ୫ ।

---

ପରପୂର୍ବ୍ବେ ସତି ଶନୈଃ ନିଃଶବ୍ଦଂ ଯଥା ସ୍ୟାତ୍ ତଥା ନିକୁଞ୍ଜାତ୍ କୁଞ୍ଜବନାତ୍ ନିଷ୍କ୍ରାନ୍ତାଂ ବହିର୍ଗତାଂ କାନ୍ତାଂ ଶ୍ରୀରାଧାଂ ପ୍ରତି ସଖ୍ୟ ପରିହସନ୍ତୀତି ଶେଷଃ ।

ଅନୁବାଦ—ପୂର୍ବଦିଗରୂପ ନାୟିକା କଟିଦେଶରେ ଦୀର୍ଘ ରକ୍ତବର୍ଣ୍ଣ ବସ୍ତ୍ର ଦେଖାଇ ହେଲଣି, ଅର୍ଥାତ୍ ପୂର୍ବଦିଗର ଆକାଶରେ ଅରୁଣଉଦୟ ଦେଖାଗଲଣି; ହେ ଯୁବତିମାନସମୋହନ, ମୋ କଣ୍ଠ କର ପଣନ୍ତ ଛାଡ଼ିଦିଅ ।

ରାତ୍ରିବିରହ ପରେ ମିଳନ ଆଶାରେ ଚକ୍ରବାକଦମ୍ପତି ଅତି ଆନନ୍ଦିତ ହୋଇ ରବ କଲେଣି, ବନ୍ୟକୁକ୍କୁଟମାନେ ପ୍ରଭାତସୂଚକ ଶବ୍ଦ ଆରମ୍ଭ କରି ଦେଲେଣି, ଯମୁନାଜଳ ପ୍ରବାହରେ ପ୍ରସ୍ଫୁଟିତ ପଦ୍ମ ମଧ୍ୟରେ ଭ୍ରମରବୃନ୍ଦ ମଧୁପାନ କରୁ କରୁ ଝଙ୍କାର କଲେଣି, ନନ୍ଦଙ୍କ ନଅର ଦ୍ୱାରଦେଶରେ ଥିବା ଭାଟମାନେ ସ୍ତବପାଠ ଆରମ୍ଭ କଲେଣି । ଏହିସବୁ ଶବ୍ଦ ସଙ୍ଗେ ଓ ଯମୁନାକୁ ସକାଳୁ ଗାଧୋଇ ଆସୁଥିବା

(ବ) ଯା ତ୍ୱଂ ଶିଗ୍ଗିଷାଙ୍ଗଲତେ ସହୈଥା ନାଲୀକନାଲଙ୍ଗନମପ୍ୟଗାଢ଼ଂ,
ଅମାଲରନ୍ଧ୍ରାର୍ଗଲଯୁଗ୍ମରୁଦ୍ଧା ସୈବତ୍ୱମାସୀଃ କଥମଦ୍ୟ କଣ୍ଠଂ ।
ସାନ୍ଦ୍ରଃପ୍ରଣୟହାସପରିହାସୈକ୍ଷ୍ୟୈ ଭିରତ୍ୟେବମାଲୀନାମାଲୀନାୟା-ମଙ୍ଗେସୁ ଲଜ୍ଜାୟା ଲୀଲାବିମର୍ଦ୍ଦ ଦୂନାଙ୍ଗ୍ୟାମଙ୍ଗୀକୃତ୍ୟାଙ୍ଗରାଗାଦସଙ୍ଗାର ସାଲସଲସତ୍ ସମୀରେଣ ପଥ କଦମ୍ବକଦମ୍ବସମ୍ବାଧେନ ତାଭିଃ ସହଚରୀଭି-ରବଗାହାୟ ଯମୁନାବାଃପ୍ରବିଷ୍ଟାୟାଂ ରାଧାୟାମକସ୍ମାଦାଗତଃ ସାନ୍ଦୀପନି-ମୁନ୍ନାନନ୍ଦନଃ ସାନନ୍ଦଃ ଶ୍ରୀକୃଷ୍ଣଂ ପ୍ରତି ସସ୍ମିତଂ ।

---

ଗୋପୀମାନଙ୍କର ଅଳଙ୍କାର ଧ୍ୱନି ସଙ୍ଗେ ପ୍ରଶ୍ରୁତସୂଚକ ଡିଣ୍ଡିମ ଶବ୍ଦ ମିଶି ଶୁଣା ଗଲଣି, ଏହି ସବୁ ଶବ୍ଦଦ୍ୱାରା ଆକାଶପୂର୍ଣ୍ଣ ହେବାରୁ ରାଧା ଧୀରେ ଧୀରେ କୁଞ୍ଜ ମଧ୍ୟରୁ ବାହାରଲେ, ସେତେବେଳେ ସଖୀମାନେ ତାଙ୍କୁ ପରିହାସରେ କହୁ ଅଛନ୍ତି— "ବିଚିତ୍ର ବେଶ ମଞ୍ଜୁଳା ରେ" ଇତ୍ୟାଦି ।

---

(ବ) ବଲ୍ଲୀନିଲୟ—ଲତାକୁଞ୍ଜଗୃହ, ବାସ—ଲୁଗା, ବିଲକ୍ଷଣ—ବିଶିଷ୍ଟ, ଅସାଧାରଣ; ବ୍ୟସ୍ତ—ଇତସ୍ତତଃ ଲିପ୍ତ, ଚିତ୍ରମାଛ—କସ୍ତୁରି ପ୍ରଭୃତି ଦ୍ୱାରା ଗଣ୍ଡ ସ୍ଥଳରେ ଅଙ୍କିତ ହୋଇଥିବା ମାଛର ଚିତ୍ର, ବ୍ରଣଗଣ—ଖଣ୍ଡିଆ ଚିହ୍ନ, ନବ ପଲ୍ଲବ—ନୂଆ ପତ୍ର, ବିଶ୍ଲଥ—ଢିଲା, ହୁଳ୍ପୁଳା; ବଲ୍ଲୀକି—ଲତାକୁ, ବାସରେ—ଦିନ ବେଳେ, ବିଜନେ—ନିର୍ଜନ ସ୍ଥାନରେ, ବନସ୍ଥନୟବସତି—ବନସ୍ଥ ଓ ନୀତିରେ ନିପୁଣା, କଳାବତୀ—ସୂକ୍ଷ୍ମଶିଳ୍ପନିପୁଣା, ବିରୂପାକ୍ଷଦେବବିପକ୍ଷ—ଶିବଙ୍କ ଶତ୍ରୁ, କାମ; ବଲ୍ଲବବଧୂବତୀ—ଗୋପାଳୁଣୀ ।

ହେ ବାଳା, ତୁ ତ ଅତି ବିଚିତ୍ର ବେଶରେ ସୁନ୍ଦର ହୋଇଅଛୁ ଏବଂ ନାନାବିଧ ଗୃହକର୍ମରେ ନିପୁଣା ଅଟୁ, ଅଧ ରାତିରେ ଏକା ହୋଇ ତୁ କିପରି ଏ ବଣରେ ଫୁଲ ତୋଳୁଅଛୁ ? ହେ ସଖି ତୁ ବିଳାସରେ ବଡ଼ କୁଶଳା ଅଟୁ ଏବଂ କୁଞ୍ଜବନରେ କ୍ରୀଡ଼ା କରିବାରେ ତୁ ବଡ଼ ଉତ୍ସୁକା । ୧ । ଆମ୍ଭେମାନେ ପିଲାଦିନରୁ ପିନ୍ଧାଲୁଗା ଦେହରେ ଲାଗି ରହିଲା ପରି ତୋତେ ଅନୁସରଣ କରିଥିଲୁଁ, କିନ୍ତୁ ତୋର ଏହି ବିଶିଷ୍ଟ ବନବିହାରରୂପ ଉତ୍ସବ ବେଳେ ତୁ ଯାହା ଆମକୁ ଏକା-ବେଳକେ ପାସୋରି ଦେଲୁ ଏହା ବଡ଼ ଦୁଃଖର କଥା । ହେ ଗୋରି, ବିଗ୍ଭର କର, ସଂସାରରେ ଲୋକେ କାହିଁକି ବନ୍ଧୁତ୍ୱ କରନ୍ତି ? ୨ । ହେ ସଖି, ତୋ ଗଣ୍ଡସ୍ଥଳରେ ଯେଉଁ ମାଛର ଚିତ୍ରସବୁ ଅଙ୍କିତ ହୋଇଥିଲା, ସେଗୁଡ଼ିକ ତ କାହିଁକି ଲିଭି ଗଲା ପରି ଜଣା ଯାଉଅଛି ଏବଂ ଗଣ୍ଡ ଦେଶରେ ତ କଣ କ୍ଷତ ଦେଖାଯାଉ-ଅଛି, ତୁ ତୋ ବିମ୍ବଫଳ ସ୍ୱରୂପ ଅଧରରୁ ନୂଆ ପତ୍ରମାନଙ୍କୁ କିଛି କିଛି ( ରକ୍ତିମା ) ବାଣ୍ଟି ଦେଇଅଛୁ କି ? (ତା ହୋଇ ନ ଥିଲେ ତୋ ରକ୍ତବର୍ଣ୍ଣ ଅଧର ଏପରି

ମଳିନ ଦିଶୁଅଛୁ କାହିଁକି ? ) ଆହୁରି ମଧ୍ୟ ତୋ ପିନ୍ଧାଲୁଗା ତ କାହିଁକି ଢିଲା ହୋଇ ଯାଇଅଛି ? ତୁ ପରା ସର୍ବଦିନେ ଲୁଗା କାଛି କରି ପିନ୍ଧି ଥାଉ ? ୩। ଆଉ ମଧ୍ୟ ଦିନବେଳେ ତୁ ପରା ଲତାକୁ ଦେଖି ଡରୁ। ଆମ୍ଭେମାନେ ଆଜି ବ୍ରଜରେ ଶୁଣି ଆସିଲୁଁ ଯେ, ତୁ ପ୍ରତି ରାତିରେ ଘରୁ ଆସି ନିର୍ଜନ ବଣରେ ବୁଲୁଛୁ, ତୁ ଯାହା ଆଦୌ ଡରୁ ନାହୁଁ ଏ ତ ବଡ଼ ବିଷମ କଥା। ୪। ହେ ସଖି, ତୁ ବିନୟ ଓ ନୀତିର ଆଶ୍ରୟ ସ୍ଥଳ ଅର୍ଥାତ୍ ତୁ ଯେପରି ବିନୟବତୀ ସେହିପରି ନୀତିନିପୁଣା ଅଟୁ ଏବଂ ବିଚିତ୍ର ସୂକ୍ଷ୍ମ ଶିଳ୍ପ ବିଦ୍ୟାରେ ମଧ୍ୟ ଦକ୍ଷା ଅଟୁ, ତୁ ଗଉଡ଼ ଘରର ଭୂଆସୁଣୀ ହୋଇ କନ୍ଦର୍ପକୁ ଜିଣି ଯଶରେ ପୃଥିବୀକୁ ମଣ୍ଡିତ କଲୁ। ଅଷ୍ଟଦୁର୍ଗର ରାଜା ତୋତେ ବନ୍ଦନା କରୁଅଛନ୍ତି। ୫।

ଟୀକା—ହେ ଶିରୀଷାଙ୍ଗଲତେ, ଶିରୀଷପୁଷ୍ପମିବ କୋମଳା ଅଙ୍ଗଲତା ଯସ୍ୟା ତତ୍ ସମ୍ବୋଧନେ ହେ ଶିରୀଷକୋମଳାଙ୍ଗି, ଯା ତ୍ୱଂ ଅଗାଢ଼ଂ ମୃଦ୍ୱପି ଆଳୀଜନାନାଂ ସଖୀଜନାନାଂ ଆଲିଙ୍ଗନଂ ନ ସହେଥାଃ ସୋଢ଼ୁମକ୍ଷମା, ସା ଏବ ତ୍ୱଂ କଥଂ ଅଦ୍ୟ ଆସମ୍ୟକ୍ ନୀଳଂ ଯତ୍ ରତ୍ନାର୍ଗଳଯୁଗ୍ମଂ ଅର୍ଗଳାବିବ ନୀଳବାହୁଯୁଗଂ ତେନ ରୁଦ୍ଧା ନିୟନ୍ତ୍ରିତା ଆସୀଃ ଅଭବଃ ଇତି କଷ୍ଟମ୍।

ସାଲ୍ଲଃପ୍ରଣୟହାସପରିହାସୈଃ ଆଲ୍ଲସଲୁରାଗେଣ ହାସେନ ପରିହାସେନ ଚ ସହିତୈଃ ଆଲୀନାଂ ସଖିନାଂ ଇତ୍ୟେବଂ ବଚୋଭିଃ ଲଜ୍ଜୟା ଅଙ୍ଗେଷୁ ମ୍ଳାନାୟାଂ ସଙ୍କୁଚିତାୟାଂ, ତଥା ମ୍ଳାନାବିମର୍ଦ୍ଦେନ ବଳାଦାଲିଙ୍ଗନାଦିନା ଦୂନାଙ୍ଗ୍ୟାଂ କ୍ଳିଷ୍ଟାବୟବାୟାଂ ରାଧାୟାଂ ଅଙ୍ଗରାଗାଦି ସଂସ୍କାରଂ ତନୁମାର୍ଜନୋଚିତ ସୁଗନ୍ଧିଦ୍ରବ୍ୟଜାତଂ ଅଙ୍ଗୀକୃତ୍ୟ ଗୃହୀତ୍ୱା ସ୍ଥିତାଭିରିତି ଶେଷଃ, ତାଭିଃ ପରିହାସକାରିଣୀଭିଃ ସହଚରୀଭିଃ ସହ ସାଳସଂ ଧୀରଂ ଲସନ୍ ବହନ୍ ସମୀରଃ ପବନୋ ଯସ୍ମିନ୍ ତଥୋକ୍ତେନ କଦମ୍ବାନାଂ ନୀପବୃକ୍ଷାଣାଂ କଦମ୍ବେନ ସମୂହେନ ସଂବାଧେନ ସଙ୍କୀର୍ଣ୍ଣେନ ପଥା ଗତ୍ୱା ଇତି ଶେଷ ଅବଗାହାୟ ସ୍ନାନାର୍ଥଂ ଯମୁନାୟା ବାରି ସଲିଲେ ପ୍ରବିଷ୍ଟାୟାଂ ରାଧାୟାଂ ସତ୍ୟାଂ ଅକସ୍ମାଦାଗତଃ ହଠାଦୁପସ୍ଥିତ ସାନନ୍ଦଃ ସହର୍ଷଃ ସାନ୍ଦୀପନିମୁନିନନ୍ଦନଃ ମଧୁମଙ୍ଗଳଃ ଶ୍ରୀକୃଷ୍ଣଂ ପ୍ରତି ସସ୍ମିତଂ ଈଷଦ୍ଧାସ୍ୟସହିତଂ ବଦତୀତି ଶେଷଃ।

ଅନୁବାଦ—ହେ ଶିରୀଷପୁଷ୍ପାଙ୍ଗି, ତୁ ତ ସଖୀଜନମାନଙ୍କର କୋମଳ ଆଲିଙ୍ଗନ ସହିପାରୁ ନାହିଁ, ସେହି କୋମଳାଙ୍ଗୀ ତୁ ଆଜି କିପରି ନୀଳରତ୍ନସ୍ୱରୂପ ବାହୁ ଅର୍ଗଳରେ ( କିଳଣିରେ ) ଅବରୁଦ୍ଧା ( ବନ୍ଧା ) ହେଲୁ। ଓଃ, ଏ ବଡ଼ କଷ୍ଟର କଥା।

ଆଳୀମାନଙ୍କର ଏହି ପରିହାସ କଥାରେ ରାଧା ଲଜ୍ଜାରେ ସଙ୍କୁଚିତ ହୋଇଗଲେ। ତାଙ୍କ ଶରୀର ରତିରଙ୍ଗରେ ବଡ଼ କ୍ଳାନ୍ତ ହୋଇ ପଡ଼ିଥିଲା, ଧୀର ସମୀରଣ ପ୍ରବାହରେ ଆନ୍ଦୋଳିତ କଦମ୍ବବୃକ୍ଷସମାକୁଳ ସଙ୍କୀର୍ଣ୍ଣ ପଥରେ

# ଶ

ରାଗ—ଝୁଲା

ଶ୍ୟାମ ଶିଖଣ୍ଡଚୂଳ, ଶ୍ରମ କି ଆଜଯାକେ ହେଲା ସଫଳ । ପଦ ।
ଶବଂଗ ନିଦ୍ରା ବିନା ଗଲ କି ସରି, ଶମ୍ବରପରପୁର କଲ କି ଜୁରି । ୧ ।
ଶ୍ରୀଅଙ୍ଗ ବେଶ କିପାଁ ଏପରି ଆଜ, ଶରଦଚନ୍ଦ୍ର ଚୁମ୍ବୁ ନାହିଁ କି ଲଜ । ୨ ।
ଶିଶୁ ହେଲେହେଁ ତୁମ୍ଭେ କଲଭ*ସରି, ଶଶୀକିଶୋରୀଟିକି ଦେଲ ଯେ ସାରି ॥
ଶିରୀଷମାଳା ଦଳିଦେଇ କୁଠାରେ, ଶଙ୍କା ନ କଲ ସଖୀମାନଙ୍କଠାରେ । ୪ ।
ଶରମପ୍ରଦ ଆଜ ସରିକି ହେଲା, ଶମନସ୍ୱସା-ତଟ-ଅଟବୀବୁଲା । ୫ ।
ଶିର ସୁନ୍ଦର ଧଣେ ଯାବକ ବୋଳେ, ଶରଣି ବୋଲି କି ପଡ଼ିଲ ପା ତଳେ ॥
ଶପଥ ଶତ ଅଛୁ କହିଛି ସତେ, ଶ୍ରୀ ବାଲ୍ୟକେଶ ନୃପ ରଚିଲେ ଗୀତେ । ୭ ।

ତନୁ ମାର୍ଜନ ପାଇଁ ସୁଗନ୍ଧ ଦ୍ରବ୍ୟମାନ ଧାରଣ କରିଥିବା ସେହି ସହଚରୀମାନଙ୍କ ସଙ୍ଗରେ ଯମୁନାଜଳରେ ପ୍ରବେଶ କଲେ । ଏହି ସମୟରେ ସାନ୍ଦୀପନି ମୁନିଙ୍କ ପୁତ୍ର ମଧୁମଙ୍ଗଳ ହଠାତ୍ ଉପସ୍ଥିତ ହୋଇ ହସି ହସି କୃଷ୍ଣଙ୍କୁ କହୁଅଛନ୍ତି:—

"ଶ୍ୟାମ ଶିଖଣ୍ଡଚୂଳ" ଇତ୍ୟାଦି ।

(ଶ) ଶିଖଣ୍ଡଚୂଳ—ମୟୂରପୁଚ୍ଛମୁକୁଟଧାରୀ, ଶବଂରୀ—ରାତ୍ରି, ଶମ୍ବରପରପୁର—କାମଦେବଙ୍କ ରାଜଧାନୀ, ଜୁରି—ଲୁଟି; କଲଭ—ଶିଶୁ ହାତୀ, ଶଶୀକିଶୋରୀ—କୋମଳପ୍ରାଣ ଠେକୁଆ ପରି କୋମଳାଙ୍ଗୀ ରାଧା; କୁଠାର—କୁରାଢ଼ି, ଶରମପ୍ରଦ—ଶର୍ମଦାୟୀ, ସୁଖପ୍ରଦ; ଶମନସ୍ୱସା—ଯମ ଭଉଣୀ, ଯମୁନା; ଅଟବୀବୁଲା—ବଣରେ ବୁଲିବା, ଶିର—ମସ୍ତକ, ଯାବକ—ଅଲତା, ବୋଲ—ଲେପ, ପା ତଳେ—ଗୋଡ଼ତଳରେ ।

ହେ ମୟୂରପୁଚ୍ଛମୁକୁଟଧାରୀ ଶ୍ୟାମ; ଆଜଯାକେ ଯେତେ ପରିଶ୍ରମ କରିଥିଲ ତାହା ସଫଳ ହେଲା କି ? ପଦ । କାମରାଜାଙ୍କ ରାଜଧାନୀକୁ ଲୁଟି କରିବାରେ ବିନା ନିଦ୍ରାରେ ରାତ୍ରି ପାହି ଗଲା କି ? ୧ । ତୁମ୍ଭ ଶ୍ରୀଅଙ୍ଗ ବେଶ କାହିଁକି ଆଜି ଏପରି ଦିଶୁଛି ? ହେ ଶରଦଚନ୍ଦ୍ର, ତୁମ୍ଭଙ୍କୁ କଣ ଲଜ ଚୁମ୍ବୁ ନାହିଁ ? ଅର୍ଥାତ୍ ଏ କାର୍ଯ୍ୟରେ କଣ ତୁମ୍ଭଙ୍କୁ ଲଜ ମାଡ ନାହିଁ ? ( ତୁମ୍ଭେ ଶରଦଚନ୍ଦ୍ର ପରି ସୁନ୍ଦର, ଆଜି ତୁମ୍ଭର ସେହି ସୁନ୍ଦର ଦେହ ମଳିନ ହୋଇଥିବାରୁ ତୁମ୍ଭଙ୍କୁ ଟିକିଏ ଲଜ୍ଜା ହେଉ ନାହିଁ କି ? ) । ୨ । ତୁମ୍ଭେ ବାଳକ ହେଲେହେଁ କଲଭ ଅର୍ଥାତ୍ ହାତୀଛୁଆ ପରି ଅସାଧାରଣ ବଳଶାଳୀ, କ୍ଷୁଦ୍ରକାୟ କୋମଳପ୍ରାଣ ଠେକୁଆ ପରି କୋମଳାଙ୍ଗୀ କିଶୋରୀକି ସାରିଦେଲ ଅର୍ଥାତ୍ ଦଳି ଦେଲ । ୩ । ଆହା, କି ଦୁଃଖର

* 'କେଶରୀ ସରି' ପାଠାନ୍ତର । ମାତ୍ର ଅଲଂକାର ଦୃଷ୍ଟିରେ ଏହା ଅସଙ୍ଗତ ।

(ଶ) ନବଶୈଶବସୌକୁମାର୍ଯ୍ୟଧୂର୍ଯ୍ୟାଙ୍ଗୁଳ୍ୟାତୋଲିତଦୁର୍ଦ୍ଧରାଚଳସ୍ୟ,
ତବ ତସ୍ୟ ବାଳାଢ଼୍ୟ ବାଳିକାୟାଃସ୍ତନତାଳଦ୍ୱୟଧାରଣଂ ନ ଚିତ୍ରଂ ।
ଚିରେଣ ଲବ୍ଧାସୁବ୍ଧମନୋରଥ ଫଳତୟା ଗର୍ବିତୋଽସି ଖର୍ବିତପର୍ବଂ
ଶର୍ବରୀରମଣାସାଦ୍ୟବୋଦ୍ଧବ୍ୟଂ ନନ୍ଦଯଶୋଦୟୋଃ ପୁରତସ୍ତବାଚରିତ-
ମିତ୍ୟୁକ୍ତବତି ମଧୁମଙ୍ଗଳେ ସପ୍ରଣୟମୀଷଦ୍ଧାସସ୍ମିତଂ ତଂ ପ୍ରତି କୃଷ୍ଣଃ,
ଧୂର୍ତ୍ତାର୍ତ୍ତସ୍ୟ ବାର୍ତ୍ତା ବାର୍ତ୍ତାମପି କିଂ ନାଭିପ୍ରୈଷି ଭିନ୍ନାମବଲମ୍ବସେ
ଦାରୁଣାଂ ସରଣୀମ୍ ।

---

କଥା । ସୁକୋମଳ ଶିରୀଷଫୁଲର ମାଳାକୁ କୁରଙ୍ଗରେ ଦଳଦେଇ ବାନ୍ଧୁମାନଙ୍କୁ ଟିକିଏ ସୁଦ୍ଧା ଭୟ କଲ ନାହିଁ । ୪ । ଯମୁନାକୂଳବର୍ତ୍ତୀ ବଣରେ ବୁଲିବାଟା ଆଜ ସରିକି ସୁଖଦାୟକ ହେଲା ପରି । ୫ । ଅଳତା ବୋଲରେ ତ ମୁଣ୍ଡ ସୁନ୍ଦର ଦିଶୁଅଛୁ, "ତୁ ମୋର ଏକମାତ୍ର ଶରଣ" ଏହି କଥା କହି ତାଙ୍କ ଗୋଡ଼ତଳେ ପଡ଼ିଗଲ କି ? ୬ । ତୁମ୍ଭଙ୍କୁ ଶହେଥର ମୋ ରାଣ ଅଛି, ସତକଥା କହ, ବାଳୁକେଶ ରାଜା ଏ ଗୀତ ରଚନା କଲେ । ୭ ।

ଟୀକା—ହେ ବାଳାଢ଼୍ୟ, ବଳଶାଳିନ୍, ନବେ ଶୈଶବେ ଯତ୍ ସୌକୁମାର୍ଯ୍ୟଂ କୋମଳତା ତସ୍ମିନ୍ ଧୂର୍ଯ୍ୟାଃ ନିପୁଣାଃ, ଶୈଶବୋଚିତସୁକୋମଳା ଇତ୍ୟର୍ଥ ଯାଃ ଅଙ୍ଗୁଳ୍ୟଃ ତାଭିଃ ଲୀଳୟା ଅକ୍ଲେଶେନ ଉଦ୍ଧୃତ ଉତ୍ତୋଳିତଃ ଦୁର୍ଦ୍ଧରାଚଳଃ ଗୋବର୍ଦ୍ଧନାଖ୍ୟଃ ଯେନ ତସ୍ୟ ତବ ବାଳିକାୟାଃ ରାଧାୟାଃ ସ୍ତନ ତାଳଦ୍ୱୟସ୍ୟ ତାଳଫଳସଦୃଶସ୍ତନୟୋଃ ଧାରଣଂ ନ ଚିତ୍ରଂ; ଯସ୍ତୁ ଶୈଶବେ କୋମଳାଙ୍ଗୁଳିଭିଃ ଗୋବର୍ଦ୍ଧନାଦ୍ରିଂ ଲୀଳୟା ଉଦ୍ଧୃତବାନ୍ ସାଂପ୍ରତଂ ତତ୍ପକ୍ଷେ ବାଳିକାୟାଃ ସ୍ତନଧାରଣମକିଞ୍ଚିତ୍କରମିତ୍ୟର୍ଥ ।

ଖର୍ବିତଃ ତିରସ୍କୃତଃ ପର୍ବଶର୍ବରୀରମଣଃ ପୂର୍ଣ୍ଣିମାଚନ୍ଦ୍ର ଯେନ ତଥାଭୂତଂ ଆସ୍ୟଂ ଯସ୍ୟ ତତ୍ ସମ୍ବୋଧନେ; ଚିରେଣ ଚିରକାଳତପରଂ ଲବ୍ଧ ପ୍ରାପ୍ତଂ ଅକ୍ଷବ୍ଧ-ମନୋରଥସ୍ୟ ଅବିଚଳିତାଭିଳାଷସ୍ୟ ଫଳଂ ଯେନ ତସ୍ୟ ଭାବଃ ତତ୍ତା ତୟା, ଚିର-କାଳାନନ୍ତରଂ ତବାଭିଳାଷଃ ପୂର୍ଣ୍ଣ ଆସୀତ୍ ତସ୍ମାତ୍ ତ୍ୱଂ ହୃଦଗର୍ବ ମନୁଭବସି, ଅଦ୍ୟ ନନ୍ଦ ଯଶୋଦୟୋଃ ତବ ପିତ୍ରୋଃ ପୁରତଃ ତବ ଆଚରିତଂ ଆଚରଣଂ ବୋଧବ୍ୟଂ ବିଜ୍ଞାପୟିତବ୍ୟଂ ମୟା ଇତି ଶେଷଃ; ମଧୁମଙ୍ଗଳେ ଇତି ଉକ୍ତବତି ସତି ତଂ ପ୍ରତି ସପ୍ରଣୟଂ ପ୍ରୀତିପୂର୍ବକଂ ଈଷଦ୍ଧାସସ୍ମିତଂ କିଞ୍ଚିତ୍ ଭସ୍ମହାସସହିତଂ ଶ୍ରୀକୃଷ୍ଣଃ କଥୟତୀତି ଶେଷଃ; ହେ ଧୂର୍ତ୍ତ, ଆର୍ତ୍ତସ୍ୟ ମମବାର୍ତ୍ତସ୍ୟ ମଦୋଗେଗସ୍ୟ ଗ୍ରବସ୍ତତ୍ର ତସ୍ୟା ବର୍ତ୍ତଂ କୁଶଳସମ୍ବାଦମିତି ଯାବତ୍ ଅପି ନ ଅଭିପ୍ରୈଷି ନ ଜିଜ୍ଞାସସେ, ଅପି ପୁନଃ ଭିନ୍ନାଂ ଅନ୍ୟାଂ ଦାରୁଣାଂ କଷ୍ଟଗ୍ରାଂ ସରଣୀଂ ପଦ୍ଧତିଂ ଅବଲମ୍ବସେ ।

ଅନୁବାଦ—ହେ ବଳଶାଳୀ, ଯେଉଁ ଲୋକ ଶୈଶବକାଳରେ ସୁକୋମଳ ଅଙ୍ଗୁଳି ସାହାଯ୍ୟରେ ଦୁର୍ଦ୍ଧର ଗୋବର୍ଦ୍ଧନ ପର୍ବତକୁ ଟେକିଥିଲେ;

# ସ

ରାଗ—ମୁଖାରୀ

ସପତ୍ନି ମୋର ରେ, ସହି ଏହି ଥର ରେ,
ସାର ହାରମସାରମଣିବର ପରି ଧରି ବକ୍ଷ୍ୟସ୍ଥଳେ ନିରନ୍ତର,
ନ ଫିଙ୍ଗି ପୁଣି ହରି ସୁନ୍ଦର ନୁହଇଟି ବସ୍ତୁର ଭରସା ବଢ଼ାଅ ଅପରମିତ ।ପଦ।
ଶୁଣିଲେ ଆଉ କେ ବ୍ରଜେ, ସରିଯିବ ସିନା ଲାଜେ,
ସାହା ତୁ ନୋହିଲେ କିଛି, ସଂସାରେ କାକ ମୁଁ ଅଛି । ୧ ।
ସାଧୁଜନ ଲୁଷିକୂପେ, ଭଲ ମନ୍ଦ ସିନା ଛପେ,
ସହିର କ୍ରୋଧ ଉଦୟ, ସହଜେ ତୁ ସହୃଦୟ । ୨ ।
ସବୁ ଅନ୍ୟାୟ ଚରିତ, ଶିକ୍ଷାକୁ ଗୁରୁ ତୁହି ତ,
ସମୟେ କାହୁ ତୋଠିକି, ସଖୀ ଲକ୍ଷଣେ ଏ ଠିକି । ୩ ।
ସମାଂସମୀନା ଅଯୁତେ, ସମର୍ପି ଦେବଟି ତୋତେ,
ସମ୍ଭାଳ ମୋର ଅବୁର, ସର୍ବସ୍ୱ ପରି ତୁ ମୋର ।
ସାକ୍ଷାତ ଦେଖିଲି ପରି, ସାକ୍ଷୀ ହେବାକୁ ବାହାରି,
ସାଧିବାର ଅବସ୍ତୁର, ସପତ୍ନୀ ନୁହେଁ ମୁଁ ତୋର । ୫ ।
ସାନ୍ଦୀପନିସୁତ ପତି, ସେ କି ଜାଣେ ବୋଲି ପ୍ରୀତି,
ସରସେ ପିଠିବେ ଚକ୍କା, ସମାଦରୁ ଏତେ ଏକା । ୬ ।
ଶୁଣି କିଶୋର ବଚନ, ସଖୀ କଲେ ଆଲିଙ୍ଗନ,
ସୁନାମା ଅଷ୍ଟଦୁର୍ଗରି, ସନ୍ତୋଷେ ଯୋଡ଼ିଲେ କର । ୭ ।

---

ତାଙ୍କ ପକ୍ଷରେ (ଅର୍ଥାତ୍ ତୁମ୍ଭ ପକ୍ଷରେ) ବାଳିକାର ତାଳଫଳ ସଦୃଶ ସ୍ତନଦ୍ୱୟର ଶ୍ୱଦାରଣ ବଚନ ନୁହେ ।

ତୁମ୍ଭର ମୁଖ ପୂର୍ଣ୍ଣିମାଚନ୍ଦ୍ରର ଗର୍ବକୁ ଖର୍ବ କରେ, ହେ କୃଷ୍ଣ, ବହୁଦିନର ଅଭିଳାଷ ପୂର୍ଣ୍ଣ ହୋଇସିବାରୁ ତୁମ୍ଭେ ଗର୍ବିତ ହୋଇଅଛ । ହେଉ; ଆଜ ତୁମ୍ଭ ବାପ ମାଙ୍କ ଆଗରେ ଏ କଥା ବୁଝାସିବ; ମଧୁମଙ୍ଗଳ ଏହିପରି କହନ୍ତେ ଶ୍ରୀକୃଷ୍ଣ କିଞ୍ଚିତ୍ ଭୟ ଓ ହାସ୍ୟ ସହିତ ପ୍ରୀତି ପ୍ରକାଶପୂର୍ବକ କହିଲେ, ହେ ଧୂର୍ତ୍ତ, ମୁଁ ବର୍ତ୍ତମାନ ଅତ୍ୟନ୍ତ ଆର୍ତ୍ତ ହୋଇଅଛି; ମୋର କୁଶଳ ପ୍ରଶ୍ନ ନ ପଚାରି ଏପରି ବିପରୀତ ନିଦାରୁଣ ମାର୍ଗ କାହିଁକି ଅବଲମ୍ବନ କରୁଅଛୁ ? ଅନନ୍ତର ଶ୍ରୀକୃଷ୍ଣ ମଧୁମଙ୍ଗଳକୁ କହୁଅଛନ୍ତି :—“ସପତ୍ନି ମୋର ରେ” ଇତ୍ୟାଦି ।

(ସ) ଅନ୍ୟୋଽନ୍ୟାଶ୍ଳେଷଶର୍ମବ୍ୟତିକରବିମଲସ୍ୱାନ୍ତସନ୍ତୋଷବନ୍ତା—
ବନ୍ୟୋନ୍ୟାକ୍ଷୀଣଲକ୍ଷ୍ମୀକ୍ଷଣଗଳିତସମସ୍ତାନ୍ତରାୟୌ ସଖାୟୌ ।
ସଙ୍ଗତ୍ୟାବର୍ଦ୍ଧପଙ୍କ୍ତ୍ୟୁପନତସଖିଭିଃ ସାର୍ଦ୍ଧମାନନ୍ଦ ବଂଶୀ—
ଶୃଙ୍ଗଧ୍ୱାନାଢ଼୍ୟତୀରଂ ତଦପଘନଭୁବୋ ଜଗ୍ମତୁସ୍ତିଗ୍ମରଶ୍ମେଃ ॥

ତତସ୍ତସ୍ୟାସ୍ତୀରେଽପ୍ୟନ୍ୟନ୍ନାମାଳଶତପତ୍ରପତ୍ରସଗୋତ୍ରନେତ୍ରାଞ୍ଚଳଲକ୍ଷବପକ୍ଷବାଧରାଭିଷ୍ଟିରାଦବଲୋକ୍ୟ ସବ୍ରଜବାଳକବ୍ରଜ ସମୁଦ୍ଧଣ୍ଡତାଣ୍ଡବପାଣ୍ଡିତ୍ୟଖୋଭ୍ରପିଚଣ୍ଡିଳଚରଣାମ୍ଭୋଜଂ କଞ୍ଚିଦବଶିଷ୍ଟଶୈଶବଂ କେଶବଂ ମିଥଃ କଥାସ୍ତେନରେ ।

---

(ସ) ସପତ—ଶପଥ, ରାଣ; ସାର—ଉତ୍କୃଷ୍ଟ; ହାରମସାରମଣିବର—ହାର ମଧ୍ୟରେ ଥିବା ଶ୍ରେଷ୍ଠ ଇନ୍ଦ୍ରନୀଳମଣି; ହଟି—ହଠ କରି, କୌତୁକରେ; ଭରସା—ଆଶା; ଅପରମିତ—ଅନନ୍ତ; ସାହା—ସହାୟ; କକ—କଅଣ (ଅବ୍ୟୟ); କୁକ୍ଷିକୂପେ—ପେଟରୂପ କୂଅରେ; ଛପେ—ଲୁଚେ; ସଂହର—କମାଅ; ସନ୍ମୁଦସ୍ତ—ବନ୍ଧୁ; ସମାଂସମୀନା—ଯେଉଁ ଗାଈ ପ୍ରତିବର୍ଷ ପ୍ରସବ କରେ ( ସମାଂସମୀନା ସା ଯୈବ ପ୍ରତିବର୍ଷଂ ପ୍ରସୂୟତେ); ସମ୍ଭାଳ—ରକ୍ଷାକର; ଆଗ୍ରହ—ମହତ୍ତ୍ୱ; ସପତ୍ନ—ଶତ୍ରୁ; ସରସେ—ଆନନ୍ଦରେ; ଡକ୍କା ପିଟିବେ—ଢେଙ୍ଗୁରା ଦେବେ, ପ୍ରଚାର କରିବେ; ସୁତ୍ରାମା—ଇନ୍ଦ୍ର ।

ହେ ବନ୍ଧୁ ମଧୁମଙ୍ଗଳ, ମୋ ରାଣଟି, ଏହି ଥରକ ସହ, ହାର ମଧ୍ୟରେ ଥିବା ଉତ୍କୃଷ୍ଟ ଇନ୍ଦ୍ରନୀଳମଣି ପରି ସବଦା ଗ୍ରୀବାରେ ଧରି ପରେ କୌତୁକରେ ତାକୁ ଫିଙ୍ଗି ଦେ ନା, ଏ କଥା ସୁନ୍ଦର ନୁହେଁ; ଏହା ବିଚାର କରି ମୋର ଅନନ୍ତ ଆଶା ବଢ଼ାଅ ଅର୍ଥାତ୍ ମୋର ଭବିଷ୍ୟତ୍ ବଡ଼ ଆଶାରେ ସାହାଯ୍ୟ କର । ପଦ । ଏ କଥା ଯେବେ ଗୋପପୁରରେ କେହି ଶୁଣେ, ତେବେ ମୁଁ ଲାଜରେ ମରିଯିବି ସିନା । ତୁ ମୋର ସହାୟ ନ ହେଲେ ମୁଁ ବଞ୍ଚିବି କି କ ? ୧ । ସାଧୁ ଲୋକଙ୍କର ଉଦରରୂପ କୂପ ମଧ୍ୟରେ ସବୁ କଥା ଲୁଚି ରହେ ଅର୍ଥାତ୍ ଭଦ୍ରଲୋକ ଭଲମନ୍ଦ ସବୁ କଥାକୁ ନିଜ ପେଟରେ ଲୁଚାଇ ରଖେ, କାହା ବାହାରେ ପ୍ରକାଶ କରେ ନାହିଁ । କ୍ରୋଧର ଉଦୟକୁ ସଂହାର କର ଅର୍ଥାତ୍ ଆଉ ରାଗ ନାହିଁ । ପ୍ରକୃତରେ ତୁ ବନ୍ଧୁ ଅଛୁ । ୨ । ତୁ ମୋତେ ସବୁ ଅନ୍ୟାୟ ଆଚରଣ ଶିଖାଇଅଛୁ; ସେ ବିଷୟରେ ତୁ ମୋର ଗୁରୁ, କିନ୍ତୁ ସମୟ ପଡ଼ିଲେ ତୋଟି କାଟି ଦେଉ, ଅର୍ଥାତ୍ ଅପବାଦ ରଟାଇବାଦ୍ୱାରା ମୋର ସର୍ବନାଶ ଘଟାଉ; ଏହା ବନ୍ଧୁଲକ୍ଷଣଟି ? ୩ । ମୁଁ ତୋତେ ଦଶ ହଜାର ଦୁଧିଆଳୀ ଗାଈ ଦେବି; ତୁ ମୋର ମହତ୍ତ୍ୱ ବା ଇଜ୍ଜତ୍ ରଖ; ତୁ ମୋର ସର୍ବସ୍ୱ ଅଟୁ । ୪ । ଆଖିରେ ଦେଖିବା ପରି ତୁ ତ ସାକ୍ଷୀ ହେବାକୁ ବାହାରୁଛୁ, ମୁଁ ତ ତୋର ଶତ୍ରୁ ନୁହେଁ, ତୁ ଏପରି ଅବିଚାର କରୁଛୁ

କିଆଁ ? ୫ । ହେଉ, ତୁ ଏକଥା ପ୍ରକାଶ କଲେ ଲୋକେ କହିବେ, "ସେ ତ ସାନ୍ଦୀପନିଙ୍କ ପୁଅ, ଜଣେ ତପସ୍ୱୀ, ସେ କଅଣ ପ୍ରୀତି କଥା ଜାଣେ ?" ଏ ଅପବାଦ ଏକା ତୋତେ ଭୋଗିବାକୁ ପଡ଼ିବ । ୬ । ଶ୍ରୀକୃଷ୍ଣଙ୍କର ଏହି କଥା ଶୁଣି ସଖା ମଧୁମଙ୍ଗଳ ତାଙ୍କୁ ଆଲିଙ୍ଗନ କଲେ । ଆଠଗଡ଼ର ଇନ୍ଦ୍ର ( ରଜା ) ସନ୍ତୋଷରେ ହାତ ଯୋଡ଼ିଲେ । ୭ ।

ଟୀକା—ଅନ୍ୟୋଽନ୍ୟଂ ପରସ୍ପରଂ ଯଃ ଆଶ୍ଳେଷଃ ଆଲିଙ୍ଗନଃ ତେନ ଶର୍ମ ସୁଖଂ ତସ୍ୟ ବ୍ୟତିକରେଣ ସମ୍ପର୍କେଣ ବିମଲଂ ନିର୍ମଲଂ ଯତ୍ ସ୍ୱାନ୍ତଂ ଅନ୍ତଃକରଣଂ ତସ୍ମିନ୍ ସନ୍ତୋଷବନ୍ତୌ ସନ୍ତୁଷ୍ଟୌ, ଅନ୍ୟୋଽନ୍ୟଂ ପରସ୍ପରଂ ଅକ୍ଷୀଣା ପ୍ରକୃଷ୍ଟା ଯା ଲକ୍ଷ୍ମୀଃ ଶୋଭା ତସ୍ୟାଃ ଈକ୍ଷଣେନ ଦର୍ଶନେନ ଗଳିତଃ ଲୁପ୍ତଃ ସମସ୍ତଃ ଅନ୍ତରାୟଃ ବିଘ୍ନଃ ଯୟୋଃ ତୌ, ସଶ୍ରଦ୍ଧୌ ଶ୍ରଦ୍ଧାଯୁକ୍ତୌ ସଖାୟୌ କୃଷ୍ଣମଧୁମଙ୍ଗଳୌ, ଅର୍ଦ୍ଧପଦ୍ଧତ୍ୟାଂ ଅର୍ଦ୍ଧମାର୍ଗେ ଉପନତାଃ ସମୀପେପଗତାଃ ଯେ ସଖାୟଃ ବାନ୍ଧବାଃ ତୈଃ ସାର୍ଦ୍ଧଂ; ତିଗ୍ମାଃ ତୀକ୍ଷ୍ଣାଃ ରଶ୍ମୟଃ କିରଣାଃ ଯସ୍ୟ ତସ୍ୟ ସୂର୍ଯ୍ୟସ୍ୟ ଅପତ୍ୟନାତ୍ ଶରୀରାତ୍ ଭୂଃ ଉତ୍ପତ୍ତିଃ ଯସ୍ୟାଃ ତସ୍ୟାଃ ସୂର୍ଯ୍ୟାତ୍ମଜାୟାଃ ଯମୁନାୟାଃ, ଆନଦ୍ଧଂ ପଟହମୃଦଙ୍ଗାଦି, ବଂଶୀ ବେଣୁଃ, ଶୃଙ୍ଗଂ 'ଶିଙ୍ଗା' ଇତି ଖ୍ୟାତଃ ବାଦ୍ୟଯନ୍ତ୍ରବିଶେଷଃ ତେଷାଂ ସମାହାରଃ ଆନଦ୍ଧବଂଶୀଶୃଙ୍ଗଂ ତସ୍ୟ ଧ୍ୱାନାଢ୍ୟଂ ଶବ୍ଦପୂର୍ଣ୍ଣଂ ତତ୍ ପ୍ରସିଦ୍ଧଂ ତୀରଂ ଜଗ୍ମତୁଃ ଗତବନ୍ତୌ ।

ତତସ୍ତଦନନ୍ତରଂ ତସ୍ୟାଃ ଯମୁନାୟାସ୍ତୀରେ ଅପି ଅନ୍ୟତ୍ର ଅନ୍ୟସ୍ମିନ୍ ତୀର୍ଥେ ଆମୀଳଂ ସର୍ବତୋମୀଳଂ ଯତ୍ ଶତପତ୍ରାଣାଂ ପଦ୍ମାନାଂ ପତ୍ରଂ ତସ୍ୟ ସଗୋତ୍ରେ ସଦୃଶେ ନେତ୍ରେ ଯାସାଂ ତାଭିଃ ବଲ୍ଲବାନାଂ ଗୋପାଲାନାଂ ପଲ୍ଲବବତ୍ କୋମଳପତ୍ରବତ୍ ଅଧରଃ ଯାସାଂ ତାଭିଃ କର୍ତ୍ତ୍ରୀଭିଃ ଚିରାତ୍ ବହୁକ୍ଷଣଂ ଯାବତ୍ ଅବଲୋକ୍ୟ ସବ୍ରଜବାଲକବ୍ରଜଂ ବ୍ରଜବାଲକବୃନ୍ଦସହିତଂ ସମୁଦଣ୍ଡଃ ଉତ୍କଟଃ ଯଃ ତାଣ୍ଡବଃ ନୃତ୍ୟଂ ତସ୍ମିନ୍ ପାଣ୍ଡିତ୍ୟଂ ତସ୍ୟ ଶୋଭା ତସ୍ୟା ପିଚଣ୍ଡିଲଂ ସମନ୍ୱିତଂ ଚରଣଦ୍ୱୟଂ ଯସ୍ୟ ତଂ, କଞ୍ଚିଦବଶିଷ୍ଟଶୈଶବ ଶୈଶବଯୌବନୟୋଃ ସନ୍ଧୌ ବର୍ତ୍ତମାନଂ କେଶବଂ ଶ୍ରୀକୃଷ୍ଣଂ ଅବଲୋକ୍ୟ ମିଥଃ ପରସ୍ପରଂ କଥାଃ ବକ୍ଷ୍ୟମାଣରୂପାଃ ତେନରେ ବିସ୍ତାରିତାଃ କୃତା ଇତି ଯାବତ୍ ।

ଅନୁବାଦ—ଶ୍ରୀକୃଷ୍ଣ ଓ ମଧୁମଙ୍ଗଳ ଦୁହେଁ ପରସ୍ପରକୁ ଆଲିଙ୍ଗନ କରି ଅନ୍ତଃକରଣରେ ବିମଳ ଆନନ୍ଦ ଅନୁଭବ କଲେ, ପରସ୍ପର ଶୋଭା ସନ୍ଦର୍ଶନରେ ଉଭୟଙ୍କ ମନରୁ ସମସ୍ତ ବାଧା ଅନ୍ତର୍ହିତ ହୋଇଗଲା, ସସ୍ନେହରେ ଦୁହେଁ ଯାଉ ଯାଉ ଅନ୍ୟ ସଖାମାନଙ୍କ ସଙ୍ଗେ ଅର୍ଦ୍ଧପଥରେ ମିଶି ମୃଦଙ୍ଗ ବଂଶୀ ଶିଙ୍ଗାନାଦପୂର୍ଣ୍ଣ ସେହି ଯମୁନାତୀରକୁ ଗମନ କଲେ ।

ଅନନ୍ତର ସେହି ଯମୁନାର ଅନ୍ୟ ଘାଟରେ ସମବେତ ହୋଇଥିବା ପଦ୍ମ-ପଲାଶଲୋଚନା ପଲ୍ଲବାରୁଣାଧରା ଗୋପାଙ୍ଗନାମାନେ ନବୀନମୁଦ୍ରିକ ନୃତ୍ୟପଟୁ,

# ଷ

ରାଗ—ଶଙ୍କରାଭରଣ ବା ମୋହନ

ଷଟ୍‌ପଦନୀଳକେଶା ଅଗୋ ଗୃହଁ ଗୃହଁ,
ସର୍ବଂସହାରେ ଖେଳୁଛନ୍ତି ନବ ବାରିବାହ;
ସମୀପରେ ତାର ରହ,
ସରଜୁଛନ୍ତି ନର୍ତ୍ତନ ଅନେକ ବରହୀ । ୧ ।
ସଜ ହୋଇ ସ୍ମରସରଦାର ଅବା ଅସେ,
ସ୍ୱକୀୟ ଫଉଜ ଘେରିଅଛି ଚଉପାଶେ,
ସାରଦେବ ପରି ଆଜ,
ସରୋଜସୁନ୍ଦରନେତ୍ରା ଜନ ମନ ଲାଜ । ୨ ।
ସୁରେଶ୍ୱରରତନ କି ହେବାରୁ ଜଙ୍ଗମ,
ସବୁ ମଣିମାନଙ୍କୁ ମିଳିଲା ସେହି କ୍ରମ,
ସ୍ୱର୍ଣ୍ଣ ବର୍ଣ୍ଣାଏ ଏଣିକ,
ସମାଦବେ ମୂର୍ତ୍ତିମନ୍ତ ରତନଶ୍ରେଣୀକ । ୩ ।
ସଞ୍ଚରଣଶୀଳ ନବ ତମାଲ ଭୂରୁହ,
ସଙ୍ଗେ ଘେନି ଆସୁଅଛି ସଖା-ଶାଖିବ୍ୟୂହ,
ଶୁକ ଶାରୀ ପରଭୃତ,
ଶାଖାମାନଙ୍କରେ କରୁଅଛନ୍ତି ସଙ୍ଗୀତ । ୪ ।
ସୁରଧୁନୀ ତୀରେ କରିଥିବା ଯେବେ ତପ,
ସଙ୍ଖାଳି କରି ଏ ତାପିଞ୍ଛର ଅନାପତ,
ସୁଖେ ବଞ୍ଚିବା ବସନ୍ତ,
ସାମନ୍ତ ସୁଧାଂଶୁ ଜଗଦ୍ଦେବ ବୋଲେ ଗୀତେ । ୫ ।

---

ଶ୍ରୀକୃଷ୍ଣଙ୍କ ବ୍ରଜବାଳକମାନଙ୍କ ସଙ୍ଗେ ଅବଲୋକନ କରି ପରସ୍ପର ଆଳାପ କରିବାକୁ ଲାଗିଲେ—"ଷଟ୍‌ପଦ ନୀଳକେଶା" ଇତ୍ୟାଦି ।

( ଷ ) ଷଟ୍‌ପଦନୀଳକେଶା—ଭ୍ରମର ପରି ନୀଳବର୍ଣ୍ଣ କେଶ ଯେଉଁମାନଙ୍କର; ସର୍ବଂସହା—ପୃଥିବୀ, ନବବାରିବାହ—ନୂତନ ମେଘ, ବରହୀ=ବର୍ହୀ—ମୟୂର, ସରଦାର—ସେନାପତି, ଫଉଜ—ସୈନ୍ୟ, ସରୋଜସୁନ୍ଦରନେତ୍ରା—ପଦ୍ମ ପରି

(ଷ) ପୂରତଃପରତୋଽପି ତର୍ଣ୍ଣିକା ଦଧତ୍ତ କ୍ରୀଡ଼ନମାଲା ଯସ୍ୟ ସଃ,
ଅତସୀସୁମନଶ୍ଛବିଃ ଶିଶୁବଂଦ କୋଽୟଂ ଜନନେନସରଞ୍ଜନଃ ।

ଇତି କୌତୂହଳଲୋଲଲୋଚନାନାମାଭିରାମ୍ଭୋରୁହାକ୍ଷୀଣାମନ୍ୟୋଽନ୍ୟସମ୍ଭାଷଣସମାପ୍ତାଟବେବ ନେଦିଷ୍ଠ ସୈକତାଙ୍ଗଣାଲଙ୍ଗିତଚରଣସରସିଜେ ନନ୍ଦବ୍ରଜେ ବିଧ୍ୱସ୍ତଚତୁଷ୍କୋଟିକ ଜ୍ଞାନମୟଂ ମଦନମୋହନ ଇତି ପ୍ରେମମନ୍ଦମାଡ଼ମ୍ବରଃ ସମାବିରାସୀତ୍ ।

---

ସୁନ୍ଦର ନେତ୍ର ଯାହାଙ୍କର; ସୁରେଶ୍ୱରରତ୍ନ—ଇନ୍ଦ୍ରନୀଳମଣି; ଜଙ୍ଗମ—ଗତଶୀଳ; କ୍ରମ—ବୃକ୍ଷ; ସ୍ୱର୍ଣ୍ଣବର୍ଣ୍ଣାଏ—ସୁବର୍ଣ୍ଣ ପରି ବର୍ଣ୍ଣଧାରଣୀ ସ୍ତ୍ରୀମାନେ; ଶାଖିବ୍ୟୂହ—ବୃକ୍ଷସମୂହ; ପରଭୃତ—କୋକିଳ; ସୁରଧୂନୀ—ସ୍ୱର୍ଣ୍ଣଦୀ, ମନ୍ଦାକିନୀ; ତାପିଞ୍ଛ—ତମାଲବୃକ୍ଷ; ଅନାତପ—ଛାୟା; ସାମନ୍ତସୁଧାଂଶୁ—ସାମନ୍ତରାଜାମାନଙ୍କ ମଧ୍ୟରେ ଚନ୍ଦ୍ରମାସ୍ୱରୂପ ।

ଆଗୋ ଭ୍ରମରବର୍ଣ୍ଣ ନୀଳକେଶଧାରିଣୀ ସଖିମାନେ ! ଦେଖ, ଦେଖ, ପୃଥିବୀ ଉପରେ ଗୋଟିଏ ନୂଆ ମେଘ ଖେଳୁଅଛି, ଅନେକ ମୟୂର ସେହି ମେଘ ପାଖରେ ରହି ନୃତ୍ୟରଚନା କରୁଅଛନ୍ତି । ( ଏଠାରେ ଶ୍ରୀକୃଷ୍ଣଙ୍କୁ ନବମେଘରୂପେ ଓ ତାଙ୍କର ସଖାମାନଙ୍କୁ ମୟୂରରୂପେ ବର୍ଣ୍ଣନା କରାଯାଇଅଛି ) । ୧ । ଅଥବା କାମରୂପ ସେନାପତି ଯୁଦ୍ଧ କରିବାକୁ ସଜ ହୋଇ ଆସୁଛି କି ? ତାହାର ନିଜ ସୈନ୍ୟମାନେ ତା ଚାରି-ପାଖରେ ଘେରି ଅଛନ୍ତି କି ? ସେ ନିଶ୍ଚେ ଆଜ ପଦ୍ମଲୋଚନା ବାଳାମାନଙ୍କ ମନରୁ ଲଜ ଦୂର କରିଦେବ । ୨ । ଇନ୍ଦ୍ରନୀଳମଣି ଗତିଶୀଳ ହେବାରୁ ଅନ୍ୟ ମଣିମାନଙ୍କୁ ସେହି କ୍ରମ ମିଳିଲା କି ? ଅର୍ଥାତ୍ ଅନ୍ୟ ମଣିମାନେ ମଧ୍ୟ ଗତିଶୀଳ ହେଲେ କି ? ( ଶ୍ରୀକୃଷ୍ଣ ଇନ୍ଦ୍ରନୀଳମଣି ପରି ଏବଂ ତାଙ୍କ ସଖାମାନେ ଅନ୍ୟାନ୍ୟ ମଣିପରି ) ଏଣିକି ସ୍ୱର୍ଣ୍ଣବର୍ଣ୍ଣା ରମଣୀମାନେ ସାକ୍ଷାତ୍ ମୂର୍ତ୍ତିଧାରଣ କରି ଚାଲୁଥିବା ମଣିମାନଙ୍କୁ ଯତ୍ନ କରି ସାଇତି ରଖିବେ ଅର୍ଥାତ୍ ସୁନ୍ଦରୀ ସ୍ତ୍ରୀମାନେ ଏମାନଙ୍କ ସୌନ୍ଦର୍ଯ୍ୟରେ ନିଶ୍ଚୟ ବିମୁଗ୍ଧ ହୋଇ ଦେହର ଭୂଷାମଣିପରି ଏମାନଙ୍କୁ ଲୋଡ଼ିବେ; ସୁତରାଂ ମଣିକାଞ୍ଚନ ସଂଯୋଗ ଘଟିବ । ୩ । ଅଥବା ସଞ୍ଚରଣଶୀଳ ବା ଗତି କରୁଥିବା ନୂଆ ତମାଳଗଛ ( ଶ୍ରୀକୃଷ୍ଣ ଲକ୍ଷ୍ୟ ) ନିଜ ସଙ୍ଗରେ ତାର ବନ୍ଧୁରୂପୀ ବୃକ୍ଷମାନଙ୍କୁ ( ସଖାମାନେ ଲକ୍ଷ୍ୟ ) ଘେନି ଆସୁଛି କି ? ଶୁଆ, ଶାରୀ, କୋଇଲି ପ୍ରଭୃତି ସେହି ବୃକ୍ଷର ଶାଖାମାନଙ୍କରେ ସଙ୍ଗୀତ କରୁ ଅଛନ୍ତି କି ? । ୪ । ହେ ସଖି, ଯେବେ ସ୍ୱର୍ଗଗଙ୍ଗା ଅର୍ଥାତ୍ ମନ୍ଦାକିନୀକୂଳରେ ଆମ୍ଭେମାନେ ତପସ୍ୟା କରିଥିବା, ତେବେ ଏହି ତମାଳଗଛର ଛାୟାକୁ ସଙ୍ଖାଳି ଅର୍ଥାତ୍ ସର୍ବସ୍ୱ ରୂପେ ଆଦର କରି ବସନ୍ତରେ ସୁଖରେ ବଞ୍ଚିବା, ସାମନ୍ତରାଜାମାନଙ୍କ ମଧ୍ୟରେ ଚନ୍ଦ୍ରସ୍ୱରୂପ ଜଗଦେବ ଏ ଗୀତ ବୋଇଲେ । ୫ ।



ରାଗ—ଗୌଡ଼ା

ହରି ହାମାର, ଏ ତ ପ୍ରାଣେର୍ଦ୍ଧନ ଗୋ । ପଦ । *

ହରହସ୍ତ ମଣିକି ଜଣିଛୁ ଅପଘନ, ନିନ୍ଦୁଅଛୁ ଇନ୍ଦୁକୁ ବଦନ ଗୋ । ୧ ।

ହଜାରସଂଖ୍ୟକ ହେଲେ ହେଲେହେଁ ମଦନ, ନୋହିବ ଏ ମୋହନ ସମାନ ଗୋ।

ହଜ ନ ପିବ ଜୀମୂତକେଶୀର କି ଜ୍ଞାନ, ଶୁଣୁ ଶୁଣୁ ମୃଦୁ ବେଣୁଗାନ ଗୋ ।୩।

ହଟି ଥରେ କରିବା କି ଚଦାମ୍ବର ପାନ, ହେଉ ଫଳବନ୍ତ ଯଉବନ ଗୋ ॥

ହାର ମଧ୍ୟରେ ଅମୃତ ତରଳରତନ ଗୋ, ହେବେ କି ଏ ଯୁବତୀଜୀବନ ଗୋ।

ହୃଷ୍ଟହୋଇ ଅଷ୍ଟଦୁର୍ଗନମୃତିସୂଦନ ଗୋ, କରେ ଏ ରସରେ ବିରଚନ ଗୋ ।୬।

---

ଟୀକା—ହେ ଆଲି ହେ ସଖି, ଯସ୍ୟ ପୁରତଃ ସମ୍ମୁଖେ ପଶ୍ଚତଃ ଚତୁର୍ଦ୍ଦିକ୍ଷୁ ଚ ଅପି ତର୍ଣ୍ଣିକା ଗୋବତ୍ସାଃ କ୍ରୀଡ଼ନଂ କ୍ରୀଡ଼ାଂ ଦଧତ କୁର୍ବନ୍ତୁ, ଅସ୍ମ ଅତସୀସୁମନସାଂ ଚଳପୁଷ୍ପସ୍ୟ ଛବିଃ ଶୋଭା ଇବ ଛବିଃ ଯସ୍ୟ ସଃ ଅତସୀପୁଷ୍ପସଂକାଶଃ ଜନାନାଂ ନେତ୍ରରଞ୍ଜନଃ ଲୋକଲୋଚନପ୍ରୀତିଜନକଃ ଶିଶୁଃ କଃ ?

ଇତି ଅନେନ ପ୍ରକାରେଣ କୌତୂହଲେନ ଅପୂର୍ବକୃଷ୍ଣମୂର୍ତ୍ତିଦର୍ଶନଜନିତେନ ଔତ୍ସୁକ୍ୟେନ ଲୋଲେ ଚଞ୍ଚଳେ ଲୋଚନେ ଯାସାଂ, ତାସାଂ, ଆଖିରମ୍ଭୋରୁହାକ୍ଷୀଣାଂ ପଦ୍ମନେତ୍ରାଣାଂ ଗୋପୀନାଂ ଅନ୍ୟୋଽନ୍ୟ ଯତ୍ର ସମ୍ଭାଷଣଂ ଆଲାପଃ ତସ୍ୟ ସମାପ୍ତୌ ଏବ ନଟବ୍ରଜେ ନୃତ୍ୟତ୍‌ଗୋପଶିଶୁ ବ୍ରଜେ ନେଦିଷ୍ଠଂ ନିକଟତମଂ ସୈକତଂ ସିକତାମୟପ୍ରଦେଶ ଏବ ଅଙ୍ଗଣଂ ଚତ୍ୱରଂ ତସ୍ମିନ୍ ଆଲିଙ୍ଗିତଂ ନିକ୍ଷିପ୍ତଂ ଚରଣମେବ ସରସିଜଂ ପଦ୍ମଂ ଯସ୍ୟ ତସ୍ମିନ୍ ସତି ବଧ୍ୱସ୍ତଚତୁଷ୍କୋଟିକିଙ୍କିଣଂ ବଲ୍ଲୁପ୍ରସବାଙ୍ଗୀନକିଙ୍କିଣଂ ବେଦ୍ୟାନ୍ତରଙ୍ଗନଶୂନ୍ୟମିତି ଯାବତ୍ ଅସ୍ମ ମଦନମୋହନ ମଦନଂ କନ୍ଦର୍ପଂ ମୋହୟତି ରୂପେଣ ଇତି ପ୍ରେମଣଃ ମହିମ୍ନଃ ଆଡ଼ମ୍ବର ପ୍ରେମପୂର୍ଣ୍ଣମହାହର୍ଷଧ୍ୱନିଃ ସମାବିରାସୀତ୍ ସଜାତଃ ।

---

* ଗଞ୍ଜାମ ଜିଲାରୁ ଆମ୍ଭେମାନେ ପାଞ୍ଚଖଣ୍ଡ ହାତଲେଖା ପୋଥି ସଂଗ୍ରହ କରିଥିଲୁ, ପ୍ରତ୍ୟେକ ପୋଥିରେ 'ହ' ଗୀତର ଘୋଷା ଯେପରି ଲେଖାଥିଲା, ଏଠାରେ ଅବିକଳ ତାହା ଦେଲୁଁ । ପୂର୍ବ ଛପା ବହିମାନଙ୍କରେ 'ହରି ଆମ୍ଭର ହେ ଏତ ପ୍ରାଣଧନ' ଏହିପରି ପାଠ ଦେଖାଯାଏ । ଉତ୍କଳରେ ଚୈତନ୍ୟ ପ୍ରବର୍ତ୍ତିତ ବଙ୍ଗଳା ସଂକୀର୍ତ୍ତନର ଭାଷା ପୂର୍ବରୁ ଲୋକମୁଖରେ ଚଳୁଥିବାରୁ କବି ପୁରୀବାସ ସମୟରେ ଏହା ଶୁଣିଥିଲେ ଏବଂ ପ୍ରେମବିଭୋଳରେ ଓଡ଼ିଆ ଭାଷାରେ ଏ ପଦ ନ ଲେଖି ବଙ୍ଗଳା ସଂକୀର୍ତ୍ତନ ଛାନ୍ଦରେ ଏ ପଦ ରଚନା କରିଅଛନ୍ତି, ଏହିପରି ବୋଧହୁଏ । ଭାବା-ବେଗରେ ଏ ଭଳି ହେବା ଅସ୍ୱାଭାବିକ ମଧ୍ୟ ନୁହେ ।

(ଵ)    ଏତସେ୍ୟକ୍ଷଣକୋଣବୀକ୍ଷଣଵିଲନ୍ନୀଲାରବିନ୍ଦାସୁଗା—
ସାରୈଃ ସାରସସାରସୁନ୍ଦରଦୃଶାଂ କନ୍ଦର୍ପଦର୍ପୋଦୟୈଃ ।
ଦାସ୍ୟଂ କିଂ ନ ଵିବେଶ ଵିଶ୍ୱମିଯୁତୈଃ ତତ୍ କିଂ ମଣୀନାଂ ଗଣୈଃ
ସମ୍ବଧାଂ ମ୍ଳରଲାଂ ଦୁରନ୍ତଖୁରଲାଂ ବିମ୍ବାଧରଶ୍ଚୁମ୍ବିତ ।
ଚରାଚରଧୈର୍ଯ୍ୟବିଧ୍ୱଂସିନ୍ୟା ବର୍ହାବତଂସବଂଶୀନିନଦେ ପ୍ରସରତ୍ୟର୍କ-ଜାୟାଃ କାର୍କଶ୍ୟସ୍ୟ ଶିଳାବଳୀନାଂ ଜଳତାୟାଃ ଶାଖିନାମପ୍ୟାଶିଖଂ ସପୁଲକତ୍ୱସ୍ୟ ମୃଗାଣାମୁତ୍କର୍ଣ୍ଣତାୟାଃ ଫଣିନାଂ ଚକ୍ଷିତଵିଲ୍ଲୋଚନସ୍ୟାନୁ-ଭବୋ ବଭୂବ ।

---

ଅନୁବାଦ—ହେ ସଖି, ଯାହାଙ୍କ ଆଗରେ ଓ ଗୃହପାଖରେ କଅଁଳା ବାଛୁରି-ମାନେ ଖେଳୁଅଛନ୍ତି, ସେହି ଅତସୀପୁଷ୍ପସଦୃଶ ଶରୀରଧାରୀ ଲୋକଚକ୍ଷୁର ଆନନ୍ଦବର୍ଦ୍ଧକ ଏହି ବାଳକଟି କିଏ ?

ଅପୂର୍ବ ଶ୍ରୀକୃଷ୍ଣମୂର୍ତ୍ତିଦର୍ଶନଜନିତ କୌତୁକରେ ଚଞ୍ଚଳନେତ୍ରା ପଦ୍ମଲୋଚନା ଗୋପାଙ୍ଗନାମାନେ ଏହିପରି ପରସ୍ପର ଆଳାପ କଲେ, ଏହା ଶେଷ ହେବା ସମୟରେ ସେହି ନର୍ତ୍ତକମାନେ ନିକଟବର୍ତ୍ତୀ ଯମୁନାସୈକତରେ ପଦାର୍ପଣ କରନ୍ତେ, 'ଏ ମଦନମୋହନ ଅଟନ୍ତି' ଗୋପୀମାନେ ନିଜର ସକଳ ଜ୍ଞାନ ଭୁଲିଯାଇ ଏହାହିଁ କହିବାରେ ଲଗିଲେ ।

---

(ଵ) ହରିଦ୍ରସ୍ମଣି—ଇନ୍ଦ୍ରନୀଳମଣି, ଅପଘନ—ଦେହ, ଜୀମୂତକେଶା—ମେଘପରି କୃଷ୍ଣବର୍ଣ୍ଣ କେଶ ଯାହାର, ହଠି—କୌତୁକରେ ହଠ କରି, ରଦାମ୍ବର—ଅଧର, ତରଳରତ୍ନ—ଦୀପ୍ତିବିଶିଷ୍ଟ ଉଜ୍ଜ୍ୱଳ ରତ୍ନ, ନମୁଚସୂଦନ—ଇନ୍ଦ୍ର ।

ଆହା ! ଏହି ତ ଆମ୍ଭର ପ୍ରାଣର ସଙ୍ଗାଳି ହରି ! ( ଆମ ଆଗରେ ଶୋଭା ପାଉଅଛନ୍ତି ) । ପଦ । ଏହାଙ୍କ ଶରୀର ଇନ୍ଦ୍ରନୀଳମଣିକୁ ଜିଣୁଅଛି ଏବଂ ମୁଖଚନ୍ଦ୍ରକୁ ନିନ୍ଦା କରୁଅଛି । ୧ । ସହସ୍ର କନ୍ଦର୍ପ ଏକତ୍ର ହେଲେ ଏ ମୋହନ ( ଶ୍ରୀକୃଷ୍ଣ ) ସଙ୍ଗେ ସମାନ ହେବେ ନାହିଁ । ୨ । ଏହାଙ୍କ ବଂଶୀର କୋମଳ ଶବ୍ଦ ଶୁଣି ଶୁଣି ଘନନୀଳ-କୁନ୍ତଳା ନାରୀଙ୍କର କଣ ଜ୍ଞାନ ହଜିଯିବ ନାହିଁ ? ଅର୍ଥାତ୍ ଏହାଙ୍କର ସୁମଧୁର ବେଣୁ ଶବ୍ଦ ଶୁଣିଲେ ସୁନ୍ଦରୀ ନାରୀମାନଙ୍କର ଜ୍ଞାନ ନିଶ୍ଚେ ଲୋପ ହୋଇଯିବ । ୩ । ହେ ସଖି, ଥରେ କୌତୁକରେ ହଠ କରି ତାଙ୍କର ଅଧରମଧୁ ପିଇବା କି ଅର୍ଥାତ୍ ଅଧରକୁ ଚୁମ୍ବନ କରିବା କି ? ତା ହେଲେ ଯୌବନ ସଫଳ ହୁଅନ୍ତା । ୪ । ଯୁବତୀ-ମାନଙ୍କର ପ୍ରାଣପରି ପ୍ରିୟତମ ଏହି କୃଷ୍ଣ ଆମ୍ଭ ହାରମଧ୍ୟବର୍ତ୍ତୀ ତରଳ ରତ୍ନ ହେବେ କି ? ଅର୍ଥାତ୍ ହାର ମଧ୍ୟରେ ଥିବା ସମୁଜ୍ଜ୍ୱଳ ରତ୍ନପରି ଏହି ଯୁବତୀଜୀବନ ଶ୍ରୀକୃଷ୍ଣଙ୍କୁ ସବୁବେଳେ ହୃଦୟରେ ଗଣ୍ଠିଧନ ଭଳି ବାନ୍ଧି ରଖିବା କି ? ଆଠଗଡ଼ର ଇନ୍ଦ୍ର (ରାଜା) ହୃଷ୍ଟ ହୋଇ ସପ୍ରେମରେ ଏହାକୁ ରଚନା କଲେ । ୫ ।

(ହ) ଟୀକା—ଗୋପବାଳାନାଂ ଶ୍ରୀକୃଷ୍ଣବିଷୟକଂ ଅନ୍ୟୋଽନ୍ୟାଳାପଂ ବର୍ଣ୍ଣୟତି ଏତସ୍ୟେତି । ହେ ସଖ୍ୟ, ଏତସ୍ୟ ଶ୍ରୀକୃଷ୍ଣସ୍ୟ ଈକ୍ଷଣକୋଣେନ କ୍ଷଣମେବ ଚଳନ୍ତଃ ଚଳନ୍ତଃ ନୀଳାରବିନ୍ଦମୟ୍ୟଃ ନୀଳୋତ୍ପଳନିର୍ମିତାଃ ଆଶୁଗାଃ ଶରାଃ ତେଷାଂ ଆସାରୈଃ ବର୍ଷଣୈଃ ସାରସସାରବତ୍ ଉତ୍କୃଷ୍ଟ ପଦ୍ମବତ୍ ସୁନ୍ଦର୍ଯ୍ୟୌ ଦୃଶୌ ଯାସାଂ ତାସାଂ ଯୁବତୀନାଂ ଇତ୍ୟର୍ଥଃ । କନ୍ଦର୍ପଦର୍ପୋଦୟଃ ମଦନମତ୍ତତାୟାଃ ଉଦୟଃ ଭବତୀତି ଶେଷଃ ଅସ୍ୟ ଶ୍ରୀକୃଷ୍ଣସ୍ୟ ନେତ୍ରାନ୍ତପାତେନ କାମିନୀନାଂ ମନସି କାମୋଦୟଃ ଜାୟତେ ଇତ୍ୟର୍ଥଃ । ଏତତ୍ ବଶ୍ୟଂ କର୍ତ୍ତୁଂ ଦାସ୍ୟଂ ଭୃତ୍ୟତ୍ୱଂ କର୍ମ ଇଦ୍ଧତା ଈକ୍ଷଣକୋଣକ୍ଷଣେନୈବ କଂ ନ ବଂଶେନ, ବଶ୍ୟବାସିନଃ କଂ ଭୃତ୍ୟତ୍ୱଂ ନ ଗତାଃ ଇତି କାକୁଃ । ଅସ୍ୟ ବିମ୍ବାଧରଃ ମଣୀନାଂ ଗଣୈଃ ରତ୍ନସମୂହୈଃ ସମ୍ବାଧାଂ ବ୍ୟାପ୍ତାଂ; ଦୂରନ୍ତା ଦୁର୍ଦଶୋଦର୍କା ଖରଣ୍ଟଂ ଅଭ୍ୟାସଃ ଯସ୍ୟାଃ ତାଂ ମୁରଳୀଂ ବଂଶୀଂ କଂ କମର୍ଥଂ ଚୁମ୍ବତି ?

ଚରାଚରାଣାଂ ସ୍ଥାବରଜଙ୍ଗମାନାଂ ଧୈର୍ଯ୍ୟଂ ବିଧ୍ୱଂସତି ଇତି ଚରାଚରଧୈର୍ଯ୍ୟବିଧ୍ୱଂସୀ ତସ୍ମିନ୍ ବିଶ୍ୱଧୈର୍ଯ୍ୟବିଲୋପିନି ବର୍ହାବତଂସସ୍ୟ ଶିଖଣ୍ଡମୁକୁଟସ୍ୟ ଶ୍ରୀକୃଷ୍ଣସ୍ୟ ବଂଶୀନିନଦେ ବଂଶୀଧ୍ୱନୌ ପ୍ରସରତି ସତି ଅର୍କଜାୟାଃ ଯମୁନାୟାଃ ଜଳପ୍ରବାହସ୍ୟ ଇତ୍ୟର୍ଥଃ । କାର୍କଶ୍ୟସ୍ୟ କଠିନତାୟାଃ ଅନୁଭବୋ ବଭୂବ, ତରଳଂ ବହମାନଂ ଅପି ଯମୁନାଜଳଂ ସ୍ଥିରଂ କଠିନଂ ଅଭୂତ୍ ଇତ୍ୟର୍ଥଃ । ଶିଳାବଳୀନାଂ ପ୍ରସ୍ତରାଣାଂ କଠିନାନାଂ ଇତ୍ୟର୍ଥଃ । ଜଳତାୟାଃ ତରଳତ୍ୱସ୍ୟ ଅନୁଭବୋ ବଭୂବ, କଠିନ ଅପି ଶିଳାବଳଃ ତରଳତାଭୂତ୍ ଇତ୍ୟର୍ଥ; ସାଖିନାଂ ବୃକ୍ଷାଣାମପି ଆଶିଖଂ ମୂଳାଦଗ୍ରଭାଗପର୍ଯ୍ୟନ୍ତଂ ସପୁଳକତ୍ୱସ୍ୟ ରୋମାଞ୍ଚୋଦୟସ୍ୟ ଅନୁଭବୋ ବଭୂବ, ମୃଗାଣାଂ ଉତ୍କର୍ଣ୍ଣତାୟା ଅନୁଭବୋ ବଭୂବ, ମୃଗାଃ ଉତ୍କର୍ଣ୍ଣାଃ ସନ୍ତଃ ବଂଶୀନିନଦଂ ଅନ୍ୱଭବନ୍ ଇତ୍ୟର୍ଥଃ, ଫଣୀନାଂ ସର୍ପାଣାଂ ଚକିତବିଲୋଚନତ୍ୱସ୍ୟ ଅନୁଭବୋ ବଭୂବ, ସର୍ପାଃ ତତ୍ସ୍ୱରଶ୍ରବଣେନ ଚକ୍ଷୁଃଶ୍ରବତ୍ୱାତ୍ ବିସ୍ମୟବିସ୍ଫାରନେକ୍ଷଣା ବଭୂବୁଃ ଇତ୍ୟର୍ଥଃ ।

ଅନୁବାଦ—ହେ ସଖି, ଏହି ଶ୍ରୀକୃଷ୍ଣଙ୍କର ଅପାଙ୍ଗଦୃଷ୍ଟିପାତ, ନୀଳୋତ୍ପଳନିର୍ମିତ ଚଳନ୍ତା ଶର ପରି ପଦ୍ମନୟନା ସୁନ୍ଦରୀମାନଙ୍କ ମନରେ କନ୍ଦର୍ପର ଉନ୍ମାଦ ଜାତ କରୁଅଛି । ବିଶ୍ୱବାସୀମାନେ ଏହି ଅପାଙ୍ଗ ଦୃଷ୍ଟିପାତ ଦ୍ୱାରା ତ ବଶୀଭୂତ ହୋଇଗଲେ, ଆଉ କାହିଁକି ବିମ୍ବାଧର ମୁରଳୀ ବଜାଇବାକୁ ଆୟାସ କରୁଅଛ ? ଆହା, କୋମଳ ବିମ୍ବାଧରରେ ରତ୍ନକଠିନ ମୁରଳୀସ୍ପର୍ଶ ବାଧା ଦେଉଅଛି ପରା ।

ଅହୋ କି ବିଚିତ୍ର କଥା ? ଏହି ମୟୂରଚୂଳଆଙ୍କର ଚରାଚର ଧୈର୍ଯ୍ୟବିଧ୍ୱଂସକାରୀ ବଂଶୀନାଦ ଶୁଣନ୍ତେ ଯମୁନାର ତରଳ ଜଳ ଘନୀଭୂତ ହୋଇଗଲା, କଠିନ ପାଷାଣସମୂହ ତରଳିତ ହୋଇଗଲା, ବୃକ୍ଷମାନଙ୍କର ମୂଳରୁ ଅଗ୍ର ପର୍ଯ୍ୟନ୍ତ ରୋମାଞ୍ଚ ଜାତ ହେଲା, ମୃଗମାନେ କାନଡେରି ସ୍ଥିରହୋଇ ରହିଗଲେ ଏବଂ ସର୍ପମାନେ ବିସ୍ମୟବିସ୍ଫାରିତ ନୟନରେ ଅନାଇ ରହିଲେ ।

# କ୍ଷ

ରାଗ—କେଦାର

କ୍ଷମାନୁକମ୍ପାଧର ହେ,
କ୍ଷୀରସାଗରସମ୍ଭବାକୁଚକୁମ୍ଭଯୁଗଳପରିରମ୍ଭଚତୁର ହେ । ପଦ ।
କ୍ଷିତିଚକ୍ରବାଳ ମହାଭୀତି ନିବାରଣ ହେ,
ଶ୍ରୁତିଶିର-ଅବତଂସାକୃତ ଶ୍ରୀଚରଣ ହେ,
ମରାଳବାହରତି, କରାର୍ଚ୍ଚିତ ଚରଣ, ଧରାଭାର ହରଣ, ଚରାଚର ଶରଣ,
ତରାବର କାରଣ, ବରାବର ଚରଣ, ନଖାଂଶୁ ସୁରଗଣଶିଖାଭରଣ ହେ । ୧ ।
କ୍ଷଣେ ହେଲେ ନାମକୁ ନ ଭଣେ ମୁଁ ତୁମ୍ଭର ହେ,
ଜଣେ ତ ହେବାରୁ ପାପିଗଣେ ବିଶ୍ୱମ୍ଭର ହେ,
ମନା ନ କର ହିତ, ଅନାଦରରହିତ,-ଅନାଉଣି ନିରତ, ଚୂନାକରୁ ଦୁରିତ
ଅନାରତ ମୋ ଚିତ୍ତ, ମନାସୁଛି ଅହିତ, ଜନାର୍ଦ୍ଦନ ପତିତଜନାବହିତ ହେ ॥
କ୍ଷମ ତ ମୁଁ ନୁହେଁ ଅନୁପମ-ଅନୁଭାବ ହେ,
ଯମଦଣ୍ଡରୁ ମୋ ରକ୍ଷା କେମନ୍ତି ହେବ ହେ,
ଜଳାକରଭବନ,-ବଳାମୁଖ ଭୁବନ,-ବଳାହିତ ରତନ, ବଳାବରଜ, ଜନ-
କଳାପର ବୃଜନ,-ଦଳା ସୁକୃତଧନ, -ବଳାଢ଼୍ୟମୁନି-ମନ,-କଳାପି ଘନ ହେ ॥
କ୍ଷମାଧିପ ଜଗଦ୍ଦେବ ସମାପନ କର ହେ;
ଶ୍ରମାର୍ତ୍ତି ହେବାରୁ ଭବ ଭ୍ରମାତିଶୟରେ ହେ,
ବ୍ୟଥା ନିବହ ହର, ପ୍ରଥାଚଳୁ ମିହିର, ପଥାନ୍ତରକୁ ହର,-ରଥାଦରୁ ଅମର,
ମଥାମଣି ନିକର, ରଥାଙ୍ଗଯୁତ କର, କଥା ବିନୟ ମୋର ବୃଥା ନକର ହେ ॥

---

(କ୍ଷ) କ୍ଷମାନୁକମ୍ପାଧର—ହେ କ୍ଷମାଶୀଳ, ହେ ଦୟାସାଗର; କ୍ଷୀରସାଗର-ସମ୍ଭବ—ଲକ୍ଷ୍ମୀ, ପରିରମ୍ଭ—ଆଲିଙ୍ଗନ, କ୍ଷିତିଚକ୍ରବାଳ—ପୃଥିବୀମଣ୍ଡଳ, ଶ୍ରୁତିଶିର-ଅବତଂସାକୃତ—ବେଦମସ୍ତକର ଭୂଷଣସ୍ୱରୂପ; ମରାଳବାହରଣ—ବ୍ରହ୍ମା, ତରାବର—ଚନ୍ଦ୍ର, ବରାବର—ସଦ୍‌ଗୁଣ, ନଖାଂଶୁ—ନଖର ଜ୍ୟୋତି, ନ ଭଣେ—ଉଚ୍ଚାରଣ କରେ ନାହିଁ, ଅନାଦରରହିତ—ଆଦର ସହିତ, ଅନାଉଣି—ଚାହିଁବା, ଅନାରତ—ସର୍ବଦା, ଅହିତ—ପାପ, ପତିତଜନାବହିତ—ପାପିଜନ ଉଦ୍ଧାରକାରୀ, କ୍ଷମ—ସମର୍ଥ, ଅଧିକାରୀ ବା ହକ୍‌ଦାର, ଅନୁପମ ଅନୁଭବ—ଯାହାର ମହିମା ଅତୁଳନୀୟ ଅଟେ, ଜଳାକର—ସମୁଦ୍ର, ବଳାହିତ—ବଳାରି, ଇନ୍ଦ୍ର; ବଳାବରଜ—ବଳରାମଙ୍କ ସାନଭାଇ, ବୃଜନ—ପାପ, ହରରଥ—ପୃଥିବୀ ।

ହେ କ୍ଷମାସାଗର, ଦୟାଶୀଳ, ହେ ଲକ୍ଷ୍ମୀଦେବୀଙ୍କର କୁଚରୂପକୁମ୍ଭଦ୍ୱୟ ଆଲିଙ୍ଗନରେ ନିପୁଣ । ପଦ । ହେ ପ୍ରଭୁ, ତୁମ୍ଭେ ସମଗ୍ର ପୃଥିବୀମଣ୍ଡଳର ମହାଭୟ ନିବାରଣକାରୀ ଅଟ । ତୁମ୍ଭର ସୁନ୍ଦର ଚରଣଦ୍ୱୟ ବେଦର ଶିରୋଭୂଷଣସ୍ୱରୂପ ହୋଇଅଛି ଅର୍ଥାତ୍ ତୁମ୍ଭର ପାଦପଦ୍ମଦ୍ୱୟ ବେଦରେ ମୁଖ୍ୟ ପ୍ରତିପାଦ୍ୟ ବିଷୟ । ତୁମ୍ଭର ଚରଣଦ୍ୱୟ ବ୍ରହ୍ମାଙ୍କ କରଦ୍ୱାରା ଅର୍ଚ୍ଚିତ ହେଉଅଛି, ଅର୍ଥାତ୍ ବ୍ରହ୍ମା ତୁମ୍ଭ ଶ୍ରୀଚରଣ ସେବାକାରୀ ଅଟନ୍ତି । ହେ ଧରାଭାରହରଣ (ପୃଥିବୀର ଭାର ହରଣକାରୀ), ହେ ଚରାଚରଶରଣ (ସମଗ୍ର ସଂସାରର ଆଶ୍ରୟ), ତୁମ୍ଭର ଚନ୍ଦ୍ରକିରଣ ସଦୃଶ ପାଦସ୍ଥିତ ନଖର କିରଣ ଦେବତାମାନଙ୍କର ଶିଖା ଅର୍ଥାତ୍ ମସ୍ତକର ଆଭରଣ ଅଟେ । ୧ । ମୁଁ କ୍ଷଣେ ହେଲେ ତୁମ୍ଭର ନାମକୁ ଉଚ୍ଚାରଣ କରୁ ନାହିଁ, ହେ ବିଶ୍ୱମ୍ଭର, ମୁଁ ପାପିଗଣଙ୍କ ମଧ୍ୟରେ ଜଣେ ହେବାରୁ ଅର୍ଥାତ୍ ମୁଁ ଜଣେ ପ୍ରଧାନ ପାପୀ ହେବାରୁ ତୁମ୍ଭେ ମୋ ହିତ ଅର୍ଥାତ୍ ମଙ୍ଗଳକୁ ମନା କର ନାହିଁ, ଅର୍ଥାତ୍ ମୋର ମଙ୍ଗଳରେ ବାଧା ଦିଅ ନାହିଁ । ତୁମ୍ଭର ଅନାଦରରହିତ (ସ୍ନେହପୂର୍ଣ୍ଣ) ଗୃହିଣୀ ସର୍ବଦା ମୋ ଦୁରିତକୁ (ପାପକୁ) ଚୂନା କରି ଦେଉ, ହେ ଜନାର୍ଦ୍ଦନ, ହେ ପତିତମାନଙ୍କ ହିତକାରୀ, ମୋ ଚିତ୍ତ ସର୍ବଦା ଅହିତ (ପାପ) ମନାସୁଅଛି, ଅର୍ଥାତ୍ ପାପଚିନ୍ତା କରୁଅଛି । ୨ । ହେ ଅତୁଳନୀୟ ଶକ୍ତିଶାଳୀ, ମୁଁ ଅବଶ୍ୟ ପାପରୁ କ୍ଷମା ପାଇବାର ଅଧିକାରୀ ନୁହେ, ମୋର ଯମଦଣ୍ଡରୁ କିପରି ରକ୍ଷା ହେବ ? ହେ ଜଳାକରଭବନବଲାମୁଖ (ଜଳାକର ଯେ ସମୁଦ୍ର ସେ ଭବନ କି ଜନ୍ମସ୍ଥାନ ଯାହାର ଅର୍ଥାତ୍ ଚନ୍ଦ୍ର ତାକୁ ବଳିଅଛି ଅର୍ଥାତ୍ ତାହାଠାରୁ ମନୋଜ୍ଞତର ମୁଖ ଯାହାର ), ହେ ଭୁବନ ବଳାହିତରତ୍ନ ( ହେ ସଂସାରର ଇନ୍ଦ୍ରମଣି ), ହେ ବଳଭଦ୍ରଙ୍କ ସାନ ଭାଇ, ହେ ଜନକଲାପର ବୃଜିନଦଳା (ମନୁଷ୍ୟମାନଙ୍କର ପାପବିନାଶକ ), ତୁମ୍ଭେ ସୁକୃତଧନବଳାଢ୍ୟ ମୁନିମନ କଲାପିଘନ ଅଟ । ( ପୁଣ୍ୟରୂପ ଧନରେ ବଳବାନ୍ ଅଟନ୍ତି ଯେଉଁ ମୁନିମାନେ), ସେମାନଙ୍କ ମନରୂପ ମୟୂର ପକ୍ଷରେ ତୁମ୍ଭେ ମେଘସ୍ୱରୂପ ଅଟ ଅର୍ଥାତ୍ ପୁଣ୍ୟାତ୍ମା ମୁନିମାନେ ତୁମ୍ଭଙ୍କୁ ମନୋମଧ୍ୟରେ ଅନୁଭବ କରି ଆନନ୍ଦିତ ହୁଅନ୍ତି । ୩ । କ୍ଷମାର ଅଧିପ ଅର୍ଥାତ୍ ପୃଥିବୀର ରାଜା ଜଗଦ୍ଦେବ ଏହି ଗୀତକୁ ସମାପନ କଲେ; ହେ ପ୍ରଭୁ ଭବ-ଭ୍ରମାଟଣୀୟରେ ଅର୍ଥାତ୍ ସାଂସାରିକ ମାୟାବାଦ ଭ୍ରମରେ ପଡ଼ି ମୁଁ ଅତ୍ୟନ୍ତ ଶ୍ରମାର୍ତ୍ତି (କ୍ଳାନ୍ତ) ହୋଇ ପଡ଼ିଅଛି, ତୁମ୍ଭେ ମୋର ଏହି ବ୍ୟାଧିନିବହ ( କ୍ଳାନ୍ତିସମୂହକୁ ) ହରଣ କର; ଏହି ପ୍ରଥା ଅର୍ଥାତ୍ ଏହି ଦୁଃଖ ଦୂର କରିବା ଖ୍ୟାତି, ହରରଥାବଧିରୁ ଅର୍ଥାତ୍ ପୃଥିବୀରୁ ଆରମ୍ଭକରି ( ତ୍ରିପୁରାସୁରକୁ ମାରିବାବେଳେ ମହାଦେବ ପୃଥିବୀକୁ ରଥସ୍ୱରୂପ ବ୍ୟବହାର କରିଥିବାରୁ ପୃଥିବୀକୁ ହରରଥ କହନ୍ତି ) ମିହିର-ପଥାନ୍ତରକୁ ଅର୍ଥାତ୍ ସୂର୍ଯ୍ୟଙ୍କ ଗମନାଗମନ ପଥ ଆକାଶ ପର୍ଯ୍ୟନ୍ତ ଚଳୁ ଅର୍ଥାତ୍ ପ୍ରଚରିତ ହେଉ । ହେ ଅମରମଥାମଣି ( ହେ ଦେବବୃନ୍ଦଙ୍କ ନମସ୍ୟ ), ହେ

(ଷ) ଦଳିତାଞ୍ଜନପୁଞ୍ଜମଞ୍ଜୁଳାଙ୍ଗୋ, ଲଳିତାଦ୍ୟମ୍ବୁଜଲୋଚନାର୍ଚ୍ଚିତାଙ୍ଘ୍ରିଃ,
ଫଳିତାମରଭୂରୁହଃ ଶ୍ରିତାନାଂ କଳିତାପଂ ଦଳୟତ୍ୱଲଂ କବୀନାଂ ।
ଲୀଳାବନୀଭରମୁରାହୃତବୀରବାରେ—
ଶ୍ରୀନାଥକେନ୍ଦ୍ରଚରମା ଭରଣଂ ମହୋ ନଃ,
ଚୀନାମ୍ବଲାଲ୍ୟଚଳଦଞ୍ଚଳଚେଲମାଲଂ,
ହୀନାଂହସାମସୁମତାଂ ଶରଣଂ ଶରଣ୍ୟଂ ।
ପୀନାନୁକମ୍ପନରସାମୃତପୂରପୂର୍ଣ୍ଣୋ
ଦୀନାସ୍ୟନାଃସୃତଚରସ୍ତବସଙ୍କକର୍ଣ୍ଣଃ,
ମୀନାଦ୍ୟନେକବିଧରୂପଧରଃ ପରାତ୍ମା
କୀନାଶକଙ୍କରଭୟାନ୍ନ ଜଗନ୍ତି ହନ୍ତୁ ।

ଶ୍ରୀମଦ୍ଭ୍ୟାମନ୍ୟୋଽନ୍ୟଲାବଣ୍ୟଲୋଲଲୋଚନାଭ୍ୟାମମ୍ବରାଡ଼ମ୍ବର-ବିଡ଼ମ୍ବିତାମ୍ବୁଧରରୋଚନାଭ୍ୟାଂ କାନ୍ତିସ୍ମରମସାରସାରସାଦୃଶ୍ୟପୂର୍ଣ୍ଣବର୍ଣ୍ଣାଭ୍ୟାଂ-ମାନ୍ତିସ୍ମରାକର୍ଣ୍ଣନସଙ୍କକର୍ଣ୍ଣାଭ୍ୟାଂ ରକ୍ତାରବିନ୍ଦସୌନ୍ଦର୍ଯ୍ୟତୁନ୍ଦିଲଚରଣାଭ୍ୟା-ମମାନୁଷାନୁଭାବବିଭବାଭ୍ୟାଂ ଶ୍ରୀରାଧାମାଧବାଭ୍ୟାଂ ନମୋନମଃ ।

ଇତି କିଶୋରଚନ୍ଦ୍ରାନନ୍ଦାଖ୍ୟଂ ଚମ୍ପୂକାବ୍ୟଂ ।

ଓଁ ତତ୍ ସତ୍ ।

---

ରଥାଙ୍ଗଯୁତକର ( ହେ ଚକ୍ରଧର ), ମୋର କଥା ବିନୟକୁ ଅର୍ଥାତ୍ ବିନୟପୂର୍ଣ୍ଣ କଥାକୁ ନକର ( କେବେହେଁ ) ବୃଥା କର ନାହିଁ ।

ଟୀକା—ଅର୍ଥ କବିଃ ପ୍ରାର୍ଥନାଦ୍ୱାରେଣ ସ୍ୱରଚିତକାବ୍ୟସମାପ୍ତିଂ ବିଦଧାତି ଦଳିତେତି । ଦଳିତାନି ମର୍ଦ୍ଦିତାନି ଯାନି ଅଞ୍ଜନାନି କଜ୍ଜଳାନି ତସ୍ୟ ପୁଞ୍ଜବତ୍ ସଂଘାତବତ୍ ମଞ୍ଜୁଳାନି ମନୋହରାଣି ଅଙ୍ଗାନି ଯସ୍ୟ ସଃ, ଲଳିତାଦିଭିଃ ସହଚରୀଭୂତାଭିଃ ଅମ୍ବୁଜଲୋଚନାଭିଃ ପଦ୍ମନେତ୍ରାଭିଃ ଅର୍ଚ୍ଚିତଂ ସେବିତଂ ଚରଣଂ ଯସ୍ୟ ସଃ, ଶ୍ରିତାନାଂ ଆଶ୍ରିତାନାଂ ଜୀବାନାଂ ବିଷୟେ ଫଳିତଃ ଫଳବାନ୍ ଅମରଭୂରୁହଃ କଳ୍ପପାଦପଃ ତତ୍ସଦୃଶଃ ଇତ୍ୟର୍ଥଃ, ଏବଂଭୂତଃ ଶ୍ରୀକୃଷ୍ଣଃ କବୀନାଂ ସତାଂ କଳିତାପଂ କଳିକାଳସମୁଦ୍ଭୂତଂ ଦୁଃଖଂ ଅଲଂ ଅତ୍ୟର୍ଥଂ ଦଳୟତୁ ବିନାଶୟତୁ ।

ଲୀନେତି—ଲୀନଃ ବିନାଶିତଃ ଅବନ୍ୟାଃ ପୃଥିବ୍ୟାଃ ଭରଃ ଭାରଦ୍ଧୃତଃ ସୁରାଦ୍ଧିତାନାଂ ଦେବଶତ୍ରୁଣାଂ ଖାଗଣାଂ ଅସୁରାଣାଂ ଇତ୍ୟର୍ଥଃ । ବୀରଃ ସମୂହଃ ଯେନ ତତ୍, ଉଡ଼୍ଡୀନଃ ଯଃ ଅଣ୍ଡଜେନ୍ଦ୍ରଃ ପକ୍ଷିରାଟ୍ ଗରୁଡ଼ଃ ତସ୍ୟ ଚରମସ୍ୟ ପୃଷ୍ଠଭାଗସ୍ୟ ଆଭରଣଂ ଭୂଷଣସ୍ୱରୂପଂ ଉଭୟୋର୍ବିଶେଷଣସମାସଃ । ଚୀନାନିଲେନ ମନ୍ଦପବନେନ ଅଲଙ୍ଗଂ ଚଲନ୍ତ୍ୟୌ ଅଞ୍ଚଲଚେଲଂ ମାଲା ଚ ଯସ୍ୟ ତତ୍, ହୀନାନି ବିରତାନି ଅଂହାସି ପାପାନି ଯେଷାଂ ତେଷାଂ ନିଷ୍ପାପାନାଂ ଅସ୍ମଦାଂ ପ୍ରାଣିନାଂ ଶରଣ୍ୟଂ ରକ୍ଷଣାର୍ହଂ ମହଃ ଶ୍ରୀକୃଷ୍ଣାଖ୍ୟଂ ତେଜଃ, ନଃ ଅସ୍ମାକଂ ଶରଣଂ ରକ୍ଷିତୃ ଅସ୍ତୁ ।

ପୀନେତି—ପୀନଃ—ପ୍ରବୃଦ୍ଧଃ ଅନୁକମ୍ପନରସ କରୁଣାରସ ଏବ ଅମୃତପୂରଃ ପୀୟୂଷପ୍ରବାହଃ ତେନ ପୂର୍ଣ୍ଣଃ; ଦୀନାନାଂ ଦୁଃଖିନାଂ ଆସ୍ୟାତ୍ ମୁଖାତ୍ ନିଃସୃତତରଃ ସମ୍ୟକ୍ ନିର୍ଗତଃ ଯଃ ସ୍ତବଃ ତସ୍ମିନ୍ ତତ୍ଶ୍ରବଣେ ଇତ୍ୟର୍ଥଃ, ସକ୍ତୌ ଉଦ୍‌ମୁକ୍ତୌ କର୍ଣ୍ଣୌ ଯସ୍ୟ ସଃ, ନିତ୍ୟଂ ଦୀନଦୁଃଖାପନୋଦନତତ୍ପର ଇତ୍ୟର୍ଥଃ, ମୀନାଦ୍ୟନେକବିଧରୂପଧରଃ ମତ୍ସ୍ୟାଦ୍ୟନେକବିଧମୂର୍ତ୍ତିଃ, ପରାତ୍ମା ପରମେଶଃ, କୀନାଶସ୍ୟ ଯମସ୍ୟ ଯେ କିଙ୍କରାଃ ଭୃତ୍ୟାଃ ମରଣାନନ୍ତରଂ ପାପଦଣ୍ଡବିଧାନାର୍ଥଂ ସମାଗତାଃ ଇତ୍ୟର୍ଥଃ, ତେଭ୍ୟଃ ଯାନି ଭୟାନି ତାନି କଶାହଶାତୁ ଅତିଶୟେନ ହରତୁ ଦୂରୀକରୋତ୍ୱିତ୍ୟର୍ଥଃ ।

କାବ୍ୟସମାପ୍ତୌ ରାଧାମାଧବୌ ନମସ୍କରୋତି ଶ୍ରୀମଦ୍‌ଭ୍ୟାମିତି । ଶ୍ରୀମଦ୍‌ଭ୍ୟାଂ କମନୀୟରୂପାଭ୍ୟାଂ ଅନ୍ୟୋଽନ୍ୟଂ ପରସ୍ପରଂ ଯତ୍ ଲାବଣ୍ୟଂ ଲୋକାତିଶାୟି ସୌନ୍ଦର୍ଯ୍ୟଂ ତେନ ଲୋଲାନି ଚଞ୍ଚଲାନି ଲୋଚନାନି ଯୟୋଃ ତାଭ୍ୟାଂ, ଅମ୍ବରୟୋଃ ପରସ୍ପରପରିଧୃତବସ୍ତ୍ରୟୋଃ ଆଡ଼ମ୍ବରେଣ ସମାରୋହେଣ ବିଡ଼ମ୍ବିତଃ ଅନୁକୃତଃ ଅମ୍ବୁଧର ମେଘଃ କୃଷ୍ଣବର୍ଣ୍ଣ ବାଦ ଯାବତ୍, ରୋଚନା ଗୋରୋଚନା ହରିଦ୍ରାଭା ଇତି ଯାବତ୍ ଯୟୋଃ ତାଭ୍ୟାଂ, କାନ୍ତିସ୍ୱରଂ ସୁବର୍ଣ୍ଣଂ ମସାରଃ ଇନ୍ଦ୍ରନୀଲମଣିଃ ତୟୋଃ ସାରଃ ଉତ୍କର୍ଷଃ ତତ୍ ସାଦୃଶ୍ୟେନ ପୂର୍ଣ୍ଣଃ ବର୍ଣ୍ଣଃ ଯୟୋଃ ତାଭ୍ୟାଂ; ଆର୍ତ୍ତାନାଂ ଦୀନାନାଂ ସ୍ୱରଃ ଆର୍ତ୍ତଧ୍ୱନିଃ ତସ୍ୟ ଆକର୍ଣ୍ଣନେ ଶ୍ରବଣେ ସକ୍ତୌ କର୍ଣ୍ଣୌ ଯୟୋଃ ତାଭ୍ୟାଂ ରକ୍ତାରବିନ୍ଦାନାଂ ରକ୍ତପଦ୍ମାନାଂ ଯତ୍ ସୌନ୍ଦର୍ଯ୍ୟଂ ତେନ ତୁନ୍ଦିଲାନି ଅତିଶୟିତାନି ଚରଣାନି ଯୟୋଃ ତାଭ୍ୟାଂ, ଅମାନୁଷାନୁଭବବିଭବାଭ୍ୟାଂ ଅତିମାନୁଷତେଜଃସମ୍ପନ୍ନାଭ୍ୟାଂ ଶ୍ରୀରାଧାମାଧବାଭ୍ୟାଂ ନମୋନମଃ ।

ଅନୁବାଦ—ଯାହାଙ୍କର ଅଙ୍ଗ ଦଳିତ କଜ୍ଜଳ ପରି ମନୋହର, ଲଳିତାଦି ସହଚରୀମାନେ ଯାହାଙ୍କର ଚରଣାର୍ଚ୍ଚନା କରନ୍ତି, ଆଶ୍ରିତ ଲୋକମାନଙ୍କ ପକ୍ଷରେ ଯେ ଫଳବାନ୍ କଳ୍ପପାଦପ ସଦୃଶ, ସେହି ଭଗବାନ ଶ୍ରୀକୃଷ୍ଣ ସାଧୁମାନଙ୍କର କଳିତାପକୁ ବିନାଶ କରନ୍ତୁ ।

ଯେ ଅବନୀର ଭାରଭୂତ ଅସୁରମାନଙ୍କ ବିନାଶ କରିଅଛନ୍ତି, ଯେ ପକ୍ଷୀରାଜ ଗରୁଡ଼ର ପୃଷ୍ଠଦେଶର ଆଭରଣସ୍ୱରୂପ; ଯାହାଙ୍କର ବସ୍ତ୍ରାଞ୍ଚଳ ଓ ମାଳା ମୃଦୁ ବାୟୁରେ ଆନ୍ଦୋଳିତ, ନିଷ୍ପାପ ପ୍ରାଣୀମାନଙ୍କର ଆଶ୍ରୟ ସେହି ସମୁଜ୍ଜ୍ୱଳ ତେଜ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

ଅନନ୍ତ ଦୟାରୂପ ଅମୃତରସରେ ଯେ ପରିପୂର୍ଣ୍ଣ, ଦୁଃଖୀର ମୁଖରୁ ବାହାରୁଥିବା ସ୍ତବକୁ ଶୁଣିବାପାଇଁ ଯେ କାନ ଡେରି ଥାଆନ୍ତି, ମୀନାଦି ଅବତାର ଧାରଣକାରୀ ସେ ହରି ଯମକିଙ୍କରମାନଙ୍କ ଭୟ ଦୂର କରନ୍ତୁ ।

ପରସ୍ପର ଲାବଣ୍ୟଦର୍ଶନରେ ଯାହାଙ୍କର ଲୋଚନ ସର୍ବଦା ଚଞ୍ଚଳ, ଯାହାଙ୍କର ପରିଧାନ ବସ୍ତ୍ର ମେଘର ଓ ଗୋରଚନାର ବର୍ଣ୍ଣ ପରି ମନୋହର, ଯାହାଙ୍କ ଶରୀରଶୋଭା ସୁବର୍ଣ୍ଣ ଓ ଇନ୍ଦ୍ରନୀଳମଣି ପରି, ଦୁଃଖିମାନଙ୍କର ଦୁଃଖ ଶୁଣିବାକୁ ଯେ ସବୁବେଳେ କାନ ଡେରି ଥାଆନ୍ତି, ଯାହାଙ୍କ ଶ୍ରୀଚରଣଶୋଭା ରକ୍ତ ପଦ୍ମ ପରି ମନୋଜ୍ଞ, ଅମାନୁଷ-ତେଜଃସମ୍ପନ୍ନ ସେହି ରାଧାମାଧବଙ୍କୁ ମୁଁ ନମସ୍କାର କରୁଅଛି ।

ରବିଦ୍ରାତେ ବିସ୍ଫୁରତି ସତତଂ ଦ୍ୟୋତମାନୋଽପି ରାତ୍ରୌ
ଖଦ୍ୟୋତଃ କିଂ ନ କରତି ନିଜାଂ ଭାସମାଶାନ୍ତରାଳେ ।
ତଦ୍ୱଚ୍ଚେଷ୍ଟା ମେ ନ ଖଲୁ ବିଫଳା କ୍ଷୀଣବୁଦ୍ଧେରପି ସ୍ୟାତ୍,
ବ୍ୟାଖ୍ୟାକାର୍ଯ୍ୟେଽମୃତରସମୟସ୍ୟାସ୍ୟ କାବ୍ୟସ୍ୟ ନୂନଂ ॥
କୃତାଞ୍ଜଲିପୁଟେନାହଂ ଯାଚେ ସୂରିପଦାମ୍ବୁଜେ
କ୍ଷମ୍ୟତାଂ ଧୃଷ୍ଟତା ମେଽତ୍ର ବାଲିଶସ୍ୟାଲ୍ପମେଧସଃ ॥
ଓଁ ତତ୍ସତ୍ ।



# ଚୌପଦୀ ରତ୍ନାକର

ବା

## ରତ୍ନାକର ଚମ୍ପୂ



( ୧ )

ରାଗ—ପୂରବୀ

କୃଷ୍ଣକୁଞ୍ଚିତ ଗୁମରକେଶା, କ୍ରୀଡ଼ାଚପଳକୁରଙ୍ଗୀଦୃଶା,
କନକକଳିତ, କେତକୀଦଳିତ, ଗଉରାଙ୍ଗୀ ଏକା ମୋ ଭରସା,
ଅରେ କୁନ୍ଦହାସି, କଳାକଲ୍ଲୋଳିନୀକେଳି କଳହଂସୀ । ୧ ।
କିଶୋରୀକୁଳକିରୀଟମଣି, କୃଶୋଦରୀ କଳକଣ୍ଠବାଣୀ,
କୋମଳ ବୟସେ, କାହୁଁ ଶିଖିଲା ସେ, କେଳିତକୁ ଜାଣିବାର ଠାଣି,
ସେ ମୋ କୁତୁକିନୀ, କାମରଣେ ସମୟେ ମୋ ଅନୀକିନୀ । ୨ ।
କଳ୍ପିଲେ କଳ୍ପାନ୍ତ ଯାଏ କବି, କୁହାଯିବ ନାହିଁ ତାହା ଛବି,
କେ ଅବା ବୋଲିବ, ବଢ଼ାଇ ନିନ୍ଦିବ, ବାମାକୁ, ବଳିବ ମୋ ବାନ୍ଧବୀ
ସେ ମୋ କମଳାକ୍ଷୀ, କୋଟିକଳାକରକମନୀୟମୁଖୀ । ୩ ।
କୁସୁମବାସିନୀ ବାମା ପାଶେ, କରନ୍ତେ ସଞ୍ଚାର ମୁଁ ନିମିଷେ,
କଞ୍ଜବନଭୃଙ୍ଗ, ମିଳିନ୍ଦର ପରି, କଳେବର ଗୋଟିଯାକ ବାସେ,
ସେ ମୋ କାନ୍ତିସିନ୍ଧୁ, କୁଞ୍ଜନିଳୟଭୂଷା ମୋ ପ୍ରାଣବନ୍ଧୁ । ୪ ।
କାଳିନ୍ଦୀକୂଳ ସଙ୍କେତ ସ୍ଥାନେ, କିଶୋରଚନ୍ଦ୍ର ଶ୍ରୀମତୀ ଧ୍ୟାନେ,
କରନ୍ତେ ଶରଧା, ମିଳିଗଲେ ରାଧା, ପ୍ରିୟ ସହଚରୀ ସେ ସ୍ୱପନେ,
ସେ ମୋ କରଭୋରୁ, କହେ ରସେ କବିରବି ବାୟୁଗୁରୁ । ୫ ।

---

୧ । ଟୀକା— କନକକଳିତକେତକୀଦଳିତଗୌରାଙ୍ଗୀ — ଯାହାର ଦେହର ବର୍ଣ୍ଣ ସୁବର୍ଣ୍ଣ ଓ ପ୍ରସ୍ଫୁଟିତ କେତକୀ ଫୁଲର ବର୍ଣ୍ଣଠାରୁ ଅଧିକ ମନୋହର; କିରୀଟ—ମୁକୁଟ; କଳକଣ୍ଠ—କୋଇଲି; କେଳିତ—ରତ; କୁତୁକିନୀ—କୌତୁକପରିପୂର୍ଣ୍ଣା; ଅନୀକିନୀ—ସୈନ୍ୟଦଳ ପରି ସହାୟ; କଳାକର—ଚନ୍ଦ୍ର; କଞ୍ଜବନଭୃଙ୍ଗ—

( ୨ )

ରାଗ—ତୋଡ଼ିପରଜ

ଖେଳାଖଞ୍ଜରୀଟଦୃଶା, ମୋ ବନ୍ଧୁ, ଖଟାଅ ମୋତେ ତା ବେହରଣ-ଫୁଲ୍ ଖଟତଳେ ଦବାନିଶା । ପଦ ।

ଖିଲଇ ମାନକ ବିନ୍ଦୁମିତ ମଧୁ ବନ୍ଧୁକବନ୍ଧୁ ଅଧରୁ, ଖିଅଲରସପ୍ରସଙ୍ଗ ସଙ୍ଗିମାଙ୍କ ଗଣେ ମୋତେ ଜଣେ କରୁ । ୧ । ଖମଣିମଣ୍ଡଳ ଅସ୍ତ ହେବା କାଳ ଜଗି କୋକ ଜାଗରୁକ, ଖଞ୍ଜୁଥିବ ସୁନସଜଡ଼ା ମଣ୍ଡନ ମଣ୍ଡୁ ମୋ ଅଙ୍କପଲଙ୍କ । ୨ । ଖିଲ ଖିଲ କରି ଖୁଆଇବ ଶିରୀମୁଖେ କର୍ପୂର ବିଡ଼ିଆ, ଖଲ୍ ମୃଗମଦ ଘସିବ ପ୍ରମୋଦଭରେ ତରଜ ନଡ଼ିଆ । ୩ । ଖଣ୍ଡ ସହୋଦର ମଧୁର ତା ଗିର ବରତନ ବୋଲି ଭାବ, ଖୁଣ ନ ଥିବାର ଅଲକତସାର ଘସି ପଦେ ଲେଖୁଥିବ । ୪ । ଖଟା ଲେଶ ଚିତ୍ତେ ନ ରଖି ଲଳିତେ ଘେନାଅ ବାଳାପୁରତେ, ଖରାପ ନୁହେଁଟି ପରଜୁପକୃତ କବିରବି ବୋଲେ ଗୀତେ । ୫ ।

( ୩ )

ରାଗ—କେଦାର

ଗୁଣରତ୍ନାକର ହେ,

ଗଲାନି କି ସରି ସେ କଶୋରୀ କୁଳାଗ୍ରର ହେ । ପଦ ।

ଗୋପାଳଙ୍କ କୁଳଶୀଳ ଗଙ୍ଗାରୁ ଗଭୀର ହେ, ଗୋଷ୍ପଦରୁ ଊଣା ମଣିଲ କି ବଂଶୀଧର ହେ । ୧ । ଗଣ୍ଡିଧନୁ ଗୁପତ ମୋ ସଖୀର ଅବୁର ହେ,

---

ପଦ୍ମବନରେ ଭ୍ରମଣକାରୀ; ମିଳନ୍ଦ—ଭ୍ରମର; କାନ୍ତସିନ୍ଧୁ—ଶୋଭାସମୁଦ୍ର; କଳାସ୍ୱ—ଗୃହ; କାଳନ୍ଦୀ—ଯମୁନା; କରଭୋରୁ—ମଣିବନ୍ଧଠାରୁ କାଣୀ ଆଙ୍ଗୁଠି ପର୍ଯ୍ୟନ୍ତ ହାତର ବହିର୍ଭାଗକୁ କରଭ କହନ୍ତି, ଯାହାର ଊରୁ ( ଆଣ୍ଠୁ ଉପର ) ସେହିପରି ହୋଇଥାଏ ।

୨ । ଟୀକା—ଶ୍ରୀକୃଷ୍ଣ ଦୂତୀ ଲଳିତାଙ୍କୁ କହୁଅଛନ୍ତି:—ଖେଳାଖଞ୍ଜରୀଟଦୃଶା—କ୍ରୀଡ଼ାରତ କଜ୍ଜଳପାଖି ଚଢ଼େଇ ଆଖି ପରି ଯାହାର ଆଖି ଚଞ୍ଚଳ; ବେହରଣ—ବିହାର ମଣ୍ଡପ; ଖିଲଇ—ସସ୍ନେହରେ ଖୁଆଇ; ବିନ୍ଦୁମିତ—ଏକ ବିନ୍ଦୁପରିମାଣ ବିଶିଷ୍ଟ; ବନ୍ଧୁକ—ରକ୍ତବର୍ଣ୍ଣ ଫୁଲ ବିଶେଷ; ( ବନ୍ଧୁ ଅଧରର ଉପମାନ ) ଖମଣି—ସୂର୍ଯ୍ୟ; କୋକ—ଚକ୍ରବାକ; ଏହି ପକ୍ଷୀର ରାତରେ ବିଚ୍ଛେଦ ହୁଏ; ଜାଗରୂପ—ସତର୍କ, ସୁନ—ଫୁଲ, ବିଡ଼ିଆ—ପାନ, ମୃଗମଦ—କସ୍ତୁରୀ, ଖଣ୍ଡସହୋଦର—ଖଣ୍ଡନାମକମିଷ୍ଟାନ୍ନ ତୁଲ୍ୟ, ବରତନ—ବେତନ, ଅଲକତ—ଅଳତା, ଖଟା ଲେଶ—ଟିକିଏ ମାତ୍ର ମନୋଦୁଃଖ, ଉପକୃତ—ଉପକାର ।

ଗହନ କୁସୁମ ପର ହେବ କି ଏଥର ହେ ।୨। ଗୋପନୃପବଳରୁ ନ ଥିଲେ ହେଲେ ଡର ହେ, ଗଡ଼କୁ ନିକଟ ପରାଏ ତୁମ୍ଭ ନଗର ହେ । ୩ । ଗରିଷ୍ଠ ପ୍ରତାପୀ କଂସ ଶୁଣିଲେ ଖବର ହେ, ଗୋବର୍ଦ୍ଧନଗିରିଗୁହାପୃଷ୍ଠ ଯିବ ଜୂର ହେ । ୪ । ଗଲେ ମୁଁ ଚିତ୍ତକୁ ସବୁ ହୋଇବ ଗୋଚର ହେ, ଗୀତେ ବୋଲେ କବିବର ସର୍ବଂସହାସୁର ହେ । ୫ ।

( ୪ )

ରାଗ—ରେଗୁପ୍ତ

ଘନକେଶୀ ରେ, ଘେନ ଏତେ ଗିର ମୋର ସୁସାରେ । ପଦ ।

ଘସ୍ରନାଥକନ୍ୟାକୂଳବସା ରେ, ଘୋଣାଗ୍ରେ କିଶୋର ଶ୍ୱାସ ପ୍ରସାରେ । ୧ ।

ଘୋରତର କାମକାଡଭୂଷାରେ, ଘାଣ୍ଟି ହେଉଅଛୁ ଦବାନିଶାରେ । ୨ ।

ଘଟସ୍ତନୀ ତୁ ଏ କଷ୍ଟଦଶାରେ, ଘନାଶ୍ଲେଷେ ରଖ ଯଶ ସଂସାରେ । ୩ ।

ଘାରି ହେଉଅଛୁ ଏ ଦୁର୍ଦ୍ଦଶାରେ, ଘୋରି ହୋଇ ଯାଉଛୁ ସେ ରସାରେ ।୪।

ଘୋଟି କାମତମ ପ୍ରତିଦଶାରେ, ଘୁମାଉଅଛୁଟି ରସାଳସାରେ । ୫ ।

ଘଡ଼ିଏ ଶ୍ରୀଯୁଗଳ ପ୍ରଶଂସାରେ, ଘଟାଇଲେ କବିବର ଭାଷାରେ । ୬ ।

( ୫ )

ରାଗ—କାମୋଦୀ

ନିଦ ନାହିଁଟି ନଟବରକୁ ଗୋ, ନେଇ ନିରତେ ମୁଞ୍ଚେ ନୀରକୁ ଗୋ, ନ ଲଭିବାରୁ ନବନୀତାଙ୍ଗି ତୋ ପଲ୍ଲବଅଧରମଧୁରନିର୍ଝରକୁ ଗୋ । ପଦ ।

ନୂଆ ନାଗରୀ କେତେ, ନାହାନ୍ତି ଏ ଜଗତେ ନରୁଚଇ ନୟନାନ୍ତେ ସ୍ମରକୁ ଗୋ, ନିର୍ମଳ କେଡ଼େ ତୋର, ପୂର୍ବପୁଣ୍ୟ ନାଗର, ନ ଚିନ୍ତେ

---

୩ । ଟୀକା ଲଳିତା ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି:— ଆତୁର—ମହାତ୍ମା, ଗହନକୁସୁମ—ବଣଫୁଲ ପର ନଷ୍ଟପ୍ରୟୋଜନ, ଗୋପନୃପ—ନନ୍ଦ, ଗଡ଼କୁ—କଂସ ରାଜଧାନୀକୁ, ଜୂର—ନଷ୍ଟ, ସର୍ବଂସହାସୁର—ଭୂସୁର ଅର୍ଥାତ୍ ବ୍ରାହ୍ମଣ ।

୪ । ଟୀକା—ଲଳିତା ରାଧାଙ୍କ ନିକଟରେ ଶ୍ରୀକୃଷ୍ଣପ୍ରସଙ୍ଗ ବର୍ଣ୍ଣନ କରୁଅଛନ୍ତି:— ସୁସାରେ—ସ୍ଥିର ଚିତ୍ତରେ; ଘସ୍ରନାଥ କନ୍ୟା—ଯମୁନା, ଘୋଣାଗ୍ରେ—ନାକ ଅଗରେ, ଘୋରତରକାମକାଡଭୂଷାରେ—କନ୍ଦର୍ପର ଭୟଙ୍କର ଅସ୍ତ୍ର ଆଘାତରେ, ଘନାଶ୍ଲେଷ—ଗାଢ଼ାଲିଙ୍ଗନ, ରସାରେ—ପୃଥିବୀରେ, ରସାଳସା—ହେ ରସିକେ ।

ତୋ ବିନା ଇତରକୁ ଗୋ । ୧ । ନିପଟ ତୁ କପଟୀ, ନୋହୁ ତୁ ଅମ୍ଭେ ହଟି, ହଟି ସିନା ତୋ ବିଦ୍ୟା ତରକୁ ଗୋ, ନଜକରିକ ବାଇ ହେବାଯାଏ ଲଗାଇ ଜାଣୁ ତ ମୋହନ ମନ୍ତ୍ରକୁ ଗୋ । ୨ । ନିସୃମ କରୁ ପରି, ନାହିଁ ଶିଖଣ୍ଡଧରି, ଗୁହିଁ ମୁଁ ବୋଲ ଥର ଥରକୁ ଗୋ, ନୟନବାଣ ଚୋଟ, ନ ବାଜ ନିକ ସ୍ମର, ନୀଳଦେହରେ ଦେଲ ଜ୍ୱରକୁ ଗୋ । ୩ । ନ ଜାଣି ଅବା ଜାଣି, ବଢ଼ାଇ ଦେଲୁ ପାଣି ବ୍ୟୋମସଞ୍ଚାରି କଳାକରକୁ ଗୋ, ନ ହସୁ ଜନ ଯେବେ, ଉପାୟବଳେ ଏବେ ଅଣାଅ ତାକୁ ନିଜ କରକୁ ଗୋ । ୪ । ନଳିନୀଦଳ ଶେଯ, ନେବେ ଦେଖିଲ ଅଜ, ନୀରଦନିଭ କଳେବରକୁ ଗୋ, ନାସାଗ୍ରେ ଶ୍ୱାସ ବହେ, କବିମିହିର କହେ ସମ୍ଭାଳିବ ଇତ୍ଥଗ ଜନକୁ ଗୋ । ୫ ।

( ୬ )

ରାଗ—ସାବେରି

ଚନ୍ଦ୍ରମୁଖି ରେ, ଚଞ୍ଚଳ ଗୁରୁଚନ୍ଦ୍ରକଚୂଳ ଚାହିଁ । ପଦ ।

ଚାପ ଚାରୁ ଚିଲ୍ଲୀ ବଲ୍ଲୀ ଚଳେ, ଚୂକଶିକଣିଗଣ୍ଡଯୁଗଳେ, ଚଳରତନ କୁଣ୍ଡଳ ଲୋଳେ ଚାହିଁ ଚକ୍ଷୁ ଲୋଭୀ ହୁଏ ପରମସୁଖୀ ରେ । ୧ । ଚୁମ୍ବିଅଛି ଭାଲପଟ ରେଖ, ଚୂର୍ଣ୍ଣକେଶ କି ସୁନ୍ଦର ଦେଖ, ଚନ୍ଦ୍ରଚୟକୁ ଜିଣିଛି ମୁଖ, ଚଞ୍ଚରୀକଚ୍ଛାୟା ତାରତରଳ ଅଖି ରେ । ୨ । ଚମତ୍କାର ଦନ୍ତବାସ ସୀମା, ଚୋରାଇଛି କି ବିମ୍ବସୁଷମା, ଚିତ୍ତ କି ଲଗୁଛି ଏ କିସ ମା, ଚନ୍ଦ୍ରିକା ପଡ଼ିଯିବା କି ଚୂତୁରି ଉପେକ୍ଷି ରେ । ୩ । ଚତୁର୍ଦ୍ଦଶଲୋକ ରମଣୀୟ, ଚାମୀକର କାନ୍ତି ଚୟମୟ, ଚେଳ ମଧ୍ୟରେ କି କମନୀୟ, ଚେତା ଚମକାଇ ଦେଉଅଛି ନ ରଖି ରେ । ୪ । ଚରଣରେ କବିରବି ଭାଷେ, ଚତୁର୍ମୁଖଦେବ ପରିତୋଷେ, ଚେଷ୍ଟା ହେଲେ ହେଲେ ଏ ପୁରୁଷେ, ଚିରନ୍ତନ ଜନ୍ମ ପୁଣ୍ୟ ପୁଣ୍ୟରେ ଲେଖି ରେ । ୫ ।

---

ଟୀକା—ଲଳିତା ରାଧାଙ୍କ ନିକଟରେ ଶ୍ରୀକୃଷ୍ଣଙ୍କ ଦଶା ବର୍ଣ୍ଣନା କରୁଅଛନ୍ତି :— ନବନୀତାଙ୍ଗୀ—ଲହୁଣୀପରି ଯାହାର ଅଙ୍ଗ କୋମଳ ( ସମ୍ବୋଧନ ), ନିପଟ—ନିଶ୍ଚୟ, ଶିଖଣ୍ଡଧରି—ମୟୂରପୁଚ୍ଛ ମୁକୁଟକୁ, ନିକ—କମ୍ପା, କଳାକର—ଚନ୍ଦ୍ରମା, ନଳିନୀଦଳ ଶେଯ — ପଦ୍ମପତ୍ରଶଯ୍ୟାଗତ, ନୀରଦନିଭକଳେବର—ମେଘସଦୃଶ ଶରୀର (ଶ୍ରୀକୃଷ୍ଣ) । କବିମିହିର—କବିସୂର୍ଯ୍ୟ ।

୬ । ଟୀକା—ଲଳିତା ଦୂରରୁ ରାଧାଙ୍କୁ ଶ୍ରୀକୃଷ୍ଣଙ୍କ ଶୋଭା ଦେଖାଇ ଦେଉଅଛନ୍ତି :—ଚନ୍ଦ୍ରକଚୂଳ—ମୟୂରପୁଚ୍ଛରେ ନିର୍ମିତ ହୋଇଥିବା ମୁକୁଟ, ଚାପଚାରୁ—ଧନୁପରି ସୁନ୍ଦର, ଚିଲ୍ଲୀ—ଭ୍ରୂ , ବଲ୍ଲୀ—ଲତା, ଚୂକ—ଲାବଣ୍ୟ,

( ୭ )

ରାଗ—ମୁଖାରୀ

ଛଇଲା ମୋତେ ଛଉଲ ଛାଡ଼, ଛଦ୍ମନୀରେ ନିରନ୍ତର ନ ବୁଡ଼ । ପଦ ।
ଛାମୁରେ ଥିବା ସହଚରୀଗଣେ, ଛାଇ ରୂ ପରି ମୋ ଅନୁସରଣେ । ୧ ।
ଛଣା ପୀୟୂଷ ପରି କହ ଅଣି, ଛପାଇ ଦେଉଛୁ କାହିଁକି ପୁଣି । ୨ ।
ଛାପ ଦେଇ ଲଘୁ ନ କର ହେଲେ, ଛତ ଟେକାଇ ଦେ ତରୁଣୀକୁଳେ ।୩।
ଛିଦ୍ରଭେଦ ଦେଖିବାକୁ ମୋହର, ଛକେ ଛକେ ଜଗି ଅଛନ୍ତି ଚର । ୪ ।
ଛୁଇଁ ଦେଇ ନୀଳଛବି ବାସନା, ଛଟପଟ ହୋଇ ମରିବା ସିନା । ୫ ।
ଛାତି ଭିତରୁ ଧୃତି ଗଲା ସରି, ଛଳ ଛାଡ଼ି କୋଳ କଲେ କିଶୋରୀ । ୬।
ଛୁଟିଲା ଶଙ୍କା ସଖୀ ହୃଦୟରୁ, ଛ ଏକ ପଦେ କହେ ରାୟଗୁରୁ । ୭ ।

( ୮ )

ରାଗ—ତୋଡ଼ି

ଜଳଜନୟନା ଜାତ କେଉଁ କରକଶ ଗୋ,
ଜାଇ ଥାଇଁ ଯାହା ଜାଣି ପ୍ରିୟଜନକ୍ଲେଶ ଗୋ । ପଦ ।

ଜମ୍ବାରିତ ନୀଳଅଙ୍ଗ ଦୁଃଖଜଳେ ବୁଡ଼ି ଗୋ, ଜର୍ଜର ତମାଳଦଳ ପରି ଝଡ଼ି ପଡ଼ି ଗୋ, ଯାଉଛି ଜମି ଧରି ପରାଗରେ, ଯା ଜଗତ ତାହା ନ ଲଭିବାରେ, ଜାଣିଶୁଣି କର୍ଣ୍ଣେ ଲୋଚନେ ରୁହିଁ, ଜହର ଯାହା ଗିଳିଲାଇଁ ନାହିଁ । ୧ । ଜପିଲେ କୋଟିକଳପ ସୁରସର ତୀରେ ଗୋ, ଯା ଚରଣତଳେ ଚୁମ୍ବ ଦେବା ସୁରଭିରେ ଗୋ, ଜଗଦୀଶ କି ନ କରନ୍ତି ସତେ, ଜପିଲେ ହେଲେ ଅମ୍ଭଙ୍କୁ ନିରତେ, ଜଳିଲେ ଗୃହଟି ନ ବଗ୍ଭର ଉଣା, ଜନମୁ ନାହିଁ

---

**ଚଞ୍ଚରୀକ—ଭ୍ରମର; ତାରତରଳ ଆଖି—ଚକ୍ଷୁର ତାରଦ୍ୱାର ଛଳ ଛଳ ହେଉଥିବା** ଆଖି; ଦନ୍ତବାସ ସୀମା—ଅଧରର ପ୍ରାନ୍ତଭାଗ; ଏ କସ ମା—ଏ କ ବଚନ ( ଗଞ୍ଜାମ **ଅଞ୍ଚଳରେ ପ୍ରଯୁକ୍ତ** ) । ଗୃମୀକର—ସୁବର୍ଣ୍ଣ; ଚେଲ—ବସ୍ତ୍ର, ଗୃରମୁଖଦେବ—ବ୍ୟାଘାତ; ଚେଟୀ—ଦାସୀ ।

୭ । ଟୀକା—ରାଧା ଶ୍ରୀକୃଷ୍ଣଙ୍କ ଶୋଭା ସନ୍ଦର୍ଶନ ପରେ ଲଳିତାଙ୍କୁ କହୁ ଅଛନ୍ତି :— ଛଇଲା—ହେ ଚତୁର, ଛଉଲ—କପଟ ବ୍ୟବହାର; ଛଦ୍ମନୀରେ ନିରନ୍ତରେ ନ ବୁଡ଼—କପଟରୂପ ଜଳରେ ସର୍ବଦା ବୁଡ଼ ନାହିଁ ଅର୍ଥାତ୍ ମୋ ସଙ୍ଗେ କପଟ ବ୍ୟବହାର କର ନାହିଁ । ଛପାଇ ଦେଉଛୁ—ଲୁଚ୍ଚାଇ ଦେଉଛୁ, ଛାପ ଦେଇ—ଦାଗଦେଇ ବା ଦୋଷାରୋପ କରି; ଛିଦ୍ରଭେଦ ଦେଖିବାକୁ—ଦୋଷାରୋପ କରିବାକୁ ।

ମାନସେ କରୁଣା ।୨। ଜଗତ ଜୀବାତୁ ସେ ଜଙ୍ଗମନୀଳମଣି ଗୋ, ଜଟାଧରପରଙ୍କୁରେ କମ୍ପୁଛନ୍ତି ପୁଣି ଗୋ, ଯାଇ ଜାଙ୍କ ଧରିବା କ ଯତନେ, ଜାଗରୁକ ହୋଇ ଜମାଇ ସ୍ତନେ, ଜନେ ହସିଲେ ହସିବେ ଜଗତେ, ଜୀବନ କ ଦୁଃଖ ପାଇଲେ ସତେ ।୩। ଜନ୍ମାନ୍ତରମାନଙ୍କର ସୁକର୍ମ ବଳରେ ଗୋ, ଜନ୍ମ ସିନା ମାନ ନନ୍ଦସୁନ୍ଦରୀ କୋଳରେ ଗୋ, ଜୁରାଇ ଘର ଗୋରସ ସମସ୍ତ, ଜଞ୍ଜାଳିଲେ ଅମ୍ଭେ କର ସମ୍ମତ, ଜଳପିବାକୁ ଏବେ ନାହିଁ ବଳ, ଜଗି ପାରଲୁଁ ନାହିଁ ଏ କାଳ ।୪। ଜ୍ୟାଗୀର୍ବାଣ କବିରବି ରାୟଗୁରୁ ଭଣେ ଗୋ, * ଜାହା କଲେ ଗୋପକୁ ଦନୁଜ ଜନେ ଜନେ ଗୋ, ଜୀବନଜନେନ ଥିବାରୁ ସିନା, ଜଣା ନୋହିଲା ସେ ଭୟବାସନା, ଜଳିବାକୁ ହେଲେ ସେ ଉପକୃତୀ, * ଜାଇଁ ସୁଝିଲୁଁ ନାହିଁ ସଂପ୍ରତି ।୫।

( ୯ )

ରାଗ—ବଙ୍ଗଳାଶ୍ରୀ

ଝୁମୁଝୁମୁ ନାଦ ଲଳିତାଙ୍କ ପାଦମଞ୍ଜୀରର ଶୁଣି ତୋଷେ, ଝୁମିଝୁମି କାମ ଅମଳରେ ଶ୍ୟାମ ମିଳି କୁଞ୍ଜଦ୍ୱାରଦେଶେ ।୧। ଝାଉଁଳିଲା ନବ-ତମାଳ ପଲ୍ଲବ ଅବସ୍ଥା ଶ୍ରୀଅଙ୍ଗେ ରଖି, ଝରିବାର ବାରି ନୟନୁ ନିବାରି ଜଳପିଲେ ପ୍ରିୟସଖୀ ।୨। ଝିମିଟକ ଲଳିତ ଶତରୁ ଅନଳିତ ହୋଇଲାଣି ଝୁରି ଝୁରି, ଝଷଧ୍ୱଜ-ଧନଞ୍ଜୟ ଝାସଜ୍ଜାନଲତାକୁ ଦେଲାଣି ସାରି ।୩। ଝାଙ୍କିନେଇ ମନ ମଣିକି ଯା ସ୍ତନ ସଂପୁଟରେ ରଖାଇଲୁ, ଝଟତ ତା ରଦ-ବାସରୁ ସୁଅଦ ମଧୁ ତ ନ ଚଖାଇଲୁ ।୪। ଝାଳିଦେଲୁ ନାହିଁ ଝଳ ଚୂନ୍ଦମୁହିଁ ଗଣ୍ଡକୁ ମୋ ଗଣ୍ଡେ ଥରେ, ଝୁଲାଇ ନ ଦେଲି ରସକଳ୍ପବଲ୍ଲୀ ଊରୁମୂଳସ୍ଥଳ

---

୮। ଟୀକା—ଲଳିତା ରାଧାଙ୍କୁ କହୁଅଛନ୍ତି:—ଜଳଜନୟନାଜାତ—ପଦ୍ମନେତ୍ରୀ ସ୍ତ୍ରୀସମୂହ, ଜମ୍ବାରାତ ନୀଳଅଙ୍ଗ—ଇନ୍ଦ୍ରନୀଳମଣି ସଦୃଶ ଶ୍ରୀକୃଷ୍ଣଙ୍କ ଶରୀର, ଜର୍ଜରତମାଳଦଳ—ତମାଳଗଛର ପୁରୁଣା ପତ୍ର, ଧରାପରାଗ—ପୃଥିବୀଧୂଳି, ଜୀବାତୁ—ଜୀବନ, ଜଙ୍ଗମ—ଚଳନ୍ତା, ଜଟାଧରପର—ଶିବଶତ୍ରୁ, କାମ; ଜୁରାଇ—ଜର କରି ବା ନଷ୍ଟକରି, ଜଞ୍ଜାଳିଲେ—ଦେଖି ଅଳି ବା ଗୋଳମାଳ କଲେ, ଜଳିବାକୁ—ପ୍ରସ୍ତାବ କରିବାକୁ, ଜ୍ୟାଗୀର୍ବାଣ—ଭୂସୁର, ବ୍ରାହ୍ମଣ ।

---

* ଆଗେ ଏ ଦେଶର ପଣ୍ଡିତମାନେ 'ଯାହା', 'ଯାଇଁ' ପ୍ରଭୃତି ପଦର 'ଯ' ସ୍ଥାନରେ 'ଜ' ବ୍ୟବହାର କରୁଥିଲେ । ସୁପଣ୍ଡିତମାନଙ୍କଦ୍ୱାରା ଲିଖିତ ତାଳପତ୍ର ପୋଥିରେ ସର୍ବତ୍ର ଏହାର ପ୍ରମାଣ ମିଳେ ।

କରେ । ୫ । ଝୁମ୍ପା ଝାଲରିଆ ଅଳକ ତଳକଶୋଭିମାର .କେଶ ବେଶେ, ଝରା ଖଞ୍ଜି ଖମ୍ଭର୍ଡ଼ଷ୍ଟେ ଶତ ଚୁମ୍ବ ରଚିବ କେବେ ହରଷେ । ୬ । ଝୁଣ୍ଟିଆ ବିଜୟ ବାଦ୍ୟେ ହରିହୟପଦବିଭୂତି ନିରତେ, ଝୁଣ୍ଟି ଦେଇ ପିଇ କେବେ କବିରବି ରାୟଗୁରୁ ବୋଲେ ଗୀତେ । ୭ ।

( ୧୦ )

ରାଗ—ବରାଡ଼ି

ନୟନେ ନମିଷେ ନିଦ, ନ ରଖି ତ ମୁଁ ତୋ ପଦ, ମଞ୍ଜୀର-ଶିଞ୍ଜିତେ ଖଞ୍ଜି କାନ, ନିରେଖି ବସିଛୁ ପଥ, ନ ପୂରୁ ମୋ ମନୋରଥ, ହୋଇଲୁ ତ ଦୁଃଖର ନିଦାନ ରେ, ନତଦେହା, ନିର୍ଦ୍ଦୟତା ପ୍ରକଟ ହୋଇଲା, ନ କହିଲୁ ତ କନକ-ନିନ୍ଦା ନଉସନ୍ଧାଧିକ, ଗଉରାଙ୍ଗୀ ଶୁଣି କି ବୋଇଲା ରେ । ୧ । ନଉକରଗଣେ ଜଣେ, କରି ମୋତେ ଅନୁକ୍ଷଣେ, ରଖିବାକୁ କଲଟିକି ସହି, ନିରାଶ ଭାରତୀ ଅବା, କଲପିଲା ନବ-ଜବା, ଦଶନ-ବସନା ପ୍ରାଣସହି ରେ, ନତଦେହା, ନିଃସଂଶୟ କରି କହ କହ, ନ ରଖିବାକୁ ନାଙ୍କି, ପ୍ରାଣକୁ ମୁଁ ହେବି ସଜ, ଯେବେ, ନାହିଁ ବାଳା ଅନୁଗ୍ରହ ରେ । ୨ । ନୀପ ନିକୁଞ୍ଜ ନିକଟ, ନଟନ କେଳିଲମ୍ପଟ ହୋଇ ହରୁଥିଲି ସୁଖେ କାଳ, ନିର୍ଦ୍ଧୋଷରେ ବିଦ୍ଧ ନେତ୍ର, ଅନିମିଷ କଙ୍କପତ୍ର, ଟାଳିଲା ମୋ ଜ୍ଞାନଲତା ମୂଳ ରେ, ନତଦେହା, ନିର୍ଯାଣ ସମୟ ହେଲେ ଆସି, ନ ସନ୍ତୋଳି- ଅକାତର, ନେଲା ତ ରତିମୂରତି ନିଶାକରକର-ଦାଚହାସି ରେ । ୩ ।

---

୯ । ଟୀକା—ଲଳିତା କୁଞ୍ଜ ନିକଟରେ ଉପସ୍ଥିତ ହୁଅନ୍ତେ ଶ୍ରୀକୃଷ୍ଣ ତାଙ୍କୁ କହୁଅଛନ୍ତି :— ପାଦମଣ୍ଡନ—ପାଦର ଅଳଙ୍କାର, ଝୁମିଝୁମି—ଘୁମାଇ ଘୁମାଇ, ଝିମିଟକ—ମୁହୂର୍ତ୍ତିକ, କଳ୍ପଶତ—ଶତଯୁଗ, ଅନଳ୍ପ—ଅଧିକ, ଝଷଧ୍ୱଜଧନଞ୍ଜୟ ଝାସ—କନ୍ଦର୍ପରୂପ ଅଗ୍ନିର ଦାହ, ସମ୍ପୁଟ—ଫରୁଆ, ଝଟତ—ଚଞ୍ଚଳ, ରଦବାସ— ଅଧର, ଝଳ—( ବିଶେଷଣ ) କାନ୍ତିମତୀ, ଝୁଲଇବା—ହଲଇବା, ଫଗୁଳିତ କରିଦେବା; ରସକଳ୍ପବଲ୍ଲୀ—ରସକଳ୍ପଲତାରୂପିଣୀ, ଝୁମ୍ପାଝାଲରିଆ—କେଶର ଅଳଙ୍କାର, ଝରା—ଫୁଲପେଣ୍ଡା, ହରିହୟପଦବିଭୂତି—ଇନ୍ଦ୍ରତ୍ୱର ସମ୍ପତ୍ତି ।

୧୦ । ଟୀକା—ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି :—ମଞ୍ଜୀର—ନୂପୁର, ଶିଞ୍ଜିତ—ଅଳଙ୍କାରଧ୍ୱନି, କନକନିନ୍ଦାନଉସନ୍ଧାଧିକ—ସୁବର୍ଣ୍ଣକୁ ନିନ୍ଦା କରିବାରେ ଅଧିକ ନିପୁଣ ( ନଉସନ୍ଧା—ନିପୁଣ ), ନଉକର—କିଙ୍କର, ସହି—ସ୍ୱୀକାର, ନିରାଶଭାରତୀ—ନୈରାଶ୍ୟପୂର୍ଣ୍ଣ କଥା, ନବ-ଜବା ଦଶନବସନା—ନୂତନମନ୍ଦାର ଫୁଲ ପରି ଅଧର ଯାହାର, ନୀପ—କଦମ୍ବ, ନେତ୍ରଅନିମିଷକଙ୍କପତ୍ର—ନିମିଷଶୂନ୍ୟ ଚକ୍ଷୁରୂପ ଶର, ନିର୍ଯାଣ—ପ୍ରାଣବାୟୁର ଦେହତ୍ୟାଗ, ନିର୍କରନଗରୀ—ଅମରାବତୀ,

ନବୀନ ନାଗରୀ ନନ୍ଦ-ନନ୍ଦନ ମନ ଆନନ୍ଦ, -ନନ୍ଦୀ ବନେ ମଜ୍ଜାଇଲା ବୋଲି, ନିଖିଳ ଲୋକେ ଏ ଗିର, ନଝିକ ନାଗରୀ ଇବାର, ଯଶ ନ ଚ୍ଛୁଟିଲା ଦେଲି ପେଲି ରେ, ନତଦେହା, ନିନ୍ଦା ଅରବିନ୍ଦାକ୍ଷୀ ପାଇଲା, ନିର୍ଜରନଗରୀମଣି-କୁଟ୍ଟିମେ ଚଢ଼ାଇ ପୁଣି ନିଃଶ୍ରେଣୀଟି କାଟି ପକାଇଲା । ୪ । ନବନୀରୁଁ ସୁକୁମାର, ଦିଶେ ଦେହଟି ଗମାର, ନିରପରାଧ ନିଷ୍ଠୁର ମନ, ନାରିକେଳ ଫଳଲୀଳା ଉଦିଗେ ରହିଛୁ ବାଳା, ସେପରି ନୁହଇ ଅପଘନ ରେ, ନତଦେହା, ନ ଢେଙ୍କାଲା ଦୁଃଖ ଲଭେ ହେଲେ, ନ ଢେଙ୍କୁ ଢେଙ୍କୁ ଶରଣ ତାହାର ଗୁରୁଚରଣ କବିରବି ବିସୁଗୁରୁ ବୋଲେ ରେ । ୫ ।

( ୧୧ )

ରାଗ—ଦେଶାକ୍ଷ

ଟିକାକ ଦୋଷକୁ ରାମା କେଡ଼େ ରୁଷା ରୁଷିଲା ରେ । ପଦ ।

ଖୋପରେ ପକାଇ ରୋଷେ, ନିଗ୍ରହ ଶଙ୍ଖ ବିଶେଷେ, ମୋ ସୁଗମ୍ଭଗକୁ ତ ସେ ଧରାଭୂଷା ଭୂଷିଲା ରେ ।୧। ଝାକର ମାର ମୋ ଆଶା, ମୁନ୍ତେ ଖଞ୍ଜରୀଟ ଦୃଶା, ପରପନ୍ଥୀ ଲୋକହସା, କରିବାକୁ ବସିଲା ରେ । ୨ । ଟିକିଏ ହେଲେ ବିବେକ, ନ କର ସେବକ ବେକ, କରତ ବୋଲି ଦର୍ପକ, ଦାରୁଣକୁ ପେଷିଲା ରେ । ୩ । ଝମକ ଯେ ବାଜେ ବ୍ରଜ, ବଜାରେ ଦୟାଳୁରାଜ, ବୋଲି ମୋ ଦଣ୍ଡରୁ ଆଜ, ଦାଣ୍ଡକୁ କି ଦଶିଲା ରେ ।୪। ଝୋଙ୍କାଏ ଥିଲେ ଗହଣେ, ଝାଙ୍କ ଉଦରେ ଗହଣେ, ଚିପି ଦେଲି ନଖ ସେହି କଥାକୁ କି ଘୋଷିଲାରେ ॥ ଝେଙ୍କାନ୍ତା ବିବେକବତୀ, ମନ୍ତ୍ରିଲେ ବଳକ୍ଷଛବି, ବୋଲେ କବିରବି ସବୁ କ୍ରୋଧନଦେ ଭାସିଲା ରେ । ୬ ।

( ୧୨ )

ରାଗ—ମୁଖାରୀ

ଠଣ ଚନ୍ଦ୍ରମୁହିଁ ରେ, ଠଉରିବ କେହି ରେ । ପଦ ।

ଠକ ମୁଁ ବୋଲେ ମାନସେ, ଠୁଲ କଲେ ଶଙ୍କା ଲେଶେ । ୧ । ଠ ବର୍ତ୍ତୁଳ ସ୍ତନେ ନଖ, ଠୁଙ୍କିଲେ ହେଲେ ବିମୁଖ ।୨। ଠାର ନାହିଁ ନୟନାନେ

---

ମଣିକୁଟ୍ଟିମ—ରତ୍ନନିର୍ମିତ ପ୍ରାସାଦ, ନିଃଶ୍ରେଣୀ—ନିଶୁଣୀ ବା ସିଡ଼ି, ଅପଘନ —ଦେହ, ନବନୀରୁଁ—ଲହୁଣିଠୁଁ ।

୧୧ । ଟୀକା—ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି :— ଖୋପରେ—ଖାଲରେ, ନିଗ୍ରହ—ତାଡ଼ନା ( ଅନୁଗ୍ରହର ବିପରୀତ ), ସେ ଧରାଭୂଷା—ସେହି ପୃଥିବୀର ଅଳଙ୍କାରରୂପିଣୀ, ଭୂଷିଲା—ଆଘାତ କଲା, ଝାକରମାର—ଆଘାତ କର, ପରପନ୍ଥୀ —ଶତ୍ରୁ , ଦର୍ପକ—କନ୍ଦର୍ପ, ଝମକ—ଧେଣ୍ଡୁରା, ବଳକ୍ଷଛବି—ଧଳା ଛବି ।

ଠାକୁରଙ୍କ ରାଣୀ ମୋତେ ।୩। ଠାଣେଦାର ରଣରଣ, ଠେ। କାହିଁ ନେବ ମୋ ପ୍ରାଣ । ୪ । ଠ ପର ଜଗତ ଦିଶେ, ଟିକେ କବାଟର ଭିତେ । ୫ ।

( ୧୩ )

ରାଗ—କାନନଗୌଡ଼ା

ଡାକିଲା କୋକିଳା ଲୀଳା-ସୂନ-ଉପବନରେ,

ଡମରୁଚୁଚିରମଧ୍ୟା ଖେଳିଲା ମୋ ମନରେ । ପଦ ।

ଡାଳଙ୍ଗୋଳ କିଶଳୟ, କରେ କର ଅଭିନୟ, ନାଚିଲା ବଲ୍ଲୀନିଚୟ ଚନ୍ଦନ ପବନରେ । ୧ । ଡଗର ବୁଲୁଛି ସ୍ମର, ବିଷାଇ ବିଷମ ଶର, ଧରିଛି ପରାଗ-ଗର ଢୁଁ ବାକ୍ ଜୀବନରେ ।୨। ଡାଳିମ୍ବବୀଜରଦନା, ଏ ଦିନେ ହୋଇ ବିମନା, କଲା ତ ଉଦ୍ଭବ ମନା ଲତିକା ଭବନରେ ।୩। ଡିମ୍ଭଚକିତ କୁରଙ୍ଗ ନୟନାର ନାକ ଭୃଙ୍ଗ—ଉନ୍ମାଦ-ଚର ତରଙ୍ଗ ପଡ଼ୁ ନାହିଁ କାନରେ । ୪ । ଡରୁ ନାହିଁ କି ସେ ଭୀରୁ, ସ୍ମରକର-କରତରୁ କବରବ ବାୟୁଗୁରୁ ରଚିଲେ କଦନରେ । ୫ ।

( ୧୪ )

ରାଗ—ଶଙ୍କରାଭରଣ

ଢାଳି ଗୃହିଁଲା ରେ, ଢାଙ୍କି ପକ୍ଷ୍ମ କି ଭଙ୍ଗୀରେ ଚହିଁଲା ରେ । ପଦ ।

ଢବାଢନାବୀଦେହଲୀ ସମୀପରେ ପ୍ରିୟଆଳୀ, ସମାଳେ ବିରାଜି ବର ମହିଲା ରେ ।୧। ଢୁଳାଇଲା ପରି କାମ-ଅମଳଲଗିରୁ ଶ୍ୟାମ ଜଳଜନୟନେ

---

୧୨ । ଟୀକା—ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି:— ଠଣ—ଶୋଭା, ଠଣଚନ୍ଦ୍ରମୁହିଁ—ହେ ଶୋଭାପୂର୍ଣ୍ଣ ଚନ୍ଦ୍ରମୁଖି ! ଠଉଶବ —ସ୍ଥିର ହୋଇ ରହିବ, ଠୁଳ କଲେ—ଏକାଠି କଲେ, ଠାଣେଦାର—ଜମାଦାର, ଯେ ଜୋର ପ୍ରକାଶ କରେ; ରଣରଣ—କନ୍ଦର୍ପ, ଠ ପର—ଶୂନ୍ୟ ।

୧୩ । ଟୀକା—ଶ୍ରୀକୃଷ୍ଣଙ୍କର ରାଧାଗତ ଅନୁଭୂତି:—ଲୀଳାସୂନ-ଉପବନରେ—କ୍ରୀଡ଼ାପୁଷ୍ପ ଉଦ୍ୟାନରେ, ଡମରୁଚୁଚିରମଧ୍ୟା—ଡମରୁପରି ଯାହାର କଟି କ୍ଷୀଣ, କିଶଳୟ—ନୂଆପତ୍ର, ବଲ୍ଲୀନିଚୟ—ଲତାସମୂହ, ଡଗର—ଘୋଷଣା-ପ୍ରଚାରକ, ବିଷାଇ—ବିଷଯୁକ୍ତ କରି, ବିଷମଶର—ପଞ୍ଚବାଣ, ପରାଗଗର—ପୁଷ୍ପ-ରେଣୁରୂପ ବିଷ, ଢୁଁ ବାକ୍—ଯେ ଢୁଁ ଢୁଁ ଶବ୍ଦ କରେ ଅର୍ଥାତ୍ ଭ୍ରମର, ଡିମ୍ଭ—ଶିଶୁ, କଦନ—କଦର୍ଥନା ।

୧୪ । ଟୀକା — ପକ୍ଷ୍ମ — ଆଖିପତାବାଳ, ଢବାଢନାବୀ—କୋଠାଘର ଝରକା, ଦେହଲୀ—ଚୌକାଠର ତଳଭାଗ, ଢୁଳାଇଲା ପରି—ଘୁମାଇଲା ପରି,

ଲୀଳା ବହିଲା ରେ । ୨ । ଚୁଳାଇ ମୋ ଅପଘନ, ଶ୍ରୀଅଙ୍ଗରେ ତା ଅଧୀନ, ହୋଇବାକୁ ସମସ୍ତ ନ ସହିଲା ରେ । ୩ । ଟୋକୁଟିଏ ତା ପଲ୍ଲବ, ଅଧରରୁ ମଧୁ ଦ୍ରବ, ଚୋକିବା ବିବେକ ଲବ ନୋହିଲା ରେ । ୪ । ଚକା ପ୍ରକାଶନ୍ତା ମତେ, ଧନ୍ୟ ବୋଲି ଏ ଜଗତେ, କବି-ଚନ୍ଦ୍ରଭାନୁ ଗୀତେ କହିଲା ରେ ।୫।

( ୧୫ )

ରାଗ—ପୂରବୀ

ଅନାଇ ନାହିଁ ନାଗରମଣିଙ୍କ ମୁଁ ତାଳେ । ପଦ ।

ଅନେକ ପ୍ରକାରେ ପ୍ରେମ, ଆଚରେ ଅତସୀଶ୍ୟାମ, ଅଙ୍ଗୀକାର କରି ନାହିଁ କାଳେ । ୧ । ଅହିତ ଜନ ନ ସହେ, ଅପବାଦ କଥା କହେ, ଅଛୁ ଏହା ଲେଖା ମୋ କପାଳେ ।୨। ଅମୃତ ବାଣୀ ବିଳାସେ, ଅନଙ୍ଗ ମୋହନ ବେଶେ, ଉପବନ ଅସ୍ତ୍ରନ ଓଗାଳେ । ୩ । ଅଳି କେତେ କେତେବେଳେ, ଅମ୍ଳାନ କେତକୀଦଳେ, ଅରଜି ବନାଇ ବନ୍ଧୁ ଗୃହେ । ୪ । ଅତର୍କିତ ଜାଣି କାଳ, ଅଙ୍କିତ କରେ ମୋ ଗଳ, ଆପଣେ ଗୁନ୍ଥିବା ଫୁଲମାଳେ ।୫। ଅଙ୍ଘ୍ରି କି ମୋ କବିଭାନୁ, ଅଟକି ଭଜିବା ଦନୁ, ଅଲଙ୍ଘ୍ୟ କରି ମୁଁ ପରପାଳେ । ୬ ।

( ୧୬ )

ରାଗ—କଳହଂସକେଦାର

ତମାଲତଳେ ନ ଗୃଲେ ରେ ମୋ ଅଭିନ୍ନା, ଡେତେ ଦୂର ଯାଏ କାହିଁ ।
ତଳକୁ ତାଳକ ତୁଳି କଲେ ଲୋକ ତଥ୍ୟ ମଣୁଥାଇ ତାହିଁ । ୧ ।
ତରକିବା କଥା ନିକାଳେ ସର୍ବଥା ତତ୍ତ୍ୱ ତୁ ଘେନିବୁ ନାହିଁ । ୨ ।
ତୁ ତ ସୁବିବେକୀ, ତୁଳ ମୁଁ କେବେ କି, ତହିଁ ଥିବା ଅବଗାହି । ୩ ।

---

କାମଅମଲଲଗିରୁ—କନ୍ଦର୍ପରୂପ ମାଦକଦ୍ରବ୍ୟର ନିଶାରୁ, ଶ୍ୟାମଜଳଜନସ୍ଥେନେ—ନୀଲଇନ୍ଦୀବର ନେତ୍ରରେ, ଚୂଳାଇ—ସଂଯୋଜିତ କରି ବା ପ୍ରବେଶ କରାଇ, ଅପଘନ—ଦେହ, ଚନ୍ଦ୍ରଭାନୁ—ସୂର୍ଯ୍ୟ ।

୧୫ । ଟୀକା—ରାଧା ଲଳିତାଙ୍କୁ କହୁଅଛନ୍ତି:—ତାଳେ—ଥରେ, ଅତସୀଶ୍ୟାମ—ଅତସୀ [ ଫେସି ] ଫୁଲପରି ଶ୍ୟାମଳବର୍ଣ୍ଣ, ଅହିତଜନ—ଭଗାରି-ମାନେ, ଉପବନ ଅସ୍ତ୍ରନ ଓଗାଳେ—କୁଞ୍ଜବନକୁ ଯିବା ବାଟର ଆଡ଼ୁଆଳରେ, ଅରଜି—ପ୍ରେମପୂର୍ଣ୍ଣ ନିବେଦନପତ୍ର, ଅଙ୍ଘ୍ରି—ପାଦ, କବିଭାନୁ—କବିସୂର୍ଯ୍ୟ ।

୧୬ । ଟୀକା—ରାଧା ଲଳିତାଙ୍କୁ କହୁଅଛନ୍ତି :— ତମାଲତଳେ ନ ଗୃଲେଁ ରେ ଅଭିନ୍ନା—ହେ ଅଭିନ୍ନହୃଦୟା, କୃଷ୍ଣଙ୍କ ରୂପ ସଙ୍ଗେ ସାମ୍ୟ ଥିବାରୁ ମୁଁ ତମାଲଗଛ ତଳରେ ମଧ୍ୟ ଗୃଲେ ନାହିଁ, ତୁଳ—ତୁଳନା କରି, ତପନେ

ତପନେ ଶୀତମାଅଙ୍କ ଦଅନ୍ତି ମା ତୁଚ୍ଛା ଲୋକନାମେ ବାହି । ୪ ।
ତୁଟାଏ କି ଜାତ ତୁଣ୍ଡରେ ପୀରତ ତାମସା ଟାପର ଟାହି । ୫ ।
ତତ୍ତ୍ୱ ଜାଣେ କବିତରଣି ତା ଭାବ ତଲସ ଯେ ଯାକୁ ନାହିଁ । ୬ ।

( ୧୭ )

ରାଗ—ଧନାଶ୍ରୀ

ଥରେ ଏକାନ୍ତରେ ସିନା କହିଥିଲି ସହୀକି,
ସ୍ଥାପିତ ନ କର ଦୁର୍ଜନଙ୍କ ଆଗେ କହି କି । ପଦ ।

ଥିଲିଠାରେ ବିଶ୍ୱାସ କପଟ ପାରେ ରହିକି, ଯୋଇବା ହୃଦୟେ ଖ୍ୟାତ ପୂର୍ତ୍ତି କରେ ମହୀ କି । ୧ । ସ୍ଥାବର ଜଙ୍ଗମେ ଶ୍ୟାମ କାହା ହୃଦେ ନାହିଁ କି, ଥିଲି ମୋ ଲଲିଟପଟେ ଏ ଅଯଶ କାହିଁକି ।୨। ଆପିପଣ ଥିବାର ସଜ୍ଜନଗୁଣ ଏହିକି, ସ୍ଥାପୀ କଲି ବିଷାର୍ଜନ କ୍ଷୀର ଦେଇ ଅହିକ ।୩। ସ୍ଥିର ପୀରତିବଲ୍ଲୀକି ଦମ୍ଭାନଳେ ଦହିକ, ସ୍ଥଳଅଳୀମାନଙ୍କର ଏ ଦ୍ୱେଷକୁ ମୁହିଁ କି ।୪। ସ୍ମିରଚନ୍ଦ୍ରେ ଜଣେ ବୋଲି ଜାଣଇ ସୁମୁହୀଁ କି, ଥରୁଥା ଏଁଟି ମୁଁ କବିରବି ସାକ୍ଷୀ ତହିଁକି ।

( ୧୮ )

ରାଗ—ହସନ୍

ଦରହାସି, ଦମ୍ଭତୋୟମୟ ଜଳରାଶି ରେ । ପଦ ।

ଦୂରୁ ହେଲେ ନଟବର, ଦେଖା କେବେ ନାହିଁ ତୋର, ଦଶନବ୍ରଣ ଅଧର;-ଦଳେ ବଳସେ କାହାର, ଦୟାବତ, ତୁ କେଡ଼େ ସାହସୀ ରେ ।୧। ଦର୍ପକଦର୍ପଦଳନ, ଦବ୍ୟ ପରିମଳ ଧନ, ଦେହରେ ଦୋର୍ମୂଳେ ସ୍ତନ-ଦ୍ୱୟରେ ନଖଲାଞ୍ଛନ, ଦାଇବ କି, ଦେଇଗଲା ଅସି ରେ ।୨। ଦବାନଳି ତ ମୁଁ ତୋର, ଦେହ ବାହାଲୁ ଯେ ପର, ଦନେଶତନୟା ତୀର, ଦ୍ରୁମଦୋହଦ

ଶୀତମାଅଙ୍କ—ଏ ସଂସାରରେ ଏପରି ଲୋକ ଅଛନ୍ତି, ଯେଉଁମାନେ ସୂର୍ଯ୍ୟତେଜରେ ମଧ୍ୟ ଶୀତଳତା ଦୋଷ ଆରୋପ କରିପାରନ୍ତି । ଟାହି—ଥଟା, କବିତରଣି—କବିସୂର୍ଯ୍ୟ ।

୧୭ । ଟୀକା—ରାଧା ଲଳିତାଙ୍କୁ କହୁଅଛନ୍ତି—ସ୍ଥାପିତ ନ କର—ହୃଦୟରେ ଲୁଚାଇ ନ ରଖି ( ଗ୍ରାମ୍ୟ ପ୍ରୟୋଗ ) । ଯୋଇବାହୃଦୟରେ—ଯେ ନିଜ ହୃଦୟରେ ବିଶ୍ୱାସକୁ ସ୍ଥିର କରି ରଖେ, ଅହିକ—ସର୍ପକୁ, ପ୍ରୀତିବଲ୍ଲୀ—ପ୍ରୀତିରୂପା ଲତା, ଦମ୍ଭାନଳ—ଛଳନାରୂପ ଅଗ୍ନି, ସ୍ମିରଚନ୍ଦ୍ର—ପଣ୍ଡିତାସମୂହ ।

୧୮ । ଟୀକା—ସଖୀ ରାଧାଙ୍କୁ କହୁଅଛନ୍ତି:—ଦମ୍ଭତୋୟମୟ ଜଳରାଶି—ଛଳନାରୂପକ ଜଳପୂର୍ଣ୍ଣ ସମୁଦ୍ର ଅର୍ଥାତ୍ ତୁ ବଡ଼ କପଟାଚାରିଣୀ । ଦର୍ପକଦର୍ପଦଳନ—କନ୍ଦର୍ପଗର୍ବଖର୍ବକାରୀ, ପରିମଳ—ସୁବାସ, ଦୋର୍ମୂଳ—ବାହୁମୂଳ;

ନାକର, ଧାରବାକର, ହେଲୁଣି ଦୋଭାଷୀ ରେ । ୩ । ଦୁଇ ଚରଣ ସାରସେ ଦେବାର ଶିଖଣ୍ଡ ଶେଷେ, ଦେଖିଲି ଯାବକ ରସେ, ଦୋଷ କି କିଶୋରର ସେ, ଦ୍ୱିଜ କବିରବି ଅଛୁ ଭାଷି ରେ । ୪ ।

( ୧୯ )

ରାଗ—କେଦାର

ଧିକ ଧିକ ମନ୍ଦବୁଦ୍ଧି ଅପସନ୍ଦ ନାରୀଜନ୍ମ ନ ନିବାରିବାର,
ଧିକ ଅବିବେକ ମୋ ପରି ଗୁଡ଼ାକ କେଡ଼େ ନିର୍ଲ୍ଲଜ ସେ ପାରିବାର । ପଦ ।
ଧମକ ସ୍ମୃତିଣି ହୁଅନ୍ତେ ତରୁଣୀଚରଣୁ ଅନ୍ୟଙ୍କୁ ନ ଲଭ ଶରଣ ଗୋ,
ଧୂର୍ତ୍ତି ଆଚରଣ ଧୁରନ୍ଧର ଗୁଣ ଗୃହୁଁ କ୍ଷଣରେ ବାହାରିବାର । ୧ ।
ଧାଇଁ ଧାଇଁ ବୃନ୍ଦାମନ୍ଦିରକୁ ରାତି ପଦେ ଲକ୍ଷାଦ୍ୟୁତ ନ ଲଭଇ ସ୍ଥିତ,
ଧାତାବଶୁଁ ପ୍ରୀତି ଘଟିଲେ ଉଚିତ ବହି ଚେଲାଞ୍ଚଳ ମାରିବାର । ୨ ।
ଧରି ଧନୁବାଣ ସ୍ମର ସଙ୍ଗେ ପ୍ରାଣ ନେବା ପରି ଉଣ୍ଡି ଧରି ଦାନ୍ତେ ତୃଣ,
ଧରାରେ ତରୁଣୀ-ଶିର ଆଭରଣ ଲୁଣ୍ଠାଇଲେ ନ ପଗୃହିବାର । ୩ ।
ଧରି ଧରି ବଳେ କଲୁଥିଲେ କୋଳେ ଧରାଧରୁଁ ବଳେ ଧାଇର୍ଯ୍ୟ ନିଷ୍ଠଳେ,
ଧାନେ ଉଣା ତୁଟିଲେ ହେଲେ ସ୍ନେହ ଖେଳେ କ୍ଷଣକେ ବିନଯ୍ୟ ଗୃହିବାର ।୪।
ଧନ୍ୟ ଧୃତସାର ସୁପୁରୁଷଙ୍କର ପ୍ରସାଦୁ ସଂଭୂତ ସେ ଶଙ୍କରଙ୍କର,
ଧରଣୀନିର୍ଜର କବିରବି ଘୋର ଗୁଣି ତାଙ୍କୁ ନ ଜୁହାରିବାର । ୫ ।

( ୨୦ )

ରାଗ—ସିନ୍ଧୁକାମୋଦୀ

ନାହିଁ ନାହିଁ ନିଖିଳ ଜଗତେ ଗୋ ନ ଦିଶଇ ଉପମାନ,
ନବ ନୀରଦ ନୀଳମଣି ଅତସୀଶ୍ୟାମସୁନ୍ଦର ସମାନ ଗୋ । ପଦ ।
ନିରେଖୁଥାଇ ଏ ନଗରେ ଯେ ନାଗ ବରତରୁଣୀଙ୍କ ଶିରୀ,
ନୟନକୁ ଲେଶେ ନ ରୁଚଇ ତ ସେ ନୂଆ ନାଗରଙ୍କ ପରି । ୧ ।

---

ଦିନେଶତନୟା—ଯମୁନା, ଦୋହଦ—ଅଭିଳାଷ, ଦୋଭାଷୀ—ମିଥ୍ୟାବାଦିନୀ, ଯାବକରସ—ଅଳତାରସ, ଚରଣ ସାରସ—ପାଦପଦ୍ମ ।

୧୯ । ଟୀକା—ରାଧା ଲଳିତାଙ୍କୁ କହୁଅଛନ୍ତି:—କେଡ଼େ ପାରିବାର—କେଡ଼େ ସାହସିକ, ଲକ୍ଷାଦ୍ୟୁତ—ଅଲତାରଙ୍ଗିମା, ଚେଲାଞ୍ଚଳ ମାରିବାର—କାନ ପଣତରେ ନିଷେଧ କରିବା, ଗୃହିବାର—ଗୃହିଥର, ତରୁଣୀଶିର ଆଭରଣ—କୃଷ୍ଣ, ଧରାରେ ଲୁଣ୍ଠାଇଲେ—ପୃଥିବୀରେ ଗଡ଼ିଲେ, ଶଙ୍କରଙ୍କର—ମଙ୍ଗଳମୟ ଶିବଙ୍କର, ଧରଣୀନିର୍ଜର—ବ୍ରାହ୍ମଣ ।

ନଚନ୍ତୁ ନିବନ୍ଧ ଭଙ୍ଗ ଯେବେ ଦେହ ନାନା ବିଳାସ ବହିବ,
ନଳିନ ପେଶଳ ତା ଚରଣତଳ ନିଉଛାଳି ଭଲି ହେବ । ୨ ।
ନତ ନୋହିବା କୁଳଜାତ ନବୋଢ଼ା ନ ରସି ପଶିବ କାହିଁ,
ନକ୍ଷତ୍ର ନାଥ-ନିକୁରମ୍ବବିଜୟ-ସନ୍ନଦ୍ଧ ଶ୍ରୀମୁଖ ଗୃହିଁ । ୩ ।
ନର୍ମେ ମର୍ମଭେଦୀ ଚିଲ୍ଲୀ ଶୃଙ୍ଗ ରୂପ ନଗୃଇ ଜାଣଇ ସେହି,
ନିଃଶେଷ ତ ବାଞ୍ଛା ନୋହିବାରେ ତୁଲ୍ୟ ତାର ଲୋକେ ନାହିଁ କେହି ।୪।
ନିନ୍ଦିଲେ ନିନ୍ଦବେ ନରେ ପଛେ ଏବେ ନିଷ୍ଚୟ କହୁଛି ଜାଣି,
ନ ଚୁମ୍ବିଲେ ତାର ମଧୁର ଅଧର ନ ଠଉରଇ ମୋ ପ୍ରାଣି । ୫ ।
ନୋହିବୁ ଯେବେ ତୁ ଏ ଘଟନା ହେତୁ ତୋ ନାମେ ତେଜିବି ଦେହ,
ନିଯୃମ କରି କହୁଛି କବିରବି ଏଥି ନ ଘେନ ସନ୍ଦେହ । ୬ ।

( ୨୧ )

ରାଗ—ମନୋରମା

ପ୍ରୀତିପରି କେ ମୁଆଦ ଗୋ,
ପୀୟୂଷ ତୁଲେ ଯା ବାଦ ଗୋ । ପଦ ।

ପହିଲୁ ଗଞ୍ଜାଇ ଗରବ ଗଞ୍ଜାଇ ସମ୍ଭବାଏ ପରମାଦ,
ପବଂଶବଂଶ୍ୱଶ କରନିକରକୁ ବଳେ ତାହା ଅହ୍ଲାଦ ଗୋ । ୧ ।
ପଡ଼ିଗଲେ କାନେ ଜନ୍ମାଏ ବିବେକ ହଜାଇ ଦେବା ଉନ୍ମାଦ ଗୋ,
ପ୍ରିୟଜନ ଯିବା ଆସିବା ସମୟ ଚରଣମଣ୍ଡନ ନାଦ ଗୋ । ୨ ।
ପୂର୍ଣ୍ଣିଶରସିନ୍ଧୁ କେଳିତରଙ୍ଗ କି ସେ ପଛରୁ ପେଲିବା କାଦ,
ପସନ୍ଦ ତାହାକୁ ଅରଜିବା ପାଇଁ ଧଇଲେହେଁ ନୀଚ ପାଦ ଗୋ । ୩ ।
ପ୍ରାପତ ନୁହେ ସେ ପ୍ରାଣୀକି ନ ଥିଲେ ପରମେଶ୍ୱର ପ୍ରସାଦ ଗୋ,
ପୟଃପରଣିତ ମଧୁରସା ସିତ ଶର୍କରା କେତେ ବେଷାଦ ଗୋ । ୪ ।
ପରପତ୍ନୀ ରତି କରି ଯେଉଁ ସତୀ ଅପାଦଛୁ ପରିବାଦ ଗୋ,
ପୃଥ୍ୱୀଦେବ କବିରବି ରାୟଗୁରୁ ବୋଲେ କରୁ ଫରିଆଦ ଗୋ । ୫ ।

---

୨୦ । ଟୀକା—ରାଧା କହୁଅଛନ୍ତି:—ନବନୀରଦ—ନୂଆମେଘ, ଅତସୀ—ଫେଣି ଫୁଲ, ନଚନ୍ତୁନିବନ୍ଧ—ଅନେକ କନ୍ଦର୍ପ, ନଳିନପେଶଳ—ପଦ୍ମପରିକୋମଳ ବା ସୁନ୍ଦର, ନିଉଛାଳି—ବନ୍ଦାପନା, ନବୋଢ଼ା—ନବଯୁବତୀ, ନକ୍ଷତ୍ରନାଥ—ଚନ୍ଦ୍ର, ନିକୁରମ୍ବ—ସମୂହ, ବିଜୟସନ୍ନଦ୍ଧ—ଜୟ କରିବାକୁ ଉଦ୍ୟତ, ନର୍ମେ—କୌତୁକରେ, ଚିଲ୍ଲୀ—ଭ୍ରୂ ।

୨୧ । ଟୀକା—ଲଳିତା ରାଧାଙ୍କୁ କହୁଅଛନ୍ତି:—ପୀୟୂଷତୁଲେ—ଅମୃତ ସଙ୍ଗେ, ଗଞ୍ଜାଇ—ମାଦକଦ୍ରବ୍ୟ, ପବଂଶବଂଶ୍ୱଶକରନିକର—ପୂର୍ଣ୍ଣିମାର ଚନ୍ଦ୍ର—

( ୨୨ )

ରାଗ—କେଦାର ଗୌଡ଼

ଫେରି ଯା ଗଲେ ଗୋ,

ସଖି ଫାଟିଲା ମୋ କରମ ଜାଣିଲି ଭଲେ । ପଦ ।

ଫୁଟିଲା ଫୁଲବାସେ ପୁରନ୍ଧ୍ରୀ କ୍ଷିତି, ଫଲ୍ଗୁରି ଶୁଣି କର୍ପା କଲି ଏ ରୀତି ଗୋ । ୧ । ଫଳୁଆ ଗର୍ଭୁଁ ଫେଇ ନିର୍ଦ୍ଦୋଷ ମଣି, ଫିଙ୍ଗି ଯା ଦେଲି ରୋଷେ ସଦୋଷ ମଣି ଗୋ । ୨ । ଫୁଲଗଲି ମୁଁ ଗୃହୁଁ ଶୁଣି ମଦରେ, ଫୁଲଲଲାମ ମର୍ଦ୍ଦି ଦେଲି ପାଦରେ । ୩ । ଫୁଲପଙ୍କଜ ମୃଦୁ ସୁନ୍ଦର ପାଦ, ଫାଟୁ ଯେ ଥିବ ଲଭି ସଂଗ୍ରର ଖେଦ । ୪ । ଫନ୍ଦା ଧବ ଯେ ଫିଙ୍ଗି ଦେଲି ପାଣିକି, ଫୁରୁଣା ହେବି କାହା ଘେନି ଏଣିକି । ୫ । ଫେଇ ଦାଅନ୍ତି କଣ୍ଠୁ ଏ ମଣିହାର, ଫନ୍ଦାଇ ପାରିବ କେ କବି ମିହିର । ୬ ।

( ୨୩ )

ରାଗ—ମୁଖାରୀ

ବିଧାତା କି କଲା ରେ, ବ୍ୟର୍ଥେ ଦିନ ଗଲା ରେ, ବାରବାର ମଦ-ବାରଣବରଗତି, ରତିରସବିଦ୍ୟାତରଙ୍ଗିଣୀପତି, ଗୁମାନ ଧରି ସରି ଯାଉଛି ଜଗତି କି ନିକୁଞ୍ଜମହୀ ମଣ୍ଡିବା ସମୟରେ । ପଦ ।

ବେଶେ କରିବାକୁ ତୋରି, ବନାଉ ଅଛୁ ମୁଁ ଝରି, ବସିଛୁ ଦୁଃଖ-ପାସୋରି ବାଢ଼ି ବିରସପସରି । ୧ । ବିମ୍ବୋଷ୍ଠେ ଚୁମ୍ବିବା ଆଶେ, ବନସ୍ତେ ମିଳିଲି ପାଶେ, ବଦନକୁ ମହିଲା ସେ, ବର୍ଜିତ କରିଛୁ ହାସେ । ୨ । ବାଧୁ ଥିଲେହେଁ ଦୁର୍ଜନେ, ବୁଢ଼େ ମୋ ସ୍ନେହ ମର୍ମ୍ମନେ, ବୋଧିଲେ ତ ଏବେ

---

କରଣସମୂହ, କାନ୍ଦ—କାତ, ପୟଃପରଣତ—ଦୁଧରେ ଦ୍ରବୀଭୂତ, ମଧୁରସା—ଦ୍ରାକ୍ଷା, ସିତଶର୍କରା—ସାଚ, ବେଷାଦ—ଶକ୍ତଶାଳୀ, ପରପକ୍ଷୀୟଙ୍କ—ଶତ୍ରୁ ପର ଆଚରଣ, ପରବାଦ—ନିନ୍ଦା, ପରିଆଦ—ନାଲିସ୍ ବା ଅଭିଯୋଗ, ଆପାଦଛୁ—ସମ୍ପାଦଛୁ ।

୨୨ । ଟୀକା—ସଖୀ ଲଳିତାଙ୍କୁ କହୁଅଛନ୍ତି:—ଫଲ୍ଗୁରି—ହତଭାଗା, ଫୁଲଲଲାମ—ପୁଷ୍ପନିର୍ମିତ ଭୂଷଣ, ଫୁଲ୍ଲ—ଫୁଟନ୍ତା, ଫୁରୁଣା—ଭାଗ୍ୟବତୀ, ଫନ୍ଦାଇ ପାରିବ—ମଙ୍ଗାଇ ପାରିବ ।

୨୩ । ଟୀକା—ଶ୍ରୀକୃଷ୍ଣଙ୍କର ଭାବନା:—ମଦବାରଣବରଗତି—ମତ୍ତଗଜ-ଗମନା, ଝରି—ପୁଷ୍ପଭୂଷଣ, ପସରି—ଦୋକାନ, ବାଧୁଥିଲେ—ବାଧା ଦେଲେହେଁ,

ମନେ, ବିବେକନିଧି ନ ଘେନେ । ୩ । ବନ୍ଧୁ ମୋ 'ଶିରୀଷଅଙ୍ଗୀ, ବଙ୍କ-ବିଷମଅପାଙ୍ଗୀ, ବସନ୍ତବିହାରସଙ୍ଗୀ, ବଢ଼ାଇ ଦେଲା ଢେ ଭଙ୍ଗୀ । ୪ । ବିସ୍ମୟ ଜନ୍ମେ ମୋ ଚିତ୍ତେ, ବନମାଳା ସଜି ମୋତେ, ବିସ୍ମର ଦେଲା କେମନ୍ତେ, ବୋଲେ ବଳଦେବ ଗୀତେ । ୫ ।

( ୨୪ )

ରାଗ—କାମୋଦୀ

ଭୂଲୋକର ଭର୍ମଭୂଷା ଯୋଷା ରତନ ରସାଳସା ସେ, ଭଙ୍ଗୁର ତରାଳକଠାଣି, ଭର୍ଗ ଅହୃତ ମାର୍ଗଣ ଶତ ସମ୍ମୋହନ ଗୃହାଣି, ଭାବତୁନ୍ଦଳ କେଳିକୋକିଳ, କଳକୂଜନ ବାଣୀ, ଭାରି ନିତମ୍ବ ବିମ୍ବ ଡରଜା, ବାରଜ-ନେତ୍ରା, ନାଗରୀରାଜା, ବଲ୍ଲଭା ମୋର ରଙ୍ଗ ସୁନ୍ଦର ପଲ୍ଲବସାରପାଣି । ୧ । ଭଲି ତା ଲୀଳାଚଞ୍ଚଳଢ଼ୋଳା ଅପାଙ୍ଗପ୍ରାଙ୍ଗଣଖେଳା, ପସନ୍ଦ କୁନ୍ଦ ସୁନ୍ଦର ମନ୍ଦହାସ, ଭ୍ରୂଯୁଗଖେଳ ଚପଳ ନୀଳଭୁଜଙ୍ଗିନୀ ସଂକାଶ, ଭୟାଭିନୟ ଦୟା ବିନୟ ନୟନ ଫରମାସ, ଭିତ୍ତରେ ଲେଖି ମୋ ବଦନ, ଚୁମ୍ବନେ ବଳାଇ ମନ, ଗୃହିଁ ମୋତେ, କି ସ୍ନେହସ୍ମିତେ ଠାରେ ଦଶନବାସ ।୨। ଭରତକୃତ ସିଦ୍ଧାନ୍ତ ମତ ସଙ୍ଗୀତ କଳା ସମସ୍ତ ନୁତ, ନଳିନ ବନରୁହ ବିପିନଭଙ୍ଗୀ, ଭାରତୀଙ୍କର ସାର ଭଣ୍ଡାର, ଲୁଣ୍ଠନ ଖାନାଜଙ୍ଗୀ, ଭୂଷଣତତି ଶୋଭା ସମ୍ପଜ୍, ଜନନ ଚତୁରାଙ୍ଗୀ, ଭଦୁରପାଣି ନୀଳମଣିକୁନ୍ତଳ କୃତଗୁରୁବେଣୀ, ବିମ୍ବପ୍ରତବିମ୍ବ ରଦନଅମ୍ବରା, ପ୍ରାଣସଙ୍ଗୀ । ୩ । ଭଜନ ଇଷ୍ଟମନ୍ତ୍ର କାରିକା ଭାବିନୀ ସେ ମୋ ଜୀବିକା ବିକା, ମୋ ଦେହ ତାହାର ସ୍ନେହ ଧନେ, ଭଗାରଜନ ବଦନମ୍ଳାନ ହୁଏ ତା ଅବଧାନେ; ଭୂମିରେ କାହିଁ ଶରଣ ନାହିଁ ତାହା ବାହାରେ ଆନେ, ଭରସା ସାର ସେହି ମୋହର ଭଲ ହୋଇବା ଭାଲପର କାହିଁ ରୂପ କଣେଶୋଭା ଉପମାନେ ।୪। ଭକ୍ତ୍ୟବତ୍ସଳା, ନୃତ୍ୟକୁଶଳା, ଦାସୀ ଅନୁରାଗ ଶୀଳା, କୁଞ୍ଜନିଳୟପୁଞ୍ଜ ମଞ୍ଜୁଳଖେଳା, ଭୂତେଶପରଶର ବିକାର କାଲଲନିଧି ଭେଳା, ଭୂତାନୁକମ୍ପା, ଜଳଧିଶମ୍ପାଗୋରୀଆନୀଳଚେଳା,

ଶିରୀଷ ଅଙ୍ଗୀ—କୋମଳାଙ୍ଗୀ, ବାରବାର—ଥରକୁ ଥର, ରଢରସବଦ୍ୟା-ତରଙ୍ଗିଣୀପଢ—ରଢରସବଦ୍ୟାରୂପ ନଦୀର ପତ ଅର୍ଥାତ୍ ସମୁଦ୍ର ।

୨୪ । ଟୀକା—ଶ୍ରୀକୃଷ୍ଣଙ୍କର ଅନୁଚନ୍ତ୍ରା:—ଭୂଲୋକର କର୍ମଭୂଷା—ପୃଥିବୀର ସ୍ୱର୍ଣ୍ଣଅଳଙ୍କାର ସଦୃଶ । ଭର୍ଗଅହୃତ—କନ୍ଦର୍ପ, ମାର୍ଗଣ—ବାଣ, ଭରତ—ସଙ୍ଗୀତଶାସ୍ତ୍ରର ଆଗ୍ଧ୍ୟର୍ଯ୍ୟ, ନୁତ—ପ୍ରଶଂସିତ, ବନରୁହବିପିନ—ପଦ୍ମବନ,

ଭୃଷଇ କବିମିହିର ଭାବ ବ୍ରଜରାଜନନ୍ଦନ ଗାନ୍ଧର୍ବୀ ଗୃଷ୍ଟିମଦବାରିରୁହିତେ କରି ମାନସମେଳା । ୫ ।

( ୨୫ )

ରାଗ—ଶୋକକାମୋଦୀ

ମନ୍ଦହାସି ଯିବା ଆସ ରେ । ପଦ ।

ମହେନ୍ଦ୍ରମଣି ମୂର୍ତ୍ତି ପୁଣି ସନେ ଫକଲିଛନ୍ତି ରାସ ରେ । ୧ । ମୁଚଳୀଯନ୍ତ୍ର ମୋହନମନ୍ତ୍ର ମୋହି ନେଲଣି ମୋ ମାନସରେ । ୨ । ମୃଦୁ-ଲଳିତ ମଧୁରଗୀତ ମନା କଲଣି କୁଳବାସ ରେ । ୩ । ମାତ ସହ୍ନେହେ ମୁକୁନ୍ଦଦେହେ ମିଶି ଝଞ୍ଜିବା ବାହୁ ପାଶରେ । ୪ । ମୁଖୁ ତାହାର ମରନ୍ଦା-ହାର ମାର ଦଶନେ ଧରି ଘାସ ରେ । ୫ । ମହା ପ୍ରଚଣ୍ଡ ମଦନକାଣ୍ଡ ମୁନେ ହେବଟି ପ୍ରାଣ ନାଶ ରେ । ୬ । ମହାଗୀର୍ବାଣେ ମୁଖ୍ୟ ଯେ ଭଣେ ମାନସୁ କଲ ଫରମାସ ରେ । ୭ ।

( ୨୬ )

ରାଗ—ବରାଡ଼ି

ଯଦୁମଣି ଯିବେ ପୁଣି ଯାମିନୀ ନ ସରେ ଆଉ ନାହିଁ ନାଡ଼ । ପଦ ।

ଯନ୍ତ୍ରର କ ଯାଣୁ ଯେବେ, ଯେମନ୍ତେ ହେଉଇଲେ ଜବେ, ଯାହା ଅନୁକୂଳମୂଳ ଦେ ଉପାଡ଼ । ୧ । ଯୁଗ୍ମ ନୋହାଥିଲେ କ୍ଷଣେ, ଯୁଗୁଁ ମୁଁ ଅଧିକ ମଣେ, ଯୁବଚନ୍ଦ୍ର ତ ଅମୃର ଲଗି ଶାଢ଼ୀ । ୨ । ଯମରୁ ଦାରୁଣ ମାରଯବନଶର ପ୍ରହାର, ଯାତନାକୁ କେ ଅମୃର ଦେବ ଆଡ଼ । ୩ । ଯୁବତନେତ୍ର-ଅଞ୍ଜନ, ଯାମଳତରୁଭଞ୍ଜନ, ଯେବେ ଯିବେ ନୋହିବେଟି କେ ଆଗାଡ଼ । ୪ । ଯନେ କବିରବି ବୋଲେ, ଯୋଗ ଥିଲ ଏ କି ଭାଲେ, ଯାବନ୍ତ ତେଜିବା ତହିଁ କରତାଡ଼ । ୫ ।

---

ଖାନାଜଙ୍ଗୀ—ଜମାଦାର, ଖଲଖର—ଅଦୃଷ୍ଟ ଲିପି, ଭୂତେଶପର—କନ୍ଦର୍ପ, କୀଲାଳନିଧି—ସମୁଦ୍ର ।

୨୫ । ଟୀକା—ଲଳିତା ରାଧାଙ୍କୁ କହୁଅଛନ୍ତି:—ମହେନ୍ଦ୍ରମଣି ମୂର୍ତ୍ତି—ଇନ୍ଦ୍ରନୀଳମଣିକାନ୍ତିଧାରୀ, କୁଳବାସ—ବଂଶମର୍ଯ୍ୟାଦାଜନତ ଭୟ, ମରନ୍ଦାହାର—ମକରନ୍ଦରୂପ ଖାଦ୍ୟ, ଘାସ—କୁଟା, ମହାଗୀର୍ବାଣ—ବ୍ରାହ୍ମଣ ।

୨୬ । ଟୀକା—ଲଳିତାଙ୍କୁ ରାଧା କହୁଅଛନ୍ତି—ନାଡ଼ ନାହିଁ—ଜ୍ଞାନ ନାହିଁ, ଜବେ—ଶୀଘ୍ର, ଆଡ଼ଦେବା—ବ୍ୟର୍ଥ କରିଦେବା, ଆଗାଡ଼—ଅଗ୍ରମାମୀ ।

( ୨୭ )

ରାଗ—ମୁଖାରୀ

ରାମାବର ରେ, ରୋଷ ବହିଲୁ କି ନଉକରେ,

ରଦନର ବ୍ରଣ ଦେଖି ଦରପଣ ବିମ୍ବରେ ଦଶନାମ୍ବରରେ । ପଦ ।

ରୁଦ୍ରାଣୀଙ୍କ ବ୍ରତ, ଧନେ ସନ୍ତପତ, ହୋଇ ମନମଥଜ୍ୱରରେ, ରମ୍ଭା ସମ୍ଭାବନାଯୋଗ୍ୟ ଉରୁମୂଳ ଛୁଇଁ ଦେବାରୁ ନଖର ରେ । ୧ । ରାତି ପାହିଗଲା ବୋଲି କମ୍ପୁଥିଲୁ ଗୁରୁଜନଙ୍କର ଡରରେ, ରତି ଶେଷେ ହଠି ଛନ୍ଦିଲି ତୋ କଟି ଯାହା ପୀତଫେଟା ଫେରରେ । ୨ । ରାଣି ବୋଲୁ ଠେସି ନଖି ଭ୍ରଷି ହସି ପଶିଗଲୁ ଅନ୍ତଃପୁରରେ, ରସିକାରେ ପାଣି ବାଜିବାର ଜାଣି ନାହିଁ ମୁଁ ତୋ ପୟୋଧର ରେ । ୩ । ରଙ୍କ ସଦୃଶ ତ ହେଉଥାଏ ଚିତ୍ତ ବୁଡ଼ି ତୋ ଶୋଭା ନିର୍ଝରରେ, ରମିବାରେ ଚେତା ରହେ କି ପଣ୍ଡିତାମଣି ବିବେଚନା କର ରେ । ୪ । ରସିଲେ ଏ ବାଣୀ ଶୁଣି ଠାକୁରାଣୀ ମୋହନ-ମୁରଲୀଧରରେ, ରଥକୁଳ-ଜଳନିଧି-ବୀଚି ବଳଦେବ ବନ୍ଦେ ଅବସର ରେ ॥

( ୨୮ )

ରାଗ—ଆବେରୀ

ଲାଗିଲା ରେ ଲାବଣ୍ୟନିଧିକି ଶ୍ୟାମ ଲଟେ,

ଲୋଚନେ ଦେଖିଲେ ଲୋକ ମୁକୁଟଚନ୍ଦ୍ରକଯାକ

ଲାଖାରେ ହେବାରେ ନଟପଟେ । ପଦ ।

ଲବଙ୍ଗଲତା ଭବନେ, ବ୍ୟସ୍ତ ହୋଇ ନିଧୁବନେ, ପଡ଼ିଅଛୁ ପୁଣି ଫୁଲଖଟେ; ଲୋହିତ ସୁଧାଂଶୁ କଳା ନୀଳଲୋହିତ ବହିଲା ମଥା ପୁଣି ଧଶେ ସ୍ତନଘଟେ । ୧ । ଲଳିତା ଦେଖିଲା ପୁଣି, ଲାଗି ହେବାର କାଛୋଣି, କରି ନୀଳଚେଲ ନୂଆନଟେ; ଲହକେ ପୁଣି କଶୋରୀ ଚଳନ ଚେତା ମାସୋର,

---

୨୭ । ଟୀକା—ଶ୍ରୀକୃଷ୍ଣ ରାଧାଙ୍କୁ କହୁଅଛନ୍ତି:—ନଉକର—ଗୃକର, ରଦନ—ଦାନ୍ତ, ଦଶନାମ୍ବର—ଅଧର, ରୁଦ୍ରାଣୀଙ୍କ ବ୍ରତ—ଗୌରୀବ୍ରତ, ନଗର—ନଖ, ପୀତଫେଟା—ହଳଦିଆ ଫିଟା ଲୁଗା, ନଖି—ଦୁଇଟି ଅଙ୍ଗୁଳିର ନଖ ପରସ୍ପର ଘଷିଲେ ରାଣ କାଟେ ନାହିଁ—ଏହି ପ୍ରଥାକୁ ନଖି ବୋଲି କହନ୍ତି । ରଥକୁଳଜଳନିଧି ବୀଚି—ରଥବଂଶରୂପ ସମୁଦ୍ରର ଲହରୀସ୍ୱରୂପ ।

୨୮ । ଟୀକା—ସଖୀମାନେ ରାଧାକୃଷ୍ଣଗତ ପ୍ରୀତି ବର୍ଣ୍ଣନ କରୁଅଛନ୍ତି:—ଲାବଣ୍ୟନିଧି—ପରମା ସୁନ୍ଦରୀ ରାଧା, ଲଟ—ଜଞ୍ଜାଳ, ଲାଖା—ଅଳଙ୍କାର ବୋଲ, ନିଧୁବନ—କ୍ରୀଡ଼ାକୌତୁକ, ଲୋହିତ ସୁଧାଂଶୁକଳା—ରକ୍ତବର୍ଣ୍ଣ ଚନ୍ଦ୍ରଲେଖା, ନୀଳଲୋହିତ—ମହାଦେବ, କାଛୋଣୀ ପରି ଲାଗି ହେବା—ଅଣ୍ଟାରେ ଭିଡ଼ି କରି

ପିନ୍ଧି ପକାଇଲ ପୀତପଟ । ୨ । ଲଜ୍ଜା ହେବାରୁ ପ୍ରବଳ, ହେଲେ ହେଲେ ଅନୁକୂଳ, ରାଜି ନ କରିବାରୁ ଭଲଟ; ଲକ୍ଷ ପରମିତ ଆନ, ପକାଇ ସେହି ବିଧାନ ହେବାଯାଏ କଲେ ପୁଣି ହଟ । ୩ । ଲେଖାଧିପ ମଣିମୟ ଦିଶୁଛି ଶଶୀ ଉଦୟ, ସମୟେ ଅର୍ଯ୍ୟମାକେଜମାତଟ; ଲଳିତ ଶମ୍ପାବଲ୍ଲରୀ, ଜାଣି ତାହା ମଧ୍ୟେ ଶିରୀ, ବିଳସୁଛି ପୁଣି ଝଟଝଟ । ୪ । ଲୁଳିଗଲଣି ନିକୁଞ୍ଜ-ସଞ୍ଚାରୁ ଚରଣକଞ୍ଜ, କହେ କବିରବି ମଧୁଲଟ; ଲୁଗୁଥାଏ ଯୁବତୀ-ରତନ ମୋହନ ପ୍ରୀତି, ନ ଜାଣଇ ବୋଲି ମୁଁ କପଟ । ୫ ।

( ୨୯ )

ରାଗ—ରେଗୁପ୍ତ

ବନ୍ଧୁ ମୋ କାହ୍ନୁ କପଟ ଶୁଣିଲାରେ, ବିଷ ତୁଲ୍ୟ ତ ମୋତେ ମଣିଲା ରେ,
ବଚନ ନ କହିଲା, ବିନୟ ନ ସହିଲା,
କି ହେଲା, ମହିଳାବର ରୁଷି ରହିଲା ରେ । ପଦ ।

ବସନ୍ତକାଳ, ବିଚ୍ଛେଦରେ ଏ କାଳ, ବହଇ ମଳୟାନିଳ, ବିଯୋଗି-ପ୍ରଳୟାନଳ, ବିପକ୍ଷ ସଙ୍ଗରେ ତ ଗଣିଲା ରେ । ୧। ବାଳାବର ସେ, ବେଳେ ମୋରେ ନ ରୁଷେ, ବିବେକ ନ କର ଲେଶେ, ବିଳସିବାର ହରଷେ, ବିରକ୍ତ ଏ ଦୁର୍ଯ୍ୟୋଗ କଣିଲା ରେ । ୨ । ବିଡ଼ିଆ ବଢ଼ି, ବଢ଼ାଇଲ ସଜାଡ଼ି ବାତ୍ସଲ୍ୟପୀୟୂଷ ଇଡ଼ି, ବସିଲା ଶ୍ରୀମୁଖ ମୋଡ଼ି, ବନ୍ଧନାଳ କଞ୍ଜକୁ ଜିଣିଲା ରେ । ୩ । ବିକଳ ହୋଇ ବହୁ ଅଶ୍ରୁ ବୁହାଇ ବଦନ ବିଧୁ ନୁଆଇଁ; ବରତୁଳସ୍ତନେ ଥୋଇ, ବରୁଣାଦ୍ରିଚନ୍ଦ୍ରକୁ ଠାଣିଲା ରେ । ୪। ବିଅର୍ଥେ ଦିନ ବଞ୍ଚାଉ ଅଛି ମୋ ଧନ, ବିଷମ ଏ ଯଉବନ ବିଜୁଳିଠାରୁ ଜବନ, ବଳଦେବ କବି ନ ଭଣିଲା ରେ । ୫ ।

---

ପିନ୍ଧିବା, ନୀଳଚେଳ—ନୀଳବସ୍ତ୍ର [ ସୁଧାଙ୍କର ]; ନୁଆନଟ—ଶ୍ରୀକୃଷ୍ଣ, ଲହକେ—ଅବନତ ହୋଇ ବା ନଇଁପଡ଼ି; ଆନ—ରାଣ, ଲେଖାଧିପ ମଣିମୟ—ଇନ୍ଦ୍ରମଣି ତେଜଃପୂର୍ଣ୍ଣ; ଅର୍ଯ୍ୟମାକେଜମାତଟ—ଯମୁନା କୂଳ, ଶମ୍ପାବଲ୍ଲରୀ—ବିଦ୍ୟୁତ୍ ଲତା, ଲୁଳି ଗଲାନି—କ୍ଲାନ୍ତ ହୋଇ ପଡ଼ିଲଣି ।

୨୯ । ଟୀକା—ଶ୍ରୀକୃଷ୍ଣଙ୍କ ରାଧିକାଗତ ଚିନ୍ତା:—ବିଚ୍ଛେଦରେ ଏ କାଳ—ବିରହ ବିଷୟରେ ଏହା ଯମସ୍ୱରୂପ, ବିଯୋଗି ପ୍ରଳୟାନଳ—ବିରହୀ ପକ୍ଷରେ ପ୍ରଳୟ କାଳର ଅଗ୍ନି ପରି, ବେଳେ—ଥରେ, ବିଡ଼ିଆ ବଢ଼ି—ପାନଖିଲି, ବାତ୍ସଲ୍ୟପୀୟୂଷ ଇଡ଼ି—ସ୍ନେହରୂପ ଅମୃତକୁ ଢାଳିଦେଇ ଅର୍ଥାତ୍ ସ୍ନେହଶୂନ୍ୟ ହୋଇ, ବନ୍ଧନାଳକଞ୍ଜ—ଯେଉଁ ପଦ୍ମର ନାଳ ବଙ୍କା, ବରୁଣାଦ୍ରିଚନ୍ଦ୍ର—ପଶ୍ଚିମ ଦିଗର ଅସ୍ତଗାମୀ ଅତଏବ ଆରକ୍ତ ଚନ୍ଦ୍ର, ଜବନ—ଚଞ୍ଚଳ, କବୀନ—କବିସୂର୍ଯ୍ୟ ।

( ୩୦ )

ରାଗ—ତୋଡ଼ିମୁଖାବରୀ

ଶ୍ରୀହରି ହେ ରଜନୀ ପାହିଲା, ଶତପତ୍ର ବନରୁ ପବନ ମନ୍ଦ ମନ୍ଦ ବହିଲା, ଶମନଭଗିନୀର ନୀରଜାଙ୍ଘ୍ରିନୂପୁର, ପରିପୂରିତ ମନୋରଥ ରଥାଙ୍ଗସ୍ୱର, ଶଶୀ-କର-ଶୀକର, ନିକର ଅସ୍ତଧର ବରଚୂଳକୁ ମାତ୍ର ଗୁହିଁଲା । ପଦ ।

ଶ୍ରମ-ସିନ୍ଧୁ ମଧ୍ୟେ କେ ସାହସତରୀ ବାହିଲା, ଶଙ୍କା ଲେଶ ହେଲେ ଦ୍ରବ୍ୟଚିତ୍ତକୁ ନ ପାଇଲା । ୧। ଶମ୍ଭୁପରିପନ୍ଥୀ ତୂଣେ କେତେ ବାଣ ବହିଲା । ଶୃଙ୍ଗାର-ଶାସ୍ତ୍ରକୁ ନାଶି ସମସ୍ତ ନ ସହିଲା । ୨ । ଶାବକମୃଗାକ୍ଷୀ କେତେ ଜନ୍ମ ତପେ ଦାହିଲା । ଶମ୍ବାସ୍ତୂଧମଣି ଶ୍ୟାମତନୁ ମନ ମୋହିଲା । ୩ । ଶରଦିନ୍ଦୁ ସୁଧାସୂତନାଳକୁ କି ବହିଲା, ଶ୍ରବଅବତଂସ କଳହଂସ ଧ୍ୱନି ନୋହିଲା । ୪ । ଶମ୍ବରାରି ସଜଚକ୍ର ଏ ଭ୍ରାନ୍ତିକି ବହିଲା, ଶରସୂଚୀରେ ଶରୀର ଯୁଗ ଗାଢ଼େ ସିଇଁଲା । ୫ । ଶୁର କବିକର ପଦକଞ୍ଜତଳେ କହିଲା, ଶେଷ ଅଜ ନଶାକୁ ରହିଲେ ପଛେ ରହିଲା । ୬ ।

( ୩୧ )

ରାଗ—ଭୈରବ

ଶାଢ଼ୀ କାହିଁ ଦେବ ଦେବଟି ହେ, ସଙ୍କୋଚେ ମୋର ପ୍ରାଣ ଯିବଟି ହେ, ସୁନ୍ଦର ହେ ମଲ୍ଲ, ଏ ବଡ଼ ଛଇଲା, ଗୁଜୁଲିରେ ଜାତ ନେବଟି ହେ । ପଦ ।

ସାକ୍ଷାତ ଦେଖିଲେ ହେଲେ ଲୋଚନେ, ସମସ୍ତଙ୍କୁ ଜଟି ହୁଏ ବାଚନେ, ସାଧିଅଛୁ ଏ କି ସବଂଙ୍କ ଦେବୀ କି ଏହାକୁ ପାରିବ କେ ବଟି

୩୦ । ଟୀକା—ସଖୀମାନେ କୁଞ୍ଜଗୃହଗତ ଶ୍ରୀକୃଷ୍ଣଙ୍କୁ ନିଦରୁ ଉଠାଉ ଅଛନ୍ତି:— ଶତପତ୍ରବନରୁ—ପଦ୍ମବନରୁ, ଶମନଭଗିନୀର ନୀରଜାଙ୍ଘ୍ରି ନୂପୁର-ପରିପୂରିତ ମନୋରଥ, ରଥାଙ୍ଗସ୍ୱର—ଯମୁନାର ପଦ୍ମପାଦର ନୂପୁରଶବ୍ଦ ସଦୃଶ ପୂର୍ଣ୍ଣମନୋରଥ ଚକ୍ରବାକମିଥୁନର ଶବ୍ଦକୁ ଘେନ ପଦ୍ମବନର ପବନ ଧୀରେ ଧୀରେ ବହିଲା । ଶଶୀକରଶୀକରନିକର—ଚନ୍ଦ୍ରକିରଣରୂପ ଜଳକଣାସମୂହ, ଅସ୍ତଧର-ବରଚୂଳ—ଅସ୍ତ ପର୍ବତର ଅଗ୍ରଭାଗ, ଶମ୍ଭୁପରିପନ୍ଥୀ—କନ୍ଦର୍ପ, ଶମ୍ବାସ୍ତୂଧମଣି ଶ୍ୟାମତନୁ—ଇନ୍ଦ୍ରନୀଳମଣି କାନ୍ତିଧାରୀ କୃଷ୍ଣଙ୍କର ଶ୍ୟାମ ଶରୀରକୁ, ସୁଧାସୁତ—ପଦ୍ମ, ଶମ୍ବରାରି—କନ୍ଦର୍ପ, ସୌଚିକ—ଦରଜୀ, ଶୁରକବି—କବିସୂର୍ଯ୍ୟ ।

୩୧ । ଟୀକା—ରାଧା କୃଷ୍ଣଙ୍କୁ କହୁଅଛନ୍ତି :— ଛଇଲା — ରସିକା, ପରିହାସପ୍ରିୟ; ଗୁଜୁଲି—ପରିହାସ, ଜଟି ହୁଏ—ବକ୍ରତ କରେ, ବଟି ପାରିବ—

ହେ ସହସ୍ର କୋଟି ନିଧିଗୋଟି ମୋର, ଯତେ କାହିଁ ଛଡ଼ାଇଛ ଅମ୍ବର, ସୁନାପୁଅ ପରି, ସଖୀ ଆଗେ ଧରି, ନ ପଡ଼ୁ ମୋତେ ରଖିବଟି ହେ ।୨। ସୁଖସଙ୍ଖାଳି ହେ ଦୁଃଖପାସୋରି, ସେ ବନ୍ଧୁଙ୍କ ନ ମଗିବାରୁ ପରି, ସଢ଼ାଉଛ ଲାଜ, ଯେବେ ନାଶି ଆଜ, ସବୁ ସେହ୍ନାପର ହେବଟି ହେ ।୩। ସରୁକଣ୍ଠୀରେ ପୀତଚେଲ ଭିଡ଼ି, ସୀମା ପାର କରିଅଛ ମୋ ଶାଢ଼ୀ, ସମର୍ପିତ ଜନ, ସଂକୋଚରେ ଲୀନ, ହେଲେ ଅପଣା ଲାଘବଟି ହେ ।୪। ସଂସାରେ ନ ଥିବାର ତୁମ୍ଭ ସ୍ନେହ, ହୃତ ସରଲେ ସହାୟ ନୁହ, ସରୋଜାକ୍ଷିଜାତ, କାଦମ୍ବ ବ୍ରତତୀ, ମନ୍ଦିରେ ଶପଥ ଦେଖିବଟି ହେ ।୫। ସମ୍ପାଦଛ ଯେତେ କାହିଁ ଆପଣେ, ସୀମନ୍ତିନୀଙ୍କ ସଢ଼ାଇବା ଗୁଣେ, ସ୍ମରୁଥିବ ଅନୁଦିନେ କବିଭାନୁ ବାସୁଗୁରୁ ବଳଦେବଟି ହେ ।୬।

( ୩୨ )

ରାଗ—ଗୈରୀ

ଷୋଡ଼ଶ ସହସ୍ର ବ୍ରଜ, ସରୋଜନେତ୍ରା ସମାଜ, ବିପିନ ମରନ୍ଦ ପାନେ ଅତି ସରାଗେ । ଷଟ୍‌ପଦ ଯୁବବର, ପରି ଶିଖଣ୍ଡଶେଖର ବିହରିଲେ ଶରଦ ରଜନୀ ବିଭାଗେ । ଷଡ଼ାସ୍ୟଜନକାହିତର, ଷଷ୍ଠବାଣ ବନିଲେ ସେ ମୁରଲୀଧର ।୧। ଷଡ଼କ୍ଷର ମନ୍ତ୍ର ଜପ, କରିଥିଲେ କି ଅନଳ୍ପ, କଳ୍ପ ଯାଏ ନବ ଗୋପତରୁଣୀ ଜନେ । ଷଡ଼ଙ୍ଗ ବେଦ ସ୍ତବନ ଯୋଗ୍ୟବାହୁ ଆଲିଙ୍ଗନ, ମୁଖ ସଉଭାଗ୍ୟର ହୋଇଲେ ଭାଜନ । ଷଡ଼ୁପାୟ ବିଗ୍ରହ ହର, ଷଡ଼ାରାତି ପ୍ରଥମକୁ ଦେଲେ ନିବାରି ।୨। ଷଡ଼୍‌ଜାଦି ସ୍ୱର ସଙ୍ଗୀତ, ମଣି-ମଞ୍ଜୀର ଶିଞ୍ଜିତ, ହେଲା ବୀଣା ଆଦ୍ୟ ବାଦ୍ୟରବ ନିବହ । ଷଟ୍‌ପଞ୍ଚାଶତ କୋଟି, ଜୀବଙ୍କ ହୃଦୟେ ଘୋଟି, ପ୍ରସାରିଲା ପରଂବ୍ରହ୍ମାନନ୍ଦ ପ୍ରବାହ । ଷଣ୍ଢଧୀଶ ନୋହିଲା ପରି, ଷୋଡ଼ଶଧାଏ ମଣିଲେ ମୋଦେ ବିହରି ।୩। ଷଡ଼ରିରୁ

---

ଭଣ୍ଡିଦେବ ବା ଠକିଦେବ, ଶପଥ—ରାଣ, ଅମ୍ବର—ଲୁଗା, କଦମ୍ବବ୍ରତତୀ ମନ୍ଦିରେ—କେଳିକଦମ୍ବ ଲତାକୁଞ୍ଜରେ, ସଢ଼ାଇବା—କଷ୍ଟଦେବା ।

୩୨ । ଟୀକା—ବନବିହାରବର୍ଣ୍ଣନ :—ସରୋଜନେତ୍ରାସମାଜ ବିପିନମରନ୍ଦ ପାନେ—ପଦ୍ମନେତ୍ରାନାରୀସମୂହରୂପ ବନର ମକରନ୍ଦ ପାନରେ, ଷଡ଼ାସ୍ୟଜନକାହିତର—କାର୍ତ୍ତିକେୟ ପିତାଙ୍କର ଶତ୍ରୁ ଅର୍ଥାତ୍ କନ୍ଦର୍ପର, ଷଷ୍ଠବାଣ ବନିଲେ—କନ୍ଦର୍ପର ୫ ଗୋଟି ବାଣ, ମାତ୍ର ଶ୍ରୀକୃଷ୍ଣ ତାହାର ଷଷ୍ଠବାଣ ସ୍ୱରୂପ ହୋଇଥିଲେ । ଷଡ଼କ୍ଷରମନ୍ତ୍ର—ଓଁ ନମଃ ଶିବାୟ ଏହି ମନ୍ତ୍ର, ଅନଳ୍ପକଳ୍ପ—ବହୁଯୁଗ, ଷଡ଼ଙ୍ଗ-

ଗାଇ ଗୀତି, ଆଙ୍ଗ ହୋଇଲା ଶୋଭନ, ମୁରବାରବଲାମିନାମାନେ ନାଚିଲେ; ସହସ୍ରାକ୍ଷ ସ କୋଟି, ଦେବେ ବୃଷ୍ଟି ମଧ୍ୟେ ଗୋଟି, ହୋଇ ମୋଦେ ଦୁନ୍ଦୁଭି ବାଦନ ରଚିଲେ । ଷକାର ନିୟମ ସରଲ, ଷଟ୍‌କର୍ମ ନିରତ କବିରବି କହିଲେ ।

( ୩୩ )

ରାଗ—କାଫି

ହେଲେ ହରିହୟଭୂତ ଅଙ୍କ ମିଳିଲା ରେ । ପଦ ।

ହାସ ପୀୟୂଷ-ଶୀକର, ହୃଷ୍ଟମୁଖ ଶଶୀକର, ସନ୍ଦେହ ଅନ୍ଧକାରକୁ ଗିଳିଲା ରେ । ୧ । ହରଷେ ମୋ ଗୃହୁବାଣୀ, ହୃଦୟକଞ୍ଜକୁ ଆଣି, ହରିଣାକ୍ଷୀ ଯା ମେ କୋଳେ ଖେଳିଲା ରେ । ୨ । ହଜାରେ ଚୁମ୍ବିଲ ଘଷି, ଗଣ୍ଡେ ଗଣ୍ଡ ଇଷି ଇଷି, ଗିର ସଙ୍ଗେ କ ରସ ଝଟ୍କିଲା ରେ । ୩ । ହୃଦେ ଲଗାଇଲ ସ୍ତନ, ହରିତାଳ ତାଳ ଧନ, ମନ ଘନ ପରିରମ୍ଭେ ବଳିଲା ରେ । ୪ । ହରିଲ ବସନ ଯତ୍ନୁଁ, ହସି ବ୍ୟାଜେ ଉହୁଁ ଉହୁଁ, ଭୂଷୁଥିଲ ମୁଖେ ମାନ ଚଳିଲା ରେ । ୫ । ହରିଦଶ୍ୱଦେବସୁତା, ତଟ ନାଟ ତତ୍ପରତା, ହାଟକାଙ୍ଗୀ ଲାଭ ଫଳ ଫଳିଲା ରେ । ୬ । ହଟେ ପୁର ଅଭିଳାଷ, ହେବାର ମୁଁ ପୂର୍ଣ୍ଣତୋଷ, କବିରବି ବାୟୁଗୁରୁ କଳିଲା ରେ । ୭ ।

( ୩୪ )

ରାଗ—ସୋମ

କ୍ଷୀଣମଧ୍ୟମା ରେ, କ୍ଷଣେ ନୋହିବାଟି ଭିନ୍ନ,

କ୍ଷେମତନୁ ପର ହରିବା ଏ ଯଉବନ । ପଦ ।

କ୍ଷୋମରୂପିଣୀ ଚନ୍ଦ୍ରମୈରମଚୌର୍ଯ୍ୟ ଧୂର୍ଯ୍ୟତରାନନେ, କ୍ଷୁଣ୍ଣ ବାସବ ନୀଲ ଗ୍ରୀମଚ ଚୂର୍ଣ୍ଣକୁନ୍ତଳ ଶୋଭନେ, କ୍ଷୌଣୀଭୃଦ୍‌ବର ପୀବର ସ୍ତନ-

---

ବେଦ—ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଜ୍ୟୋତିଷ, ଛନ୍ଦ—ଏହି ଛ ଅଙ୍ଗ ସହିତ ବେଦ, ଷଡ଼ାରାତି ପ୍ରଥମ—କାମାଦି ଛ ଶତ୍ରୁର ପ୍ରଥମ ଅର୍ଥାତ୍ କାମ; ଷଡ଼ୁପାୟ—ସାମ, ଭେଦ, ଦାନ, ଦଣ୍ଡ, ଉପେକ୍ଷା ଓ ରସାନ୍ତର; ମାନଭଙ୍ଗ ନିମିତ୍ତ ନାୟକ ଅବଲମ୍ବିତ ଏହି ଛଅଗୋଟି ଉପାୟ ।

୩୩ । ଟୀକା—ଶ୍ରୀକୃଷ୍ଣ ରାଧିକାଙ୍କ ପ୍ରଣୟର ଅନୁସ୍ମୃତି କରୁଅଛନ୍ତି:— ହେଲେ—ଅକ୍ଲେଶରେ, ହରିହୟଭୂତ—ଇନ୍ଦ୍ରସମ୍ପତ୍ତି, ହାସପୀୟୂଷଶୀକର—ହାସ୍ୟରୂପ ଅମୃତର କଣିକା, ପରିରମ୍ଭ—ଗାଢ଼ ଆଲିଙ୍ଗନ, ବ୍ୟାଜେ—ଛଳରେ, ହରିଦଶ୍ୱଦେବସୁତା—ସୂର୍ଯ୍ୟକନ୍ୟା, ଯମୁନା; ହାଟକାଙ୍ଗୀ—ସୁବର୍ଣ୍ଣପରି ଗୌର ଅଙ୍ଗ ଯାହାର, ହଟେ—ବଳାତ୍କାରରେ, ପୁର—ପୂର୍ଣ୍ଣ କର ।

ମଣ୍ଡନେ, ଯମୁନାବନେ, କ୍ଷପାକରକରେ ଖେଳୁଥିବା ଅଳଙ୍ଗନେ । ୧ ।
କ୍ଷୌଦ୍ରସାର ସମାନଭାଷୀ ସୁ-କୁନ୍ଦସୁନ୍ଦରହାସୀ ରେ, କ୍ଷ୍ୱେଡ଼ଭୂଷିତକଣ୍ଠ
ପଦସରୋଜ ସେବନ୍ତୁ କାଶୀରେ, କ୍ଷୀବକୁଞ୍ଜରଗାମିନୀ ମୁଁ ଲଲାମ ଖୋସିଲି
ତୋ ଶିରେ, କ୍ଷାଳିତ ହୋଇ ତୋ ପ୍ରେମପୀୟୂଷ ରାଶିରେ । ୨ । କ୍ଷୀରନୀର
ସୁଧାଂଶୁ କୈରବ ବାରି ମୀନ ବରାବରେ, କ୍ଷେପିବା ପ୍ରତି ରାତି ବାସର
କାମକେଳି ଦରୋଦରେ କ୍ଷୁଦ୍ରଘଣ୍ଟି ସମୃଦ୍ଧ ନୂପୁର ହଂସକାଦ୍ଧ ନିନାଦରେ,
କ୍ଷମେ ପୂଆଇବା ମାର ତାପକୁ ମୋଦରେ । ୩ । କ୍ଷୁବ୍ଧ ଦୁଗ୍ଧ ସମୁଦ୍ର
ବୀଚି ବିକୀର୍ଣ୍ଣବିନ୍ଦୁ ଶୁଚିସ୍ମିତେ, କ୍ଷମ କୋମଳ ହେମଚମ୍ପକ-ଗୌରବଗ୍ରନ୍ଥ-
ମଣ୍ଡିତେ, କ୍ଷୋଦ ହିଙ୍ଗୁଳଲାଲ ଦନ୍ତ-ଦୁକୂଳଶୋଭନ ପଣ୍ଡିତେ, କ୍ଷିତିସୁର
କବିକଞ୍ଜବାନ୍ଧବବନ୍ଦିତେ । ୪ ।

---

୩୪ । ଟୀକା—ପୂର୍ଣ୍ଣକାମ ଶ୍ରୀକୃଷ୍ଣ ରାଧାଙ୍କୁ କହୁଅଛନ୍ତି :—କ୍ଷେମତନ୍ତୁ—ମଙ୍ଗଳସୂତ୍ର । କ୍ଷୌମରୂପିଣୀ—ଦୁକୂଳରୂପିଣୀ, ଚନ୍ଦ୍ରଗୁରୁମଚୌର୍ଯ୍ୟଧୂର୍ତ୍ତତରାନନେ—ଚନ୍ଦ୍ରର ଗୁରୁତ୍ୱ ଚୋରି କରିବାରେ ଅତି ନିପୁଣ ଆନନ ଯାହାର, ଅର୍ଥାତ୍ ଯାହାର ମୁଖର ସୌନ୍ଦର୍ଯ୍ୟ ଚନ୍ଦ୍ରର ସୌନ୍ଦର୍ଯ୍ୟ ଅପେକ୍ଷା ଅଧିକତର ମନୋହର । କ୍ଷୁଣ୍ଣବାସବ ନୀଳଭ୍ରମର ଚୂର୍ଣ୍ଣକୁନ୍ତଳ ଶୋଭନେ—ଶାଣଦ୍ୱାରା ଘଷା ହୋଇଥିବା ଇନ୍ଦ୍ରନୀଳମଣି ଓ ଭ୍ରମର ପରି ଚୂର୍ଣ୍ଣକୁନ୍ତଳଦ୍ୱାରା ପରିଶୋଭିତ । କ୍ଷୌଣୀଭୃଦ୍‌ବର—ପର୍ବତଶ୍ରେଷ୍ଠ, ପୀବର—ପୃଥୁଳ, କ୍ଷପାକରକରେ—ଚନ୍ଦ୍ର-କିରଣରେ, କ୍ଷୌଦ୍ରସାର ସମାନଭାଷୀ—ମହୁର ସାରପରି ଭାଷା ଯାହାର, ମିଷ୍ଟଭାଷୀ; ସୁକୁନ୍ଦ ସୁନ୍ଦରହାସୀ—ସୁନ୍ଦର କୁନ୍ଦପୁଷ୍ପ ପରି ହସ ଯାହାର, କ୍ଷ୍ୱେଡ଼ଭୂଷିତ କଣ୍ଠ—ବିଷଦ୍ୱାରା ଭୂଷିତ କଣ୍ଠ ଯାହାର, ମହାଦେବ; ପଦସରୋଜ ସେବନ୍ତୁ କାଶୀରେ—ବାରାଣସୀରେ ମହାଦେବଙ୍କ ପାଦପଦ୍ମ ସେବା କରିଥିବା ହେତୁରୁ; କ୍ଷୀବକୁଞ୍ଜର-ଗାମିନୀ—ମତ୍ତଗଜଗମନା, ଲଲାମ—ଭୂଷଣ, କ୍ଷାଳିତ—ଧୌତ, କୈରବ—କୁମୁଦ, ବରାବରେ—ସମାନରେ, ବାସର—ଦିନ, ଦରୋଦରେ—ପଶାଖେଳରେ, ହଂସକ—ପାଦର ଅଳଙ୍କାର ବିଶେଷ, କ୍ଷମେ—ଉତ୍ତମରୂପେ, କ୍ଷୋଦ—ଚୂନା, ଦନ୍ତଦୁକୂଳ—ଅଧର, କ୍ଷିତିସୁର—ବ୍ରାହ୍ମଣ, କବିକଞ୍ଜବାନ୍ଧବ—କବିସୂର୍ଯ୍ୟ ।



# ସଙ୍ଗୀତ କଳ୍ପଲତା

( ୧ )

ରାଗ—କାମୋଦୀ

ଆଜ କେ ଶିଖାଇଲା ରୁଷାକୁ ରେ, ରଙ୍କୁରଙ୍ଗୀଶିଶୁଦୃଶାକୁ ରେ; ଲଜ-
ମିଳିତ ମନ୍ଦ ବିକାଶ ବାସକୁନ୍ଦ ରମ୍ୟହାସିନୀ ବରଯୋଷାକୁ ରେ । ଘୋଷା ।

ଶୁଦ୍ଧାନ୍ତୁ ମୁଁ ବାହାର, ହେଲେ ଦୃଷ୍ଟି ଯାହାର
ଧାଉଡ଼େ ମୋ ବିହାର ଆଶାକୁ ରେ,
ଉଭା ହୋଇଲି ସମୀପେ, ନ ଚାହିଁଲା ସେ କୋପେ
ବୋଲିବା ସିନା ଦୁଷ୍ଟଦଶାକୁ ରେ । ୨ ।
ବାମ ତନାବା ପାଶେ, ଅସିତକେଶା ତୋଷେ,
ହସି ଫୁଲାଇ ଗୁରୁ ନାସାକୁ ରେ,
ପୁଲକୁଥାଏ ମରି ମୁଁ ଲଭୁଥିଲେ ଧୀରି,
ଶୁଣି ମୋ ସାଧାରଣ ଭାଷାକୁ ରେ । ୨ ।
ଅଧରୁ ସୁଧାଝର, ଦେଇ ଯେ ନାଶେ ମୋର
ବିଷମଶର-ଜ୍ୱର-ତୃଷାକୁ ରେ,
ଚନ୍ଦ୍ରାଙ୍କୁଶାନ୍ତୁ ହାସେ, ସାରିଦେଲା କି ଦୋଷେ,
ମତ୍ତୃଶବତି କଟିକୃଶାକୁ ରେ । ୩ ।
ଯାହାକୁ ଅଧିକୃତ, ଦେଉଥାଏ ସୁଦତୀ,
ଖୋମା ଉପର ଝରିଭୂଷାକୁ ରେ,
ଏହ୍ନ ସିନା ବିଚାର, କେହ୍ନ ସେ ହେଲା ପାର,
ମୁହଁ ନ ଚାହାଁ ଭଳି ଘୋଷାକୁ ରେ । ୪ ।

---

୧ । ଟୀକା—ରାଙ୍କୁରଙ୍ଗୀଶିଶୁଦୃଶା—ନାଡଆ ହରିଣୀଛୁଆର ଆଖି ପରି ଅକ୍ଷି ଯାହାର; ଲଜମିଳିତ ମନ୍ଦବିକାଶ—ଲଜ୍ଜାହେତୁରୁ ଅଳପ ପରିମାଣରେ ଯାହା ପ୍ରକାଶିତ ହୁଏ, (ହାସର ବିଶେଷଣ), ବାସକୁନ୍ଦରମ୍ୟହାସିନୀ—ସୁବାସିତ କୁନ୍ଦଫୁଲ ପରି ମଧୁର ହାସ ଯାହାର । ଶୁଦ୍ଧାନ୍ତୁ—ଅନ୍ତଃପୁରରୁ, ଆଶା—ଦିଗ, ମୋ

ଏବେହେଁ ଗୃହୁଁ ଭର୍ଗ- ମୋହନା ଅଷ୍ଟାଦୁର୍ଗ
ଧରାଙ୍କପଟସ୍ପର୍ଗ ବୃଷାକୁ ରେ,
ନ ରଚୁଁ ନଖେ ଏଣୀ- ଦୃଶାକୁ ପଦେ ବାଣୀ
ଖରଚୁ କହ ଧରାଭୂଷାକୁ ରେ । ୫ ।

( ୨ )

ରାଗ—ତୋଡ଼ିପରଜ

ରେ ସଙ୍ଗାତ, ରୁଷି ମୁଁ ବସିଲି ଗେଲେ, ମନ ମନସିଜ ଚକ୍ଷୁ ମୁଖ ଭୁଜ ଏମାନେ ମୋ ଶତ୍ରୁ ହେଲେ ରେ । ଘୋଷା ।

ଦେଲି ଯେ ଗୁମାନ ଲଞ୍ଚ ତୁ ଚଞ୍ଚଳ ନୁହ ମନ ବୋଲିକହି, କେବେ ନ ଛୁଇଁଲା ସେ ବ୍ରଜ ଛଇଲା ଶୋଭା ସମ୍ପତ୍ତିରେ ରହି ରେ । ୧ । ରଖି ଧୃତ ମୋର ବୋଇଲି ଯେ ଛାର ମାରକୁ ପାଣି ପ୍ରସାରି, ବାନ୍ଧ କୋଟି କୋଟି ବାଣ ନେଲା ହଟି ଦେଲା ମୋ ଆବୁର ସାରି ରେ । ୨ । ଚଳ କାଳି ମଥା ଜାଣି ଚପଳତା ସମ୍ମାନ ବୋଲି ମୋ ଡୋଳା, ନ ପଡ଼ି ଧରାରେ ମୁରଲୀଧରାରେ ରସି ରସି କଲା ଖେଳା ରେ । ୩ । ଏ ପାପ ଲପନ ଦେଖୁ ଥାଏ ଆନ ବେଳେ ସାଭିମାନ ପରି, ଜାଣି ସେହି କାଳ ରହିଲା କେବଳ ହାସ ଉଲ୍ଲାସରେ ପୂରି ରେ । ୪ । ଭିଡ଼ି ଯେ ରଖିଲି ତେବେ ଭୁଜବଲ୍ଲୀ ତାହାର ଆଶ୍ଳେଷେ ଠାକି, ଠେକି ହୋଇଲା କାଳେ ନ ରହିଲା ସ୍ତନମୂଳ-ଚେଳ ବାକି ରେ । ୫ । ବୋଲେ ଶ୍ରୀମୁକୁନ୍ଦଦେବ ଅତି ଯତ୍ନେ ବୁଝିଲି ନୟନ ପୁଣି, ଜାଣେ କି ମନ୍ତ୍ରର ହେଲା ମୋ ଅନ୍ତରଗତ ସେହି ନୀଳମଣି ॥

---

ବିହାରଆଶା—ମୁଁ ଯେଉଁ ଦିଗକୁ ବୁଲିବାକୁ ଯାଇଥାଏ; ତନାବୀ—(ଯାବନିକ) ଝରକା, ଲପିବା—କହିବା; ବିଶମଶର—ପଞ୍ଚବାଣଧାରୀ କନ୍ଦର୍ପ, ଚନ୍ଦ୍ରାକୃଶାନୁ—ଚନ୍ଦ୍ରାରୂପ ଅଗ୍ନି, ଝାସ—ଅଗ୍ନି ତାପ, କଟିକୃଶା—କ୍ଷୀଣକଟି, ଅଧିକୃତ—ଅଧିକାର, ସୁଦତୀ—ଉତ୍ତମ ଦନ୍ତ ଯାହାର; ଘୋଷା—(ଯାବନିକ) କ୍ରୋଧ, ଭର୍ଗମୋହନା—ମହାଦେବଙ୍କୁ ଯେ ମୋହିତ କରିପାରେ; ବୃଷା—ଇନ୍ଦ୍ର; ଏଣୀଦୃଶାକୁ କହ, ସେ ନଖରେ ଧରାଭୂଷାକୁ ନ ରଚୁଁ ପଦେ ବାଣୀ ଖରଚୁ ।

୨ । ଟୀକା—ମନସିଜ—କନ୍ଦର୍ପ, ମୁଁ ରୁଷି ବସିବାବେଳେ ମୋ ମନ, କନ୍ଦର୍ପ, ମୋ ଚକ୍ଷୁ, ମୁଖ ଓ ଭୁଜ—ଏହି ପାଞ୍ଚଟି ମୋର ଶତ୍ରୁ ହେଲେ, ଅର୍ଥାତ୍ ମୋ ରୁଷି ବସିବା କାର୍ଯ୍ୟ ଏମାନେ ବ୍ୟର୍ଥ କରିଦେଲେ (ତଳ ପାଞ୍ଚପଦରେ କ୍ରମାନ୍ୱୟରେ ଏମାନଙ୍କ କାର୍ଯ୍ୟ ବର୍ଣ୍ଣନା କରାଯାଇଅଛି ); ଆବୁର—ମହତ୍ତ୍ୱ, ମୁରଲୀଧର—ଶ୍ରୀକୃଷ୍ଣ, ଲପନ—ମୁଖ, ସାଭିମାନ—ଅଭିମାନଯୁକ୍ତ, ଭୁଜବଲ୍ଲୀ—ବାହୁଲତା, ଆଶ୍ଳେଷ—ଆଲିଙ୍ଗନ, ଚେଳ—ବସ୍ତ୍ର ।

( ୩ )

ତାଳ—ଅଠତାଳି

ମାନ ସୁମନା, କର ଦେ ମାନସୁ ମନ ରେ । ଘୋଷା ।

ଗିରିସମ ଜାଇ ରେ, ସ୍ୱମା, ଗିରିସମ ଜାଇ; ଦେଇ ମୁଁ ପାଇଛୁ ତୋତେ ଗିରୀଶ ମନ୍ଥାଇ । ୧ । ନାଗରାଜଗତେ ରେ ସ୍ୱମା, ନାଗରାଜଗତେ; ମୁଁ ତୋର ବୋଲି ବାଜୁଛୁ ନାଗର ଜଗତେ । ୨ । ତୋର ପରିକର ରେ ସ୍ୱମା, ତୋର ପରିକର; ଅଙ୍କ ସିନା ଉତେ ମୋତେ ତୋର ପରି କର । ୩ । ଫୁଟିଲେ ନିଆଳି ରେ ସ୍ୱମା, ଫୁଟିଲେ ନିଆଳି; ଜଳପି ଜଳପି ତୋତେ ଫୁଟିଲେନି ଅଳି ରେ । ୪ । ରମ୍ଭାଉରୁ ବସି ରେ ସ୍ୱମା ରମ୍ଭାଉରୁ ବସି; ଅଙ୍କେ ଥିଲେ ନ ଗଣେ ମୁଁ ରମ୍ଭା ଉରୁବଶୀ ରେ ।୫। ନବସୁରସା ରେ ସ୍ୱମା, ନବସୁରସା ରେ; ତୁ ପରି ମୋ ଅଙ୍କ ବିନା ନ ବସୁ ରସାରେ । ୬ । ହରିଚନ୍ଦନକୁ ରେ ସ୍ୱମା, ହରିଚନ୍ଦନକୁ; ଘେନ ଯଥା ବସନ୍ତରେ ହରିଚନ୍ଦନକୁ । ୭ ।

( ୪ )

ରାଗ—ପୂରବୀ

ବଂଶୀଧାରୀ, ସର ଯିବନି ଜୀବନେ କାଶୋଇ ହେ । ଘୋଷା ।

ବିରହରେ ସଖୀ ହୋଇଛୁ କାତର, ସରୁ ସରିଲାଣି ସରୋଜ ପତର, ଦେଖିଲି ସଖୀର, କଣ୍ଠରେ ମାତର, ଜୀବନକୁ ଅଛୁ ଧରି ହେ । ୧ । ଲାଗୁ ନ ଥିଲା ମୋ କରକୁ ନାଠିକା, ସଜନୀମାନେ ଦେଖି ହେଲେ ତାଠକା, ଧାଇଁ ଅଇଲି ନ ସହି ତାଙ୍କ ଉକା, ଥିବ କି ଯିବନି ସହି ହେ ।୨।

୩ । ଟୀକା—ହେ ସୁମନା, ମାନସରୁ ଅର୍ଥାତ୍ ମନରୁ ମନା କର ଦେ, ଅର୍ଥାତ୍ ମନରେ ମାନ ରଖ ନା । ଗିରିସମ ଜାଇ—ପର୍ବତସମାନ ପ୍ରଚୁର ଜାଇଫୁଲ; ଗିରୀଶ ମନ୍ଥାଇ—ମହାଦେବଙ୍କୁ ସନ୍ତୁଷ୍ଟ କରି, ନାଗରାଜଗତେ—ଶ୍ରେଷ୍ଠ ହାତୀ ପରି ଗତି ଯାହାର, ନାଗର—ବାଦ୍ୟ ବିଶେଷ, ଜଗତେ—ସଂସାରରେ, ତୋର ପରିକର—ତୋ ଗୃହକର, ନିଆଳି—ଫୁଲ ବିଶେଷ, ଫୁଟିଲେନି—ବିକଶିତ ହେଲେଣି ଓ ଅଳକଗଲେଣି; ଆଳି—ସଖୀ, ଜଳପିଜଳପି—କହି କହି, ରମ୍ଭାଉରୁ —ରମ୍ଭୋରୁ, କଦଳୀଗଛ ପରି ଉରୁ ଯାହାର, ରମ୍ଭାଉର୍ବଶୀ—ସ୍ୱର୍ଗବେଶ୍ୟା । ନବସୁରସା—ନୂଆରସିକା, ରସା—ପୃଥିବୀ, ହରିଚନ୍ଦନ—ଆଠଗଡ଼ର ରାଜା ଓ ଉତ୍କୃଷ୍ଟ ଚନ୍ଦନ ।

ନାସାଗ୍ରରେ ତୂଳା ଦେଲେ ଥରପର, ନ ଚଳିଲ ପରି ଦିଶିଲ ନାଗର,
ସଜନୀମାନେ ବସିଣ ସେହି ପୁର, ହା ରବରେ ଥିଲେ ପୂରି ହେ । ୩ ।
ତୁମ୍ଭ ଭଳି ଯେବେ ନୋହିଲ ପାତର, ଯଞ୍ଚୁରୁଛୁ ଶ୍ୟାମ ନ ଦେଇ ଉତ୍ତର,
ଅନ୍ତର୍ଗତେ ଯେବେ ଥିଲଟି ଅନ୍ତର, ଶଉ କାହିଁ କଲ ଗୌର ହେ । ୪ ।
ନାରିଥିଲେ ଜବାଧରୀର ସେବାରେ, ଆସ ହେ ରାଜୀବନୟନ ଯିବା ବାଟରେ,
ହଟି ବସିଅଛୁ ପରାଣ ନେବାରେ, ପାପୀ କାମ ଯମ ସରି ହେ । ୫ ।
ଦିନବନ୍ଧୁ ଥାଉଁ ବିରହ-ତୁଷାର, ନାଶ କଲେ ପଦ୍ମମାଳା ଏ ଅସାର,
ବୋଇଲେ କବିରବି ମାର କି ଅସାର, ହସିବେ ସିନା ଭଗାରି ହେ । ୬ ।

( ୫ )

ରାଗ—କାମୋଦୀ, ଆଦିତାଳ

କହିବାକୁ ଲାଜ, ସଖି ଯାହା ହେଲା ଆଜ । ଘୋଷା ।

ଯନ୍ତ୍ରୁଡ଼ି ଥିଲେ ଜଣା, ନ ଥିଲ ମୋତେ ବୀଣା, ଆଳାପେ ଲଗାଇଲି ଗେଲେ ଲୟ, କାନ୍ତ ମୋ ଗଣ୍ଡେ ଅସି ଚୁମ୍ବିଲେ ପରଶଂସି ମରଣୁ ବଳିଲେ ସେ ସମୟ ।୧। ଖସି ପଡ଼ିଲା କରୁ, ବିପଞ୍ଚୀ ଧରୁ ଧରୁ, ମେରୁ-ଗରୁଆ ହେଲା ଚଉଫୁଲ, ଟେକି ନୋହିଲା ମୁଖ, ତହିଁ ପଞ୍ଚବିଶିଖ, ଚଣ୍ଡୋଳ କଲା କେତେ କଲବଲ ।୨। ଚୁମ୍ବିଲେ ଅଙ୍ଗସୀମା, ଜାତ ପୁଲକରମା, ଶୀତ୍କାର ଉପୁଜିଲା ବାରମ୍ବାର, ନିବାଡ଼ ଭୁଜବନ୍ଧୁ, ଯାଉଁ ନ ଦେଲେ ବନ୍ଧୁ, ପଳାଇବାକୁ କାହିଁ ରାହା ମୋର ।୩। କେତେ କହିବୁ ଏତେ, ଦଶା ଲଭିଲି ଯେତେ, କି ନ କଲା ଏ ଲାଜ ଘେନ ମନେ । କପଟ ଗୋ ସଙ୍ଗାତ, ବିପରୀତ ସୁରତ, ରସକୁ ରସୁଥାନ୍ତି ବାମାମାନେ ।୪। ଭାଷଇ ଜନାନ୍ତର ଅବନୀ ପୁରନ୍ଦର ହେଲେ ହୋଇବ ଏକ ଗୁଣ୍ଠା ଲୋଟ, ଅନ୍ୟ ପାପ ସଙ୍ଗୀତ ବିଦ୍ୟାସଧରେ ଶଉ ନ ଦେବ ବୋଲି କଲି ସଂକଳପ ।୫।

---

୪ । ଟୀକା—ସରୁ ସରିଲଣି ସରୋଜ ପତର—ବିରହତାପ ଶାନ୍ତ ନିମିତ୍ତ ସାଧାରଣତଃ ପଦ୍ମପତ୍ରରେ ଶଯ୍ୟାଦି ରଚନା କରାଯାଏ, ତେଣୁ ଯୋଷାଙ୍କରୁ ପଦ୍ମପତ୍ର ସରିଗଲାଣି । ଦିନବନ୍ଧୁ—ସୂର୍ଯ୍ୟ, ଦୀନବନ୍ଧୁ—ଦୁଃଖୀର ସହାୟ ।

୫ । ଟୀକା—ବିପଞ୍ଚୀ—ବୀଣା, ପଞ୍ଚବିଶିଖ—କନ୍ଦର୍ପ, ଜାତପୁଲକରମା—ରୋମାଞ୍ଚଶୋଭା ଜାତ ହେଲା ।

( ୬ )

ରାଗ—କାମୋଦୀ । ତାଳ—ଏକତାଳୀ

ମନା ମୁଁ କରୁଥିଲି ଏହାଙ୍କୁ ଗୋ, ଅନା ନା ବୋଲି ବନ ରାହାଙ୍କୁ ଗୋ,
ଅନାଦର ମୋ ଗିରେ, କଲ୍ପ ଯେ ଏବେ ସ୍ମରେ,
ଲଭିଲି ଦୁଃଖ ହେଲି କାହାକୁ ଗୋ । ଘୋଷା ।

କୁଞ୍ଜ ସଞ୍ଚାରି ଶ୍ୟାମ, ଦେବତା ପରାକ୍ରମ, ଜାଣେ ବଳଇ ରଙ୍ଗ-ନାହାକୁ ଗୋ; ସାହସୁଁ ସିନା ସଖୀ, କ ଯୋଗେ ଦେଲି ଯୋଖି, ନବନୀତେ ତପତ ଲୁହାଙ୍କୁ ଗୋ । ୧ । ଯେବେ ଏ ଗୁହ୍ୟମୁହାଁ, ଶ୍ରବଣ ଦେଇ ନାହିଁ, ନାହୁଁଆ ଗୃହୁଁ ବଂଶୀକୁହାକୁ ଗୋ; ତେଜି ହଂସତୂଳି, କରନ୍ତା କି ସଞ୍ଚାଳି, ସଲିଳସିଞ୍ଚା ସର୍ବଂସହାଙ୍କୁ ଗୋ । ୨ । ଗନ୍ଧବ ଚମ୍ପା ଧଣ୍ଡା, ନିର୍ମିତ ଗଜଶୁଣ୍ଡା-ଦଣ୍ଡକୁ ନନ୍ଦ ଗୃହିଁ ଯାହାକୁ ଗୋ; ବିଶେଷେ ବିସନାଳ ଦଶିଲଣି ପ୍ରତୁଳ, ଆଜ କାହିଁଚ୍ଛୁ ସେହି ବାହାକୁ ଗୋ । ୩ । କଳାକେଶରୀ ବାଳୀ, ଧୃତ-ଦନ୍ତୀକୁ ଦଳି, ଦେଲଣି ଅସ ମନୋଗୁହାଙ୍କୁ ଗୋ; ଥରକେ ଯେବେ ଲୋକ, ନୋହିଲି ଜାଗରୂକ, କହିବା କେତେ ତୁହା ତୁହାକୁ ଗୋ । ୪ । କବିମିହିର ରାୟ, ଗୁରୁ କହଇ ଭୟ, ଲାଗୁଛୁ ଦେଖି ଚତ୍ୱେ ଏହାଙ୍କୁ ଗୋ; ଜାଣି ପାରିଲେ କଂସ, ଯେପରି କରିବ ଧ୍ୱଂସ, ଜଟିଳାସୁତଘରବୁହାଙ୍କୁ ଗୋ । ୫ ।

( ୭ )

ରାଗ—ଭୈରବ, ଅଠତାଳି

ପ୍ରିୟସହି, ଏତେବେଳୁଁ ଥାଅ ମୋଚିତ କରୁ ରେ,
ତହିଁରେ ମୁଁ ନାହିଁ ଅବଗାହୁ ରେ । ଘୋଷା ।

ପ୍ରଥମେ ପ୍ରବେଶକାଳେ, ଆଚ୍ଛାଦ ଅଙ୍ଗ ଦୁକୂଳେ, ଜଭା ହେବ ସିନା ତଳେ, କେଳି ତଳପକୁ ବଳେ, ଯେନାଏବେ, ସେହି ସ୍ନେହ ବାଢ଼ ରେ ।୧। ମାଳ ମନେ ଖେଳୁଥିବ, ପ୍ରଦୀପ ଯେ ଜଳୁଥିବ, ବିବେକ ତ ଝଲୁଥିବ,

---

୬ । ଟୀକା—ରାହା—ପଥ, ହଂସତୂଳି—କୋମଳ ଶଯ୍ୟା, ସର୍ବଂସହା—ପୃଥିବୀ, ଗନ୍ଧବ—ଗନ୍ଧଲଆ, ଗଜଶୁଣ୍ଡାଦଣ୍ଡ—ଚମ୍ପାଫୁଲରେ ନିର୍ମିତ ଗଜଶୁଣ୍ଡାକୃତ ପୁଷ୍ପରଚନା ବିଶେଷ, ବିସନାଳ—ମୃଣାଳ ।

୭ । ଟୀକା—ଦୁକୂଳ—ପାଟଶାଢ଼ୀ, ତଳପ ( ତଳ୍ପ )—ଶଯ୍ୟା, କରରୁହ—ନଖ, ଶିବା—ପାର୍ବତୀ, ତାହ୍ନ—ତାହାହିଁ, ସେହି କଥା ।

ଲକ ତ ଧ୍ରବଳୁଥିବ; ତାଙ୍କ ମୁଖ, ଅନାଇବ କେହ୍ନ ରେ । ୨ । ମଦନ-ମଦ ଅମଳେ, ଚେତା ନ ଥିବାରୁ ଭଲେ, ଲେଉବଶୁଁ ଅବା ଗଲେ, ପୁନଃ ପୁନଃ ଚୁମ୍ବ ଦେଲେ, ସ୍ଥିର ହୋଇ, ରହ୍ନ କ ନ ରହ୍ନ ରେ । ୩ । ବୋଲୁ ଯେ ଅଛୁ ବିଧାନ, ବାଜ କରରୁହ ମୁନ, ଦେହରେ ନ ରଖି ସ୍ଥାନ, ପୁଣ ଗାଢ଼େ ଅଲିଙ୍ଗନ, ଏତେ ଦାଉ, ପାରିବ କ ସହ୍ନ ରେ । ୪। ବିନତ ହୋଇ କହ୍ନଲେ, ଏତେ ଅବା ହେବ ହେଲେ, କ କରିବ ନୀବୀ ଛୁଲେ, ହଠରୁ ପ୍ରିୟ ରଚଲେ, ସହ୍ନବାର ପଡ଼ଇ କ ତାହ୍ନ ରେ । ୫ । ଅଷ୍ଟାଦୁର୍ଗନାଥ ଭଣେ, ତୋଷ ଗୋ ସଖି ଜଣାଣେ, ମଣ୍ଡି ମଣି ଆଭରଣେ, ବନ୍ଦିବା ଶିବାଚରଣେ, ଅମ୍ଭଲେ ମୁଁ, ଲେକହସା ହୋଇ ରେ । ୬ ।

( ୮ )

ରାଗ—କାମୋଦୀ । ତାଳ—ଝୁଲ

ଅଲଙ୍ଘ୍ୟ ହେବାରୁ ମୋ ରାଣ ପରାଣ ବନ୍ଧୁ ନାହା ଦନେ ଦନେ । ସହକେ ଦୟାଳୁ ଗୁଣ ପରପାଳୁ ମୋହପର ନିଧୁବନେ ରେ, କଶୋର, ସେ ଭାଳେ ଯେଉଁ ସମସ୍ତ, ତଳପ ଦୀପ ମୋ ମନ ନେତ୍ର ନିଶା ଏମାନେ କଛୁ ଜାଣନ୍ତି ରେ । ୧ । ଶ୍ରୀହସ୍ତ କଞ୍ଜଚରଣ ଆଭରଣନବହ ହେବାରୁ ମୂକ, ରତନମେଖଳା କ୍ଷୁଦ୍ର ଘଣ୍ଟିମାଲା, ହୁଏ ମହା ବାବଦୂକ ରେ, କଶୋର, ପକାଇ ନିପଟ୍ଟ ତାଳ, ଅଧୋମୁଖ ସୁନା କଳସ ଉପରେ ନଚ୍ଚଇ ନକ୍ଷତ୍ରମାଳ ରେ । ୨ । ମଣିମୟ ନଥ ନାଚୁଥା ତାହାକୁ ବିବାଦେ ଜଣିମା ପାଞ୍ଚେ, କମ୍ବୁଶିରେ ମାର ଦରପଣ ରଖି, ତହିଁ ତଳଫୁଲ ନାଚେ ରେ, କଶୋର, କ ମୋଦେ ଲଜ୍ଜାନାଗରୀ, ଦେଖୁଥାଇ ନାଟ ତା ପକ୍ଷ୍ମକବାଟ ଆଡ଼ ଆଡ଼ ପେଲ କର । ୩ । ନୀଳମେଘୀ ଶାଟୀ ଗଲ ପର ଭଙ୍ଗ ଖସାଇ ଲହସା ଖୋସା, ରଜତ ମୁଦ୍ରିକା ବାଣ୍ଟିଦେଲ ପର ସେ ସମୟ ମନ୍ଦହାସରେ, କଶୋର, ରତ ମନମଥ ଦୁହେଁ, ପଙ୍ଗୀର ପିଚକା ଖେଳୁଥିଲ ପ୍ରାୟେ ସ୍ୱେଦ

---

୮ । ଟୀକା—ନିଧୁବନ—କାମକୀଡ଼ା, ତଳପ—ଶଯ୍ୟା, ବାବଦୂକ—ବହୁଭାଷୀ, ମାର ଏଠାରେ ଶବ୍ଦାୟମାନ; କମ୍ବୁ—ଶଙ୍ଖ, ପଙ୍ଗୀର—ସୁବାସିତଜଳ, ଅଲେଖ—ଅନିର୍ବଚନୀୟ, ଘନସାର—କର୍ପୂର, ଚନ୍ଦନ; ଲୁଲିଲ—ମ୍ଲାନ ହୋଇ ଯାଇଥିବା, ବନରୁ—ତଆର ହୋଇଛୁ, କୁଳିଶ—ବଜ୍ର, ରଜତମୁଦ୍ରିକା—ରୌପ୍ୟମୁଦ୍ରା, ଟଙ୍କା ପ୍ରଭୃତ ।

ବିନ୍ଦୁ ଦିଶେ ଦେହେ ରେ । ୪ । ବେଳକୁ ବେଳ ବ୍ୟାକୁଳ କରିବାରେ ନାଗରେ ପଞ୍ଚବିଶିଖ, ଅଲେଖ ସୁଖ ଆସ୍ୱାଦନେ କମ୍ପାଇ ଦେଲ ବେଳେ ଚନ୍ଦ୍ରମୁଖ ରେ, କିଶୋର, ମୁକୁତା ଜାଲି ତାଟଙ୍କ, ଦୋହଲିବା ଦେଖି ଦୂର ହୁଏ ଆଖି ପୂର୍ବର ଦୁରିତପଙ୍କ ରେ । ୫ । ଚୁମ୍ବାଇ ଚୁମ୍ବି ମୋ ଅଧର ବଦନେ ପୀଡ଼ି ନେଇକଞ୍ଜ ଖୋସି, ଅତୁଲ୍ୟ ଅମୂଲ୍ୟ ଝଳା ଝଳମଳ ଗଣ୍ଡକୁ ମୋ ଗଣ୍ଡେ ଘଷି ରେ, କିଶୋର, ଯାହା ଭାବୁ ମଲି ଇଷି, ଅଖଣ୍ଡପ୍ରମୋଦ ପ୍ରବାହେ ମୋ ହୃଦ ଅନାୟାସେ ଯାଏ ଭାସି । ୬ । ଘନସାର ବାସ ପ୍ରଖର ନିଶ୍ୱାସ ଶରମଭରୁ ପ୍ରସରେ, ନିଦାଘେ ଲୁଲିତ ନବୀନ ମଞ୍ଜରୀ ପରି ଜମି ମୋର ଉରରେ ରେ, କିଶୋର, ଦେଇଅଛୁ ସୁଖ ଯେତେ, ତୋ ପଦରାଜୀବେ ଅଲତା ହେଲେ ମୁଁ ଶୁଝିବ ଅବା କେତେ ରେ । ୭ । ଏପରି ସମସ୍ତ ଛାଡ଼ି ଅସି ସିତ ବନଧର ନିଧି ଦେଶେ, ମୋ ହୃଦୟ ଫାଟି ନ ଗଲା ଯାହାଟି, ବନାନ୍ତୁ ନିଷ୍ଠ କୁଳିଶେ ରେ, କିଶୋର, ଲୋଡ଼ିଲେ ଆଉ କେ ଦେବ, ବ୍ରଜ ବରଜଲ ଦିନୁ ସେ ଗଲଣି କହେ ଶ୍ରୀମୁକୁନ୍ଦଦେବ ରେ । ୮ ।

( ୯ )

ରାଗ—ପୂରବୀ । ତାଳ—ଆଠତାଳି

ତୁହି ପରି, ମୋ ହୃଦୟ ମଣିମୟ ହାର ରେ । ଘୋଷା ।

ସହି ତୁ ମୋହର ସକଳ ସମ୍ପଦ, ମଦନ-ଫଣୀ ରଦନ-ବିଷଗଦ,
ଅଖିଳ ବିଭବ ଆଖଣ୍ଡଳ ପଦ, ଆରୋହଣପରମ୍ପରା ରେ । ୧ ।

ରସିକରାଜ ମସ୍ତକ ଅଳଙ୍କାର, ବିଦ୍ରୁମ ନବପଲ୍ଲବ ଗର୍ବହର,
ତୋ ପୟର ଲାକ୍ଷା-ରଞ୍ଜକ ଦାସ ମୁଁ ବିରହ ଦୁଃଖ ପାସୋରି ରେ । ୨ ।

କହିଥିବେ ସହୀ ଜାଣି ବା ନ ଜାଣି, ମଣିଲୁ କି ସତ ଶୁଣି ତାଙ୍କ ବାଣୀ
ଧରିଛୁ ବିରସ ବିବେକୀଶ୍ରେଣୀ, -ମସ୍ତକ ମଣ୍ଡନଡମ୍ବରି ରେ । ୩ ।

ନ ମଣ୍ଡିବୁ ସିନା ମୋର ବକ୍ଷସ୍ଥଳ, ହୃଦୟରୁ ପିବୁ କରି କେଉଁ କଳ,
ମୋ ମନ-ଗଗନ ତଟ ସମୁଜ୍ଜ୍ୱଳ ଉଦୟ ନିର୍ମଳ ତାରା ରେ । ୪ ।

ସଜନି ଗୋ ନବସୁରତ-ବିଭବ, ପାସୋରି ପିବ କି ମନୁ ଥିଲେ ଜୀବ,
ଦୀନ କବିରବି ଚିତ୍ତଙ୍କର ନବ ଘନରସ ଜଳଧାରାରେ । ୫ ।

---

୯ । ଟୀକା—ଫଣୀ—ସର୍ପ, ଆଖଣ୍ଡଳପଦ—ଇନ୍ଦ୍ରପଦ, ଆରୋହଣପରମ୍ପରା—ପାହାଚସବୁ, ବିଦ୍ରୁମ—ପୋହଳା ।

( ୧୦ )

ରାଗ—ଟୋଡ଼ି ପରଜ

ରେ ସଙ୍ଗାତ, ସେ ସିନା ବସିବ ରୁଷି;
ଯେ ଶିଖଣ୍ଡଚୂଳ ନୟନ-କୁନ୍ତରେ ଦିନେ ନୋହିଥିବ ଭୁଷି । ପଦ ।

ତରଣିଜା ତଟ, ସରଣିରେ ଭେଟ, ଯେ ରମଣୀ ହୋଇ ନାହିଁ; ନୀଳ ବାରି-ବାହ-ଦଳନ ବିଗ୍ରହ ଅଳପ ନ ଥିବ ଗୃହିଁରେ । ୧। ରସିକା-ବୃନ୍ଦରେ, ବସି ଆନନ୍ଦରେ, ରସି ଶ୍ୟାମ ପ୍ରେମ ଗୁଣ; ଯେ ଶୁଣି ନ ଥିବ, ସମ୍ମୁଖରେ ଥିବ, ପଶୁରୁ ହୋଇ ଅଜାଣ ରେ । ୨। ବସାଇଣ ପାଶେ, ଚାହାଁଇ ହରଷେ, ହସାଇ ଜହ୍ନୁକ ମନେ; ପୀଡ଼ାଇ ଓଷ୍ଠକୁ, ଭିଡ଼ାଇ ଅଙ୍ଗକୁ, ଜଡ଼ାଇ ନ ଥିବ ଦିନେ ରେ । ୩। ବସନ ଲୁଟିଆ, ରସ-ବିନୋଦିଆ, ତସରେ ନ ଥିଲେ ରସି; ଦୂରରୁ ଦୁର୍ଲ୍ଲଭ, ମୁରଲୀର ରବ, ଶ୍ରବଣେ ନ ଥିଲେ ପଶି ରେ । ୪। ଜଳନ୍ଧର ଇନ୍ଦ୍ର ନୃପ ରାମଚନ୍ଦ୍ର, ଶ୍ଳୋକରୁ ରସେ ଭଣି; ସ୍ମର ତରୁଆର ଧାରକେ ଶରୀର ଥରେ ନୋହିଥିଲେ ହାଣି ରେ । ୫ ।

( ୧୧ )

ରାଗ—ପଞ୍ଚମ ବରାଡ଼ି, ତାଳ—ତ୍ରିପୁଟ।

ଧନ୍ୟ ହେ ନବକିଶୋର, ସତୀ ଧୃତିଧନଚୋର, ନିଖିଳ ନାଗର ଶିରୋମଣି; ତୁମ୍ଭ ସଦୟ ମାନସ, କୁଳିଶରୁ କରକଶ, ବୋଲି ନ ଥିବାରୁ ଆମ୍ଭେ ଜାଣି ହେ, ଶ୍ୟାମବନ୍ଧୁ, ଆମ୍ଭ ସଖୀ ଲଭିଲା କି ଦଶା, ଦମ୍ଭେ ଉଭା ହେବା ନାହିଁ ଆଶା, ଦେଲେ ତରୁଣ କେଶରୀ, କୋଳେ କୁରଙ୍ଗୀ କିଶୋରୀ, ଦିଶିଲେ କି ବଞ୍ଚିବା ଭରସା ହେ । ୧ । ତୁଳି ତଳପ ଯୋଗାଇ, ଦେବାର କୋମଳ ଜାଇ, ଦଳ ଯାହା ଅଙ୍ଗେ ବସେ ବୁଡ଼ି; ମରକତ ଅରଗଳ ବଳୀୟ ବାହୁ ଯୁଗଳ, ଲଗାଇ କେଡ଼େ ନିବିଡ଼େ ଭିଡ଼ି ହେ, ଶ୍ୟାମଚନ୍ଦ୍ର, କି ଚଞ୍ଚଳ ଭାବ ଥିଲା କାଳି, ବାଜି ତୁମ୍ଭ ଅଙ୍ଗ ସଙ୍ଗଭାଲି, ଭଗ୍ନତକ୍ର ମନମଥ ବିଜୟୀ ମଙ୍ଗଳ ରଥ, ଗତଗୀତ ଚୋରାଇଛ ଗୁଳି ହେ । ୨ । ଯେଉଁ ଅଧର

---

୧୦ । ଟୀକା—ତରଣିଜା – ଯମୁନା, ସରଣି—ବାଟ, ନୀଳବାରିବାହ-ଦଳନ ବିଗ୍ରହ—ଯାହାର ଦେହଶୋଭା ନୀଳମେଘର ଶୋଭାଠାରୁ ମନୋହର, ତରୁଆର—ଖଣ୍ଡା ।

ପଲ୍ଲବେ, ଲେଖାଇ ନ ହଏ ଲବେ, ମୃଗମଦାଙ୍କେ ଲୀଳାଭଙ୍ଗୀ; ତୁମ୍ଭ ମହିମାରୁ ଅଙ୍ଗୀ-କାର କରିଛୁ ଶୁଭାଙ୍ଗୀ, ତହିଁ ଶୁଆଖିଆ ଷାମ୍ବ ଭଙ୍ଗୀ ହେ, ଶ୍ୟାମବନ୍ଧୁ, କଶୋରୀଙ୍କ କର କଲବଲି, ତୁମ୍ଭ ସୁଖ ତୁମ୍ଭେ ଲୋଡ଼ା କଲ, ହେମ ନବନୀତ ବଲ୍ଲୀ, କେହି ଧହିବଟି ବୋଲି, ହୃଦୟରେ ଦୟା ନ ବହିଲ ହେ । ୩ । ମହାମହୀଧର ଧରି, କଲ୍ପ ଆତପନ୍ନ ପରି, ଯେଉଁ କର ସେ ମୃଦୁ ବୟସେ, ସେ କରରେ ଯେବେ ଘନ-କେଶା ସମର୍ପିଲ୍ଲ ସ୍ତନ, କା ବଡ଼ାଣ ଦଳାଦଳି ରସେ ହେ, ଶ୍ୟାମବନ୍ଧୁ, ଫିଟି ତୁଟି ଯାଇଛୁ କାଞ୍ଚଲି, ସଞ୍ଚାଣର ଚଞ୍ଚୁପୁଟ ଗଲି, ଲୁଲିଯିବା ଚକ୍ରବାକ-ମିଥୁନମାଧୁରୀପାକ, ବାଲା ପୟୋଧରେ କରେ କେଳି ହେ । ୪ । ଅନ୍ୟାୟ ଢର୍ମିର ହଂସ, ଭୋଜବଂଶ ଅବତଂସ, କଂସ ଶାସୁଅଛୁ ବସୁମତୀ, ତୁମ୍ଭେ ଧନବାନ୍ତ ଘର କୁମର ହୋଇ ତୁମ୍ଭର, ମାନସେ ନୋହିଲ ଲବେ ଭୀତ ହେ, ଶ୍ୟାମବନ୍ଧୁ, କାଶୋରୀକ କର ବଢାବଟି, ଅସମ୍ଭବ ଭାବେ ହଠାହଟି, ଫିଟାଇ ନୀଳମ୍ବଯୋଠୀ, ନୀବାଢ଼ ନୀବୀକବାଟି, ମଦନମନ୍ଦର କଲ ଲୁଟି ହେ । ୫ । ଅରକେ ତ ଜଣାଗଲା, ଏଣିକ କା ରୁଧେ ଭଲା, ପାଇବ କେମା ପ୍ରିୟସଖୀ ପାଶ; ଲୁହିବା ତୁମ୍ଭର ବଂଶୀ, କପଟ ବିବେକଧ୍ୱଂସୀ, କେମନ୍ତ ମୋହନ ମନ୍ଦହାସ ହେ, ଶ୍ୟାମବନ୍ଧୁ, କେତେ ତୁମ୍ଭ ବିଚକ୍ଷଣ ଭାବ, ସବୁ ତ ଏଥର ଜଣାଯିବ, ବୋଲେ ମହୀ-ପତିଶ୍ରେଣୀ-ମୁକୁଟ ମସ୍ତକମଣି, ଗଜପତି ଶ୍ରୀମୁକୁନ୍ଦଦେବ ହେ । ୬ ।

( ୧୨ )

ରାଗ—କାମୋଦୀ, ତାଳ—ଆଢ଼

ବନ୍ଧୁ କଲ କା ଦୁର୍ବିଚାରକୁ ରେ, ବର୍ଜିଲ ଖଣ୍ଡ ଅର୍କ ଖୀରକୁ ରେ ।
ଅକ୍ଷରେ ନ କାଣିବା ମୂରୁଖ ପରି ନିଜ ବକ୍ଷରେ ଲକ୍ଷ୍ୟ କଲ ଶରକୁ ରେ ।ପଦ।

ସମ୍ବାଦ ଗୁଞ୍ଜ ଆଣି, ମୁଁ ଫିଙ୍ଗିଦେଲି ପାଣି,-ବନ୍ତ ବର୍ତ୍ତୁଳ ମୋତି ହାରକୁ ରେ; ଚଢ଼ାଇ ଦେଲ ଗୃହ ଚନ୍ଦନତରୁମୂଳେ କର୍କଟୀଲତା ଘରକୁ ରେ । ୧ । ଶ୍ୱପଚ ଗ୍ରାମ ମଝି, କୂପରେ ବୁଡ଼ିବୁଡ଼ି, କଲ ସ୍ନାନାଦ ବ୍ୟବହାରକୁ ରେ; ନ କଲ ମନୋରଥ ପଥରେ ଭଗୀରଥ ନୃପାନନ୍ଦନା-ଧାରାପାତକୁ ରେ । ୨ । ତେକି ପୁଳକୁଲ ଲୋଷ୍ଟ୍ର, ସର୍ବ ସୁପର୍ବ ଶ୍ରେଷ୍ଠ, ଚନ୍ଦ୍ରମଣି

---

୧୧ । ଟୀକା—ତରୁଣକେଶରୀକୋଳରେ—ଯୁବକ ସିଂହ କୋଳରେ, ମରକତଅରଗଳ—ମରକତମଣିରେ ତିଆରି ହୋଇଥିବା କିଳଣି, ଭାଲ—ଅସ୍ତ୍ରବିଶେଷ (ଭଲ୍ଲାସ୍ତ୍ର), ମୃଗମଦ—କସ୍ତୁରୀ, ଆତପତ୍ର—ଛତା ।

ଦେଉଳ ଦ୍ୱାରକୁ ରେ; ପବନ-ଜାତ-ଶବ ଭବନ ହେବା ଗ୍ରାବ-କୂଟକୁ କଲ ନମସ୍କାରକୁ ରେ । ୩ । ଅତି ଭାଗ୍ୟ ଅର୍ଜିତ, ଉର୍ବଶୀ ଊରୀକୃତ, ଅାଶ୍ଳେଷ୍ଟୁ ଗାଢ଼ ଅଙ୍ଗୀକାରକୁ ରେ; ବାନରୀ ନେତ୍ରପ୍ରାନ୍ତ ବତାଇବା ସଙ୍କେତ ସ୍ଥଳକୁ କଲ ଅଭିସାରକୁ ରେ । ୪ । ଶିଳାଶଯ୍ୟାକୁ ଡର, ନ ଥିବା ଗଡ଼ଡ଼ର, ନାମତନ୍ତ୍ରେ ବଖି ତୁଳି ସାରକୁ ରେ; ଶିରୀଷସୁକୁମାର, ମହାରାଜକୁମର କନ୍ଧରେ ବୁହାଇଲ ଭାରକୁ ରେ । ୫ । ଚିରଅଭ୍ୟସ୍ତ ଶସ୍ତ୍ର, ସଂସ୍କୃତ କରି ଅସ୍ତ୍ର, ବସି ଘୋଷିଲ ଶଣୀଠାରକୁ ରେ; ନ ଭଜ ଚକ୍ରାୟୁଧ, ତରିବ ବୋଲି ସଧ କଲ ସଂସାର ଅକୂପାରକୁ ରେ । ୬ । କବିସିଂହର ବୋଲେ ଏପରି ହେଲେ ହେଲେ, କ୍ଷମା ଉଚିତ ପରିଗ୍ରହକୁ ରେ; ଦୋଷ ମୁଁ କରିଅଛି, ଲଙ୍ଘିଲି ଯେବେ କିଛି, ତୋତେ ପତିବ୍ରତା ଅଗ୍ରଗାରକୁ ରେ । ୭ ।

( ୧୩ )

ଝୁଲା

ହରିରାଣି କାହିଁକି ଏତେ, ଆଜ ହରିବଣି ନ କର ମୋତେ । ଘୋଷା ।

ମୋତେ ମୋଦେ ହସି ତୁମ୍ଭେ ଯିବ ଖସି ମୋ ଦେହ ପୂରାଇ କରଜ କ୍ଷତେ । ବୁକୁର ଶାଢ଼ୀ ଟା ରଖି ଦେବ ନାହିଁ ମୁଁ କରତଳେ ଆଚ୍ଛାଦିବି କେତେ । ୧ । ଚିକୁର ବେଣୀ ତ ରଖି ଦେଉନାହଁ ମୁକୁରରେ ଦିଶୁନାହିଁକି ମୋତେ । ବ୍ରୀଡ଼ା-ଜଳଧିରେ ବୁଡ଼ିବି ମୁଁ କେହି ଉଭା ହେବ ସଙ୍ଗିନୀଙ୍କ ପୁରତେ । ୨ । ସଖୀଏ ମଳୟ ଗନ୍ଧେ ଥିଲେ ଲିହ ନ କର ତା ଅନୁରୋଧ କାହିଁତେ । ଖଣ୍ଡିକୁ ତ କେହି ସେପରି ନ କରେ, ଗଣ୍ଡିକୁ ମୋ ଯାହା କର ସୁରତେ । ୩ । ଅଜ ନ ପାରଇ ଭାଜିଛି ମୋ ବଳ ରାଜ କରାଉଛ କାହିଁତେ ଚିତ୍ତେ । ବାମଦେବପରପତ୍ନୀ ରଣେ ଜୟ କାମ ନୋହିଛି କି ଅଧର ଫଟେ । ୪ । ଠାକୁରାଣୀ ପ୍ରେମବାଣୀ ଶୁଣି ବଂଶୀପାଣି ପ୍ରେମମୟ ଅନୁରାଗତେ । ସଦନମୟେ ପୁଣି କୋଳରେ ଅଣିଲେ କବି ଦିନମଣି ରଚିଲେ ଗୀତେ । ୫ ।

---

୧୨ । ଟୀକା—ଗୁଞ୍ଜ—କାଇଁଚ, ପାଣିବନ୍ଧ—ଝଲଝଲ, କର୍କଟୀଲତା—କାକୁଡ଼ିଲଇ, ଶ୍ୱପଚ—ଚଣ୍ଡାଳ, ହାଡ଼ି; ସୁପର୍ବା—ଦେବତା, ଚନ୍ଦ୍ରଚୂଳ—ଶିବ, ଗ୍ରାବକୂଟ—ପଥରଗଦା, ଊରୀକୃତ—ଅଙ୍ଗୀକୃତ, ଆଶ୍ଳେଷ—ଆଲିଙ୍ଗନ, ଶିରୀଷ-ସୁକୁମାର—ଶିରୀଷଫୁଲପରି କୋମଳ, ଶସ୍ତ—ଉତ୍କୃଷ୍ଟ, ଅକୂପାର—ସମୁଦ୍ର ।

୧୩ । ଟୀକା—କରଜକ୍ଷତ—ନଖକ୍ଷତ, ବୁକୁ—ବକ୍ଷ, ଚିକୁର—କେଶ, ବ୍ରୀଡ଼ା—ଲଜ୍ଜା, ବାମଦେବପରପତ୍ନୀ—ଶିବଶତ୍ରୁ, କନ୍ଦର୍ପ; କାମ—କାମନା ।

( ୧୪ )

ରାଗ—ତୋଡ଼ି ପରଜ

ରେ ସଙ୍ଗାତ, ସରଗଲ ଲଜେ ଆଜ,
କର ବିଲୋକନ କାଲି କେହ୍ନ ଘନଶ୍ୟାମ ମୁଖ-ଦ୍ୱିଜରାଜ । ଘୋଷା ।

ସେ ଶୋଭା ଉଦିତ ସମ୍ଭୋଗରେ ଚିତ୍ତ ପୂରି ନ ଥିବାରୁ ମୋର; ରଜନୀ ରଥାଙ୍ଗୀ ଭଙ୍ଗୀ ସିନା ଅଙ୍ଗୀକାର କରେ ନିରନ୍ତର ରେ । ୧ । ନୀଳ ସୁଧାସିନ୍ଧୁ ପରି ତ ମୋ ବନ୍ଧୁ ଦିଶୁଥାନ୍ତି ଗୋଟିନାକ; କେବଳ ଅଧର ଚୁମ୍ବିବାରୁ ମୋର ନ ରହଇ ତ ବିବେକ ରେ । ୨ । ମୁଁ ରତିଭବନ ଭିତରେ ମୋହନ ମୂରତିକି ଯତ୍ନେ ଲେଖି; ଚୁମ୍ବୁଥିଲି ରଙ୍ଗ ପରି ହରିଣାଙ୍କ ଭୁଲି ମୁଦେ ବୁଜି ଆଖି ରେ । ୩ । ମୋହିତ ହେବାରୁ ସେ ସୁଖ ଅମଳେ ନୋହିଥିଲି ସାବଧାନ; କେହ୍ନ ଆସି ଶ୍ୟାମ ଚୁମ୍ବିଲେ ଚରମଦେଶେ ରହି ମୋ' ବଦନ ରେ । ୪ । ଲେଖାରେ ହେଲେ ତ ଲେଖାମାନଙ୍କରେ ଲେଖାରେ ନୋହି ମୁଁ ଠାଣି; ହଁଠ କରି ଅବା ଲଭାଇ ଦିଅନ୍ତି ଅଠକି ରହିଲି ପାଣି ରେ । ୫ । ଯାହା ହେଲା ମୋର ବାହାର ଭିତର ମନ୍ଦାକ୍ଷ ଭୟରେ ପୂର; ଅଷ୍ଟଦୁର୍ଗ ହରିହସ୍ତୁ ବୋଲେ ଗ୍ରେହ-ଧରା ପଡ଼ିଗଲି ପରି ରେ । ୬ ।

( ୧୫ )

ରାଗ—କାମୋଦୀ, ତାଳ—ଏକତାଳି

ଚରଣାୟୁଧବୃନ୍ଦ ରଟିଲ ରେ
ଅରବିନ୍ଦହିଁ ବନ୍ଧୁ ଫୁଟିଲ ରେ
କର କରୁଣା ବୋଲି
ଯେତେ ଗୁହାରି ରଚିଲି
ଗୁମାନ ଗଣ୍ଠି ନ ଫିଟିଲ ରେ । ଘୋଷା ।

ଖଟବଚ-ମୁଦ୍‌ଗର, ପ୍ରହାର କୋଟି ମୋର, ମୋଦପୀୟୂଷ ଘଟି ଫିଟିଲ ରେ; ପିଶାଚ ହୁର ଅସି, ଦେବାରୁ ମୋତେ ଗ୍ରାସି, ନିଶା ଚରମଦଶା ଘଟିଲ ରେ । ୧ । ରତିତମିରତତି ଗଲେ ଯେ ପ୍ରୀତିପ୍ରତିବନ୍ଧକ ଅନ୍ଧକାର

---

୧୪ । ଟୀକା—ଦ୍ୱିଜରାଜ—ଚନ୍ଦ୍ର, ରଜନୀରଥାଙ୍ଗୀଭଙ୍ଗୀ—ରାତିରେ ଚକ୍ରବାକୀ ପରି ବ୍ୟାକୁଳ; ହରିଣାଙ୍କ—ଚନ୍ଦ୍ର; ଚରମଦେଶ—ପୃଷ୍ଠଭାଗ; ଲେଖାମାନଙ୍କରେ—ଦେବତାଙ୍କ ମଧ୍ୟରେ; ମନ୍ଦାକ୍ଷ—ଲଜ୍ଜା; ହରିହସ୍ତ—ଇନ୍ଦ୍ର; ଏଠାରେ ରାଜା ।

୧୫ । ଟୀକା—ଚରଣାୟୁଧ—କୁକୁଡ଼ା; ଅରବିନ୍ଦ—ପଦ୍ମ; ମୋଦ-ପୀୟୂଷଘଟି—ଆନନ୍ଦରୂପ ଅମୃତର କଳସ; ତତି—ସମୂହ, ନୂଟି ହେଲେ

ଘଟିଲା ରେ; ନ ବୁଝିଲୁ ଗୁହାର, ତୋ ରୁଷା ଯେ ମୋହର ପରାଣ ଲୁଟିବାକୁ ବଟିଲା ରେ । ୨ । ଲୋଚନରେ ଲୋଚନ, ସଙ୍ଗମେ ଯେଉଁ ଦିନ, ରଚଇ ଅନୁରାଗ ଜଟିଳା ରେ; ନୁଟି ହେଲେ ବରଷୁଁ, ଏବେ ମୋର କି ଦୋଷୁ, କୁଟିଳାକ୍ଷି ତୋ ସ୍ନେହ ତୁଟିଲା ରେ । ୩ । ଭରମରମ୍ୟଦେହା, ଚରମ କଲୁ ଯାହା, ଜାଣିଲି ମୋ କରମ ଫାଟିଲା ରେ; ସକାମ କର ମାର, ପକାନ୍ତି ସୁକୁମାରୀ, ନ କାଟନ୍ତା ଏ ଯେଡ଼େ କାଟିଲା ରେ ।୪। କିଶୋରୀଙ୍କର ମନମୀନକୁ ଏ ବଚନ-ମିଷ ବଢ଼ଶଲାଠି ଛାଟିଲା ରେ; ଅଷ୍ଟାଦୁର୍ଗ ଭୂପତି, ମିଳିନ୍ଦ ହୋଇ ଦାମତି, ପଦାବ୍ଜ ମକରନ୍ଦ ଗୁଟିଲା ରେ । ୫ ।

( ୧୬ )

ରାଗ—କୁମ୍ଭକାମୋଦୀ, ତାଳ—ଆଦି

ପ୍ରିୟପକ୍ଷି କରିବ କି ବୁଝି ଗୋ, ଚଳନି ମୁଁ ଲାଜେ ସଜି । କେଉଁଗୁଣେ ରସି ନିକୁଞ୍ଜବିଳାସୀ ମୋ ସ୍ନେହେ ଅଛନ୍ତି ବୁଡ଼ି । ଘୋଷା ।

ମୁଁ ତ ଯଉବନ ଗୁମାନେ ମଦନମନ୍ଥର ଗୃହ ନ ଜାଣେ; ମୋତେ ଜଳକେଳିଅଳସୀ ମରାଳୀଗମନା ବୋଲନ୍ତି କେଣେ । ୧ । ବ୍ରଜେ କେତେ ବାମା ତାହାନ୍ତି ସୁଷମା ସମ୍ଭାରେ ରମ୍ଭାରୁ ବଳି; ସେ ଶିଖଣ୍ଡଚୂଳ ନୟନ-ଅଞ୍ଚଳ ଅନେ ତ ନ କଲ କେଳି । ୨ । ମୁଁ ଗୃହିଁ ନ ଜାଣେ, ଲବେ ନେଳି କୋଣେ ନଗୃଇ ଭୁରୁକୁ ଗେଲେ; ତେବେ ପୀତପଟ ନଟେ ଖଞ୍ଜରୀଟ-ନୟନା ମୋ ନାମ ଦେଲେ । ୩ । ମନ ଜାଣିବାକୁ ଯେଉଁ ଦିନ ଭଲେ ନ ମଜାଇ କଣ୍ଠଭୂଷା; ଶ୍ରଗୁଣ ନ ଦେଖ ଦ୍ୱିଗୁଣ ସେ ଦିନ କରନ୍ତି ଶୋଭା ପ୍ରଶଂସା । ୪ । ଏଥୁଁ ଅବା ଖେଦ ହେଉଛି କି ମୋଦ ନ ଜାଣନ୍ତି ଆନ ସଖୀ; ଷିତିପତି ବୃନ୍ଦ-ମୁକୁଟ ମୁକୁନ୍ଦଦେବ କେବଳ ମୋ ସାକ୍ଷୀ ।୫।

---

ବରଷୁଁ—କ୍ଷଣକାଳ ବର୍ଷକ ପରି ହୁଏ; ଭର୍ମ—ସୁବର୍ଣ୍ଣ; ମନମୀନକୁ—ମନରୂପ ମାଛକୁ; ବଚନ-ମିଷ-ବଢ଼ଶ-ଲଠି—କଥାରୂପ ବନଶୀଖଡ଼ା; ମିଳିନ୍ଦ—ଭ୍ରମର ।

୧୬ । ଟୀକା—ନିକୁଞ୍ଜବିଳାସୀ—ଶ୍ରୀକୃଷ୍ଣ; ମନ୍ଥର—ଧୀର; ମରାଳୀ—ହଂସୀ; ସୁଷମା—ଶୋଭା; ରମ୍ଭା—ସ୍ୱର୍ବେଶ୍ୟା; ଶିଖଣ୍ଡଚୂଳ—ମୟୂରପୁଚ୍ଛଧାରୀ; ଖଞ୍ଜରୀଟନୟନା—ଖଞ୍ଜରୀଟ ପକ୍ଷୀପରି ଚଞ୍ଚଳ ନୟନ ଯାହାର ।

( ୧୭ )

ରାଗ—ମୁଖାରୀ, ତାଳ—ଅଠତାଳି

ମୁଁ ହାରିଲି ହେଜ ଏତିକି ଗୋ, ଜୁହାରିଲି ଶ୍ୟାମ ପ୍ରୀତିକି ଗୋ; ଗୁହାରି କରିବି କାହା ଆଗେ କେତେ ଲୁହାରେ ବନାଇ ସ୍ତୁତିକି ଗୋ । ଘୋଷା ।

ଦେହକୁ ସମରପି ପ୍ରାଣ ତୁଲେ, ସ୍ନେହକୁ ସମ୍ପାଦିବା ସିନା ଭଲେ ଏ ଧନ୍ଦହନ୍ଦାନରେ କେ ମରିବ କରି ସଙ୍ଖାଳି ବିଶ୍ୱାସଘାତୀକି ଗୋ । ୧ । ନିସ୍ପୃହ କରି ନ ପାରଇ ଯାହା, କି ଅମଳଖିଆ କରଇ ତାହା, ଦାଉ ମୋତେ ଗାଳି ପଡ଼ଛି ମୁଁ ନ ପାରେ ପରୁଷ ପୁରୁଷ ଜାତିକି ଗୋ । ୨ । ଦୁଆଗଲି ଶାଳୀଦିନେ କି ଢଙ୍ଗ, ସୁଆଗ ନ ଥିବା ଜନେ କି ସଙ୍ଗ, ମୁଁ ଆଗ ବିବେକ ହୁଣ୍ଡି ହୃଦୟକୁ ସମର୍ପିଲି କାମକାତିକି ଗୋ । ୩ । ହସିଲି ରାଧାର ଏ କଞ୍ଜ-ନେତ୍ର, ଘଟିଲା ମୋ କର୍ମେ ଏ ଦଶା ମାତ୍ର, ଜଟିଳା ଜାଣିଲେ ସଂସାରୁ ସରିବି ପାଇ ଘୋର ଅପଖ୍ୟାତିକି ଗୋ । ୪ । ଶତ ପଦରେ ପଦେ ନାହିଁ ସତ, ସତ ପରି ହୋଇବାରୁ ପ୍ରତୀତ, ଅତପଃଶୀଳା ମୁଁ ଅନୁଭବ କଲି ଏ ତପତ ଉତପତ୍ତିକି ଗୋ । ୫ । ଶିଖଣ୍ଡଚୂଳିଆର ଗୁଣ ତୁଲେ, ଏ ଖଣ୍ଡ ଅଙ୍ଗୁ ବୋଲି ଜାଣିଥିଲେ, ଅଖଣ୍ଡ ବିଶ୍ୱାସ କରନ୍ତି କି ଭଲେ ଜଗଦ୍ଦେବ ଏ ଭାରତୀକି ଗୋ । ୬ ।

( ୧୮ )

ରାଗ—କାମୋଦୀ, ତାଳ—ଏକତାଳି

କାହିଁରେ ମନ ସହି, ପ୍ରସନ୍ନ ହେଉ ନାହିଁ, ଏଥିକି କହ ମୋର ଗତିକି ରେ; କି କରି ଅରଜିବି, କି କରି ବରଜିବି, ସେ ନବ ଘନଶ୍ୟାମ ପ୍ରୀତିକି ରେ । ପଦ ।

ଯୁଗଠାରୁ ଅଧିକ ହୋଇଲାଣି ପଲକ, କେମନ୍ତେ ସମ୍ଭାଳିବି ଧୃତିକି ରେ । ତ୍ରିଭୁବନମୋହନ ବିଷମ ବଂଶୀସ୍ୱନ କାଢ଼ୁଁ ଟାଣିଲା ମୋର ସ୍ମୃତିକି ରେ । ୧ । ଇନ୍ଦ୍ରନୀଳକପାଟପୁଟରୁଚି ସେ ନଟବର ନୀଳମଣି

୧୭ । ଟୀକା—ପରୁଷ—ନିଷ୍ଠୁର; ଦୁଆଗଲି—କଟା ହୋଇଥିବା, ସୁଆଗ—ସ୍ନେହ; ଅମଳ—ନିଶା; କାମକାତି—କନ୍ଦର୍ପର ଅସ୍ତ୍ର; ଅତପଃଶୀଳା—ଯେ ତପସ୍ୟା କରିନାହିଁ, ଅପୁଣ୍ୟବତୀ; ତପତ—ଉତ୍ତାପ ।

୧୮ । ଟୀକା—ଇନ୍ଦ୍ରନୀଳକପାଟ ପୁଟରୁଚି—ଇନ୍ଦ୍ରନୀଳମଣିରେ ତିଆରି ହୋଇଥିବା କବାଟ ଆବରଣ ଶୋଭା; ରବିନନ୍ଦନା—ଯମୁନା; ଗରଳ—ବିଷ;

ଘାତକ ରେ । ମାନସେ ଭାବି ଭାବି କେମେ କି ଘାତ ଦେବି କୁଳବରତ ଜାତନାତକ ଗୋ । ୨ । ଗରଳ ଗିଳି ଅବା ରବିନନ୍ଦନା ସେବା-ବାଧିରେ ବଳାଇବି ମତକ ଗୋ । ଅବା ଶ୍ୟାମ ସଙ୍ଗତ ଲଭି ସୌଭାଗ୍ୟବତୀ ମଣ୍ଡଳେ ଚେକାଇବି ଛତକ ଗୋ । ୩ । ନିକୁଞ୍ଜେ ସତେ ବେଳେ ଧେନୁ ବସିବି କୋଳେ ସେ ନବକିଶୋର ମୂରତକ ଗୋ । ସରତେ ନାହିଁ ମୋର କରଟେ ମଦନର ବସି ପାରିବି କି ବରତକ ଗୋ । ୪ । କହେ ଶ୍ରୀ ଘୋଟରାୟ ନୃପତି କୁବଳୟନେନେ ଲପନ-କଶାପତକ ଗୋ । ଦେଖାଇ ଦେଇ ଥରେ ଏବେ ଭାଗ୍ୟପଥରେ ପକାଇ ନେବେ ଅଙ୍କାରତକ ଗୋ ।୫।

( ୧୯ )

ରାଗ—ରେଗୁପ୍ତ, ତାଳ-ଆଠତାଳି

ଜଣାଥିଲି କି ମୋତେ ଏ ରୀତି ଗୋ, ଛଣାସୁଧା ସରପଣାରୁ ମଧୁର ଲାଗୁଥିଲି ଶ୍ୟାମପ୍ରୀତି ଗୋ । ଘୋଷା ।

ଲୁଣି ମଣିଲଣି ମଧୁସ୍ୱରକୁ, ଶୁଣି ତା ବିଷମ ବଂଶୀସ୍ୱରକୁ, କି ବାଇ ହୋଇଲି କିଭାଇବି ବୋଲି ସ୍ମର-ଧନଞ୍ଜୟ-ହେତି ଗୋ । ୧ । ମହୀତଳେ ଯେତେ ଧୂର୍ତ୍ତ ପୁରୁଷେ, ସହି ସବୁରି ପରମଗୁରୁ ସେ, ବୁଝୁ ସେ ସ୍ନେହକୁ କୁହାର ମୁଁ ହାରି ରହିଅଛୁ ଲଭି ଭୀତି ଗୋ । ୨ । ତାରତମ୍ୟ ସେ ନ ଜାଣେ କିପଟ, ତାର ତନୁ ଗୋଟିଯାକ କପଟ, କଳାବତୀକୁଳ ମାରଣେ କେବଳ କରିଅଛୁ ପରଚତି ଗୋ । ୩ । ଅସିବି ମୁଁ ବୋଲି ଦେଇ ଭାଷାକୁ, ବାସି କଲି ଯେ ମୋ ଫୁଲଭୂଷାକୁ, ତୁ ହେଲେ ପହିଲି ଥରେ ନ କହିଲୁ ସେ କିତବର ଅମୀତ ଗୋ । ୪ । କିଚୋଳରେ ହେଲନି ମୋ ଅଳୁଚ, ପୀତପଟ ସେ କାହିଁକି ଧରୁଛୁ, ତାହାର ସଦୃଶ ପିନ୍ଧୁଥାଉ ବାସ ଯା ତୁଲେ ମାତୁଛୁ କିତ ଗୋ । ୫ । ଶୁଣି ଏପରି ସନ୍ତୋଷ ଗିରକୁ, କିଜ ନୟନେ ଥକାଇ ନୀରକୁ, ଆଳି ପ୍ରବୋଧିଲେ କଶୋରୀକି ବୋଲେ ଅଷ୍ଟଦୁର୍ଗ ଧରାପତି ଗୋ । ୬ ।

---

କରଟେ—କରଟନାମକ ଅସୁରେ, କୁବଳୟ—ନୀଳ ପଦ୍ମ, ଲପନ—ମୁଖ, ଲପନକଶାପତକ—ମୁଖଚନ୍ଦ୍ରକୁ ।

୧୯ । ଟୀକା—ସ୍ମରଧନଞ୍ଜୟହେତି—କନ୍ଦର୍ପ ରୂପ ଅଗ୍ନିର ଶିଖା, ପରଚତି—ପରଚୟ, କିତବ—କପଟୀ, କିଚୋଳ—ପ୍ରଚ୍ଛଦପଟ, ଘୋଡ଼ହେବା ଲୁଗା; ଆଳି—ସଖୀ ।

( ୨୦ )

ରାଗ—ସାବେରୀ, ତାଳ—ଅଦ

କର କ୍ଷମା ରେ, ରତି ପ୍ରତିମା ତୁ କର କ୍ଷମା ରେ,

ନ ଥିଲି ମାଜଣା, ବୋଲି ମୋତେ ଜଣା । ଘୋଷା । *

କେଉଁ ପ୍ରତିହାରଣୀ କି ଦାସୀ, କନ୍ଧ୍ୟାନ୍ତା ଯେବେ ଧାଇଁ ଅସି, ତା ନ ମାନ୍ଧ୍ୟା ପଶିଥିଲେ ହାସି, ମାନ ଉଚିତ ମୋଠାରେ ତନୁମଧ୍ୟମା ରେ । ୧ । ବାର ପାର ନାହିଁ ରେ ସୁକେଶି, ବାର ମଧ୍ୟ ତୁ ଥିଲୁ ବଳସି, ଗୃହପାଶେ ଘେରିଥିଲେ ଦାସୀ, ଭାର ନିତମ୍ବ ସ୍ତନ-ଜଘନ-ସୁଷମା ରେ । ୨ । ଭିଡ଼ି ରଦନେ ବସନାଞ୍ଚଳ, ତଡ଼ିଲ୍ଲତାରୁ ହୋଇ ଚଞ୍ଚଳ, ବଳାଶିଞ୍ଜିତ କରି ପ୍ରବଳ, ପଳାଇ ଯା ମଣ୍ଡିଦେଲୁ ମଣ୍ଡପସୀମା ରେ । ୩ । ଦାଉ ପାଇ ମୁଁ ହେଜାଲି ଏବେ, ଅଉ ଏମନ୍ତ କରିବ ଯେବେ, ସାନ୍ତ ଦେବୁ ମୋତେ ପଦ୍ମଭବେ, ବାରିଜାକ୍ଷୀ ପୀନସ୍ତନେ ଆଜକ କମା ରେ । ୪ । ଶୁଣି ଶ୍ରୀକୃଷ୍ଣ ବିନମ୍ର ବାଣୀ, ହରଷରେ ସେ ରମଣୀମଣି, ନିଧୁବନ ରଚିଲେ ସେକ୍ଷଣି, ବୋଲେ ବସୁଦୁର୍ଗ ବସୁନ୍ଧରା-ସୁତ୍ରାମା ରେ । ୫ ।

( ୨୧ )

ରାଗ—ଜୌନପୁର ତୋଡ଼ି, ତାଳ—ଅଠତାଳି

ଜଣା ପଡ଼ିଲୁ ରେ, ବଣାମୃଗାକ୍ଷି ତୋ ଗୃହଲ;

ଅଣାଇ କପଟେ ବାଣା କରି ବାଟେ ଖଣାକୁ ଦେବାରେ ପେଲ । ଘୋଷା ।

ଚରମ କରିବା କ୍ଷଣେ ଜନମାଉ ମୋର ମନେ ଘୋର ବ୍ୟଥା, ପରମ ଦୟାଳୁ ପତାକା ଟେକାଇ ଧରମ ନିକି ଏ କଥା । ୧ । ସତୁରି ସଂଖ୍ୟା ଦୁର୍ଗଣ ଘେନି ହେଉ ସତୁରିଖୋରଙ୍କୁ ସାହା, ଚତୁରି ହୋଇ ବିଶ୍ୱାସି-ଜନ କଣ୍ଠେ କତୁରି ଚଳାଉ ଯାହା । ୨ । ଶିରୀଷଦେହା ଯା ବକ୍ଷରେ ବହୁଛୁ ଗିରିସମ ଶୋଭା ସ୍ତନ, ଗୁରୁ ସଦୃଶ ସେ ଶିଖାଇଛୁ ପରା ପୁରୁଷମାରଣ-

---

୨୦ । ଟୀକା—ମାଜଣା—ସ୍ୱାନ, ପ୍ରତିହାରଣୀ—ସ୍ତ୍ରୀ ଦ୍ୱାରୀ, ତନୁ-ମଧ୍ୟମା —କ୍ଷୀଣକଟି, ଶିଞ୍ଜିତ—ଅଳଙ୍କାର ଧ୍ୱନି, ରଦନ—ଦନ୍ତ, ବସନାଞ୍ଚଳ—ଲୁଗାକାନି, ପୀନସ୍ତନେ—ପୃଥୁଳ ସ୍ତନରେ, କମା—ରଖ, ନିଧୁବନ—ରତିକ୍ରୀଡ଼ା, ସୁତ୍ରାମା—ଇନ୍ଦ୍ର ।

୨୧ । ଟୀକା—ଖଣା—ଖଣି, ଖାତ; ଚରମ—ପିଠି, ସୁଧାକଳସ—ଅମୃତ କୁମ୍ଭ, ଉତ୍ସଙ୍ଗ—କୋଳ, ପୀୟୂଷ—ଅମୃତ ।

---

* ପାଠାନ୍ତର—'ଜଣା ନ ଥିଲି ମାଜଣା, ହେବେ ବୋଲି ଯେମା' ।

କ୍ଷମ । ୩ ରଖାଇ ଅନେକ ଦିନ ଉପବାସେ ଦେଖାଇ ସୁଧା କଳସ, ନ ଖାଇଲେ ମଲି ମଲି ବୋଲୁଥାଅ ଚଖାଇ ନ ଦେଅ ଲେଶ । ୪ । ହସନ୍ତୁ ଭଗାରି ବୋଲି କିପାଁ ମୋର ଅସନ୍ତୁଷ୍ଟ କରୁ ରଙ୍ଗ, ବସନ୍ତୁ ଉତ୍ସଙ୍ଗେ ମୋର ଥରେ ଭଲ କହନ୍ତୁ ସିନା ମରଙ୍ଗ । ୫ । ଝରଇ ପୀୟୂଷ ଯେଉଁ ବଚନରୁ ହରାଇ ପ୍ରାଣ ସେ ଗେଲେ, କରଇ ମୁଁ ଶଙ୍କା ଏଣୁ କୃଷ୍ଣଚନ୍ଦ୍ର ନରଇନ୍ଦ୍ର ଦେବ ବୋଲେ । ୬ ।

( ୨୨ )

ରାଗ—କାମୋଦୀ, ତାଳ-ଏକତାଳି

ନିରତେ ମୁଁ ଅଠକୁ ଅଠକୁ ଗୋ, ଗିର ନ ଦେଇ ଶ୍ରୁତିତଟକୁ ଗୋ, କି ରସ ଲୋଭେ ଇନ୍ଦୀବରନେତ୍ରା କାଳିନ୍ଦୀ ତଟକୁ ଧାଇଁଥାଏ ହଟକୁ ଗୋ । ଘୋଷା ।

ଛଇଳାକୁ ପୁଚ୍ଛୁ ତ, ଆପଣେ ପରି ଶତପୁଟହାଟକୁ ବଳି ଝଟକୁ ଗୋ, କି ଦିଶିଲାଣି ତନୁ ନ ମାନି ଗଲା ଦିନୁ ବଂଶୀବଟ ନିକଟ ଭେଟକୁ ଗୋ । ୧ । କେ କହୁଅଛୁ ଧାଇଁ ବୁଡ଼ି ଆସୁ ତ ଯାଇ ଗୋପ ମଥୁରା ବେନି ହାଟକୁ ଗୋ । କେଉଁ କିଶୋରୀ ଭଲ ହେଲାନି ଗୃହିଁ ଝଲମଲ-ଚନ୍ଦ୍ରକାନ୍ତିରୁ ନାଟକୁ ଗୋ । ୨ । କପଟେ କଳି କରୁଥାଏ ଏ କରଭୋରୁ ଶ୍ୟାମଗୁଣ କହିବା ଭଟକୁ ଗୋ, ଭଜୁଥାଏ ତା ଦେହସଙ୍ଗୀ ସମୀର ସ୍ନେହବଶରୁ ବାତାୟନ ତଟକୁ ଗୋ । ୩ । ଇଚ୍ଛା ନ କଲା ରାଜହଂସତୂଳତୂଳି ଶେଯ ସ୍ୱଚ୍ଛଣୀପଡ଼ା ଦନ୍ତଖଟକୁ ଗୋ । ରୂପଜିତେ ଫରମାସୀ ଅଣାଇଛୁ ସୁକେଶୀ, କମଳକେଶଲସ୍ତକୁଟକୁ ଗୋ । ୪ । ଏବେ ହେଲେ ଏ ଭୀରୁ ନ ନିବର୍ତ୍ତିଲେ ଉରୁ-ସ୍ତମ୍ଭେ ବନ୍ଧାଇ ପୀତପଟକୁ ଗୋ, ହେଜ ଆତୁର ଧ୍ୱଂସ ଦେଖାଇ ଦେବା କଂସକଟକୁ ଅସିବାର ଭଟକୁ ଗୋ । ୫ । ଏହା ଚରଣକଞ୍ଜ ଚୁମ୍ବି ଜାଣିଛୁ କୁଞ୍ଜ ମନ୍ଦିରେ ସେ ବିଟମୁକୁଟକୁ ଗୋ, ଲଗାଇ ଦେଇଥିବ ଏଣିକି ତ ମୁଁ କବିତପନ ମନମଧୁଲିଟକୁ ଗୋ । ୬ ।

---

୨୨ । ଟୀକା—ଅଠକୁ ଅଠକୁ—ଅଟକାଉଁ ଅଟକାଉଁ, ବନ୍ଦ କରୁଁ କରୁଁ; କାଳିନ୍ଦୀତଟକୁ—ଯମୁନାକୂଳକୁ, ଶତପୁଟହାଟକୁ—ଅତି ଉଜ୍ଜ୍ୱଳ ସୁବର୍ଣ୍ଣକୁ, ରାଜହଂସତୂଳ ତୂଳି ଶେଯ—ରାଜଭୋଗଯୋଗ୍ୟ ସୁକୋମଳ ତୂଳାଗଦି, ବାତାୟନ—ଝରକା, ଦନ୍ତଖଟ—ହାତୀଦାନ୍ତରେ ନିର୍ମିତ ଖଟ, କମଳକେଶଲସ୍ତକୁଟ—ନୂଆ ପଦ୍ମପତ୍ରସମୂହ, ଆତୁର—ମହତ୍ତ୍ୱ ।

( ୨୩ )

ରାଗ—କାମୋଦୀ, ତାଳ—ଆଠତାଳି

ଆଜ କି ସହି ସହି କରିବ ଗୋ, କହ୍ନ ମହତ ସିନା ସରିବ ଗୋ । ଘୋଷା ।

ଶ୍ୟାମଗୁଣ ପରଶି, ଚିତ୍ତ ଭିତରେ ସଖି, ରଖିଲଣି କପରି ଭରିବ ଗୋ; ମିଶି ଗଲଣି କ୍ଷୀର,—ଭାଣ୍ଡରେ ଯେବେ ଖାର, ଘଣି କେ ସ୍ୱାଦୁବାର ପାରିବ ଗୋ । ୧ । ବୁଝିଲଣି ମରଜି, ଆଜ କି ହୋଇ ରାଜି, ନିକୁଞ୍ଜେ ତୋ ସଙ୍ଗେ ବିହରିବ ଗୋ; ସୁଧାରେ ବିଷ ଦେଇ ଯନ୍ତ୍ରେ ଘଣିଲେ ନେଇ, ତହୁଁ କି ମଧୁ ଆଜ ଝରିବ ଗୋ । ୨ । ଦେଲଣି ସ୍ନେହ ଭାଙ୍ଗି ତୋଠାରୁ ସେ ଶୁଭାଙ୍ଗୀ ଆଜ କି ତୋ ବୋଲ ସେ କରିବ ଗୋ; ଛେଦି ପାଦପମୂଳ, ସିଞ୍ଚିଲେ ନେଇ ଜଳ, ସେ କି ନବପଲ୍ଲବ ଧରିବ ଗୋ ।୩। ଅଷ୍ଟଦୁର୍ଗ ଅବନୀ ପତି ଭାଷେ ସଜନି ଆଜ କି ତୋ ଦୁଃଖ ସେ ହରିବ ଗୋ; ପରଖଦେବା ଲାଞ୍ଚ, କଳଣି ଯେବେ ପାଞ୍ଚ, ପଞ୍ଚବାଣକୁ ସେ କି ଡରିବ ଗୋ । ୪ ।

( ୨୪ )

ରାଗ—ଭୈରବୀ, ତାଠ—ଆଠତାଳି

ଶ୍ୟାମସମ କମନୀୟ ନାହିଁ ଆଉ,

ତା ବାହୁଭଙ୍ଗୀରେ ମୋର ଧନ ଯାଉ । ଘୋଷା ।

କି ସୁନ୍ଦର ପୀତପଟ, ତ୍ରିଭଙ୍ଗ ମୁରଲୀନଟ, ତା ଶିର ମୁକୁଟ ଧଶେ ଦାଉ ଦାଉ । ୧ । ଅଳି ମଙ୍ଗଳାଙ୍କୁ ଜଣା, ଥିଲେ ନ ଥିଲେ କରୁଣା, ନୟନସମ୍ପତ୍ତି ମୋର ଜୀଇଥାଉ । ୨ । ପଡ଼ିଗଲେ ତା ନଜରେ, ମଦନ ମାଦକ ଶରେ, ନାରୀ ହୃଦୟରୁ ଖସି ପଡ଼େ ହାଉ । ୩ । ନିନ୍ଦିଲେ ନିନ୍ଦନ୍ତୁ ଜନେ, ତା ପଛେ ମୁଁ ବନେ ବନେ, ଶିରେ ଘେନି ବୁଲୁଥିବି ତା କଠାଉ । ୪ । କବିରବି ଭାଷେ ରସେ, ମନମଥ ରତିନାଶେ, ତା ପ୍ରେମ-ସାଗରେ ଚିତ୍ତ ବୁଡ଼ିଯାଉ । ୫ ।

( ୨୫ )

ରାଗ—ତୋଡ଼ିପରଜ, ତାଳ ଏକତାଳି

ପରାଣ ଘେର କି ଲୋଡ଼ା ରେ ସଙ୍ଗାତ,

ପ୍ରିୟଜନ-ପ୍ରୀତି ପୀୟୂଷ-ପ୍ରବାହ ହୁଅଇ ଯେବେ ଖଦଡ଼ା ରେ । ଘୋଷା ।

ପାସୋରେ ହୃଦୟ ଭିତରୁ ସଦୟ ପଣ ପରମ ମୁହାଁସ; ପେଟଯାକ ପୁରିଥିବ ଯେବେ କୂଟ ମୁଖେ ଥିବ ମନ୍ଦହାସ ରେ । ୧ । ଛଳପୂର୍ଣ୍ଣ କରି

୨୫ । ଟୀକା—ମୁହାଁସ—ଗର୍ବ, କୂଟ—କପଟ, ଝସି—ଜଳପାନବିଶେଷ ।

ମୃଦୁ ବାଣୀ ଝଙ୍କା ବିରହ ହୃଦେ ଢାଳିବା; କଦାପେ ତାପିତ ବନଲତା ହିତ ହାତଚେଙ୍କା ଜଳ ଦେବା ରେ । ୨ । ପ୍ରଣୟ ପରଖ କର ଲକ୍ଷ ଲକ୍ଷ ସବୁ ବୁଝି ଅନୁଭବେ; ପ୍ରୀତିଠାରୁ ବଡ଼ କେହି ନାହିଁ ବୋଲି ବିବେଚନା ନାହିଁ ଯେବେ ରେ । ୩ । କବି ଦୀନକର ରାଘୁଗୁରୁ ବୋଲେ ଏବେ ସବୁ ଜଣାଗଲା; ପକାଇ ପବିତ୍ର ସ୍ଥଳେ ସ୍ଥୂଳ ଗାତ୍ର ପରମ ପଦକୁ ଚଳିଁ ଟେର । ୪ ।

( ୨୬ )

ରାଗ—କେଦାର, ତାଳ-ସରିମାନ

ଖର ବଚନକୁ ସତ ମଣି କି ରେ । ଘୋଷା ।

ଆଦରଶେ ଥିବା ବାଙ୍କ, ଗଙ୍ଗାଜଳେ ଅଛି ପଙ୍କ, ରବିବିମ୍ବରେ କଳଙ୍କ ଭଣିକି ରେ । ୧ । ଭୃତ୍ୟର ବିଶ୍ୱାସ ଦେଖି, କରିଥାଇ ଯେବେ ସୁଖୀ, କାଳେ ତା ଶିରରେ ରଖି ଟାଣିକି ରେ । ୨ । ମଦନ ଅମଲ ବଶେ, କ୍ଷତ ଯେବେ ଦନ୍ତବାସେ, ଦଣ୍ଡଇ ଏ ଦୋଷ ଦୋଷେ ଗଣି କି ରେ । ୩ । ଯେବେ ପ୍ରଭୁପଣ କର, ପାରିବୁ ହିରଣ୍ୟଗୋର, ଜଣି ଯିବି କରେ ଧର ଫଣୀକି ରେ । ୪ । ଲଭିବାରୁ ମୁଁ ପଣ୍ଡିତା, ବର ତୋ ପରିଗୃହିତା, ଲକ୍ଷ୍ୟ ନ କରେଁ ଟି ଚିନ୍ତାମଣିକି ରେ । ୫ । ଏଣିକି ତୋ ଅନୁଗ୍ରହ, ନୋହିଲେ ମୋ ରିପୁବ୍ୟୂହ, କହିବ ମୋ ପାଇଁ ଦେହପଣିକି ରେ । ୬ । ଅଗଣିତ ଆନ ମନ, ଅନାଅ ବରଜ୍ଞ ମାନ, ରାଘୁଗୁରୁ କବିଦନମଣିକି ରେ । ୭ ।

( ୨୭ )

ରାଗ—ମଲ୍ଲୁଆ

ଆଜ ଏ କି ଗୁମାନ ରେ ( ଚନ୍ଦ୍ରାନନା )

ଦେଖି ନାହିଁ ସ୍ୱପନରେ । ପଦ ।

ସୁନ୍ଦର ରଦବାସ, ମନ୍ଦାରଦଳେ ହାସ,-କୁନ୍ଦକୁ ପରକାଶ, କୁନ୍ଦନାଙ୍ଗି ମୋ ଧନି, ( ପଞ୍ଚ ) ତୁ ସିନା ମୋର ପ୍ରାଣ, ରମଣୀଗଣେ ରାଣ, ରାଣ

---

୨୬ । ଟୀକା—ଆଦର୍ଶ—ଦର୍ପଣ, ଦନ୍ତବାସ—ଅଧର, ପରିଗୃହିତା—ଭୃତ୍ୟତ୍ୱ, ଚିନ୍ତାମଣି—ଅଭୀଷ୍ଟପ୍ରଦ ମଣି, ଦେହପଣିକ—ଶରୀରପଣି ( ଟିକସ୍ ) ପାଇଁ, ଆନ—ରାଣ, ରିପୁବ୍ୟୂହ—ଶତ୍ରୁସମୂହ ।

ଅଛନ୍ତି ମାଣ, ବକ ମୃଗାକ୍ଷୀ ଜାଣ ଦାରୁଣ ସ୍ମରବାଣ, ଶାଣଦାଅ ତୀକ୍ଷଣ, ବାଣଗଣରେ କଟାକ୍ଷେ ନେବନି ଏ ପରାଣ । ୧ । ଗୃହୁ ଚମ୍ପକ-ଦେହୀ ରେ, ଚନ୍ଦ୍ରାନନା, କାହ୍ନୁ ଶିଖିଲୁ ଏହା ରେ, ଅଶ୍ରୁ ପ୍ରସରବାର, ମହୀକ ଗଡବାଧ, ଅଜନୁ ପରଗୃର, ସଂସାର ସାରବାର । ୨ । ମର୍ମ ଗଲଣି ଫାଟି ରେ, ଚନ୍ଦ୍ରାନନା, ମାରମାର୍ଗଣଧାଟୀରେ, ବନ୍ଧୁଆ ସରଲନି, ତୋ କାର୍ତ୍ତି ପରିପାଟୀ, ରୋପିବାର ଲତାଟି, ମୂଳୁ ନ ପକା କାଟି । ୩ । ଦୋଷ ଦେଖି ତୁ ଦଣ୍ଡ ରେ, ଚନ୍ଦ୍ରାନନା, ମଣ୍ଡନା କର ଗଣ୍ଡରେ, ବାହୁପାଶେ ନିତାନ୍ତେ, ବାନ୍ଧିବା ବସନାନ୍ତେ, ଓଷ୍ଠ ବିଦାର ଦନ୍ତେ, ଭୂଷ କରଜ-କୁନ୍ତେ । ୪ । ଆରମ୍ଭିଲେ ତୁ ରୁଷା ରେ, ଚନ୍ଦ୍ରାନନା, ଭରସା କେ ମୋ ରସାରେ, ତେଜିଗଲେ ତୁ ମୋ କୋଳ, କେତେ ମୋ ଧୃତ ବଳ, ସହେ କି କରବାଳ, କେଳି-କମଳ ଦଳ । ୫ । ଶ୍ୟାମ ବନସ୍ତୁଭାଷାରେ, ଚନ୍ଦ୍ରାନନା, ମନ୍ଦ ମଧୁରହସା ରେ, ଭାଷିଲେ ପ୍ରିୟବାଣୀ, ରସେ ସେ ସୁଲକ୍ଷଣୀ, ରସିଲେ ମନ ଜାଣି, ଶ୍ରୀ ଗୋଷ୍ଠବିହାରୀ ଭଣି ।

( ୨୮ )

ରାଗ—ମୁଖାରି, ତାଳ—ଝୁଳ

ମହୀମଣ୍ଡନା ତୁ ନ ମାର ମାରରେ । ପଦ ।

ଯେନ ତୋ ଅବଧାନେ, ରସିଲ ମୁଁ କି ଆନେ, ତୁ ଥାଉଁ ଥାଉଁ ଏ ସଂସାରସାର ରେ । ୧ । ବିରଜ ମଣିପୁଞ୍ଜ, ଅରଜାବାକୁ ଗୁଞ୍ଜ, ଶିରୀଷ-ଅଙ୍ଗି, ଅଙ୍ଗୀକାର କାର ରେ । ୨ । କାସ ମାନସେ ଭାଳ, କରଜ କଳୀ ଗୃଳ ଭରତ କଳଶି ଅଗାର ଗାରରେ । ୩ । କେଳି ଚଞ୍ଚଳତର ନେହ ଖଞ୍ଜନୁ ନୀର, ବହେ କାହିଁକି ଆହା ଧାର ଧାର ରେ । ୪ । ଆରେ ରତିପ୍ରତିମା, ଅଟର ଏବେ କ୍ଷମା, ବହିବ ତୋ ହୁକୁମ ଭାର ଭାର ରେ ॥

---

୨୭ । ଟୀକା—ରମଣୀଗଣରାଣ—ନାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ, ରଦବାସ-ମନ୍ଦାରଦଳେ—ଓଷ୍ଠରୂପ ମନ୍ଦାରଫୁଲରେ, ହାସକୁନ୍ଦକୁ—ହାସ-ରୂପ କୁନ୍ଦଫୁଲକୁ, କୁନ୍ଦନାଙ୍ଗି—ସ୍ୱର୍ଣ୍ଣାଙ୍ଗି, ମାଣବକ—ଶିଶୁ, ରାଣ—ରାଜା, ପରଗୃର—ଗୃକର, ମାରମାର୍ଗଣ ଧାଟୀ—କନ୍ଦର୍ପଶରସମୂହ, ରସା—ପୃଥିବୀ, କେଳି-କମଳ-ଦଳ—ଲୀଳାପଦ୍ମପାଖୁଡ଼ା, କରବାଳ—ଖଣ୍ଡା ।

୨୮ । ଟୀକା—ଗୁଞ୍ଜ—କାଇଞ୍ଚ, କାର—କାହାର ? କରଜ—ନଖ, ଅଗାର—ଗୃହ, ଆରପାର—ଅସ୍ତବ୍ୟସ୍ତ, ସପଥ—ରାଣ, ଶପଥ ।

ମୋ ଧନ ରୂପ ରାଜ, ମଦନବାଣ ବାଜ, ହେଲାଣି ମୋ ହୃଦୟ ଆର-ପାର ରେ ।୬। ମୋ ସପତଠି ମଥା, ଚେକ ଭୂପ ରୁ କଥା, କହେ ଶ୍ରୀ ଜଗଦ୍ଦେବ ବାରବାର ରେ । ୭ ।

( ୨୯ )

ରାଗ—ତୋଡ଼ିପରଜ

ରେ ମୋ ବନ୍ଧୁ, ଶିଶୁବଣାମୃଗଦୃଶା ।

ଦଶୁଥାଇ କୃପାମୟ, ପୁଣି ମାହା ଲୂଷୁ ସେ କେମନ୍ତ ରୁଷା । ଘୋଷା ।

ରସୁଥାଇ ଆଉ କୋଳ୍କ ମୋର ପୁଣି ଖସି ମନ୍ତ୍ରୁ ବସୁମତୀ; ବସୁ ମୁଖଚନ୍ଦ୍ର ନୁଆଇଁ ଯାହାଠି କଷୁଥାଇ କ ମୋ ଧୃତ । ୧ । ହସୁଥାଇ କୋଳେ ଖେଳ ଯେତେବେଳେ ବସୁ କୋଟି ଦେଇ ଗଣି; ନ ଶୁଣୁ ଗୃହୁ ଶତଲୁ କାହିଁକ ମୋ ଅସୁ ଘେନିବାକୁ ପୁଣି । ୨ । ଠେସୁଥାଇ ଉରେ ଉରୋଜକୁ ସମୁଲ୍ଲାସୁଥାଇ ସ୍ମିତେ ଗଣ୍ଡ; କ ଶୁଣି କାଠି ଦେଇ ସେ ସୁଖସ୍ୱର୍ଗ ନାଶୁଣୀଟି ଏ କ ଦଣ୍ଡ । ୩ । ପିଶୁଥାଇ ସ୍ନେହେ ନିମଜ୍ଜି ମୋ ଦେହେ କ୍ଷ ସୁଖେ ପୁଣି କ କୋପୁଁ; ତ୍ରିଶୂଳମଣ୍ଡିତକରପରପନ୍ଥୀ-ଇଷୁ ମୁଖେ ସମରପୁ । ୪ । ପଶୁମ-ମହେନ୍ଦ୍ର ନନ୍ଦନ ଭାରତୀ ରସୁଁ ରାଧା ସଙ୍କୋଚଲେ; ବସୁଦୁର୍ଗ ସ୍ୱର୍ଗପୁରନ୍ଦର ଭାବବଶୁଁ ଏ ଗୀତ ରଚଲେ । ୫ ।

( ୩୦ )

ରାଗ—କେଦାର, ତାଳ—ଅଡ଼ତାଳ

ସଇ ଗଲା ଯେ ଲାଜେ,

ରହି ନ ପାରେ ସହୀସମାଜେ । ଘୋଷା ।

ନଗଭଳକ ଉରୋଜାଏ ଅଛନ୍ତି ଅଗଣିତେ ଅନୁସରି ହେ । ଜଗତ୍ତା ଲଲାମ ଚମ୍ପାଙ୍ଗୀ ନାମ ଯୋଗ୍ୟ କ ଏକା କିଶୋରି ହେ । ୧ । ଘେନାଇ କହିଲେ ହେଲେ ନେହାଅଳେ ଅନାଇ ତ ସେ ନ ଜାଣେ ହେ । ତାକୁ ନଟ-ଖଞ୍ଜରୀଟ-ନେହା ବୋଲି ଡାକୁଥାଅ ତୁମ୍ଭେ କେଣେ ହେ । ୨ । କୁମ୍ଭ ଉରେ ସ୍ତନକୁମ୍ଭ ନତ-ତନୁଲତା ଯେ ମଣାଏ ନାହିଁ ହେ । ବାହି-ଯିବ ବୋଲି ଶୋଭା ପୀୟୂଷ କ ରହିଥାଅ ଏକା ଗୁହିଁ ହେ । ୩ । ତାରୁଣ୍ୟ ଗରବେ ବାଳା ସେ ତ କେବେ ଗୁଳକ ନ କରେ ଗୁହ୍ନ ହେ । ସଜୁଅଛୁ

---

୨୯ । ଟୀକା—ବସୁକୋଟି—ଅସଂଖ୍ୟ ରତ୍ନ; ତ୍ରିଶୂଳମଣ୍ଡିତକରପରପନ୍ଥୀ—ମହାଦେବଙ୍କ ଶତ୍ରୁ ଅର୍ଥାତ୍ କନ୍ଦର୍ପ; ଇଷୁ—ବାଣ; ପଶୁପ-ମହେନ୍ଦ୍ର—ଗଉଡ଼ଙ୍କ ରାଜା ଅର୍ଥାତ୍ ନନ୍ଦ ।

କେଳି ଲଳସୀ ମହ୍ଲୀଗଢ ବୋଲି ଡାକବାରୁ ହେ । ୪ । ଅଧର ମାଧୁରୀ-ଅଭ୍ରମାନେ ପୁର କେତେ ନାଗରୀ ନାହାନ୍ତି ହେ । ତା ଦଶନ ଅଙ୍କ ଥିବା ପାନରଙ୍କ ପର ମାଗିବାର ନାଉ ହେ । ୫ । ପ୍ରେମାଦରେ ଅବା ପ୍ରମାଦରେ ବାଣୀ ଶୁଣିବା ଶତ୍ତ କାହିଁକି ହେ । ସରସଶ୍ଳେଷମଦକଳକୋକଳବଚନା ବୋଲ ନାହିଁକା ହେ । ୬ । ଜଗଦ୍ଦେବ ବନ୍ଦ ଜଣାଇଲେ ଇନ୍ଦୀବର ଶ୍ୟାମ ବଂଶୀପାଣି ହେ । ତୁମ୍ଭେ ସେ ତରୁଣୀ ଗୁଲବା ସରଣୀପରାଗେ ଗଢ଼ିବା ଜାଣି ହେ । ୭ ।

( ୩୧ )

ରାଗ—ବେଗଡ଼ା

ଏହି ସେହି କି ମୋ ସହି ସତ କହନ୍ତି । ପଦ ।

କହିବାକୁ ଜିହ୍ୱାଞ୍ଚଳ କରୁ କରୁ ତୁ ଚଞ୍ଚଳ, ସ୍ମରସର୍ପ କଲ୍ପନ ରସନା ଲହଲହନ୍ତି । ୧ । ଅନନୁକୂଳ ଏ ଦ୍ୟୁତ, ଅନାଇ ସେ କେଉଁ ସତ୍ତା, ଠକରବ ନଜକର କରବାରେ ନ ହନ୍ତି । ୨ । ଏହା କର କି ଗୋ ଯଶଃ,-କୁସୁମମାନଙ୍କ ବାସ, ବାସବନବାସ ଯାଏ ଯାଉଥାଏ ଚହନ୍ତି । ୩ । ଏଠାରେ କାଞ୍ଚେ ସଞ୍ଚିତ, ହୋଇଛୁ .ରେ ପ୍ରାଣମିତ, ଅଳ୍ପକଳ୍ପନ ସେ ଅବଗ୍ରହ ରବହୃହନ୍ତି । ୪ । କବରବ ଗ୍ରସ୍ତୁଗୁରୁ, କହୁଥାନ୍ତି ରେ ରମ୍ଭୋରୁ, ଏହାଙ୍କ ଭଜନ୍ତୁ ଅନ ନାହିଁ ସୁଖାବହନ୍ତି । ୫ ।

( ୩୨ )

ରାଗ—କାମୋଦୀ, ତାଳ—ଝୁମ୍ପା

ସଞ୍ଚାରଣୀ ପାଞ୍ଚାଳକା କାଞ୍ଚନମୟୀ ରେ ପ୍ରଲମ୍ବ କୁଞ୍ଚିତକେଶା,
ଯୋଗି-ସମାଧିଖଣ୍ଡନବଧିଚତୁରଗୂଢ଼ବେଶା;
ପଦପଙ୍କଜନ୍ୟାସପବନୀକୃତ ଧରନୀଦେଶା,
କେ ତୁ ମୋହନ,-ହେତୁ ମନର, ସେତୁ ବଳାସମିଷବନର
ନରଲୋକରେ କୃତବାଗୀଶଶିଳ୍ପବଶେଷଶେଷା । ଘୋଷା ।

---

୩୦ । ଟୀକା—ନଗଥଳକଉରଜାଏ – ବଡ଼ ପର୍ବତ ପର କୁଚ ଯେଉଁମାନଙ୍କର, ଲଲମ—ଭୂଷଣ, ଗୃରୁ—ସୁନ୍ଦର, ତାରୁଣ୍ୟ—ଯୌବନ, ଦଶନଅଙ୍କ—ଦନ୍ତଚହ୍ନ, ସରଣୀପରାଗେ – ବାଟଧୂଳରେ ।

୩୧ । ଟୀକା—ଅନନୁକୂଳ—ଅତୁଳନୀୟ, ବାସବନବାସ—ଅମରାବତୀ ।

ପଦରୁ ଊଣା ଖର ତ ଜଣା ପଡ଼ୁଛି କେହ୍ନେ ଏତେ ପ୍ରବୀଣା ହେଲୁ ରେ, ଛଣାପୀୟୂଷଜଣା ବାଣୀ, ସୁଧାଗଲେମିଶା ତରଳ ବାଲଷଣ ଗୃହାଣୀ, ଜଗତୀଯୋଷାରତନଘୋଷାଭୂଷା ଶ୍ରୀଅଙ୍ଗଠାଣି; ଜନନୟନ-ନୀଳେନ୍ଦୀବର-ଚନ୍ଦ୍ରିକା-ପରମ୍ପରା କା ବରବରନା ତୁହି ନିଷ୍ଟୟେ ତୋର ବୁଝି ନ ପାରେ ଜାଣି ରେ । ୧ । କରୁଛୁ ଖର୍ବ ସୁପର୍ବପର୍ବସୁଧାଂଶୁମୁଖୀଗଣଙ୍କ ଗର୍ବ ସର୍ବଂସହାରେ କେ ରହିବ ମାନି, ଲଜର ବାସଗୃହ ତୁ ରସରାଜର ରାଜଧାନୀ, ଗଭଲବଣ୍ୟ ମାତଲ ବନ୍ୟହାତୀରୁ ବଳିଲୁନି, ଧନ ଯାହାର ମୁକୁତାହାର ହେବୁ ତୁ ଶ୍ରୀଛାମୁକୁ ତାହାର ସୁକୃତ ତୁଲେ ମୋର ଜୁହାର ହେଉ ମହତ୍ତ୍ୱ ହାନି । ୨ । ଉଦ୍ଦଣ୍ଡରତ ପାଣ୍ଡିତ୍ୟବତୀ ବୋଲଇ ନେକାଇବୁ କା ଛତ ଏବେ ତ ଯତମୋହନା ଷିତମଣ୍ଡ, ଖଣ୍ଡିବୁ ଚଣ୍ଡ ଫୁଲ କୋଦଣ୍ଡ ବୀରଦୋର୍ଦ୍ଦଣ୍ଡ କଣ୍ଡୁ, ତୁମ୍ଭେ ଯେ ଜୁର ନେବ ମକର ତୋର ସୁନ୍ଦର ଗଣ୍ଡ, ସେ ବଡ଼ ଗିରିଶରୁ ଅମରନାଥରୁ ପାଶକରୁ କୁବେର ଠାରୁ ନଳିନନନ୍ଦନରୁ ମାନସ୍ୟନ୍ଦନରୁ ମାରତଣ୍ଡୁ । ୩ । କହନ୍ତି ଅଷ୍ଟ-ଦୁର୍ଗସାମନ୍ତ ଶ୍ରୀକୃଷ୍ଣଚନ୍ଦ୍ର ମୁଖୁଁ ଏମନ୍ତ ସରସବାଣୀ ଶ୍ରୀ ଠାକୁରାଣୀ ଶୁଣି ଲଭିଲେ ଲାଜ, ସ୍ଫୁରିଲ କୁନ୍ଦ ମଧୁନିଃସ୍ୟନ୍ଦ ମନ୍ଦ ହସିତ ବ୍ୟାଜ, ଗୃଲି ଚରଣ କଲେ ଶରଣ ଅଳିଜନ ସମାଜ, ମିଳନ୍ତେ ଦନେ ଏକାନ୍ତ-ସୀମା ଏପର ପରଣତ ଚନ୍ଦ୍ରମା-ବଦନା ଶ୍ୟାମ ଦୁହିଙ୍କ ପ୍ରେମ ହେଲ ନିବଢ଼େ ନ୍ୟାଜ । ୪ ।

( ୩୩ )

ରାଗ—ତୋଡ଼ିପରଜ, ତାଳ—ରୂପକ

ରେ ସଙ୍ଗାତ, ତୋ ବୋଲେ ବସନ୍ତ ମାନେ,
ଶିଖଣ୍ଡଶେଖର ସ୍ନେହୁଁ ଅଣା ମୋର ତୁଟାଇ ପାରନ୍ତୁ ଧାନେ । ପଦ ।

---

୩୨ । ଟୀକା—ସଞ୍ଚାରଣୀ ପାଞ୍ଚାଳିକା କାଞ୍ଚନମୟୀ—ଗମନ କରୁଥିବା ସୁବର୍ଣ୍ଣ ପ୍ରତିମା; ସେତୁ ବଳାସମିଷବନର—ବଳାସରୂପ ଜଳପାର ହେବାର ସେତୁ ଅର୍ଥାତ୍ ପୋଲ; ବାଗୀଶ—ବ୍ରହ୍ମା, ସୁପର୍ବ—ଦେବତା, ପର୍ବସୁଧାଂଶୁ—ପୂର୍ଣ୍ଣଚନ୍ଦ୍ର, ସର୍ବଂସହା—ପୃଥ୍ୱୀ, ରସରାଜ—ରସିକଶ୍ରେଷ୍ଠ ( କନ୍ଦର୍ପ ), ମାତଲ ବନ୍ୟହାତୀ—ମତ୍ତ ବନ୍ୟ ହସ୍ତୀ, ଧନ—ସମ୍ବୋଧନ ପଦ, ଫୁଲକୋଦଣ୍ଡ—କନ୍ଦର୍ପ, ଦୋର୍ଦ୍ଦଣ୍ଡ—ବାହୁବଳ, ଜୁର ନେବ—ଜୁର କର ନେବ, ମକର—ମକର ଚନ୍ଦ, ସେ ଗିରିଶରୁ ( ଶିବଙ୍କଠାରୁ ), ଅମରନାଥରୁ ( ଇନ୍ଦ୍ରଙ୍କଠାରୁ ), ପାଶକରୁ—(ବରୁଣଙ୍କଠାରୁ); କୁବେରଙ୍କଠାରୁ, ନଳିନନନ୍ଦନରୁ (ବ୍ରହ୍ମାଙ୍କଠାରୁ), ମୀନସ୍ୟନ୍ଦନରୁ (କନ୍ଦର୍ପଠାରୁ) ଓ ମାର୍ତ୍ତଣ୍ଡ (ସୂର୍ଯ୍ୟଙ୍କଠାରୁ) ବଡ଼ । ନ୍ୟାଜ—ବିବେଚନା ।

ଖଳଜନବାଣୀ ସତ୍ୟ ପରି ମଣି ନ ଗୁହିଁଲେ ହେଲେ ମୋତେ, ଘେନ ଗୁରୁତର ମୁଖ-କଳାକର ମୁଁ ନ ଗୁହିଁବି କେମନ୍ତେ । ୧। ଜାଣିଅଛୁ ଧ୍ରୁବ ମୋଠାରେ ପୁରୁବ ପର ନାହିଁ ହରି ସ୍ନେହ, ହେଲେ ହେଲେ ଯେବେ ମୁରଲୀରବେ ପୁଲକନ୍ତା ନାହିଁ ଦେହ । ୨ । ଚନ୍ଦ୍ରକ ଲଲାମେ ଦେଖଇ ମୁଁ ପଛେ ଅନ୍ୟ ପଦ ଲଖା ରାଗ, ଇନ୍ଦ୍ର-ନୀଳମଣିମୟୂ ନ ଦିଶନ୍ତା ଯେବେ ମୋତେ ପ୍ରଭୃଦାଗ । ୩ । ଅନ୍ଧାର ବିହାର ନିଦ୍ରା ବେଶ ବାସ ହେଉ ତାକୁ ମୁଁ ନ ଗଣେ, ତା ଦରଶନେ ଅନାଦର ବହିଲେ ଅରୁଚି ନୁହନ୍ତା ପ୍ରାଣେ । ୪ । କାମୋଦୟୁ ଘନେ ଆମୋଦ ବର୍ଦ୍ଧନ ତା ମୋହନ ମୃଦୁ ହାସ, ବଶ ନ କରଇ ଯେବେ ଟଳଇ ଦଅନ୍ତା ଧୈର୍ଯ୍ୟ ଲେଶ । ୫ । କେ କହୁଛୁ ତୋତେ ହୋଇଛୁ ନିକୁଞ୍ଜ ନିଳୟୁ ଦୁଆର ମନା, କେ କହେ ତୁ ବେଣୁପାଣି ପ୍ରାଣ ଏଣୁ ନିଷ୍ଠୟୁ ଜାଣିଲେ ସିନା । ୬ । ଅଷ୍ଟଦୁର୍ଗଧରୀନାଥ କହନ୍ତି ସେ ଚତୁରମାନଙ୍କ ରଜା, ସରଣୀ ତାର କଲିଲେ ସିନା ହେବ ଧରଣୀନ୍ୟସ୍ତ କରଜା । ୭ ।

( ୩୪ )

ରାଗ—ତୋଡ଼ି ପରଜ

ମୋ ବନ୍ଧୁଟି ବାଇ ହୋଇଯାଏ ସିନା,
ପାଇଯାଏ ଯେବେ ମୋର ଆଚରଣ ପ୍ରଶଂସା ଫୁଲବାସନା । ଘୋଷା ।

ନ ରୁଚିଲା ପରି ବ୍ୟାଜେ କରେ ମୁଖ ସୁରୁଚିର ଶରଦିନ୍ଦୁ, ଚୁମ୍ବିଲେ ଶ୍ରବଣସୀମାକୁ ମୋ ଗୁଣ ପୀୟୂଷରୁ ଏକ ବିନ୍ଦୁ । ୧ । ବଳୟୁାବଳି ଅଙ୍ଗଦ ମଣିଚୁଡ଼ି ଚାହାଁ ଚୁଡ଼ି ରହେ ଦେହେ, ଏପରି ସେ ପରଶିତ ବିମ୍ବାଧରୀ ସଖୀକି ଭିଡ଼ଇ ସ୍ନେହେ । ୨ । ଜାଣି ବାର ବାର ବାରଣେନ୍ଦ୍ର-କର ଗରବ ଦଳିବା ଊରୁ, ମୃଦୁ ଇଷି ଇଷି ଉଛାରେ ପ୍ରେୟସୀ ଚଚ୍ଚୁଣି ସୁଗୁଣଗୁରୁ । ୩ । ମୋହର ପ୍ରବେଶ ପ୍ରତୀକ୍ଷାରୁ ବେଶ-ରସିକା ପଙ୍କେ

୩୩ । ଟୀକା—ଧାନେ—ଅଳ୍ପପରିମାଣରେ, ମୁଖ-କଳାକର—ମୁଖଚନ୍ଦ୍ର, ଧ୍ରୁବ—ନିଶ୍ଚିତ, ମୁରଲୀରବେ—ବଂଶୀଧ୍ୱନିରେ, ଚନ୍ଦ୍ରକଲଲମେ—ମୟୂରପୁଚ୍ଛ ଭୂଷଣରେ ।

୩୪ । ଟୀକା—ଆଚରଣପ୍ରଶଂସାଫୁଲବାସନା—ବ୍ୟବହାର ଓ ପ୍ରଶଂସାରୂପ ଫୁଲ ବାସନା, ବ୍ୟାଜେ—ଛଳରେ, ମୁଖ-ସୁରୁଚିର-ଶରଦିନ୍ଦୁ—ମୁଖରୂପ ସୁନ୍ଦର

ଚମକ, ଯେ ସମର୍ପେ ରାକା ପ୍ରଦୋଷ ଜଳଧି ହେବ ତା ହୃଦସମ କ । ୪ । ଶିରୁକେ ଚନ୍ଦନ ଶ୍ରବଣେ ଅଞ୍ଜନ କଣ୍ଠେ କରେ ଲକ୍ଷା ବୋଲ, ବ୍ୟସ୍ତ କର କମ ଭ୍ରସଇ ବିଭ୍ରମ,-ସିନ୍ଧୁ କଲ୍ଲୋଳେ କେବଳ । ୫ । ବୋଲେ ଅଷ୍ଟଦୁର୍ଗ-ଧିରା ଦମ୍ଭ ସ୍ବର୍ଗପୁର ପୁରନ୍ଦର ଗୀତେ, କଶୋରାଙ୍କ ପ୍ରେମ ଘେନି ଘନଶ୍ୟାମ ପ୍ରମୁଦିତ ହେଲେ ଚିତ୍ତେ । ୬ ।

( ୩୫ )

ରାଗ—ବଳାହାର, ତାଳ—ଏକତାଳି

ଖଞ୍ଜରୀଟନୟନା ଅଳପ ଗୃହାଁ ରେ । ପଦ ।

ଅଞ୍ଜନରୁଚି ମଦଗଞ୍ଜନକେଶୀ, କଞ୍ଜସୁନ୍ଦର ମୁଖ ରଞ୍ଜନବେଶୀ, ସଞ୍ଜ କୁମୁଦସମହାସବିଳାସୀ, ତୁ ସିନା ସାହାରେ । ୧ । ଦନ୍ତ ବସନ ରୁଚି ସନ୍ତତ ଗୃଖି, ସନ୍ତତ ତବ ତନୁ କାନ୍ତିରେ ଲଖି, କାହିଁ ଉରସି ରସି ନାହିଁ ମୋ ଆଖି, ତୋହର ବାହାରେ । ୨ । ବାରଣବରଗମନା ରସ-କାରୀ, ପରଚିତ ରଣରଣ ଧରଣୀବିହାରୀ, ରଚ ବଚନାମୃତ ନିର୍ଗତ ଧାରୀ ମିଶ ହୃଦ ହାରେ । ୩ । ଚଣ୍ଡ ମଦନ କର ଦାରୁଣ ବାଣେ, ଦଣ୍ଡକୁ ସମୁଚିତ ନୁହଇ ମୁଁ ଠାଣେ, ମଣ୍ଡ ଗଳକୁ କହେଁ ଅଗଣିତ ଗୁଣେ, ମୃଦୁଳ-ବାହା ରେ । ୪ । ମଗ୍ନ ମୁଁ ତୋର ରସନିର୍ଝରକୂପେ, ତନୁ ରୁଚି ନିର୍ଧୂତ ହାଟକରୂପେ, ସକରୁଣ ହୁଅ ହରଚନ୍ଦନ ଭୂପେ, ମୋ ସୁଖ ରାହା ରେ । ୫ ।

( ୩୬ )

ଅରେ ପ୍ରାଣସଙ୍ଗି

ମନମୋହନ ମନ୍ତ୍ରର ତୋର ଭଙ୍ଗୀ । ପଦ ।

କୃପାରେ ମାନସ ଦେଖାଇଲୁ, ଭୁଜେ ଭୁଜବନ୍ଧା ଶିଖାଇଲୁ, ଅଳପ ଅଳପ ବଙ୍କାଇଣ ବିମ୍ବଅଧରରୁ ମଧୁ ଚଖାଇଲୁ । ୧ । ବ୍ରହ୍ମଜ୍ଞାନୀ ଯୋଗୀ

---

ଶରଚନ୍ଦ୍ର । ପଣ୍ଣଡବିମ୍ବାଧରୀ—ପାଚିଲା କର୍ଣ୍ଣିକାକୁଞ୍ଜ ପରି ଅଧର ଯାହାର, ବାରବାର—ଥରକୁ ଥର, ବାରଣେନ୍ଦ୍ରକରଗରବଦଳନିବା ଊରୁ—ହାତୀ ଶୁଣ୍ଢଠାରୁ ମନୋହର ଜଙ୍ଘ । ରାକାପ୍ରଦୋଷ ଜଳଧି—ପୂର୍ଣ୍ଣିମା ସନ୍ଧ୍ୟାର ସମୁଦ୍ର ।

୩୫ । ଟୀକା—ଖଞ୍ଜରୀଟ—କଜଳପାତି, ଦନ୍ତବସନରୁଚି—ଅଧର ମାଧୁରୀ, ରଣରଣ—କନ୍ଦର୍ପ, ହାଟକ—ସୁନା, ସଞ୍ଜକୁମୁଦ—ସନ୍ଧ୍ୟା ସମୟରେ ଫୁଟିଥିବା କଇଁଫୁଲ, କଞ୍ଜସୁନ୍ଦର—ପଦ୍ମପରି ମନୋହର ।

ଯୋଗଭୂଲ, ଭଲସୁମନସ ନାସାଫୁଲ, ପଦ ପଦ୍ମକରେ • ଯାଚ ଦେଉଥାଏ ଶଙ୍କପଦ ମଣିନଅଞ୍ଚଲ । ୨ । ସନ୍ତାପ-ସହିତ ଶୁଖାଇଲୁ, କରେ ପୟୋଧର ରଖାଇଲୁ, ହେମ ପଶାସାର ପଲ୍ଲବପାଲରେ, ପଗୃହବା ଗୀତ ଶିଖାଇଲୁ ॥ ଅଷ୍ଟାଦୁର୍ଗପତ ଭ୍ରମେ ଭୋଲେ, ଚକ୍ରବର୍ତ୍ତୀ କଲୁ ଯୁବାକୁଳେ, ଦାସୀ ହୋଇ ଅଲ୍ପ ମାସୀ ହେଲୁ କାନ୍ତ ପଣନ୍ତେ ସବନ ଯେତେବେଳେ । ୪ ।

( ୩୭ )

ରାଗ—ମୁଖାରି

ସେ କି ସାରସାର ଜାଣେ,
ପ୍ରୀତ ଗୀତ ନ ପାଳେ ଯେ ଅଣୁ ପରମାଣେ । ପଦ ।

ରାଜମାର୍ଗ ଛାଡ଼ି ଉଠେ ଅବାଟ ଉଠାଣେ, ଦ୍ୱିଜସଙ୍ଗ ବର୍ଜି ଯେ ମିଶଇ ପଠାଣେ । ୧ । ଶୁକଶାରୀ ମାରି ପଳ ଯେ ଧ୍ରୁଏ ସନ୍ଧାଣେ, ଯେ କୁନ୍ଦନେ ଖଞ୍ଜେ ମଣି ନ ବସାଇ ଶାଣେ ।୨। ଫଳ ବିନା ଅଭ ଲୋଭ ରଖି ଛାର ପ୍ରାଣେ, ଜଳଧିରେ ଯେ ନ ପଡ଼େ ପ୍ରିୟଜନ ବାଣେ । ୩ । ତାହାକୁ କି କଳାବତୀ ନଜରକୁ ଅଣେ, ବନ୍ଦୀ ହୋଇ ନାହିଁ ଥରେ ଯେ କୁସୁମ ବାଣେ । ୪ । କନକ ବନିବ ବୋଲି ଗୀତ କି ରସାଣେ, ସତ୍ୟବୁଦ୍ଧି କରୁ ଥାଏ ଯେ ଶଶ-ବିଷାଣେ । ୫ । ଯେ ବାମା ଅଧର ମଧୁ ବସନରେ ଛାଣେ, ମୃଦୁଳ ମାଲତୀମାଳା ହାତୀମୂନେ ହାଣେ । ୬ । ଯେ ଲେଖି ସୁଚିତ୍ରପଟ ସମରଦେ କାଣେ, ମାଗିବା ଲୋକର କରେ ନ ଧଅଇ ମାଣେ । ୭ । କନକ କୁଣ୍ଡିଆ ଥାଉ ଯେ ପିଏ ପିହାଣେ, ଜାଇ ଥାଉଁ ଗିରମଲ୍ଲୀ ଯେ ଲଗାଏ ଘ୍ରାଣେ । ୮ । କଣ୍ଠ ଯେ ସମର୍ପି ନାହିଁ ଭ୍ରମରେ ପୁରାଣେ, ହରଙ୍କି ଯେ ଭଜ ନାହିଁ ମୂଳ ପରବାଣେ । ୯ । କହେ ଜଗଦ୍ଦେବ ଶିକ୍ଷା ହେଲେ ହେଲେ ଟାଣେ, କେ କାହା ସ୍ୱଭାବ ଛାଡ଼େ ପରାଣ ପ୍ରୟାଣେ । ୧୦ ।

( ୧୦ )

ରାଗ—ତୋଡ଼ିପରଜ, ଏକତାଳି

ରେ ନୀରଦ ଗରଜ ମନ୍ଦ୍ରକୁ କେତେ,
ଅରଜ ନାହୁଁ ତ ମୋ ବନ୍ଧୁଲଳିତ ଭାବ ବାଳକୁଁ କାହିଁକେ । ଘୋଷା ।

୩୭ । ଟୀକା—ପଳ—ମାଂସ, କୁନ୍ଦନ—ସ୍ୱର୍ଣ୍ଣ, ଘାତ—ପିତ୍ତଳ, କନକ—ସୁନା, କାଣେ—ଅନ୍ଧକୁ, ଶଶବିଷାଣ—ଠେକୁଆ ଶୃଙ୍ଗ ( ଅସମ୍ଭବ ବସ୍ତୁ ) ।

୩୮ । ଟୀକା—ନୀରଦ—ମେଘ, ପୟୋଧର—କୁଚ, ଧରାଧର—ପର୍ବତ, ଇନ୍ଦ୍ରକୋଦଣ୍ଡ—ଇନ୍ଦ୍ରଧନୁ, କ୍ଷଣପ୍ରଭା—ବିଜୁଳି, ନୀଳଚେଲାଚ୍ଛନ୍ନ—ନେଳିଆ

ଦେଖୁଛୁ ତ ମୋର ବାଳା ପୟୋଧର ଉପରେ ମୁକୁତାହାର, କେଉଁ ବୁଦ୍ଧିବଳେ ଧରାଧରଚୂଳେ ଲମ୍ବାଉ ସଲିଳଧାର ।୧। ତ୍ରିଭୁବନେ ସରି ଅଛୁ କି କଟାକ୍ଷ ଭୁରୁ ଖେଳିବା ଦଣ୍ଡ୍ୟକୁ, ଫୁଲ୍ଲ ଅଛୁ କେତେ ଦେଖାଇ ନିରତେ ଇନ୍ଦ୍ରକୋଦଣ୍ଡ ଖଣ୍ଡକୁ ।୨। କ୍ଷଣପ୍ରଭା କେଳି ଘରକୁ ସଙ୍ଖାଳି କରି ଫୁଲ୍ଲଅଛୁ ଯାହା, ନୀଳଚେଳାଚ୍ଛନ୍ନ ବାଳା ଅପଘନ ଛବିକି ଅଳପ ଚାହାଁ ।୩। କରିଅଛୁ କେଡ଼େ ଭରସା ନିବଡ଼ କରକାବଳି ବରଷା, ଦେଖୁଛୁ ତ କୁନ୍ଦଦରହାସୀ ମନ୍ଦ ସୁନ୍ଦର ମଧୁର ହସା ।୪। ଅସିତ ଗୁଣରେ ମିଶ୍ରିତ ମୋ ତୁଲ୍ୟ କେହି ନୋହେ କି ବିଚାରୁ, ମୋ ଧନ କୁନ୍ତଳପାଶ ଇନ୍ଦ୍ରନୀଳମୟ ଚାମରରୁ ଚାରୁ ।୫। ମୁଁ ବଡ଼ ଶୀତଳ ବୋଲି ଏବେ ସ୍ଥୂଳ ଗରବ ଅଣିଛୁ କାହୁଁ; ବୋଲେ ବାଲ୍ମକେଶ ଶରଣନରେଶ ବନ୍ଧୁଗୁଣ ଶୁଣି ନାହୁଁ ।୬।

( ୩୯ )

ରାଗ—ଝିଁଝୋଟ, ତାଳ—ଆଠତାଳି

ବାରିଜାକ୍ଷି ମନରୁ ମାନ ବାରି ଦେ ରେ,
ଦେଖ କାଳ ହେଲେ କଳା ବାରିଦେ ରେ ।ପଦ।

ଦାସ ନାଶରେ ମାନସ, ବଳୁଛୁ ଯେବେ ନାରୀଶ, କରଜନାରାଚ ମାରି ଚିରି ଦେ ରେ ।୧। ତୋ ଚରଣ ସେବା ଭଳି, ନୋହିଲି ଯେବେ ରେ ଅଳି, ଗାଳି ଦିଆଇ ମହତ ସାରି ଦେ ରେ ।୨। ଏବେ ବନ୍ଧୁ ଅନାଥରେ, ଦୟା ଥିଲେ ଅନାଥରେ, କରୁଣା କଟାକ୍ଷ ନେନେ ଠାରି ଦେ ରେ ।୩। ମହିଳାମଣି ଜଗତେ, ତୋ ବିନା ସାହା କେ ମୋତେ, ମାରି ମୁଖୁଁ ବଞ୍ଚାଇବି ଗାରି ଦେ ରେ ।୪। ଦ୍ୱିଜ କବିରବି ବାଣୀ, ଶୁଣି ସେ ରମଣୀମଣି, ସ୍ନେହେ ଦ୍ରବି ବହିଗଲା ବାରିଦେ ରେ ।୫।

( ୪୦ )

ରାଗ—ତୋଡ଼ି, ଏକତାଳି

ଅନାରତ ସରମମନା ମୋ ଧନ କିସ ମନାସି ପରିଜନେ ତୁଷିଲୁ ରେ,
ନିଶାରମଣଜୟୀ ବିଶାରଦବଦନ ନବାରୁଣ ସଦୃଶ ଦଶିଲା ରେ ।ଘୋଷା।

---

ଲମ୍ବାଉ—ଲମ୍ବାଉ ଆବୃତ, ଅପଘନ—ଦେହ, କରକାବଳି—କୁଅପଥର, ଅସିତ ଗୁଣ—କୃଷ୍ଣତା, କୁନ୍ତଳପାଶ—କେଶଗୁଚ୍ଛ, ଶରଣନରେଶ—ଆଠଗଡ଼ ରାଜା ।

୩୯ । ଟୀକା—କଳା ବାରିଦେ—ନୀଳମେଘସବୁ; କରଜନାରାଚ—ନଖରୂପ ଶସ୍ତ୍ର; ଗାରି ଦେ—ପ୍ରତିଜ୍ଞା କରି ଲେଖି ଦେ; ବାରିଦେରେ—ପାଣିପରି ।

ବଳାହକ ଗରବ,-ଦଳାକୁନ୍ତଳେ ନବ, କଳାପ ସୁମୁଖି ନ ଖୋସିଲ ରେ, ଜଳାଗୁଣି ମୋହନ, ଚଳାଚଳ ନୟନ,-ଦଳାନ୍ତରୁତ ବଳ ଗଷିଲ ରେ । ଘୋଷଯାକ ଭିତରେ, ମୋ ସଙ୍ଗମ ଇତରେ, ଅଛୁ କା ନାହିଁ ତ ନ କଷିଲ ରେ, ଦୋଷ ବିନା ଏପରି ରୋଷ କଲେ କା ପରିଜନ ବଞ୍ଚିବ ଧେନି ସୁଙ୍ଗୀଲା ରେ । ୨ । ଯେଉଁଦିନୁ ମୋତେ ସେ କଉତୁକିନୀ ରସେ ନେତ୍ରାନ୍ତ ବରଣ୍ଟରେ ଭୂଷିଲ ରେ, ପଉରୁଷ ମୋହର ନଜକର ତାହାର ଚରଣ ମାଜିବାର ସ୍ମରିଲା ରେ । ୩ । ଦିବା ସମୟେ ଦିନେ ବିବାସ କଲି ମନେ କିବା ସତତ ତାହିଁ ଘୋଷିଲ ରେ, କାହିଁକରି ଧରଣୀ, ଗୁହିଁ କଣୋଗ୍ରୀମଣି, ଗୁମାନକୁ ମାନସେ ପୋଷିଲ ରେ । ୪ । କହେ ବସୁ ଦୁର୍ଗେଶ ଅନେତ୍ରକ ତା ରୋଷ, ଖଦେ ଗୁଣରେ ସମୁଲ୍ଲାସିଲ ରେ, ପ୍ରାଣ ନେବାକୁ ମୋର, ବାଣ ମୀନରଥର ଶାଣରେ ନିରନ୍ତର କଷିଲ ରେ । ୫ ।

( ୪୧ )

ରାଗ—ବେହାରଡ଼ା, ଝୁଲା

ସୁନାଗୋରି ତୁ ଏକା ସିନା,
ସୁନାଗରୀ ଶିର ଫୁଲବାସନା । ଘୋଷା ।

ଏ ଜଗତୀ ଭିତରେ କେହି, ଗଜଗତି ତୋ ସମ ନାହିଁ, ରାଜା ନାରୀମଣ୍ଡଳେ ତୁହି, ସୁନ୍ଦରକୁନ୍ଦରଦନହସନା । ୧ । ପହନଗି କୋଣି କଣିକୁ, ରସବତୀ ମଣି ପଣିକୁ, ସାଧାରଣେତର ଗୁଣିକୁ, ବର୍ଣ୍ଣି ପାରିବେ ନାହିଁ ଭଣନା । ୨ । ଗିରିବର ଶିଖରେ ତପ, କରିଥିଲି କେତେ କଳପ, ବାଳାବର ମୋତେ ଅଳପ, ସୁଲଭ ହୋଇଛୁ ତୋ ଉପାସନା । ୩ । ପୟୋଧରେ ହାର ନଚୁଇ, ମୋ ସୁକୃତ ଫଳ ପଚୁଇ, ମାରଶୁଗ ଉର

୪୦ । ଟୀକା—ଅନାରତ—ସର୍ବଦା; ପରିଜନ—ଭୃତ୍ୟ; ନିଶାରମଣ-ଜୟବିଶାରଦବଦନ—ଚନ୍ଦ୍ରକୁ ଜୟକରିବାରେ ଯେଉଁ ମୁଖ ନିପୁଣ; ନବାରୁଣ—ବାଳସୂର୍ଯ୍ୟ; ବଳାହକଗର୍ବଦଳା—ମେଘର ଗର୍ବ ଧ୍ୱଂସକାରୀ, ଅର୍ଥାତ୍ ଅତିକଳା; କଳାପ—ମୟୂର ପୁଚ୍ଛ; ଘୋଷ—ଗଉଡ଼ ଗାଁ; ବରଣ୍ଟ—ବର୍ଚ୍ଛା; ମୀନରଥ-କନ୍ଦର୍ପ ।

୪୧ । ଟୀକା—ସୁନାଗୋରୀ—ସୁନା ପରି ଗୌର ଅଙ୍ଗ ଯାହାର, ସୁନାଗରୀ—ଶ୍ରେଷ୍ଠା ସ୍ତ୍ରୀ; ସାଧାରଣେତର—ଅସାଧାରଣ; ଭଣନା—ଶୁଦ୍ଧାଗ୍ରପର୍ଯ୍ୟ; ମାରଶୁଗ—କନ୍ଦର୍ପବାଣ; ରସନା—ଚନ୍ଦ୍ରହାର ।

ଘୁଞ୍ଚାଇ, ବଜାଇ ଦେବୁ କି ଥରେ ରସନା । ୪ । ବାଲ୍ଲଭେଶ ନୃପତିମଣି, ଭଣେ ଶ୍ୟାମ ଭାରତୀ ଶୁଣି, ଲାଜେ ହସି ବରତରୁଣୀ, ହେଲେ ମୁଖ-ବିନିହିତବସନା । ୫ ।

( ୪୨ )

ରାଗ—ପୁରବୀ

ରେ ରସନାଟି, କୃଷ୍ଣନାମ ଛାଡ଼ି ଆନେ ରସ ନା ଟି । ଘୋଷା ।

ଅଟକି ନ ରହ ଅଳସରେ, ରଟ ରଟ ଚଳ ବିଳାସରେ । କୃଷ୍ଣ କେଶବ କେଶି,-କଂସ-ଦଳନ ବଲ୍ଲବୀଜନବଲ୍ଲଭ ହରେ । ୧ । ଉପଳ ଶାକର ରସଫେଣୀ, ମଧୁ ମଧୁରସା ସରପଣୀ, ସୁଧା ତାମରସ-ନେତ୍ରା ଦେବାସ, ଏ ସବୁ ଶ୍ୟାମ ନାମରୁ ଊଣା । ୨ । ମକରନ୍ଦ ପକ୍ୱ ଚୂତ ରସ, ପ୍ରବାହେ ନ ରଖ ତୁ ତରସ, ବିଲକ୍ଷଣ ହରିନାମଙ୍କ ମାଧୁରୀ, ଇତର ସକଳ ଗତରସ । ୩ । ବୃନ୍ଦାବନବ୍ୟୋମ କଳାକର, ବିହଗଧ୍ୱଜ ହେ ବିଶ୍ୱମ୍ଭର, ଅଜ ବାସୁଦେବ ମୁକୁନ୍ଦ ମାଧବ, ଗୋବିନ୍ଦ ବୋଲି କୀର୍ତ୍ତନ କର । ୪ । ଖଣ୍ଡ ମରିଚ କର୍ପୂର ଚୂର, ଦେଲେହେଁ ସୁରଭୀ-କ୍ଷୀରେ ଭରି, ଶ୍ୟାମ ରମଣୀୟ ମୋହନବିଗ୍ରହ, ନାମର କଳାକୁ ନୋହେ ସରି । ୫ । ବୋଲ ବୋଲ କଂସନିସୂଦନ, ଜୟ ଜୟ ଦେବ ଜନାର୍ଦ୍ଦନ, ଅଷ୍ଟ-ଦୁର୍ଗପତି କହିବା ଭାରତୀ ଇଷ୍ଟ ସୁଧାରସ ପରି ଘେନ । ୬ ।

( ୪୩ )

ରାଗ—କାମୋଦୀ

ଶିଖଣ୍ଡମଣ୍ଡନ କି ବହିଲେ ଗୋ, ଅଖଣ୍ଡ ଦଣ୍ଡକୁ ଯେ ସହିଲେ ଗୋ ।

ଏ ଖଣ୍ଡ ଏଥେ ପୂରି ହେଉଛୁ ବୋଲି କରି

ଜଣା ନ ଥିଲା ପରି ପହିଲେ ଗୋ । ଘୋଷା ।

ଘନମୁକୁ ନିତି ଯାଇ ତେତେ ଯେ ସମଜାଇ ଶୁଣି ସଂଯତ ଲବେ ନୋହିଲେ ଗୋ, ଜାଈଦଳଙ୍କୁ ସହି ନ କରି ଏବେ କେହି ମହୀଧ୍ରବର-

୪୨ । ଟୀକା—ରସନା—ଜିଭ; ବଲ୍ଲବୀ—ଗୋପୀ; ଉପଳ—ଏକପ୍ରକାର ପଣା; ତାମରସନେତ୍ରାରଦବାସ—ପଦ୍ମଲୋଚନା ସ୍ତ୍ରୀର ଅଧର; ତରସ—ପୂର୍ତ୍ତିଇଚ୍ଛା, ଅଭିଳାଷ; କଳାକର—ଚନ୍ଦ୍ର; ବିହଗଧ୍ୱଜ—ବିଷ୍ଣୁ; ସୁରଭୀକ୍ଷୀର—କାମଧେନୁର ଦୁଧ ।

୪୩ । ଟୀକା—ଶିଖଣ୍ଡମଣ୍ଡନ—ମୟୂରପୁଚ୍ଛ ଭୂଷଣଧାରୀ ଶ୍ରୀକୃଷ୍ଣ; ସହି ନ କରି—ନ ସହି ( ପ୍ରାଚୀନ ପ୍ରୟୋଗ ); ମହୀଧ୍ରବର—ବଡ଼ ପର୍ବତ; ସୁଖବଲ୍ଲୀ—ସୁଖରୂପ

ଭର ବହ୍ନିଲେ ଗୋ । ୧ । ନବୀନ ସୁକୁମାର ସୁଖବଲ୍ଲୀ କି ୟାର ଖେଳ-ଖେଳନାନନ୍ଦେ ଦହିଲେ ଗୋ, ଏତେ ସର ବିପଦେ ପୁଣି ଢେଳାଇ ପଦେ କହିବା ଯାଏ ଜାକ ରହିଲେ ଗୋ । ୨ । ବରକି ଅଖଣ୍ଡଳଧେନୁକୁ ସ୍ଥଗଗଳ ଚମକୁ ଚର ବୋଲି ଦୁହିଁଲେ ଗୋ, ରଖିଛୁ-ବୀଣାବାଣୀ ମୋହନ-ବିଦ୍ୟା ଜାଣି କାହାକୁ ସେ କିଶୋର ମୋହିଲେ ଗୋ । ୩ । ଶଙ୍କରଙ୍କର ଜାଇମାଳା ଧୁନୀରୁ ଯାଇ ପଙ୍କିଳପୁରେ ଅବଗାହିଲେ ଗୋ, ସିନ୍ଧୁରେ ଅନାଦର ରତ ଶ୍ୟାମସୁନ୍ଦର ଅନ୍ଧୁରେ ପରି ତରି ବାହିଲେ ଗୋ । ୪ । ନନ୍ଦନନ୍ଦନ ଦେହ ଦେଇ ଯେ ଥିବ ଦାହ ଚନ୍ଦନ ପ୍ରଭଞ୍ଜନ ବହିଲେ ଗୋ, ଏ ରସେ ଅଷ୍ଟାଦୁର୍ଗ ଧରାବଳୟସ୍ୱର୍ଗ,-ମଣ୍ଡଳ ଅଖଣ୍ଡଳ କହିଲେ ଗୋ । ୫ ।

( ୪୪ )

ରାଗ—ମୁଖାବରି, ତାଳ-ଆଠତାଳ

ବିମ୍ବାଧରୀ ରେ, ବିଶ୍ୱମ୍ଭରୀ ଦେବୀ ଚମ୍ପାଙ୍ଗରୀ ରେ ।
ବନ୍ଧୁ ତୁ ମୋ ଯାତ ବିଭୂଷଣ ମୋତିସୋର କି ଦୁଃଖପାସୋରି ରେ । ପଦ ।

ବଳାରାତ ବଇଜୟନ୍ତ ପ୍ରାସାଦ ବିଳାସିନୀମାନେ ତାରି ରେ, ବେଶ-ସୁରସିକା ତୁ ଶରଦରାକା-ରଜନୀ ଚନ୍ଦ୍ରମା ପରି ରେ । ୧ । ବିଳେଙ୍କି ଯା ମୋତେ ଜଟି ଲାଜସିଂଚେ ହେଉ ରମ୍ୟରଦାମ୍ବରୀ ରେ, ବିଶେଷରେ ପୂତ କରୁ କି ରେ ମିତ ମୋ ମାର୍ଗକୁ ସୁଧାଛରି ରେ । ୨ । ବିଧିରେ ଗିରିଜାରମଣଙ୍କ ପୂଜା କର ଚମ୍ପାପରମ୍ପରି ରେ, ବୋଲଏ ମୁଁ ବରବରନାପ୍ରବର ତୋ କରପଇଠ ଧରି ରେ । ୩ । ବୀଣା-ବାଦନ-ପ୍ରବୀଣା ପଣରେ ତୋ ଗଣନା ପ୍ରଥମ ଗିରି ରେ, ବିଶ୍ୱବିମୋହନ ଗୁଣେ ତୁ ମୋ ଧନ ଧୀରଙ୍କ ଲଲାମ ହୀରି ରେ । ୪ । ବୋଲେ ଜଗଦେବ

ଲତା; ଆଖଣ୍ଡଳଧେନୁ—କାମଧେନୁ; ଶଙ୍କରଙ୍କର ଜାଇମାଳା ଧୁନୀ—ମହାଦେବଙ୍କ ମସ୍ତକରେ ଜାଇମାଳ ପରି ହୋଇଥିବା ନଦୀ, ଗଙ୍ଗା; ପଙ୍କିଳପୁରେ—ପଙ୍କୁଆ ପାଣିରେ; ଅନ୍ଧୁ—କୂଅ ।

୪୪ । ଟୀକା—ବିଶ୍ୱମ୍ଭରୀ—ପୃଥିବୀ; ଚମ୍ପାଙ୍ଗରୀ—ଚମ୍ପାଫୁଲର ଗୁଚ୍ଛ; ମୋତିସୋର—ମୋତିହାର; ବଳାରାତ—ଇନ୍ଦ୍ର; ବର—ଶ୍ରେଷ୍ଠ; ବଇଜୟନ୍ତ—ବୈଜୟନ୍ତ ବା ଇନ୍ଦ୍ରପୁରୀ; ରାକା—ପୂର୍ଣ୍ଣିମୀ; ରମ୍ୟରଦାମ୍ବରୀ—ସୁନ୍ଦର ଅଧର-ବିଶିଷ୍ଟା; ସୁଧାଛରି—ଅମୃତ ସେଚନ; ଚମ୍ପାପରମ୍ପରିରେ—ଚମ୍ପାଫୁଲ ସମୂହ ଦ୍ୱାରା; କର ପଇଠ—ହାତ ଭର ।

ସଙ୍କୋଚରନ୍ତେ ବାଳା, କିଶୋରଙ୍କର ପଚାରିରେ, ବିକେ ହେଜ ବଲ୍ଲୀମନ୍ଦିରକୁ ବୋଲି ଅଳୀ କହେ ଅଙ୍ଗିଠାରେ । ୫ ।

( ୪୫ )

ରାଗ—ମୁଖାରି, ତାଳ—ଅଠତାଳ

ଅନା ଅନା ରେ ମୋତେ, ବସୁଧାକୁ ଅନାଅ ନା ରେ ।
କେଉଁ ଖଳ ଜନ କହୁଛି କି ମନମୋହନା କିଛି ମୋହ ନାଁ ରେ । ପଦ ।

ଖଳଭାଷିତକୁ, ସରସ ଚିତ୍ତକୁ, ଅଣିବୁ ନାହିଁ ନବୀନା ରେ; ଯେନ ତ କ୍ଷିତିରେ କେ ରସେ ରୀତିରେ ସୁନ୍ଦର କୁନ୍ଦନ ବିନା ରେ । ୧ । ମୋ ଅଙ୍କ ପର୍ଯ୍ୟଙ୍କ ଛାଡ଼ି ହରିଣାଙ୍କ-ବଦନା ତଳେ ବସ ନା ରେ; ଇନ୍ଦୁକର-କାନ୍ତି ପଠଳୀ ନିନ୍ଦକ କୁନ୍ଦକଳିକାଦଶନା ରେ । ୨ । ଆଳିଏ ଥିବାରେ ଗୁଳିଦେଲି ଯାହା ଦଶନାମ୍ବରେ ରସନାରେ, କ୍ଷିତିକି କରଜେ ମୋ ବନ୍ଧୁ ଚିରୁ ଯେ ଏତିକି ମୋ ଦୋଷ ସିନା ରେ । ୩ । ପରକୀ ଦେବାର ଦୋଷୀକି ସୁନ୍ଦର ନ ରଖି ମନେ କୁହନା ରେ, ଅସ୍ତ କର ବୃଥା ସଉଭାଗ୍ୟ କଥା ମସ୍ତକ ପୋତି ରହନା ରେ । ୪ । ଅଦର ଗୃଦରପର ପରିଜନେ ଅଦର ଭଣା କର ନା ରେ; କମ୍ର କଉତୁକ ଝଳକାମଣ୍ଡନା ଚମ୍ପକ ବର-ବରନା ରେ । ୫ । ହରି ଗୃହୁଁ ଯେନି ହେଲେ ଅମାନିନୀ ପରିଣତ-ଚନ୍ଦ୍ରାନନା ରେ । ଅଷ୍ଟାଦୁର୍ଗଲେଖାଧିପ ହେଲେ ଲେଖା ତୁଷ୍ଟ ପ୍ରମୁଦିତ-ମନା ରେ । ୬ ।

( ୪୬ )

ରାଗ—କେଦାର, ତାଳ—ଅଡ଼ତାଳ

ବନ୍ଧୁ ଅଛି କି ଲେଡ଼ା, ନୂଆ ନିଅଳୀନିର୍ମିତ ଚୂଡ଼ାରେ । ପଦ ।

ପରସାଧିକାରେ ଫରମାସୁ ଥିବୁ ମୋଠାରୁ ବରଜି ବ୍ରୀଡ଼ା ରେ । ମନ ଥାଇ ଲଜଭରବଶୁଁ ବ୍ୟାଜଚ୍ଛନ୍ନ କଲେ ବଡ଼ ପୀଡ଼ା ରେ । ୧ । ନ ପାଇବା

---

୪୫ । ଟୀକା—ବସୁଧାକୁ ଅନାଅ ନା ରେ—ପୃଥିବୀକୁ ଚାହଁା ନା, ଯେନତ କ୍ଷିତି···ବିନାରେ—ସୁନ୍ଦର ସୁବର୍ଣ୍ଣ ଛଡ଼ା ଏ ପୃଥିବୀରେ କିଏ ରୀତିରେ ଅର୍ଥାତ୍ ପିତ୍ତଳରେ ରସିପାରେ କି ? ଇନ୍ଦୁକର···ଦଶନାରେ—ଚନ୍ଦ୍ରକିରଣ ଅପେକ୍ଷା ମନୋହର ଓ କୁନ୍ଦଫୁଲର କଢ଼ି ପରି ଦଶନ ଯାହାର, ହରିଣାଙ୍କ ବଦନା —ଚନ୍ଦ୍ରମୁଖୀ, କରଜ—ନଖ, କୁହନା—କୋପ, କମ୍ରକୌତୁକଝଲକମଣ୍ଡନା —ମନୋହର ସଚଳ କର୍ଣ୍ଣଭୂଷଣ ଭୂଷଣ ଯାହାର, ପରିଣତ ଚନ୍ଦ୍ରାନନା— ପୂର୍ଣ୍ଣଚନ୍ଦ୍ରବଦନା ।

ସୁଖ ମୋ ଅଗେ ଶ୍ରୀମୁଖ ନୋହିଲେ ସଙ୍କୋଚ ଛଡ଼ା ରେ । ଚତ୍ରେ ଥାଉ ମୁଁ ତୋ ସଙ୍ଗୀତ ଜଗତବାହୁଡ଼ା ବଜେ ପାହାଡ଼ ରେ । ୨ । ଇଚ୍ଛା ମାପିକେ ତୋ ବଛଣା ବନାଇ ଦଅଇବ ହୋଇ ଛୁଡ଼ା ରେ । ଅଣା ଅଚ୍ଛୁକ ବହୁତ ବାସନ୍ତକ ବାସ କୁସୁମପାଖୁଡ଼ା ରେ । ୩ । ସଇରନ୍ଧ୍ରିକାକୁ ସହ୍ନ କହୁଥା ତୁ ଆଜ ହୋଇବ ନିବଡ଼ା ରେ । ଅଂସ ଅବତଂସ ଲହସା ଖୋସାକ କ ବେଣୀ ଲୋଟଣୀ ଜୁଡ଼ାରେ । ୪ । ଅଲପକେ ଯେ ହେଉଥାଏ ତରୁଣ ତରୁଣୀଙ୍କ ଘରବୁଡ଼ା ରେ । ଧନ ଚିନ୍ତଲେ ଅମ୍ଭର ବଶଂବଦ ହେବ ସେ ସ୍ମର ବାପୁଡ଼ା ରେ । ୫ । ନ ମାନିବ ଯେବେ ଦଣ୍ଡକେ ମହତ୍ତ୍ୱ ବନାଇ ଦେବା ଧକଡ଼ା ରେ । ଜଗନ୍ଦେବ ଗୀତେ ବୋଲେ କର ମୋତେ ଅଲପ ତଲପଗଡ଼ା ରେ ।

( ୪୭ )

ରାଗ—କେଦାର, ତାଳ—ଏକତାଳ

ଯେବେ ନବଘନ ଶ୍ୟାମ ବଂଶୀସ୍ୱନ ନିଶୀଥରେ ଥରେ ଶୁଣାଯିବ ।
ସଖି ସୁଖେ ବନେ ମୋଦମୟ ମନେ ବିହରିବୁ ତୋର ଊଣା ଯିବ । ଘୋଷା ।

ପ୍ରସରିବ ମତ୍ତ ମିଳିନ୍ଦ ସଙ୍ଗୀତ କଳପିକରୁତ ମଳୟମରୁତ୍; ଚରାଚର ଲୋକ ଧରାରେ ପୁଲକ ପରାନନ୍ଦ ବୀଜ ବୁଣାଯିବ । ୧ । କଳିନ୍ଦଜାକୂଳ ବିପିନ ବକୁଳ ମଞ୍ଜୁଳମଞ୍ଜରୀ ନିଳୟ ବଳୟେ ଗୋ, ସୁରଭି ସୁଷମ ବିବିଧ କୁସୁମମୟ ଚନ୍ଦ୍ରାତପ ଟଣାଯିବ । ୨ । ଅମ୍ଭେମାନେ ଘେରିଥିବୁଁ ପରମ୍ପରା ଜନ ପର ଗୃହଦ୍ୱାରରେ ତୋହର, ଲକୁଚକୁଞ୍ଜରେ ନୃପ ଉପରେ ଏ ପଦ ପହଣ୍ଡ ମଣାଯିବ । ୩ । ହେବ ସ୍ୱରବଲଜନ୍ୟ ମହୋଜ୍ଜ୍ୱଳ, ଶୃଙ୍ଗାର ମଙ୍ଗଳମୟ ବନସ୍ଥଳ, କଳାବତୀ କୂଳବ୍ରତତରୁମୂଳ ଜଟାତଟୀ-

୪୬ । ଟୀକା—ବ୍ୟାଜ—କପଟ, ବ୍ୟାଜଛନ୍ନ କଲେ ମନ—ମନକୁ କପଟଦ୍ୱାରା ଆବୃତ କଲେ, ପାହାଡ଼ା—ଗଢପଥର ଆଚ୍ଛାଦନ, ସୈରନ୍ଧ୍ରିକା—ବେଶକାରଣୀ, ଅଂସ—କାନ୍ଧ, ବାପୁଡ଼ା—ନଗଣ୍ୟ, ବଶଂବଦ—ଅଧୀନ ।

୪୭ । ଟୀକା—ଊଣା—ଅଲ୍ପତା, ହୀନତା; ମିଳିନ୍ଦ—ଭ୍ରମର, କଳପିକରୁତ—କୋଇଲିର ମଧୁର ଗୀତ, କଳିନ୍ଦଜାକୂଳ···ନିଳୟବଳୟେ—ଯମୁନା କୂଳବର୍ତ୍ତୀ ବକୁଳବୃକ୍ଷମାନଙ୍କର ମନୋହର ଲତାସମୂହରେ, ସୁରଭି ସୁଷମା—ସୌରଭପୂର୍ଣ୍ଣ, ଚନ୍ଦ୍ରାତପ—ଚାନ୍ଦୁଆ, ପରମ୍ପରାଜନପର—ଭୃତ୍ୟପର, ଲକୁଚ—କେଉଟ, ଜଟା—ବୃକ୍ଷର ଅବରୋହ, ତଟୀ—ତୀର, ମୂଳ; ବ୍ରଜବରାରୋହା···

ଠାରୁ ହଣାଯିବ । ୪ । କିଶୋର ଅରୁଣ ପଙ୍କଜ ଚରଣ ସ୍ତନେ ଲଗାଇବା ତା ତୁଲେ ଗାଇବା, ବ୍ରଜବର୍ଗରେହା ସମ୍ପ୍ରଦାୟ ମହାଧନ୍ୟ ମୂର୍ଦ୍ଧନ୍ୟରେ ଗଣାଯିବା । ୫ । ଅଷ୍ଟାଦୁର୍ଗପତି କହେ ଗୋ ସୁଦତି ଦୁଇ ହୃଦସ୍ନେହ ପୀୟୂଷ ପ୍ରବାହ, ବଇଶାଖ ରାକାରଜନୀରେ ଏକା ଛଣା ଗଲ ପର ଜଣାଯିବ । ୬ ।

( ୪୮ )

ରାଗ—ତୋଡ଼ି, ଝୁଲ

କେଳିପ୍ରବୀଣା, କେବଳ ତୋତେ ସିନା ଜଣା ରେ,

ପ୍ରଣୟ ଧନେ ପ୍ରାଣ କିଣା ରେ । ପଦ ।

ନେତ୍ରାନ୍ତ ଖେଳଯୁତ, କରାଇ ମିତସ୍ମିତ, ବିବେକ କର ଦେଉ ବଣା ରେ । ୧ । ଦରଶନ ଅରମ୍ଭେ, ସରସ ଗିର ଦମ୍ଭେ, ପରଷିବାର ସରପଣା ରେ । ୨ । ଦରକଣ୍ଠି ସୁନ୍ଦର, ଦରହାସ ମଧୁର, ସରସ ଗିର ପଦେ ଶୁଣା ରେ । ୩ । କରୁଣାମୟ ଚତ୍ତେ, ଅରୁଣାଧର ମୋତେ, ତୋ ଦାସୀ-ଗଣନାରେ ଗଣା ରେ । ୪ । ମୁଁ ଏହ ଅଭିଳାଷେ, ଶିବ ଶିବାଙ୍କ ପାଶେ, କରୁଥାଏଁ ଜଣାମଣା ରେ ।୫। ଗୁଣେ ଲବଣ୍ୟବତୀ, ପାଶେ ଭାରତୀ ରତି, ଦୁହେଁ ତୋ ଠାରୁ କିଛି ଊଣା ରେ । ୬ । ବୋଲେ ଶ୍ରୀଜଗଦ୍ଦେବ, ତୋ ସ୍ନେହୁଁ ମନୋଭବ-ମସ୍ତକେ ମାର ପାରେ ଠଣା ରେ । ୭ ।

( ୪୯ )

ସଜ ହୋଇ ଥା ରେ, ଗଜରାଜଗତି ଅଜ

ରଜନୀ ଅସିବେ ସଜନୀଳୋତ୍ପଳଶ୍ୟାମ ବ୍ରଜଯୁବରାଜ । ପଦ ।

ସୁନା ଲଡ଼ିକାରେ ମୀନା ପର କଲା ଝିନ ଶାଢ଼ୀ ଯତ୍ନେ ପିନ୍ଧ; ବଲା ପଦ୍ମମଣି ମାଳ କୁନ୍ତଳରେ କଳାପ କମର ବାନ୍ଧ । ୧ । ପୁଣ୍ଡରୀକବର-

---

ଗଣାଯିବା—ବ୍ରଜନାରୀମଣ୍ଡଳୀ ମଧ୍ୟରେ ଅତି ଧନ୍ୟ ବୋଲି ପ୍ରଥମେ ପରିଗଣିତ ହେବା । ସୁଦତି—(ସମ୍ବୋଧନ) ସୁନ୍ଦରଦନ୍ତପଂକ୍ତି ଯାହାର, ରାକା—ପୂର୍ଣ୍ଣିମା ।

୪୮ । ଟୀକା—ମିତସ୍ମିତ—ଈଷଦ୍ଧାସ୍ୟ, ସରସଗିରଦମ୍ଭେ—ସରସ ବାକ୍ୟ ଛଳନାରେ, ଦରକଣ୍ଠି—କମ୍ବୁକଣ୍ଠି, ଜଣାମଣା—ପ୍ରାର୍ଥନା, ଭାରତୀ—ସରସ୍ୱତୀ, ଠଣା—ଆଘାତ ।

୪୯ । ଟୀକା—ମୀନା—ସୁନା ଅଲଙ୍କାରରେ ସୂକ୍ଷ୍ମକାର୍ଯ୍ୟ, ଝିନ—ସୂକ୍ଷ୍ମ, ବଲାପଦ୍ମମଣି — ଇନ୍ଦ୍ରମଣି, କଳାପ — କାଞ୍ଚୀଦାମ, ପୁଣ୍ଡରୀକ — ଶ୍ୱେତପଦ୍ମ,

ଯୁଗେ ଇନ୍ଦୀବର ଯୁଗଳୀ ଲଢ଼ାଇବାକୁ; ମର୍ଦ୍ଦିବା ଲଞ୍ଛନ ତାପିଞ୍ଛେ କନକ-ମଞ୍ଜରୀ ମିଳାଇବାକୁ । ୧ । ମସାରମଣି ହେମସାରସମୂହ ମିଶିବାର ଲୁଟିବାକୁ, ବରତୁଲ ପୟୋଧରେ ରତିବର ଭୁଲେ ଥରେ ଯୁଟିବାକୁ । ୩ । କୁଞ୍ଜାଳୟ ଝଷଧ୍ୱଜ କେଳିରସ ଭୁଞ୍ଜାଇ ଭୁଞ୍ଜିବୁ ପରା; କଞ୍ଜାୟତାକ୍ଷିରେ ଗଞ୍ଜାଇ ଲଲାମ ତା ପରେ ପୁନ୍ନାଗଝରା । ୪ । ଦେଖି ସେ ଉତ୍ସବ ନେନେ ଅମ୍ଭେ-ମାନେ ସୁଖୀ ହୋଇ ଜୀଇବାକୁ; ଦୁହେଁ ତ ଦୁହିଁଙ୍କ ଜୀବ, ଜୀବବନ୍ଧୁ ଯିବ ମଧୁ ପିଇବାକୁ । ୫ । ଶୁଣି ଲଳିତାଙ୍କ ଲୀଳା ତାମରସ ଡଞ୍ଜାଇଲେ ଦେବୀ ସ୍ନେହେ; ସେ ସମୟେ କର ବଦନକୁ ହରଚନ୍ଦନ ଭୂ-ନାଥ କହେ । ୬ ।

( ୫୦ )

ରାଗ—କାମୋଦୀ

ଡେଙ୍ଗାରେ ଜାଣି ଜାଣି ପଡ଼ିଲ ରେ, ଘଣ୍ଟାରବ ପଥ ମୁଁ ଛାଡ଼ିଲ ରେ । କଣ୍ଟା ନିରୁନ୍ଧ ଘାଟୀ, ସଞ୍ଚାର କ୍ଲେଶ-ଧାଟୀ, ବଣ୍ଟା ନେବ ମୁଁ ବୋଲି ଅଡ଼ିଲ ରେ । ପଦ ।

ମରୀଚ ଘନସାର, ଉପଳ କ୍ଷୀର ସର, ବିନା ତ ପିଚୁମର୍ଦ୍ଦ ଲୋଡ଼ିଲ ରେ; ହଙ୍କକୁଷ୍ଠମର୍ଦ୍ଦ ସ୍ଥଳ-ଖେଳ-ସଂଗ୍ରହ, ନୋହି ଦୁର୍ଗନ୍ଧ ଗର୍ତ୍ତେ ବୁଡ଼ିଲ ରେ । ୧ । ଦେବପ୍ରାସାଦମଠ ଜନମିବାରୁ ନିତ, ବଲ୍ମୀକ ଦେଖି କର ଯୋଡ଼ିଲ ରେ, କର୍ମଠ ଧର୍ମଦକ୍ଷ ସାକ୍ଷର ବିପ୍ରମୁଖ୍ୟ ନିତ୍ୟନିବାସ ବେଶ ପୋଡ଼ିଲ ରେ । ୨ । ଜମ୍ଭାହୃତପ୍ରେରିତ ଦମ୍ଭୋଳି ଦୃଢ଼ାଘାତ ବଞ୍ଚାଇବାକୁ ଛାତି ଅଡ଼ିଲ ରେ, ସମ୍ଭାଳିବାକୁ ବଳ ନୋହିବାରୁ କେବଳ କରତଳେ କପାଳ ତାଡ଼ିଲ ରେ । ୩ । ହଂସୁଲ ତୂଳିତଳ୍ପ ପାସୋରି ଦେଇ ଅଳ୍ପ ଲୋକଙ୍କ ପର ତଳେ ଗଡ଼ିଲ ରେ, ରାଧାରମଣ ଘନଶ୍ୟାମ ବୋଲିବା ଜନ ଦେଖି ସଙ୍କୋଚେ ଦନ୍ତ ଭିଡ଼ିଲ ରେ । ୪ । ସମ୍ଭାଷଣ ନ କଲି ରମ୍ଭାସଦୃଶବଲ୍ଲୀ-

---

ଇନ୍ଦୀବର—ନୀଳକଇଁ, ତାପିଞ୍ଛ—ତମାଳ, ମସାର—ଇନ୍ଦ୍ରନୀଳମଣି, ବରତୁଲ (ବର୍ତ୍ତୁଳ)—ଗୋଲ, ରତିବର—କନ୍ଦର୍ପ, କୁଞ୍ଜାଳୟ—କୁଞ୍ଜଗୃହ, ଝଷଧ୍ୱଜ—କନ୍ଦର୍ପ, କଞ୍ଜାୟତାକ୍ଷୀ—ପଦ୍ମପରି ବିସ୍ତୃତ ଲୋଚନ ଯାହାର, ଲଲାମ—ଭୂଷଣ, ଝରା—ପୁଷ୍ପଗୁଚ୍ଛ ।

୫୦ । ଟୀକା—ଡେଙ୍ଗା—ଜଙ୍ଗଲ, ଘଣ୍ଟାରବପଥ—ରାଜମାର୍ଗ, ଘାଟୀ—ପାର୍ବତ୍ୟ ପଥ, ସଞ୍ଚାରକ୍ଲେଶଧାଟୀ—ଚାଲିବା କ୍ଲେଶସମୂହ, ଘନସାର—କର୍ପୂର, ଉପଳ—ପଣା, ପିଚୁମର୍ଦ୍ଦ—ନିମ୍ବ, ହଙ୍କକୁଷ୍ଠମର୍ଦ୍ଦସ୍ଥଳଖେଳସଂଗ୍ରହନୋହି—ପ୍ରସ୍ତରାଦିବଦ୍ଧ ସୁପ୍ରଶସ୍ତ ବିହାରସ୍ଥଳରେ କ୍ରୀଡ଼ା କରିବାକୁ ଅଭିଳାଷ ନ କରି,

ଦେହାଲୁ ଦୂରୁଁ ଦେଖି ତଡ଼ିଲ ରେ, ଗୃହକୁଗିରେ ଅଭ୍ୟାସି କରତ ବଦ୍ଧର୍ଦାସୀ-ମାନଙ୍କ ଅଙ୍କସ୍ଥଳେ ଜଡ଼ିଲ ରେ । ୫ । ବନ୍ଧୁ ଷମାସରସୀ ହୋଇ ଅନ୍ୟା ଭିଳାଷୀ ଅରଣ୍ୟରେ ପଶି ମୁଁ ରଡ଼ିଲ ରେ, କହେ କବିଅର୍ଯ୍ୟମା ମୁଁ ଦୋଷ କଲେ ଯମା ହେବ ନାହିଁ କି ବୋଲି ବାଡ଼ିଲ ରେ । ୬ ।

( ୫୧ )

ରାଗ—ପୂରବୀ

ଅରଜାଥିବାର ପ୍ରୀତ, ବରଜ ଦଅନ୍ତ ମନୁଁ କେହ୍ନ ରୂପେ ପରୁଷ ପୁରୁଷଜାତ । ପଦ ।

ମନୁ ସରଯିବା ଯାଏ ଗୃହବାଣୀ ଭଣି ଦୂତୀପାଣି ଧରି, ତନୁ ସର-ଯାଏ ଭଜିବା ଅଟାରେ ଅନୁସରି ଅନୁସରି । ୧ । ମୁରଲୀ ବଜାଇ ନାଚ ନାଚ ଯାଇ ସଉଧକୁ ଲଗି ଲଗି, ବେଶ ହୋଇ ନଠ ନଦୀତଠବେଠବନବାଠ ଜଗି ଜଗି । ୨ । ଗୃଲିଯିବା ମାର୍ଗ ଚରଣଲଞ୍ଛନ ବାଲି ଗଉରବେ ତୋଳି, ଦେଇ ଶତ ଚୁମ୍ବ ପୁଲକାବଲମ୍ବ ହୋଇ ଶିରେ ବୋଲି ବୋଳି । ୩ । ତୋତେ ତ ଗୋଚର ପେଷି ଶିଶୁଚର ଯେତେରୂପେ ମନାଧରି, କରେ ଦେଇ ମଞ୍ଜୁ କୁସୁମପୁଞ୍ଜରେ ସଜାଡ଼ି ସଜାଡ଼ି ଝରି । ୪ । ପରସନ ହେବା ନୋହିବା ସନ୍ଦେହୁଁ ପରଶନ ଦେଖି ଦେଖି, ଅମ୍ଳାନ କେତକୀପ୍ରସୂନ ଦଳରେ ପ୍ରେମଲେଖ ଲେଖି ଲେଖି । ୫ । ଦେବୀବାଣୀ ଶୁଣି କହିଲେ ମିତଣୀ ଅଷ୍ଟଦୁର୍ଗ ନାଥ ବୋଲେ, ହେଲେ ହେଲେ ବାମ ଶ୍ରମ ଲଭି ପ୍ରେମ ଉଚିତ ସେ ଶ୍ୟାମ ତୁଲେ । ୬ ।

---

ପ୍ରାସାଦ—ମନ୍ଦିର; ବଲ୍ମୀକ—ହୁଙ୍କା, ସାକ୍ଷର—ବେଦଜ୍ଞ, ବିଦ୍ୱାନ୍; କର୍ମଠ—କର୍ମକାଣ୍ଡନିପୁଣ, ବେଶ୍ମ—ଗୃହ, ଜମ୍ଭାହିତ—ଇନ୍ଦ୍ର, ଦମ୍ଭୋଳି—ବଜ୍ର, ବଲ୍ଲୀଦେହା—କୋମଳାଙ୍ଗୀ, ଜରତ୍ତ—ବୃଦ୍ଧା, ବନ୍ଧର୍ଦାସୀ—ଗୃହଦାଣୀ, ଅର୍ଯ୍ୟମା—ସୂର୍ଯ୍ୟ ।

୫୧ । ଟୀକା—ପରୁଷ ପୁରୁଷଜାତ—ନିଷ୍ଠୁର ପୁରୁଷଜାତି; ତନୁ ସର—ଯାଏ—ଦେହ ଶୁଖିଯାଏ; ସୌଧ—କୋଠାଘର; ଚରଣଲାଞ୍ଛନ ବାଲି—ପାଦଚିହ୍ନ ଲଗିଥିବାଧୂଳି; ପୁଲକାବଲମ୍ବ—ରୋମାଞ୍ଚାବଲମ୍ବୀ ଅର୍ଥାତ୍ ରୋମାଞ୍ଚିତ; ମଞ୍ଜୁ କୁସୁମ-ପୁଞ୍ଜରେ ସଜାଡ଼ି ସଜାଡ଼ି ଝରି—ସୁନ୍ଦର ଫୁଲମାନଙ୍କଦ୍ୱାରା ଫୁଲତୋଡ଼ା ସଜାଡ଼ି; ପରଶନ ଦେଖି ଦେଖି—ପ୍ରଶ୍ନ ଦେଖି ଅର୍ଥାତ୍ ଜ୍ୟୋତିଷିକ ଗଣନା କରି କରି; ପ୍ରସୂନ—ଫୁଲ; ବାମ—ପ୍ରତିକୂଳ ।

( ୫୨ )

ରାଗ—ପୂରବୀ

ରେ ସଙ୍ଗାତ, ସମ୍ଭାଳି ନ ପାରେ ଆଜ,
ଅମ୍ଭୋରୁହାକ୍ଷର ଖେଳା କଟାକ୍ଷର ଦମ୍ଭୋଳିରୁ ବଡ଼ ଦାଜ । ଘୋଷା ।
ଦୁରରୁ ପଡ଼ି ବୁଡ଼ିଯାଏ ହୃଦରେ ଲେଉଟିଲେ ନ ଦଶେ ଆଜ, ମରମରେ ପଶି ଦରମର୍ ବରେ ସରସ ସ୍ମରଣ ନୋହୁ । ୧ । ଶବଦ ନ ଥାଇ ସ୍ତବଧ କରାଇ ସେ କ ରତ-ରଣ-ସାହୁ, ମିଥ୍ୟା ଚାଳିଲ୍ ପିଅଦା ପରାଏ ମାର ଫିଙ୍କେ ଅସୁ ଯାଜ । ୨ । ନବଘନ ଅଙ୍ଗ ବିଶେଷ ତରଙ୍ଗ ରଙ୍ଗ ଦଶେ ଦାଜ ଦାଜ, ସୁଦନ କୁନ୍ଦନ କରାଏ ଦୁର୍ଦ୍ଦିନ ଥରେ ଅନାଉଁ ଅନାଉଁ । ୩ । ଗଲେ ହେଲେ ଜାତ ମହତ୍ତ୍ୱ ସମ୍ପତ୍ତି ଫିଟି ତୁଟି ଲୁଟିଯାଉ, ଗଜପତ ଭୂପି ହୁଅ ତାଙ୍କ ଦାସୀ ପିଣ୍ଡେ ପ୍ରାଣ ଥାଉ ଥାଉ । ୪ ।

( ୫୩ )

ରାଗ—ତୋଡ଼ି ପରଜ

ହେ ସରସେ, ମଉଳିଗଲେହେଁ ଜୀବ ।
ମଉଳି ନ ଯିବା ଜବାଅଧରାଙ୍କୁ ଅଭୋଗରେ କେ ତେଜିବ । ଘୋଷା ।
ସେହି ନାଗ ଯୁବା ତା ଜୀବନ ଯିବା ଜଗତ ଜନ ଧିକ୍କାରେ, ଯା ଭୋଗୁଁ ସୁହାସୀ ହୁହାଇଛି ବାସି କୁସୁମମାଳା ପ୍ରକାରେ । ୧ । କୁବେର-କୁମରଦ୍ୱୟ ସୁରପୁର ଗଣିକାକୁ ପର ଧରି, ରସବଶ ହେଲ ଜନ ଯିନା ଭଲ ଦଶବଦନର ପରି । ୨ । ଚନ୍ଦ୍ରରୁହାଁ ସୁଖ ବଡ଼ କ ତା ମୁଖ ଦେଖା ବଢ଼ ବାଢ଼ୁ ବାଢ଼ୁ, ମଧୁର ଅଧର ପିଇ ପୟୋଧର ଉରେ ଦେଇ ଭଡ଼ୁ ଭଡ଼ୁ । ୩ । ଅର୍ଭକ ଗର୍ଭକ କେତକୀ ଦଳରେ ପ୍ରେମଲେଖ ଚଳୁ ଚଳୁ, ହେଉ ପଛେ ବାଧ ସେ ଥିବା ସଉଧ ଗବାକ୍ଷରେ ଗଳୁ ଗଳୁ । ୪ । ଅଷ୍ଟ ଦୁର୍ଗନାଥ ବୋଲେ ମନୋରଥ ତା ବିନା ଅନେ କାହାରେ, ତାଠାରୁ ନାରୀଣ ନ ଲଭି କ ନାଶ ଯାଇ ମାରି ତରୁଆରେ । ୫ ।

---

୫୨ । ଟୀକା—ଅମ୍ଭୋରୁହାକ୍ଷ—ପଦ୍ମନେତ୍ର, ଦମ୍ଭୋଳି—ବଜ୍ର, ଅଙ୍ଗ-ବିଶେଷ ତରଙ୍ଗ ରଙ୍ଗ—ଅଙ୍ଗର ବିଶେଷ ଲାବଣ୍ୟ ମାଧୁରୀ ।

୫୩ । ଟୀକା—ମଉଳି ନ ଯିବା ଜବାଅଧରା—ଅମ୍ଳାନ ଜବାଫୁଲ ପରି ଅଧର ଯାହାର, ଅର୍ଭକ—ଶିଶୁ, ତରୁଆର—ଖଣ୍ଡା ।

( ୫୪ )

ବୃତ୍ତ—ସିନ୍ଧୁକାମୋଦୀ

ଗୁଣନିଧି ଲାବଣ୍ୟଜଳଧିଗୀ ରେ, ମୋ ବାଣୀଟି କହ କହ,
ଦିବ୍ୟ ଅବଧାନେ ଯେବେ ହେଲେ ଧାନେ ଅଛି ମୋତେ ଅନୁଗ୍ରହ । ପଦ ।

ଲୀଳା ସଇଁପରେ ଆରମ୍ଭି ଥିଲୁ ତ ବିଳାସ ମଧୁର ଗାନ, ହରିଣାଙ୍କ ବିମ୍ବ ଗୁହିଁ କପାଁ ବିମ୍ବଅଧରୀ ହେଲୁ ମଉନ । ୧ । ଶଶାଙ୍କନିବାସ ଘାଡ଼ କରି ଶଶ କଲେ ଶ୍ରୀମୁଖ ଆଶ୍ରୟ, ବିମଳ ବଦନ ହେବ ସଲାଞ୍ଛନ, ବୋଲି ଲଭିଲୁ କି ଭୟ । ୨ । ପଲକେ ପଲଙ୍କେ ମୁଁ ପ୍ରିୟଙ୍କ ଅଙ୍କେ ନିଶି ନୋହିଥିଲେ ସ୍ଥିତ, ଏହି ନିଶାଚର ପିଅଇ ରୁଧିର ବୋଲି ହେଲୁ କି ଚକିତ । ୩ । କରିଙ୍କ ଶତର ଅକର୍ମ ପଥର ଦ୍ରବାଏ ମୋ କଣ୍ଠଧ୍ୱନି, ପୀୟୂଷ- ମୃଦୁଳ ବିଧୁର କି ବଳ ବଧିର ହେଲୁ କି ଶୁଣି । ୪ । ଅଷ୍ଟଦୁର୍ଗ- ପତି ବୋଲେ ଗଜଗତି ନ କରି କପଟ ଲେଶ, କରି ଚନ୍ଦ୍ରାଲୋକ ତୁ ହେବାରୁ ମୂକ ତୁଟଏ ସନ୍ଦେହ ଅଶେଷ । ୫ ।

( ୫୫ )

ରାଗ—ଏମନ କଲ୍ୟାଣ, ତାଳ—ଆଡ଼ତାଳ

ଗଜଗତେ ଏ ଜଗତେ ତୁ କାହାର ଚମତ୍କାରୀ ରେ । ପଦ ।

ନୟନ ମୋର ଏ ଭୂଲୋକରେ, ମନ ନାଗ ନାକ ତ୍ରିଲୋକରେ, ବୁଲୁଛି ଯେ, ଭୁଲୁଛି ଯେ, ନାହିଁ ନାହିଁ ତୋହ ପରି ରେ । ୧ । କି ତପ କରିଛି କେତେ ଯୁଗ, ଜିତପଙ୍କଜ ତୋ ପଦଯୁଗ, ସୁହାସି ରେ, ଯାହା ଶିରେ, ଧରୁଅଛି ବସୁନ୍ଧରୀ ରେ । ୨ । ମୁଖ ସିତପଞ୍ଚଦଶୀପତି, ଲାବଣ୍ୟ ନିକୁରମ୍ବର ଗ୍ରୁତି, ଶେଷ କହି, ଶେଷ ନୋହି, ହୋଇଅଛି ତ ଅଧିରୀ ରେ । ୩ । ସୁରଶିଖରିଗରବଚୋର, ଉରସିଜକୁମ୍ଭ ବାଳା ତୋର, ନବତନୁ, ନବତନୁ, ଲତା ଭାଜି ଯିବ ପରି ରେ । ୪ । ବନ୍ଧୁଜୀବ-ବନ୍ଧୁ ଦନ୍ତବାସ, ବନ୍ଧୁ ହେବାବେଳେ ମନ୍ଦହାସ, ପୀୟୂଷରେ, ସରସାରେ, ସ୍ୱାଦୁ

---

୫୪ । ଟୀକା—ହରିଣାଙ୍କବିମ୍ବ—ଚନ୍ଦ୍ରମଣ୍ଡଳ, ସଲାଞ୍ଛନ—କଳଙ୍କଯୁକ୍ତ, ପୀୟୂଷମୃଦୁଳ—ଅମୃତ ଥିବା ହେତୁରୁ ଅତି କୋମଳ; ଚନ୍ଦ୍ରାଲୋକ କରି—ଚନ୍ଦ୍ର ଦର୍ଶନ କରି ।

୫୫ । ଟୀକା-- ଗଜଗତେ — ଗଜଗମନେ, ନାଗଲୋକ — ପାତାଳ, ନାକ—ସ୍ୱର୍ଗ, ସିତପଞ୍ଚଦଶୀପତି—ପୂର୍ଣ୍ଣଚନ୍ଦ୍ର, ନିକୁରମ୍ବ—ସମୂହ, ଅଧିରୀ—ଅକ୍ଷମ,

ପାଇ ଯାଏ ଧରାରେ । ୫ । ଏ ଶୋଭା ଦେଖିଛୁ ଯେଉଁ ଅକ୍ଷି, ସେହି ସେହି ସିନା ତହିଁ ସାକ୍ଷୀ, ଗିରେ କସ, କହି ଶେଷ, ହେବ ମୋ ଦୁଃଖ-ପାସୋରା ରେ । ୬ । ଅଷ୍ଟଦୁର୍ଗେନ୍ଦ୍ର ସେକାଳେ ଭଜେ, ଶ୍ୟାମ ଗିରେ ସପ୍ରଣୟ ଲଜେ, ବସି ମଥା ପୋତ କଥା, ନ କହିଲେ ବିମ୍ବାଧରା ରେ । ୭ ।

( ୫୬ )

ରାଗ—ଏମନ କଲ୍ୟାଣ, ଅଡ଼ତାଳ

ଦୋଷ ବିନା ମୋ ନବୀନା ରୋଷ କମାଇ ବହିଲା ରେ । ପଦ ।

ଗେଲଇ ନାଗରୀ ମେଳେ, ଗଜରାଜଗତି ଗଲାବେଳେ, ମୋ ଅଙ୍କୁ ଫେରି ଥରେ ହେଲେ ମୋତେ ନ ଗୁହିଁଲା ରେ । ୧ । ମନୋହର ବେଶ ପାଇଁ, ସୁମନସ ଖୋଜା ଦେଲି ନେଇ, ତା ନ ଘେନି ଜୀବଧନୀ ମଥାପୋତି ରହିଲା ରେ ।୨ । ଧାନେ ବସି ସଖୀ ସଙ୍ଗେ, ହସୁଥିଲା କାଲି ନାନା ରଙ୍ଗେ, ସେ ସମୟେ ମୋତେ ଦେଖି ହସି ଉଭା ତ ନୋହିଲା ରେ । ୩ । ତା ପ୍ରୀତି ଲଭିବା ଧନୁ, ଲବେ ନ ମାନଇ ଫୁଲଧନୁ, ସେ କପଣ ସହ ବୋଲି ବାହି ଏହା କି ଲହିଲା ରେ । ୪ । ନ ସହି ମୋର ତ ଶିରୀ, କି ବାଣୁଁର ସେ ତ କୋପକରି, ମୋତେ ପଞ୍ଚଶରେ ରଚି ତାକୁ କି ଅବା କହିଲା ରେ । ୫ । ବୋଲେ ଅଷ୍ଟଦୁର୍ଗନାଥ, କି କରିବି ନ ଦଶଇ ପଥ, ଗୁହୁଁ ଗୁହୁଁ ଦଶଦଶ କାମ ଅନ୍ଧାର ପିହିଲା ରେ । ୬ ।

( ୫୭ )

ରାଗ—ତୋଡ଼ି

ଅରେ କୁରଙ୍ଗୀଦୃଶା, ଅଜ ଜାଣି କି ହେବ ତୋ ଦଶାରେ । ପଦ ।

ଲୁଲି ପଡ଼ୁ ତୁ ପଦ୍ମଦଳେ ମୃଦୁଳ ତୂଳୀ ତଳପରେ ଝଣେ, ପୁରୁଷ ତୁଲେ କି ଖେଳିବୁ ସଂସାର ଗୁରୁ ସମରପ୍ରାଙ୍ଗଣେ । ୧ । ନୂତନବୟସୀ କାଣିବା ଯତନ ତୁ ତ ନ ଜାଣୁ ପହିଲେ, ପଚୁଆ ହେବୁ କି ସେ କାମ ଅମଳ ମତୁଆଳ ଯୁବା ତୁଲେ । ୨ । ଶରୀରଲତା ତୋ ନ ଜାଣେ ଜନମୁ ପରିରମ୍ଭଜାତ ପୀଡ଼ା, ବରଟିଲେ ଲମ୍ବି ସହିବୁ କେହି ସେ ଅରଗଳ ଭୁଜ-

---

ସୁରଶୀଖରୀ—ସ୍ତନ୍ଧାଦ୍ରି, ନବତନୁ—ହେ ନୂତନାଙ୍ଗି, ଦନ୍ତବାସ—ଅଧର, ବନ୍ଧୁଜୀବବନ୍ଧୁ—ବଧୂଲିଫୁଲ ସଦୃଶ ।

୫୬ । ଟୀକା—ସୁମନସ—ଫୁଲ, ଫୁଲଧନୁ—କନ୍ଦର୍ପ, ପିହିଲା—ଆଚ୍ଛାଦନ କଲା ।

ଭିଡ଼ା । ୩ । କୋଟିଏ ସବତ ଅଳଙ୍କର ହେଲେ ଗୋଟିଏ ନ ଧେନୁ ଚୁମ୍ବ, ପୀବରସ୍ତନାରେ ବ୍ରଣେ ଏବେ ପୂର ଯିବ ରଦବାସ ବିମ୍ବ । ୪ । ବିଧୁବଦନା ତୋ ଲଜ ବଳିଯିବ ନିଧୁବନ ପରିରମ୍ଭେ, ରାଜିବ ଚରଣ ଝୁଲିଲେ ନୂପୁର ବାଜିବ ଯେ ଝୁମୁ ଝୁମୁ । ୫ । ଭରିତ କର ସମସ୍ତ ମନୋରଥ ବରତ ଅଛିବୁ କେହ୍ନ, ବୀର ରାମଚନ୍ଦ୍ର ଦେବ ବୋଲେ ମୋର ନିରନ୍ତର ଚିନ୍ତା ଏହି । ୬ ।

( ୫୮ )

ରାଗ—କାଫି

ଭିଡ଼ିଲିଟି ଅସି ଦରହାସି ଥରେ ରଖ ରେ । ପଦ ।

ନିଧୁବନବିଚକ୍ଷଣା, ଜାଣି ତୋ କରୁଣା ଊଣା, ମାରି ଗିର୍ବାଣାରି ମୋତେ ସାରିଦେଲା ଦେଖ ରେ । ୧ । ଶରଣ ତୁହିଟି ବୋଲି, ଚରଣକଞ୍ଜ ଧରିଲି, ରୁହିଁଲ ଯା ନାହିଁ ଧନ କାହିଁକି ଏ ଦୁଃଖ ରେ । ୨ । ନ ଶୁଣି ମୋ ଗୁହ୍ୟବାଣୀ, ଗଣ୍ଡଦେଶେ ମଣ୍ଡି ପାଣି, ଭୀରୁ କି ମଉରୁ ମହୀ ଚିରୁଅଛୁ ନଖ ରେ । ୩ । ଧରୁଛୁ ପଲ୍ଲବ କର, ଏବେ କୃପା ଲବ କର, ହାସ ସମୁଲ୍ଲାସ ପରକାଶ ବିଧୁମୁଖ ରେ । ୪ । ଆରେ ନବୀନ ବନିତା, ଲଗାଇଣ ପ୍ରୀତିଲତା, କାଟିପକା ନାହିଁ ସେ ଏକାଠି ସବୁ ସୁଖ ରେ । ୫ । ଅଷ୍ଟାଦୁର୍ଗନାଥ ଶିରେ, କଷ୍ଟନାଶି ହସି ଦରେ, ଧରଣୀରାମ୍ବୀର ଅସି ବିରାଜିଲା ପାଶ ରେ । ୬ ।

( ୫୯ )

ରାଗ—ଗୁଜ୍ଜରୀ

ବନ୍ଧୁ ଅଦୋଷେ, ରସନା ରୋଷେ, ଧରୁଛୁ ପଙ୍କଜପାଣି । ଘୋଷା ।

ଜନମରୁ ବାଣୀବଚନୀ ମୁଁ ଊଣୀ, ଜନ କି ନ ଜାଣୁ ତାହା ରେ, ସୂଚି-ଶର ଧାରେ, ସରିଲିଟି ବାରେ, ଧନ ତୁ ନ ବୋଲ ଆହା ରେ । ୧ । କରିଥିଲ ପରି, ମୋତେ ଜବାଧରୀ, ଜଣେ ତୋ ଚରଣ ଦାସୀ ରେ, ଚିହ୍ନାଏ

---

୫୭ । ଟୀକା—ଲୁଳିପଡ଼ୁ—କ୍ଲାନ୍ତ ସହକାରେ ଲମ୍ବ ହୋଇଯାଉ, ଝଟୁଆ—ହଠହଠା, ଅମଲ – ନିଶା, ଜନମୁ—ଜନ୍ମରୁ, ପରିରମ୍ଭ—ଆଲିଙ୍ଗନ, ସବତ—ରାଣ, ପୀବର—ପୃଥୁଳ, ରଦବାସବିମ୍ବ—ଅଧରବିମ୍ବ, ନିଧୁବନ—କାମକ୍ରୀଡ଼ା ।

୫୮ । ଟୀକା—ନିଧୁବନବିଚକ୍ଷଣା—ରତିପଣ୍ଡିତା, ଗିର୍ବାଣାରି—କନ୍ଦର୍ପ, ଭୀରୁ—ହେ ଭୟାଳୁ, ହାସସମୁଲ୍ଲାସ—ହାସବିଳାସ, ହସିଦରେ—ଅଳ୍ପହସି ।

ବିକଳା, ହେଉ ନାହୁଁ କଳାକୁନ୍ତଳା ନୂଆବୟସୀ ରେ । ୧ । ଅଟଙ୍କିଛୁ ତୋତେ, ବନ୍ଧୁ କେତେ କେତେ, ଜନେନ୍ଦୁ ତପ କରି କାଶୀରେ, ତୁ ଚିତ୍ତ ପଥର, କଲେ ତ ଏଥର, ଭଗାରିଏ ଦେବେ ହସି ରେ । ୩ । ସଖୀବାନ୍ଧା ବେଣୀ, ଫେଡ଼ି କୋଳେ ଆଣି, ନ ଦେଲେ ମୁଁ ଖୋସା ଖୋସି ରେ, କୃପା ଥାଉଁ ଚିତ୍ତେ, ଛନ୍ଦ ପରି ମୋତେ, ଗେଲେ ବସୁଥାଇ ରୁଷି ରେ । ୪ । ତେଡ଼େ ବଡ଼ ସ୍ନେହ, କି ଦୋଷରୁ କହ, ତୋ ମନୁ ଯାଉଛୁ ଖସି ରେ, ଜଗଦେବ ବୋଲେ, ଶ୍ୟାମ ଜଣାଇଲେ, ମଜ୍ଜି ଦୁଃଖ ଜଳରାଶିରେ । ୫ ।

( ୬୦ )

ରାଗ—ଆଶାବରୀ

ଚନ୍ଦ୍ରମାଶାରେ, ଦେଲି ସୁନ୍ଦରୀମଣି ମହେନ୍ଦ୍ରଭୂଢ ମୋରେ । ପଦ ।

ଫୁଲବନେ କେଳିରସକୂଳେ, ନବ ସଙ୍କେତ କଙ୍କେଳିମୂଳେ, ଶେଯ ସାଜି ନାନା ପୁଷ୍ପଦଳେ, ବସିଥିଲି ସେ ରମ୍ଭୋରୁ ସମ୍ଭୋଗ ଆଶାରେ । ୧ । ଏ ସମୟେ ମୋ ଜୀବନଧନ, ଘେନି ଘନ ସର୍ବାଙ୍ଗଚନ୍ଦନ, ତେଜି ବାଜିବା ମଣ୍ଡନମାନ, ବିଜେ କଲା ମଲ୍ଲୀଗର୍ଭ ଭୂଷିତ ଖୋସାରେ । ୨ । ଶଙ୍ଖକଣ୍ଠୀକି ମୁଁ ଦେଖି କରି, ରଙ୍କ ରତନ ଲଭିଲା ପରି, ଅଙ୍କପର୍ଯ୍ୟଙ୍କେ ବସନ୍ତେ ଧରି, ଗଲି ଅଙ୍ଗ ଅନଙ୍ଗ ମର୍ଦ୍ଦିବା ଦୁର୍ଦ୍ଦଶାରେ । ୩ । ଉରେ ଜମାଇ ଉରୋଜ କୁମ୍ଭ, କରୁ କରୁ ଗାଢ଼େ ପରିରମ୍ଭ, କଲି ସହସ୍ର ଚୁମ୍ବ ଆରମ୍ଭ, ମନ ବଳିଲା ନାହିଁ ପୀୟୂଷ ପ୍ରଶଂସାରେ । ୪ । ଫେଡୁ ଫେଡୁ ବାଳାବର ନୀବି, ଯେତେ ଭାବ ତା କି ବର୍ଣ୍ଣିବି, ବିବସନ କାଳେ ଯେଉଁ ଛବି, ଆଖି ଦେଖିଲି କେଉଁ ଭାଗ୍ୟରୁ ଏ ରସାରେ । ୫ । ଝୁମି ଝୁମି କାମମଦଭୋଳେ, ଝୁଲୁ ଝୁଲୁ ନାସାଭୂଷା ଲୋଲେ, ଝଲ ଝଲ ଝଂଠକଲାବେଳେ, ଝିଙ୍କି ନେଲି ସ୍ୱର୍ଗସୁଖ ମାର୍ଗକୁ ସୁସାରେ । ୬ । କହେ ଅଷ୍ଟାଦୁର୍ଗ ହରିହସ୍ତ, ପରସ୍ପର ପ୍ରେମ ରସମସ୍ତ, ଜାତ ହେଲା ଯାହା ସେ ସମସ୍ତ, ଝରଝର ଅପୂର୍ବ ରସ ବରଷାରେ । ୭ ।

---

୫୯ । ଟୀକା—ବୀଣାବଚନୀ ( ସ୍ତ )—ମଧୁରଭାଷିଣୀ, ସ୍ମର ଶର ଧାରେ—କନ୍ଦର୍ପ ବାଣର ଧାରରେ, ଜବାଧରୀ—ଜବାଫୁଲ ପରି ଅଧର ଯାହାର ।

୬୦ । ଟୀକା—ମହେନ୍ଦ୍ରଭୂଢ—ଇନ୍ଦ୍ରସମାଢ, କଙ୍କେଳି— ଅଶୋକବୃକ୍ଷ, ମଣ୍ଡନ—ଅଲଙ୍କାର, ପୀୟୂଷ—ଅମୃତ, ନୀବି—କଟିର ବସ୍ତ୍ରବନ୍ଧ, ହରିହସ୍ତ—ଇନ୍ଦ୍ର ।

( ୭୧ )

ରାଗ—କରୁଣ ଶ୍ରୀ

ବନ୍ଧୁ ରୁଷିଲ, ଅକ୍ରୂରର ପର ପ୍ରସ୍ତ ଦଶିଲ,
ରାମା ରୁଷିଲ, କାମାନଳମୟ ସବୁ ଦଶିଲ,
ବାଳା ରୁଷିଲ, ହାଳାହଳ ଜ୍ୱାଳାମୟ ଦଶିଲ । ଘୋଷା ।

କି କଲ ଅହା ସୁଶ୍ରୋଣି, ମୋ ପରମ ସୁଖଶ୍ରେଣୀ, ସ୍ୱର୍ଗ ବଡ଼ଭି ନିଃଶ୍ରେଣୀ ଖସିଲ ରେ । ୧ । ଅନଙ୍ଗ ବାଣ ବରଷା, ସଙ୍ଗେ ତ କୁରଙ୍ଗ ଦୃଶା ସରୋଷ ଅପାଙ୍ଗଭୂଷା ମିଶିଲ ରେ । ୨ । ତାର ନିଗ୍ରହ ମୁଁ ପର,-ବାରକୁ ଓର କୁହାର-ବାର ନୀରସ ଉଗାର ହସିଲ ରେ । ୩ । ଦେଖି ନ ଥାଇ ଏ ଭୂତ, ଶିଖାଇ ଦୁର୍ନୀତି ନିତ, କେଉଁ ପିଶୁନ ମୋ ଧୃତ କଷିଲ ରେ । ୪ । ସନ୍ତାପ-ସିନ୍ଧୁକୁ ନବ, ବାଳାସିନା ସିନା ପ୍ଲବ, ଶ୍ରୀ ବାଲୁକେଶ୍ୱର ଦେବ ଭାସିଲ ରେ । ୫ ।

( ୭୨ )

ରାଗ—ତୋଡ଼ି ପରଜ

ରେ କିଶୋର, ରୁଷିବାର ସିନା ଜାଣୁ,
ରସ-ଜଳଧିରେ ଅବଗାହି ଧୀରେ, ତହୁଁ ତ ସାର ନ ଘେଣୁ ରେ । ଘୋଷା ।

ରମଣୀୟ ଜାଣି, ରସି ଯହିଁ ପୁଣି, ନ ଡର ପରିବାଦକୁ; ରୋଷ, ଅଙ୍ଗୀକାର କର କି ତାହାର ଅଲପ କଥା ପଦକୁ । । ୧ । ରତ୍ନ ତ ମୃଦୁଲ ନୋହେ ତାକୁ ଅଲଙ୍କାରକୁ ନିକି ନ ଆଣି; ରସିକାଙ୍କ ଶିଖାମଣି ଯେନୁ ଶିଖା ଶିଖି ଛୁହ କାହୁଁ ଶୁଣି ରେ । ୨ । ରକତ ବ୍ୟକତ, ହେଲେ ଯଦି କ୍ଷତ, ହୁଅଇ ଆସେଚନକ, ରଦାଗ୍ର ସ୍ପରଶ ଅବା କେଉଁ ଦୋଷ ନ କର ଚତେ ବିବେକ । ୩ । ରତିଭିଶରଣ ଯାହାର ଶରଣ ଦେଖିଥିଲେ ତାକୁ ନେନେ; ରହନ୍ତୁ କି ଲାଜ କୋପେ ଜମି ଆଜ ଭୁଜେ ଭିଡ଼ ଦେବା ମାନେ । ୪ । ରଙ୍କରତନ ଲଭକୁ ପର ଏବେ ରତି ଯତନକୁ ଭଲେ; ରମ୍ୟ ଶ୍ୟାମଛବି କିଶୋରରେ କବିରବି ରାୟଗୁରୁ ବୋଲେ । ୫ ।

---

୭୧ । ଟୀକା—ଅକ୍ରୂରର—କ୍ରୂରଭିତର, ହାଳାହଳ—ବିଷ, ସୁଶ୍ରୋଣୀ—ନିତମ୍ବବତୀ, ବଡ଼ଭି—ଚନ୍ଦ୍ରଶାଳା, ନିଃଶ୍ରେଣୀ—ନିଶୁଣି, ପିଶୁନ—ନିଷ୍ଠୁର, ପ୍ଲବ—ନାହା, ପରିବାର—ଭୃତ୍ୟ ।

୭୨ । ଟୀକା—ଆସେଚନକ—ତୃପ୍ତିକାରକ, ରଦାଗ୍ର—ଦାନ୍ତ ଅଗ ।

( ୭୩ )

ପସ୍ଥିର କେ ଅଣିଛୁ ଗଜଗତିଙ୍କ ସେ ମୋ ଏ ଜଗତୀ କି । ଘୋଷା ।

କି ସୁନ୍ଦର ଦରହସିତ, ଶୀତକରକର ଲଳିତ, ଦଶନବସନ ନବ ଜବାସୁନ ଉପରେ କେ ରଖି ଦେଲା ମୋତିକ । ୧ । ଅହା ତାହା ଗୃହାଣି ଠାଣି, ବଣାମୃଗ ନ ପାରେ ଅଣି, ମଳିନ ନୋହିବା ନଳିନ ଯୁଗଳେ ଅଳି କରୁଥିଲା ରଳି ରତିକ । ୨ । ସ୍ଫୁଟ ତିଳକୁସୁମ ନାସା, ସ୍ଫୁଟ ଫୁଲ ସରସ ଭାଷା, ଅଳୀକ ଅଳାପି ଗୃଳା ଦେଉଥିଲା ପ୍ରତି ପଦରେ କେଳିତ-ପତିଙ୍କ । ୩ । ହେମରମ୍ଭା ତରୁ ଊରୁକୁ, ପ୍ରେମରଙ୍କ ନଷ୍ଟ ଭୂରୁକୁ, ରୁଚକ ରୁଚିର କୁଚକଳଶକୁ ଗୃହଁ ହଜାଇବେ ଯତି ମତିକ । ୪ । ଇଷ୍ଟତମା ସଖୀଙ୍କି ନସେ, ଅଷ୍ଟଦୁର୍ଗ ମହେନ୍ଦ୍ର ଭାଷେ, ମୋଦେ କୋଳେ ବସି ପଦେ କହୁ ହସି ମୋ ସବତଟି ସେ ରସବତୀକ । ୫ ।

( ୭୪ )

ରାଗ—ପୂରବୀ

ରସନାଧି ଭଲା ଆଚରିଲା ମୋହପରି ବାଧି ରେ । ପଦ ।

କଙ୍କିଣି ତାଳକୁ ନଚୁଥିଲା, ଝୁଲି ଝୁଲି ନଥ ନାଚୁଥିଲା, ନେତ୍ର ପୁଣ୍ୟଫଳ ପାଉଥିଲା, ମୋତେ ବ୍ରହ୍ମପଦ ସୁଖ ଯାଉଥିଲା । ୧ । ଅଧୋ ମୁଖେ ରତ୍ନସାନୁ ଥିଲା, ତା ନିକଟେ ସୁଧାଭାନୁ ଥିଲା, ତହିଁ ତିଳଫୁଲ ତଳେ ଝଲମଲ ବୁଲାକ ଝୁଲି କି ମାନୁଥିଲା । ୨ । ଅନେ ତା ଗୃଳାର ଲବ କାହିଁ ବବେକ ବାକି ରହିଲା ନାହିଁ, ବନ୍ଧୁ ବନ୍ଧୁ ଝାଳ ସୁନ୍ଦର କପୋଳ-ମୁକୁରେ ମକେରାଳୀଳା ଗୃହଁ । ୩ । ବନ୍ଧୁ ମୋ କି ଲଜ ଭଜୁଥିଲା ଥରେ ଥରେ ନେତ୍ର ବୁଜୁଥିଲା, ଥରେ ଥରେ ଗୃହଁଦେଇ ଇନ୍ଦୀବରେ ମଦନଦେବକୁ ପୂଜୁଥିଲା । ୪ । ନୀଳ କୁଞ୍ଚିତ କୁନ୍ତଳତତି, ଭଜୁଥିଲା ଅସ୍ତବ୍ୟସ୍ତ ଗତି, ମିଶୁଥିଲା ଗଭୀ କମରେ ଖସିବା କୁସୁମ ଶ୍ରୀ ଜଗଦେବ ଧୃତି । ୫ ।

---

୭୩ । ଟୀକା—ଜଗତୀ—ପୃଥିବୀ; ଶୀତକରକରଲଳିତ—ଚନ୍ଦ୍ରକିରଣ ପରି ମନୋହର, ଦଶନବସନ—ଅଧର; ନବଜବାସୁନ—ନୂଆ ମନ୍ଦାରଫୁଲ, କେଳିତପତି—କନ୍ଦର୍ପ, ରୁଚକ—କଣ୍ଠାଭରଣ, ହାର; ସବତ—ଗୁଣ ।

୭୪ । ଟୀକା—ସାନୁ—ପର୍ବତଶିଖର ବା ଶୃଙ୍ଗ, ସୁଧାଭାନୁ—ଚନ୍ଦ୍ର, ଗୃଳ—ଦୀପ୍ତି, କପୋଳମୁକୁର—ଗଣ୍ଡଦେଶରୂପ ଦର୍ପଣ, ବୁଲାକ—ନାସିକାର

( ୬୫ )

ରାଗ—କଳହଂସକେଦାର

ତାର ଗିରେ କି ବିଶ୍ୱାସ, ତାର ସ୍ନେହେ କି ବିଶ୍ୱାସ,
ତାର ପରେ କି ବିଶ୍ୱାସ, ଯାର ଜାରବିଳାସ ଗୋ । ପଦ ।

ବୋଲେ ଶତ ଥର ଶପଥରେ ମୋର ଅନେ ନାହିଁ ଅଭିଳାଷ, ହୋଇଥାଏ ବୋଲି ଚନ୍ଦ୍ରାବଳୀ କେଳିନିକୁଞ୍ଜ କୁସୁମବାସ ଗୋ । ୧ । ଦନ୍ତବାସେ ସତୀ ଯୁବତୀଙ୍କ ଜାତି ନେବା ଭଙ୍ଗୀମିଶା ହାସ, କଥାକୁ ଶାଶୁଙ୍କ ମଥାକୁ ଛୁଅଇଁ ଏପରି ଯାହା ମାହସ ଗୋ । ୨ । ପ୍ରତି ରାତି ନାରୀମଣିର ରମଣୀତରେ ବଳାଏ ମୁହାଁସ, ପାରେଟି ତେଜିବା ଅପଦୁ ଯା ପଦଜଳଜ-ତଳ ପରଶ ଗୋ । ୩ । ହୁଏ କେତେ ପ୍ରିୟ ଗିରେ ସବିନୟ ପ୍ରକାଶି ମୋହନ ରସ, ମୁରଲୀ ବଜାଇ ଡାକେ ଯହୁଁ ମାଇ ଆଦରେ ବଢ଼ି ନିରାଶ ଗୋ । ୪ । ମୁଁ ନଗର ଯୁବରାଜ ବୋଲି ଅବଲେପରେ ବହେ ଉଲ୍ଲାସ, ଯେ ପୁଣି କପଟେ ଲୁଚି ନଦୀତଟେ ଲୁଟଇ ପାଲଟା ବାସ ଗୋ । ୫ । ତେବେ ହେଲେ ଏ କି ଚଜ ଧିକ ତାର ଧନ ଜୀବନ ନିବାସ, ଅଷ୍ଟାଦୁର୍ଗ-ପୁରନ୍ଦର ବୋଲେ ଯାର ଗତି ନୁହେ ପୀତବାସ । ୬ ।

( ୬୬ )

ରାଗ—ଧନାଶ୍ରୀ

ଧେନ ଧେନ ମନ ଘନସମ ଶ୍ୟାମଳିଆକୁ,
ପିଇଟି ଦନ୍ତୁ ପୂତନା ପ୍ରାଣକବଳିଆକୁ । ପଦ ।

ବରଙ୍କୁ ଗୋପୀଙ୍କର ମକରକୁଣ୍ଡଳିଆକୁ, ଅଖଣ୍ଡଚନ୍ଦ୍ରସୁନ୍ଦର ମୁଖ-ମଣ୍ଡଳିଆକୁ । ୧ । ମଦଗଜଗମନକୁ କଦମ୍ବମୂଳିଆକୁ, ମଖଶାଳାଭିଖାରୀକୁ ଶିଖଣ୍ଡଚୂଳିଆକୁ । ୨ । ସମୁଦ୍ରକୁ କରୁଣାର ଯମୁନାକୂଳିଆକୁ, ଗୀତ ନଟ-

---

**ଅଳଙ୍କାରବିଶେଷ, ମକର୍ଣ୍ଣ—ଗଣ୍ଡଦେଶରେ ଅଙ୍କିତ ଚିହ୍ନବିଶେଷ, କୁନ୍ତଳତତି—କେଶସମୂହ, ଚୁଲକ ଚୁଲକ—ଦଣ୍ଡିର ଚୁଲିବା ।**

୬୫ । ଟୀକା—ଜାରବିଳାସ—ଉପପତି ରୂପେ ବିହାର, ଶପଥରେ—ରାଣରେ, ଦନ୍ତବାସ—ଅଧର, ମୁହାଁସ—ଅଭିମାନ, ରମଣୀତରେ—ଅନ୍ୟ ପତିଠାରେ, ପାଦଜଳଜ—ପାଦପଦ୍ମ, ଅବଲେପ—ଗର୍ବ ।

୬୬ । ଟୀକା— ପୁରନ୍ଦରମଣି—ଇନ୍ଦ୍ରମଣି; ମକରନ୍ଦଲିଟ—ମଧୁଲୋଭୀ ଭ୍ରମର, ଧରାଧରଧାରୀ କରେ—ଗୋବର୍ଦ୍ଧନପର୍ବତ ଧାରଣକାରୀ ହାତରେ ।

କମ୍ବୁକଣ୍ଠକୁ ପୀତଦୁକୂଳଅଙ୍କୁ । ୩ । ବଲ୍ଲବେନ୍ଦ୍ରନନ୍ଦନଙ୍କୁ ପଲ୍ଲବମାଳାଅଙ୍କୁ, ଭଜେ କବିରବ ତାହାଙ୍କର ପାଦଜଳଅଙ୍କୁ । ୪ ।

( ୬୭ )

ରାଗ—ଶଙ୍କରାଭରଣ

ରାଧେ ରସିକାରାଜ, ତୋ ପ୍ରବୀଣାପଣ ଜଣାଯିବ ଆଜ,

ନନ୍ଦର ତନୟ ମୁରନ୍ଦର ମଣି ମକରନ୍ଦ ଲମ୍ପଟ ତୁ ଅରବିନ୍ଦଟି ସୁନ୍ଦର । ପଦ ।

ହେବା ଦନ୍ତ ସ୍ତନ ପୀନ କରକଶ, ମଦଗତେ ବସୁନ୍ଧରା ମଣ୍ଡଳଙ୍କ ମଣ୍ଡୁପରା, ଏବେ ଧରାଧରଧରା କରେ ବସ । ୧ । ଭିନ୍ନ ସଖୀ ଦେହେ ସ୍ନେହେ ଜଡ଼ିବାର, ଭିନ୍ନ ସେ ଶିଖଣ୍ଡଚୂଳ ମରକତ ଅର୍ଗଳ, ବଳିଷ୍ଠ ବାହୁ ଯୁଗଳ ଭିଡ଼ିବାର । ୨ । ଅମ୍ଭେ ସିନା ପ୍ରଭୁ ବୋଲି କରୁ ଭୀତ, ତୁ ଯାହା କଲେ ତା ସହୁ, କ୍ଷମା କରିବେ ସେ କାହୁଁ ବାମାଗର୍ବ-ଚନ୍ଦ୍ର ରାହୁ କଳାହାତୀ । ୩ । କି ହେବ ମନ୍ଦରେ ଭୁରୁ ନଚାଇଲେ, ଯଶ ହେବ ସେହି କାଳେ ନଟ-ମୁକୁଟଙ୍କୁ କୋଳେ, ନଚାଇ ସେ ରସେ ବଳେ ରୁଚାଇଲେ । ମୃଦୁ ତନୁ ବୋଲି କେ ଛାଡ଼ିବ ଆଜ, ଅଙ୍କୁ ଯିବାଯାଏ ଶାନ୍ତ ହୋଇବ ନାହିଁ ଯେ ଦନ୍ତ, କରରୁହ-ପ୍ରାନ୍ତକୁନ୍ତ ଖେଳା ଦାଉ । ୫ । ବୋଲେ ଅଷ୍ଟ-ଦୁର୍ଗନାଥ ଜଗଦ୍ଦେବ, ସଖି ପରିହାସ ଶୁଣି ଲଜେ ହସି ଠାକୁରାଣୀ, ମନେ କଲେ ହେଲେ ପୁଣି ବୁଝାଯିବ । ୬ ।

( ୬୮ )

ରାଗ—ସିନ୍ଧୁକାମୋଦୀ

ପ୍ରାଣବନ୍ଧୁ, କର ଗରବ କାହିଁକି ରେ, ପରବ ଚନ୍ଦ୍ରମା ଚିତ୍ତେ, ବନିଲନା କି ତୋ ଝଳ ଲବଣ୍ୟାଦି ଗୁଣଗଣରୁ କାହିଁତେ । ଘୋଷା ।

ଜଳଧିର ପଙ୍କ କି ଅବା କଳଙ୍କ ଖଣ୍ଡେ ଶିରୀ କର ଫୁଲେ, ନାହିଁକି ନଜର ରସାଳସା ତୋର ନେତ୍ର ଇନ୍ଦୀବର ଫୁଲେ । ୧ । ମୋ ସୁଧା ତୁଳରେ ବସୁଧା ତଳରେ କେ ଅଛୁ ବୋଲି ଯା ଭାବେ, କର୍ଣ୍ଣେ ନାହିଁ ଶୁଣି ତୋ ମୃଦୁଳ ବାଣୀବିଳାସକୁ ପରା ଲଭେ । ୨ । କରିଛୁ କି ମନେ ଏ ତିନି ଭୁବନେ ମୁଁ ଏକା ରଜନୀକର, ଫୁଲଶେଯରତେ ତୋ ଚରଣ କେତେ ଲାଗଇ ରଜନୀକର । ଜଗତୀରେ ଏକା ମୋହର ଚନ୍ଦ୍ରିକା

୬୮ । ଟୀକା—ପରବଚନ୍ଦ୍ରମା—ପୂର୍ଣ୍ଣିମା ଚନ୍ଦ୍ର, ଝଳ—କାନ୍ତ, ଜଳଧିର—ସମୁଦ୍ରର, ରଜନୀକର—ଚନ୍ଦ୍ର ଓ ଧୂଳିସମୂହ ।

ରୁଚିର ବୋଲି ଯେ ବୋଲେ, କୁନ୍ଦବିକାଶକୁ ନିନ୍ଦିବା ହାସକୁ ଖେଳାଇ ଦେଲୁଟି ଗେଲେ । ୪ । ଭାଗ୍ୟ ଅଚ୍ଛି ଚତ୍ତ୍ୱେ ଭଜିଛନ୍ତି ମୋତେ ଅନେକ ନକ୍ଷତ୍ରମାନେ, ଶ୍ରୀହସ୍ତ ଚରଣକଞ୍ଜ ନଖଗଣ ଶୋଭା ଗୁହିଁ ନାହିଁ ଧନେ । ୫ । ଚେକିଦିଅ ମୁଖ ଏ ଶୀତମୟୂଖଜାତ ହୋଇ ମରୁ ଚଳି, ନିତ ନିଧୁବନେ ଅନେକ ବିଧାନେ କେତେ ଚନ୍ଦ୍ର ଥାଇ ଗୁଳି । ୬ । ଚକୋର ଏହାର ବଡ଼ ପରଗୁର ତୁ ସେବା ଦେଇଛୁ ମୋତେ, ଅଷ୍ଟାଦୁର୍ଗଧରାମଣ୍ଡଳୀ ଅମରାବତୀପତି ବୋଲେ ଗୀତେ । ୭ ।

( ୬୯ )

ରାଗ—ସୁରଟ

ମନ ଜମି ଯା, ସିନ୍ଧୁଜେମା ପ୍ରାଣଧନେ, ସିତପଙ୍କଜନୟନେ । ପଦ ।

ରମ୍ୟଯାନପଦକରେ, ମୁନି ହୃଦ ପଦକରେ । ୧ । ଶରଣାଗତ ବନ୍ଧୁରେ, କରୁଣା ସୁଧାସିନ୍ଧୁରେ । ୨ । ଦୀନଜନ ବତ୍ସଳରେ, ନୀଳାଦ୍ରି କଣ୍ଠୀରବରେ । ୩ । ଦଳିତ କଳୁଷପୁଞ୍ଜେ, ଇନ୍ଦ୍ରବନ୍ଦ୍ୟ ପଦକଞ୍ଜେ । ୪ । ନିଗମ କୁଞ୍ଜ କୁଞ୍ଜରେ, ଭବ ଭୟାଳୁ ପୁଞ୍ଜରେ । ୫ । ଛୋଟରାୟ ଦେବ କହେ, ଦୁଃଖିତମର ବାରହେ । ୬ ।

( ୭୦ )

ରାଗ—ମାଳବ

ସେ ମୋହନ ସ୍ନେହ ରେ, ସହଚରି କି ପଦାର୍ଥ କହ ରେ । ପଦ ।

ନୋହେ ଅଭୟ ନ ରଖଇ ଦକ, ଅମଳ ନୋହେ ଅତି ଉନ୍ମାଦକ, ହୋଇ ହୃଦୟ ଅଦୃଶ୍ୟପଦକ, ହଜାଇ ଦିଅଇ ବିବେକଯାକ । ୧ । ନୋହେ ଘୁକନେତ୍ରଗୋଳକକୁଳ, ଦୃଶ୍ୟ କରାଏ ଗାଢ଼ତମ ସ୍ଥଳ, ଲଙ୍ଘାଏ ଦୁର୍ଗ ନୋହେ ଜଙ୍ଘାବଳ, ବୁଡ଼ାଇ ଦିଅଇ ନୁହଇ ଜଳ । ୨ । ନୁହଇ ପରାଣ ନୁହଇ ଗ୍ଲାଡ଼ି, ଅଟକଇ ପଦ ନୁହଇ ବେଡ଼ି, ବୃଷ୍ଟି ବାରଣ ଛତ୍ରକୁ ନ ଲୋଡ଼ି, ନ ମାନେ ନଭମାସକିଣା ଝଡ଼ି । ୩ । ନୋହେ ସଂକଳପ ମାନସେ ରହେ, ହେଲା ନୋହେ ଯତ୍ନ ନ ରଖେ ଦେହେ, ଅନଳ ନୋହି ଶୀର୍ଣ୍ଣ କରେ ବିରହେ, ସନ୍ଦେହେ ଶ୍ରୀମୁକୁନ୍ଦଦେବ କହେ । ୪ ।

---

୬୯ । ଟୀକା—ଜମି ଯା—ଏକୀଭୂତ ହୋଇ ଯା, ସିତ—ଶୁକ୍ଳ, ରମ୍ୟଯାନପଦକର—ଚକ୍ରଧାରଣକାରୀ ।

୭୦ । ଟୀକା—ଘୂକ—ପେଚକ, ଜଙ୍ଘାବଳ—ବେଗଗାମୀ ଦୂତ, ନଭମାସ—ଶ୍ରାବଣ ମାସ ।

( ୭୧ )

ରାଗ—ରଣବିଜେ

ବଳା ନା ସ୍ନେହ କଳାନାଗରେ, ସରସିରୁହି ରଜନୀ ଜାଗରେ । ଘୋଷା ।
ଦେଖୁ ଛୁ ତ ଗବଂକୁଟିଳ ଶୃଳ, ଭୁଜଙ୍ଗମୁଙ୍ଗବ ମୁଁ ସିନା ବୋଲ ॥
ତାହାର ଅତ ପ୍ରୀତ କଳାପୀରେ, ତହୁଁ ବହଇ ତା କଳାପ ଶିରେ । ୨ ।
ମୁରଲୀଧ୍ୱନି ଦମ୍ଭ ଗରଜନ, କେ ସହିବ ନୋହି ମୋହିତ ମନ । ୩ ।
କଲେ ତା ଭୋଗେ ଅଭିଳାଷ ଲବ, ଅଣ୍ଟିବ ନାହିଁଟି ବନପଲ୍ଲବ । ୪ ।
ଧୀର ହୋଇ ସରସିରୁ ସଦନେ, ବଂଶୀ ଦେବ ଯେବେ ବଂଶୀବଦନେ । ୫ ।
କବିମାର୍ତ୍ତଣ୍ଡ ରାଯ୍ୟଗୁରୁ କହେ, ଗଜ ଚରମେ କାହା ସ୍ନେହ ନୋହେ । ୬ ।

( ୭୨ )

ରାଗ—ନାଟକୁରଙ୍ଗ

ଯାଉଛୁ ମା, ଆଉ ନ ପାରେ ତାକୁ ଠାକ । ପଦ ।

ସଂବେଶ ବେଶ ଭୋଜନେ, ଲୋଡ଼ି ମୋତେ ଗୁରୁଜନେ, ଚଳ ହେଉଥିବେ ପରା ଡାକ ।୧। ନିତ ଧର ଦୂତୀ କର, ଯତନେ ଅରଜିବାର, ଗୈରି ପୀରତିରେ ଏ କ ଶୃକ । ୨ । ହଜାର ହଜାର ଯାର, ପ୍ରଣୟିବତୀ ବଜାର, ତହୁଁ କେହି ରଖିଥିବ ଜାକ । ୩ । ବ୍ରଜୁ ହୁଅନ୍ତେ ବାହାର, ତା ପଦପଙ୍କଜ କା'ର, କୁଟ୍ଟିଚଳେ ରହିଥିବ ଠାକ । ୪ । ଭୂଞ୍ଜିଲୁ ତ ଶ୍ୟାମ ପ୍ରୀତି-ଲମ୍ପଟା ବୋଲି ମୋ ଖ୍ୟାତି, ନ ରହିବ ପୁଣି ସିନା ବାକ । ଅବଶ୍ୟ ତ ଜୀବ ଯିବ, ନେଲେ ନେବ ମନୋଭବ, ରଖିଲେ ରଖିବେ ଶ୍ରୀ ପିନାକୀ । ୬ । ଜଗଦ୍ଦେବ ଭାଷା ଶୁଣି, ଅଳ କହିଲେ ମୁଁ ଅଣି, ଏବେ ଭେଟାଇଲେ କା ହେଲା କ । ୭ ।

( ୭୩ )

ରାଗ—ଭାଟିଆରୀ

ରେ ମୋ ଜୀବନ, ମୁଁ କି ମୀନ ମୀନନେତ୍ରା ତୁ ମୋ ଜୀବନ ରେ,
ମୋର ମାନସ ବିହଗରାଜବନ । ଘୋଷା ।

---

୭୧ । ଟୀକା—ଭୁଜଙ୍ଗପୁଙ୍ଗବ—ସର୍ପଶ୍ରେଷ୍ଠ ଓ ବଟଶ୍ରେଷ୍ଠ, କଳାପୀ—ମୟୂର ଓ ବରହୁଣୀ, ଗଜଚରମ—ହାତୀପିଠି ।

୭୨ । ଟୀକା— ସଂବେଶ—ନିଦ୍ରା, ଶୃକ—ଚତୁରତା, ଶ୍ରୀପିନାକୀ—ସୁରହର ମହାଦେବ ।

ସାଙ୍କରସାରେ ମଧୁରଭାଷୀ. କାକରକରଙ୍କଚଣହାସୀ, ନାକ-ରମଣୀଙ୍କ ଝାଙ୍କର ମାରୁଛୁ ତୋ କର ପଇଠ ଧରି ଦାସୀ ରେ । ୧ । କୁସୁମୋତ୍ସବ ବିଚ୍ଛେଦ ଯୁଗୁ, ଲଗି ଡକାଇତ ଲାଗୁ ଲାଗୁ, ଲଳନାରତନ କଳନା ନ ପଡ଼ି କଳାନାଗବଲ୍ଲୀ ଗେଲେ ମାଗୁ ରେ । ୨ । ଗୁମ୍ଫୁରେ ଗୁଛ ନ ପଡ଼ୁ ବୋଲି, ଛଡ଼ା ହୋଇ ମୁଁ ଯେ ଛୁଡ଼ା ହେଲି, ଛୁଇଁଲି ଯେ ବୋଲି ଛଇଳ ହସି ମୋ ଗ୍ଲାଢଙ୍କ ଉରୋଜେ ଦେଲି ପେଲି ରେ । ୩ । ତୁ କାହା ଦୁଃଖପାସୋରା କି ରେ, ବୋଲି ମୁଁ ପଚାରେଁ ପ୍ରେମଗିରେ, ତୁମ୍ଭର ବୋଲିବା ଦମ୍ଭରେ ଦମ୍ଭୋଳି କଚାଡ଼ୁ ମୋ ଦୁଃଖଗିରି ଶିରେ । ୪ । ମେଳଣି ହେବ କି ଯେବେ ବୋଲେ, ମୁଁ କି ଜାଣାଇ ମା ଭାଷି ଗେଲେ, ମୋ ପିନ୍ଧାବାସ ଶେଷକୁ ଛନ୍ଦଥାଇ ଅଙ୍ଗୁଳି ଅଙ୍ଗୁଷ୍ଠ ଚମ୍ପାଫୁଲେ ରେ । ୫ । ସ୍ମିତ ସୁଧାବିନ୍ଦୁ ଝଡ଼ୁଥାଇ, ରତିର ପ୍ରସଙ୍ଗ ବଢ଼ୁଥାଇ, ଚିତ୍ତ ତୋ ଯହିଁ ଦାଉଡ଼ୁଥାଇ, ଗୁରୁ ଗୁହାଣିରୁ ଚହଳା ପଡ଼ୁଥାଇ ରେ । ୬ । ପ୍ରତି ପ୍ରବନ୍ଧେ ମଣ୍ଡାଇ ମଣ୍ଡା, ଜାତ ହେଉଛୁ ବାସକସଜ୍ଜା, ଗୋଟିକି ଗୋଟିଏ ଗଣି ଲଙ୍ଘି ନଖି ବୋଲୁ ଯେ କାହିଁକି ଏଡ଼େ ଲଜ୍ଜାରେ । ୭ । କ୍ଷଣକେ ମୋ ଦୋଷ ଦଶକୋଟି, କ୍ଷମା ନ କଲେ ମୁଁ ସହିଲିଟି, ଅଖଦଡ଼ ଅବଧାନରୁ ଶ୍ରୀଅଙ୍ଗେ ନଖଦନ୍ତ କ୍ଷତ କରଇଟି ରେ । ୮ । ଏ ସ୍ନେହପୀୟୂଷ ବରଷାରୁ, ଏହି ଅନୁରାଗ ଭରସାରୁ, କର ସାରସଲୋଚନା କବିରବି ବଳାଇଛୁ ତୋତେ ଘରଷାରୁ । ୯ ।

( ୭୪ )

ରାଗ—କେଦାର

କରିବ କି ରାଜି, ଚନ୍ଦ୍ରାନନୀ ଆଜି, ମୋ ଅଙ୍ଗେ ବିରାଜି ଖେଳିବାକୁ, ସମରେ ନ ଭାଜିବାର ମାର ପାଜି ମଣ୍ଟା ବଳ ରାଜି କଳିବାକୁ । ଘୋଷା ।

ମୋର ଅନଳପ ପୂରୁବର ତପକଳାପ-କଳପବଲ୍ଲରି ସେ ଗୋରି ରେ, ହେଲ କି ଏଥର ମୋ ମନୋରଥର ସମୁଚିତ ଫଳ ଫଳିବାକୁ । ୧ । ନବୀନ ବିଳାସବତୀ ସେ ତ ନାସ ଲତା ଦୁଇ ପାଶ ମଧ୍ୟେ ତା ନିବାସ ରେ, ମୋହପର ପାଞ୍ଚୁଅଛୁ ମୁଁ ଯେ କାଞ୍ଚି କାଙ୍କିଣୀ ନିଚୟ ଗୃଳିବାକୁ । ୨ । ଅଭିନବ କ୍ରୀଡ଼ା କାଳେ ଗାଢ଼ ଭିଡ଼ା ଅନୁଭବାରୁ ତ

---

୭୩ । ଟୀକା– ନଖି—ଗଣ ନ କାଟିବାପାଇଁ ଦୁଇ ନଖକୁ ଏକାଠ କରିବା ।

ଲଭୁଥିବ କ୍ରୀଡ଼ା, ହେବ ଅନୁକୂଳ କି ଊରୁ ଦୁକୂଳ ତଳସ୍ଥଳେ ପାଣି ଗୃହଳିବାକୁ । ୩ । ଶିଶୁ-କଳାକର-ଚୂଡ଼ାମଣିପର ଅମଳରୁ ଜ୍ଞାନ ନ ଥିବ ମୋହର, ପାରିବ କି ବାରି ହାକି ସୁକୁମାରୀ ଶ୍ରୀଅଙ୍ଗ ଲତାଟି ଲୂଳିବାକୁ ।୪। ରଦନ-ବସନବିମ୍ବକୁ ଦଶନ ଅଞ୍ଚଳେ ପୀଡ଼ିତ ହେବ ସୁଧାସମ, କୁନ୍ଦ-ବିଜଣନ ତା ମନ୍ଦହସନ ଦୁଇ ଶୋଭା ନେନେ ତୁଳିବାକୁ । ୫ । କହେ ବଳଦେବ କବିରବି ନବ ନଟବର ଶାନ୍ତ ପ୍ରିୟାସଙ୍ଗୋତ୍ସବ, ମିଳି ସଖା ବ୍ରଜେ ମୋଦେ କଲେ ବିଜେ କୁଞ୍ଜରୁ କୁସୁମ ତୋଳିବାକୁ । ୬ ।

( ୭୫ )

ରାଗ—ଅସାବରୀ

ନିନ୍ଦା ନ ଲଭ ସଖୀ ରେ, ମନ୍ଦାରଅଧରୀ ଧୀରୀ ଅଜାନୁସୁଖୀ ରେ ।
କୁନ୍ଦସୂନ ଶରଦନ୍ଦୁ କିରଣଗଣ ସୁନ୍ଦରହସରୁଚିବୃନ୍ଦଲଞ୍ଛିତମୁଖି ରେ ।।

ଚିରକାଳରୁ ମୁଁ ତୋର, କୁଞ୍ଜ ମନ୍ଦିର, ମଣ୍ଡନପ୍ରିୟ କିଙ୍କର, ରୋଷାବେଶେ ନିର୍ଭର, ଘୋଷା ମନେ ନ ଧର, ଯୋଷାମଣି ମସାର, କେଶାସାର ନ ସାର, ଭୂଷ ଅତନୁ ବିଳାସ, ନିଧି ପରକାଶ, ରୁଚିର ବିକାଶ, ମନ୍ଦହରହାସ, ନବ ନବ ଭାଷ-ଯୁତ ରଦବାସବତୀ ନିଜ ଦାସ ସଦୃଶ ଜନେ । ୧ । ମଥା ନୁଆଁଇ ନ ବସ, ଦୁଃଖେ ନ ମଞ୍ଜି, ନ ଯାଉ ନିଶା ଦିବସ, ଆଲିଙ୍ଗନରେ ରସ, ନାଳିକନିଭବାସ, ଅଙ୍ଗିମା ନ ପ୍ରକାଶ, ଦାଶନାଶ ଅଯଶ, ବାରିରୁହ ପରିହାସୀ ନୟନରୁ ଗୃସ ପ୍ରହରେ ଯେ ବାରି ଜନମୁଛି ନାରୀମଣିକି ବିଗୃହ ସବୁ ସୁଖ ସାର ଥାରି ହେବ ମୁଁ କେହ୍ନ । ୨ । ତେଜେ ପୀରତ ପାସୋର, କଶୋରୀବର, ବହିଲି ଯା ଏତେ ସର, ଘେନିଲି ପର ପର ପାରୀନ୍ଦ୍ରମଧ୍ୟା ଗୋରୀ, ନାରୀନ୍ଦ୍ର ଧରୀ-ଶିରୀ, ଶିରୀସ ସୁକୁମାରି, ତାଳ ପ୍ରଥୂଳ ବିଶାଳ ରୁଚି ହରିତାଳ ସୁଘଟିତ ତାଳସ୍ତନୀ ରେ କଠାଳ ନ କରଟି କାଳପୁରୁଷ କରାଳ ସ୍ମରକରବାଳ

୭୪ । ଟୀକା—ଅନଳପ (ଅନଳ୍ପ)—ଅତ୍ୟଧିକ; ତପକଳାପ-କଳପବଲ୍ଲରୀ—ତପସ୍ୟାସମୂହରୂପ, କଳ୍ପଲତା; ଶିଶୁକଳାକର-ଚୂଡ଼ାମଣିପର—ଚନ୍ଦ୍ରଚୂଡ଼ଙ୍କ ଶତ୍ରୁ ଅର୍ଥାତ୍ କନ୍ଦର୍ପ ।

୭୫ । ଟୀକା—କୁନ୍ଦସୂନ—କୁନ୍ଦଫୁଲ; ଘୋଷା—କ୍ରୋଧ; ମସାରକେଶା—ଇନ୍ଦ୍ରନୀଳପରି କେଶ ଯାହାର; ନାଳିକ—ପଦ୍ମ; ବାରିରୁହପରିହାସୀ—ପଦ୍ମକୁ ପରିହାସ କରୁଥିବା; ଥାରି—ସ୍ଥିର; ପାରୀନ୍ଦ୍ର—ସିଂହ; କରବାଳ—ଖଡ୍ଗ;

ବଦନେ ଦେଇ । ୩ । ଶୁଣି ଶ୍ରୀମତୀ ହସିଲେ, ଜଗଦ୍ଦେବ ଧରଣୀନାଥ ଭାଷିଲେ, ଦେହେ ଦୁହେଁ ମିଶିଲେ, ଆନନ୍ଦ ବରଷିଲେ, ମାରଙ୍କୁ ଭରସିଲେ, ତାର ଶରେ ରସିଲେ, ଶମ୍ବଧରମଣି ଜାମ୍ବୁନଦ ବଧୂ ବିମ୍ବ, ଯୁଗ ଘନ ଚୁମ୍ବ ବଢ଼ବନ୍ତୁ ଶମ୍ବରପରକଳମ୍ବ ସମୁଦାୟ ଡମ୍ବର ଦଳିଲେ ଲମ୍ବ ଠାକୁରବନ୍ତୀ । ୪ ।

( ୭୬ )

ରାଗ—ପଞ୍ଚମବରାଡ଼ି

କଳାବଳାହକତୁଲାଦଳିତମାଳକୁନ୍ତଳା ଚଳାଚଳାଗ୍ରଚୁନେତ୍ରାଞ୍ଚଳା । ବାଳାବଳୟୁଇଟଳାଗଭ୍ରସଦୃଶୀ ମଞ୍ଜୁଳା ଦଳା ଗୋରୋଚନାଙ୍ଗୀ କୋମଳା ରେ, କଳାବତି, କଳାନିଧି ଶ୍ରୀମୁଖମଣ୍ଡଳା, ଛଳା ନେନେ କର ମୋ ସଙ୍ଗଲା, ବାଳାହଳାହଳଗିଳାଚୂଳାଭରଣକୋମଳା ଜଳାତ ନିର୍ମଳାଛ-ବସ୍ତ୍ରଲା ରେ । ୧ ।

କ ମାନିବା ସୀମା ଦେଖି ପ୍ରମାଦ ମାର୍ଗ ଉପେକ୍ଷି ରମା ସମାଜମାନଙ୍କୁ ହର । ସମାନ ବିମ୍ବ ଚନ୍ଦ୍ରମାମୁହିଁ ତୋ କୁନ୍ତଳେ ଜମା ହେଲା ତମାଲ-ମାଳ ମାଧୁରୀ ରେ, କ୍ଷମାନିଧି, ଗୁମାନ ମାନ ନ ଧର ମୋରେ, ଜମାଅ ମାଗୁଛି ପୟୋଧରେ; ରମା ଉମା ତୁରଙ୍ଗମା ସମାନସାଧ୍ୟ ମଧ୍ୟମା ଗମାର ମାର ମାରୁ ନା ଶରେ ରେ । ୨ ।

ତୁଷାରସାମ୍ୟସୁପ୍ରହସାନନା ତୁ ମୋ ଶୁଭ-ଦଶାର ସାର ସାମଗ୍ରୀବର । ତୁ ସାରସାକ୍ଷୀକି ହେଜ ପ୍ରାସାଦ ସାମ୍ରାଜ୍ୟ ଭେଜ ରୁଷା-ରୁଷାରୁ ସାମର୍ଥ୍ୟ ମୋର ରେ, ରସାଳସା, ମୁଁ ସାରସ ଚରଣରେ ପଶି, ଅସାର ସଙ୍ଗରେ ନାହିଁ ବସି, ତୁ ସାରସାରବିବେକ ଭୂଷା ତୁ ସାକ୍ଷୀ ତହିଁକି ରସାଅ ସାର୍ଥରେ ଥରେ ହସି ରେ । ୩ ।

ହରପରାଧୀ ଦୁର୍ଜର ନାରାଜରାଜରେ ମୋର ପରାଭବ ଏକା କଲେ ଫନ୍ଦା । ଧରାଧରାଧିପସ୍ତନା ଚରାଚରାନ୍ତେ ତୋ ବିନା ପରାଭବ କାହିଁ ହେବ

---

ଶମ୍ବଧରମଣି—ଇନ୍ଦ୍ରମଣି; ଜାମ୍ବୁନଦ—ସୁବର୍ଣ୍ଣ; ଶମ୍ବରପର—କନ୍ଦର୍ପ; କଳମ୍ବ—ଶର ।

୭୬ । ଟୀକା—କଳାବଳାହକ—କଳାମେଘ, ଜଳାତ ( ଜଳାତ୍ୟୟ ଶବ୍ଦଜ )—ଶରତ୍‌କାଳ, ଧରାଧରାଧିପ—ପର୍ବତରାଜ ।

ନାଦା ରେ, ଧରା ହରା, ଅରାତ ନୁହଇ ମୁଁ ସୁକେଶା, ଖରାପ ନ କର ଏତେ ଅଶା, ସୁରାତୁର କଳନ୍ତରଧରାମରାବତୀପୁର ପରାଣ ପାଇଲେ ହିଁ ପ୍ରଶଂସା ରେ । ୪ ।

( ୭୭ )

ରାଗ—ମୁଖାରୀ

ବାଲାବର ରେ, ଶଙ୍ଖକଣ୍ଠି ତୁ ସଙ୍ଖାଳି ମୋର ରେ । ନ ଥାଇ ତୁ ହୋଲେ କି ସମ୍ପତ୍ତିବଲେ ଇନ୍ଦ୍ର ହେଲେ ସୁରେଶ୍ୱର ରେ । ଘୋଷା ।

ଚନ୍ଦ୍ରମା ଚନ୍ଦନ କଳକଣ୍ଠ ସ୍ୱନ ମିଳିନ୍ଦବୃନ୍ଦଝଙ୍କାର ରେ । ଏବେ ମୁଁ କଟାକ୍ଷ ଫିଙ୍ଗୁ ନାହିଁ ପକ୍ଷ ହେବାରୁ ତୁ ଅହଙ୍କାର ରେ । ୧ । ସୁରଭି ଋତୁ ତା ମରୁତ ମରୁ ତ ଜୀବ ତ ସେ ମୋ କିଙ୍କର ରେ । ତରୁଣୀ ତୋତେ ମୋ ଧନ କଲେ ଯହୁଁ କରୁଣାନିଧି ଶଙ୍କର ରେ । ୨ । ଅସୁର ସୁରଙ୍କ ରମ୍ୟ ଦ୍ରବ୍ୟ ରଙ୍କ ପଣ ଶୁଣି ସିନ୍ଧୁ ଜୁର ରେ । ମୋ ପାଇଁ ତୁ ଲକ୍ଷ୍ମୀ ଯତନେ ଥିଲୁ କି ଲବଣ୍ୟ ପୀୟୂଷପୂର ରେ । ୩ । ସୁଲକ୍ଷଣ ବଧୂମାନଙ୍କର ମଧୁ ଥାଏ ଜାଣି ରଦାମ୍ବର ରେ । ପୁରଅଛୁ ତୋର ପ୍ରପଦୁଁ ଚକ୍ରୁରପାଣ ଯାଏ ସୁଧାଙ୍କର ରେ । ୪ । ଫୁଲ୍ଲ ମନମଥ ଗୁଲ୍ମମରୁ ମୋର ଏଣିକି ଆଉ କି ଡର ରେ । ଝୁଲ ମଞ୍ଜୁଳ ତୋ ଲଲାମ ଛବି କି ସଲାମ ସହସ୍ରେ ଥର ରେ । ୫ । ଏପରି ପ୍ରଶଂସାମୃତ ସ୍ମିତୁ କଂସାହୃତ ମୁଖଶଶଧର ରେ । ଅଷ୍ଟାଦୁର୍ଗପତି ରଚିଲେ ଶ୍ରୀମତୀ ସଙ୍କୁଚିଲେ ଲଜ୍ଜାଭର ରେ । ୬ ।

( ୭୮ )

ରାଗ—ବଙ୍ଗଳାଶ୍ରୀ

ଟେମକି ବାଜଇ ଜଗତୀଯାକେ ତୁ ନ ଜାଣୁ ବୋଲି କପଟ; ଟେଭି ପୀନସ୍ତନା ସେ ଗୁଣକୁ ମନା କର ହେଲୁ କି ନିପଟ । ୧ । ଟେଳିଗଲି ଅନୁରାଗ ଯେ ତୋ ମନୁ କି ଦୋଷୁ କର ପ୍ରକଟ; ଟେପ ଟେପ ନୀର ବରଷୁ ଅଛୁ ଯେ ତୋ ନୟନ ଖଞ୍ଜରୀଟ । ୨ । ଟେକ କର ତୋର ରୁଷା ଅଜଗର

---

୭୭ । ଟୀକା—କଳକଣ୍ଠସ୍ୱନ—କୋକିଳଶବ୍ଦ, ମିଳିନ୍ଦବୃନ୍ଦ—ଭ୍ରମର ସମୂହ, ସୁରଭିଋତୁ—ବସନ୍ତକାଳ, କିଙ୍କର—ଚାକର, ପୀୟୂଷପୂର—ଅମୃତ ପ୍ରବାହ, ରଦାମ୍ବର—ଅଧର, କଂସାହୃତ—ଶ୍ରୀକୃଷ୍ଣ, ଶଶଧର—ଚନ୍ଦ୍ର ।

୭୮ । ଟୀକା—ସୁଖସ୍ୱରୂପ—ସୁଖରୂପ ଫଳୁଆ; ଟେଣକପଣ—ଟାଣପଣ ।

ଗଳାଲଗ୍ନ ସୁଖସମ୍ଭୁଟ; ସେଠାଣି ପଛେ ପଦେ ବୋଲନ୍ତୁ କହିଁକି ମନ କଲୁ ସ୍ନେହତ୍ରୁଟି । ୩ । ଯେସର ମିଶାଇ ଦେଲେ ନିଜ ଅଙ୍ଗ ପସନ୍ଦ ଦଶାଇ ପାଟି; ଯେଣିକିପଣିକଟୁରସି ଦେଲୁ କହେ ଅଷ୍ଟଦୁର୍ଗ ଧସ୍ରାଟି । ୪ ।

( ୭୯ )

ରାଗ—ଆନନ୍ଦଭୈରବ

ବନ୍ଧୁଆ ତୁ ମୋ ସବୁ ଭରସା, ନ କର ଦରପଣିନାଭରସା । ପଦ ।
ଲକ୍ଷ ପଛେ ମନେ କରରୁହର, ଏ ଗୁମାନ ପରିକରରୁ ହର । ୧ । ଶ୍ରୀମୁଖ ପରବ-ଚନ୍ଦ୍ରହାନିକର, ଅରୁଣଭାବକୁ ତୁହି ନ କର । ୨ । ସ୍ୱାର୍ଥେ ଏ ଚନ୍ଦ୍ର କ୍ଷଣଦା ସରେ, ଖେଳା ଚଞ୍ଚଳ ଈକ୍ଷଣ ଦାସରେ । ୩ । ମୁଁ ସାଧି ନୋହିଲେ ଗଣ୍ଡଆରଣରେ, ମାର ମଦନ ହଟିଅ ରଣରେ । ୪ । ସରିଲାଟି ଅଷ୍ଟଦୁର୍ଗନାଥରେ, ଅନା ଅନା ସୁନାବରନା ଥରେ । ୫ ।

( ୮୦ )

ରାଗ—କେଦାର

ଚନ୍ଦ୍ରସୁନ୍ଦରମୁଖି ରେ,

ବୃନ୍ଦ ବୃନ୍ଦ କନ୍ଦର୍ପ ଶରମୟୂ ସର୍ପ ନ ଦିଏ ମୋ ଦର୍ପ ରଖି ରେ । ପଦ ।
ରସାଇ ସାରସଦୃଶା ଲସା ମେ ଦୁର୍ଦ୍ଦଶାରେ, ଦଶାରେ ତୋ ଲଭ ମୋ ଭରସା ରସାଳସା ରେ । ନିଶାରମଣୀକର, ସ୍ୱଶାଳମଦାହର, ହସା ସ୍ୱଭାବଭର, ମିଶା ମଧୁରତର, ପ୍ରସାଦ ପରିହର, ରୁଷାରୁତ ନ କର, ତୃଷା ମୋହର ହର, କୃଶାନୁବର ରେ । ୧ । ବଳାହକ ବିଜୟି କୁନ୍ତଳା ଲୀଳାବତୀ ରେ । ଝଳାଅ କୁଞ୍ଜର କୁମ୍ଭସ୍ଥଳାକୃତି ସ୍ତନ ରେ । ଗଳା ନବରତନ, କଳାପ ଅନୁଦାନ, ଚଳାଚଳ ନୟନ, ଟଳା ରସକୁ ମନ, ବଳାଅ ରେ ମଦନ, କଳାନିଧି ବଦନ, ବଳାପହକଦନ, ପଳାଉ ଧନ ରେ । ୨ । ଚରାଚର ବିଭୂଷଣୀ ଧରାଧରସ୍ତନା ରେ, ପରାଣ ଅଛୁ ତୁ ଦେବା କରାରରୁ ସିନା ରେ,

---

୭୯ । ଟୀକା—ଲଭ—ଲକ୍ଷ, କରରୁହ—ନଖ, ପରିକରରୁ—ଗୃହକରଠାରୁ, କ୍ଷଣଦା—ରାତ୍ରି, ଗଣ୍ଡଆରଣ—ଗାଲ ।

୮୦ । ଟୀକା—ହେ ସାରସଦୃଶା, ତୋ ଲଭ ଦଶାରେ ମୋ ଦୁର୍ଦ୍ଦଶାକୁ ଲସା; ଅର୍ଥାତ୍ ଦୂର କର । ବଳାହକବିଜୟିକୁନ୍ତଳା—ମେଘ ଅପେକ୍ଷା ନୀଳତର କୁନ୍ତଳ ଯାହାର, କଳାନିଧିବହନବଳାପହକଦନ—ଶିବ ଶତ୍ରୁ ଅର୍ଥାତ୍ ମଦନର କଷ୍ଟ, କରାର—କଣ୍ଠ, ଅବଳାଭୂତ—ବାଙ୍କଗୃହାଣୀ ।

ଧରି ତଳେ ମୋ ଗତ, ପରି ତୁ ଗଜଗତ, ହରିରଣରେ ଜାତ, ମରିଲି ଅଜାର ତ ପରିଗରେ ଜଗତ, କରିଅଛୁ ଭରତ, ଅରିଲ ଭୁରୁତତ, ଝରି ସୁଦତ ରେ । ୩ । କହେ ଅଷ୍ଟଦୁର୍ଗ ନାଥ ସ୍ନେହେ ତୁ ଅଧୀନା ରେ, ଅହେତୁକ ରୋଷ ଛାଡ଼ ମହେଶମୋହନା ରେ, ବହେ ଅନବରତ, ଦହେ ମୃଦୁ ମରୁତ, ସହେମ ମରକତ, ଗୃହେ ହୋଇ ମିଳିତ, ତୁ ହେବୁ ରସ ରତ, ଦୁହେଁ ହେବା ସଙ୍ଗତ, ମୁଁ ହେବି ମହାଗତ, ମହେନ୍ଦ୍ରବତ ରେ । ୪ ।

( ୮୧ )

ରାଗ--ମୋହନା, ଅଦତାଳ

କୁଞ୍ଜନୀଳୟଭୂଷା, ଅଞ୍ଜନ ପୁଞ୍ଜ ମସାର ଘନକେଶା,
କଞ୍ଜଚନ୍ଦ୍ରମଦଗଞ୍ଜନାସ୍ୟହସିତ, କୁଞ୍ଜର-ଗତ ମନୋରଞ୍ଜନବେଶା । ପଦ ।

ଆସ ମୋ କୋଳରେ ବିରାଜ, ଦାସର ସରକା କର କା ଲଜ ବାସକୁ ପରକର ଆଜ, ନାଶ ଦୁଃଖ ସମାଜ, ଧନ ମୋତେ ବାସବାଦ ପରିହାସ ଚତୁର କର, ବରବରନାବର ନାଗରୀରାଜ । ୧ । କୁନ୍ଦ ସୁନ୍ଦର ଦନ୍ତନାଳ ସୁନ୍ଦରୀ ମଣି ତୁ ମୋର ସଙ୍ଗାଳି, ଚନ୍ଦନ ସଜରଭପାଳୀ, କୁନ୍ଦନମୟମାଳ, ବୃଷରବି ନନ୍ଦନୀନ୍ଦ୍ରମଣି ମଞ୍ଜୁଭୁଜଗଭୁରୁ, ଚଳ ନୟନାଞ୍ଚଳ ଦେ ଥରେ ଚାଳି । ୨ । ମାର ରଖିଛି ଶର ଶାଣି, ତାର ତ ଚରିତ ଅଛୁ ପରି ଜାଣି, ସଂରକ୍ଷୁ ଘେନାଯିବ ଛାଣି, କାର ସେ ରଖେ ଠାଣି, ମୋର ହୃଦୟୁ ତାର ହାର ହୁଅ ଅରେ ସୁଗୁଣବତୀ ରତିଚତୁରୀ ନବ ପଲ୍ଲବପାଣି । ୩ । କାଞ୍ଚନ-ଗଉରୀ ବିଗ୍ଭର, ବଞ୍ଚନବଧିକ ବିରଚବାର, ମୁଞ୍ଚ ଧନ ମୁଁ ପରଗ୍ଭର, ମଞ୍ଚରେ ତ ତୁ ସାର, ଅବିରତ ପଞ୍ଚବାଣ ରଣକୌଶଳ ପରିଚୟ କର ସୁରସାବର ସାର୍ଥରେ ମୋର । ୪ । ଏପରି ନବଘନଶ୍ୟାମ, ଗୃହୁଁ ବିରଚ ଲଭୁ ବିରାମ, ସସ୍ମିତତରୁଣୀ ଲଲାମ, ପୂରିଲେ ହରିକାମ, ନୃପ ଜଗଦେବ ସେ ସମୟୁ ବେଶ ଲଳିତ ପଦଯୁଗ ଯୁଗଳୀଜଳଜାବଳୀଦାମ । ୫ ।

( ୮୨ )

ରାଗ—ମୋହନା, ଅଡ଼ତାଳ

ଗୃହିଁ କି ନାହିଁ କେହି ମୋହନ ହାସ ଗୋ, କେହି ତା ମନ୍ଦହାସ,
କାହିଁକି ଏକା ମୋତେ ଏ ପରିହାସ । ପଦ ।

---

୮୧ । ଟୀକା—ମାସର—ଇନ୍ଦ୍ରମଣି, କଞ୍ଜ—ପଦ୍ମ, କୁଞ୍ଜର—ହାତୀ, ବୃଷରବିନନ୍ଦନୀ—ବୃଷଭାନୁକନ୍ୟା ।

ଦେଖିଁ ସଖୀ ସେ ପୁଟ, ଭେଦନେ ଅଛୁ ନଟବର ସ୍ନେହୁଁ କପଟ ହୋଇ କାରଣ । ୧ । ଡାକ ତ ସେ ଯୋଷାକୁ, କହୁ କାହା ନାସାକୁ, ବାଜ ନାହିଁ ସେ ବନମାଳିକା ବାସ । ୨ । ଲେଉଁ ଶ୍ୟାମ ପ୍ରୀତିକି, ଘଟକି-ଯୁବତୀକି, କେ କହୁ ନାହିଁ ଧର ଦଶନେ ଘାସ । ୩ । ତୋ ସ୍ନେହୁଁ କଣୀଥରେ, ବନଦୁର୍ଗପଥରେ, ଗତାଗତରୁ ଥିବ ପଦେ ପରାସ । ୪ । ତାକୁଁ ଯାହା ମୁରଲୀ, ସ୍ୱାମୀଙ୍କ ପେଲ ଠେଲି, ଧାବନବଶେ ଖସେ କିତମ୍ବ ବାସ । ୫ । ଶ୍ରୀ ଜଗଦ୍ଦେବ ଭଣେ, ରାଧାବାଣୀ ଶ୍ରବଣେ, ଅଳାଏ ହସି ଦେଲେ ଅଙ୍କ ନିବାସ । ୬ ।

( ୮୩ )

ରାଗ—ତୋଡ଼ିବଙ୍ଗଳା, ଆଡ଼ତାଳି

ଯା ଯା ମୋ ପାଶରୁ

ସେ ଶ୍ୟାମନାଗର ନଟ ନାମ ନ ଧର ମୋ ଅଗେ ଲୋ । ଘୋଷା ।

ଘେନି ତୋ ଉପଦେଶ ହେବାରୁ ବୁଦ୍ଧିନାଶ ପଡ଼ିଥିଲି ଥରେ ତା ଭୋଗେ ଲୋ । ୧ । ତ୍ରିଜଗତୀରେ ଗଢ ନ ଥିବାର ଯୁବତୀ ବୁଡ଼ିବ ତାର ଅନୁରାଗେ ଲୋ । ୨ । ସଞ୍ଜବେଲରୁ କଞ୍ଜ ଫୁଟିବାଯାଏ କୁଞ୍ଜଗୃହେ ତୋ ଭୁଲେ ପରା ଲାଗେ ଲୋ । ୩ । ସେ ଧୂର୍ତ୍ତ ପୀତପଟ ପେଟେ ଯେତେ କପଟ ବିଷ ନ ଥିବ ତେତେ ନାଗେ ଲୋ । ୪ । ମୋ ପର ଲଜହୀନ ନୋହିବା ନାରୀଜନ ଗର ଗିଳନ୍ତା ସେହି ଲାଗେ ଲୋ । ୫ । ଅଷ୍ଟଦୁର୍ଗଭୂପତି ବୋଲେ ହେବା ଭରତ କେ ବୃଥା ଅକାରତଦାଗେ ଲୋ । ୬ ।

( ୮୪ )

ରାଗ—ଶ୍ୟାମ କଲ୍ୟାଣ, ଅଡ଼ତାଳ

କହ କି ହେଲା, ସହି କି ହେଲା, କପଟରୂପାରେ । ପଦ ।

ନ ଗୃହିଁ ପୁଣି ତାଙ୍କ, ଶ୍ରୀମୁଖହରଣୀଙ୍କ, ସଖି ଆଖି ରଖିଲି ରସାରେ । ୧ ।
ଛାମୁ ନଜର ମଣି,-ମୟୂ ମଣ୍ଡନଶ୍ରେଣୀ, ଚୁଣି ଦେଲି ପୁଣି ମୃଗଦୃଶା ରେ ।।
ଚରଣେ ପୁଣି ଦଳି ପକାଇ ଦେଲି ଚଳି ତୁ ସୁନ୍ଦର କୁସୁମ ଭୂଷା ରେ । ୩ ।

---

୮୨ । ଟୀକା—ପୁଟଭେଦନ—ନଗର, କଣୀଥରେ—ଅର୍ଦ୍ଧରାତ୍ରରେ, କିତମ୍ବ—କଟିର ପଶ୍ଚାଦ୍‌ଭାଗ ।

୮୩ । ଟୀକା—ତ୍ରିଜଗତ—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ; କଞ୍ଜଫୁଟିବାଯାଏ—ସକାଳଯାଏ, ନାଗେ—ଗୋଖର ସର୍ପରେ ।

ଦେଖି ତୋ ରୂଷା ସ୍ମିତ ଗିରିଧରଙ୍କ ଧୃତ ଥିଲା କା ହୋଇଲା ଅତି କୃଶାରେ ॥ ମୃଦୁ ଶ୍ୟାମଳ ଗୋରି ଝାଉଁଳିଗଲେ ଯରି ହର-ପର-ଶର-ଜ୍ୱର ତୃଷାରେ ॥ କରୁ ଏହା କଣ୍ଠାଳ ମଣ୍ଡିହେଲା କା କାଳ ପୂର୍ବଦିଗ ପର୍ବତକୁ ପୂଷା ରେ । ୬ । ଶ୍ରୀ ଜଗଦ୍ଦେବ ବୋଲେ ତେବେ କାଲ୍ କା ହେଲେ ବେଳେ ଧରି କୋଳେ ତାଙ୍କୁ ସୁସାରେ । ୭ ।

( ୮୫ )

ରାଗ—ଇମନ କଲ୍ୟାଣ, ଅଡ଼ତାଳ

ପର ମଣି ତ ରମଣି ହେଲୁ କରମଣି ଛାଡ଼ି ରେ । ଘୋଷା ।

ମୋ ଜୀବନ କାହିଁ ହଜାଇଲ, ଖୋଜି ଆଣି ଦିଅ ଅଳି ବୋଲି, ଜଳପୁଛୁ, ବାଳପୁଛୁ, ଏବେ ଉରେ କର ତାଡ଼ି ରେ । ୧ । ଜାଣି ତୋହର ମାନସ ବ୍ୟଥା, ଅଣିଥିଲୁ ଭଲି କେତେ କଥା, ଘନପ୍ରଭ ସୂନଗଭ, ଅତି ଯତନେ ସଜାଡ଼ି ରେ । ୨ । ବିମ୍ବ ରଦନାମ୍ବରି ରେ ଧନ, ହିମ୍ବଦଳ ଦ୍ରବେ ଦେଇ ମନ, ସୁଧାଧାରି, ମୁଧା ଧରି-ତଳେ ହେଲୁ ତ ଅଜାଡ଼ି ରେ । ୩ । ଗୋପ ଯୁବରାଜ ଶିରୋମଣି, ତୋ ପଦକଞ୍ଜ ଚୁମ୍ବିଲ ପୁଣି, ଭୁଜେ ଧରି, ତୁ ଯେ ହରିଣାକ୍ଷୀ ନ ରଖିଲୁ ଭିଡ଼ି ରେ । ୪ । ଯାହା ପାଇଁ ଶିବ ପୂଜୁଥାଉ, ତାହାଙ୍କ ପ୍ରିୟାଙ୍କୁ ଭଜୁଥାଉ, ତାଙ୍କ ଦୁଃଖ କରି ସୁଖ, ମୂଳ ହେଲୁ ତ ଉପାଡ଼ି ରେ । ୫ । ବୋଧି କହେ ଅଷ୍ଟଦୁର୍ଗନାହା, ବୁଦ୍ଧିହୁଡ଼ରୁ ତ ହେଲା ଏହା, ଏବେ ଗୃଳ, ନନ୍ଦଲାଲ, ମନ୍ଥୁ ମାନ ଦେବା ଛାଡ଼ି ଗୋ । ୬ ।

( ୮୬ )

ଶ୍ୟାମ କେଡ଼େ ଅବୁଝାଣି, ତା ଲାଗି ଯିବ ଏ ପ୍ରାଣ ଗୋ । ପଦ ।

ସ୍ୱୈରପଣେ ଆସି ମୋର ପାଶେ ବସି ଘୋର ଅଚରଇ ଠାଣ ଗୋ । ସ୍ମର ମରଦଇ ତା ବଚନ ପାଇ ଷକ୍ଷମ ଶର ପଠାଣ ଗୋ । ୧ । ପଗ୍ଭଇ ଦେବାକୁ ଅଭିଳାଷ ଫଳ ନଗ୍ଭଇ ଭୁରୁ କମାଣ ଗୋ; ଫିଠାଇ ଦିଅଇ ଧୃତକା ପ୍ରହାର କଟାକ୍ଷ କପଟବାଣ ଗୋ । ୨ । ଗୋଟିଏ ଗୋଟିଏ ଅଳପ

---

୮୪ । ଟୀକା—ଶ୍ରୀମୁଖହରିଣାଙ୍କ—ଶ୍ରୀମୁଖଚନ୍ଦ୍ର; ରଷା—ପୃଥିବୀ; ଗିରିଧର—ଶ୍ରୀକୃଷ୍ଣ; ହରପରଶର—କନ୍ଦର୍ପଶର; ପୂଷା—ସୂର୍ଯ୍ୟ ।

୮୫ । ଟୀକା—କରମଣି—ହସ୍ତସ୍ଥିତ ମଣି; ଜଳପୂଛୁ—ବୃଥା ଅନେକ କଥା କହୁଅଛୁ; ବାଳପଛୁ—ଜାଣୁଛୁ; ଉରେ—ବକ୍ଷରେ; ସୂନ—ଫୁଲ; ମୁଧା—ବୃଥା; ତାହାଙ୍କ ପ୍ରିୟା—ଶିବଙ୍କର ପ୍ରିୟା, ପାର୍ବତୀ ।

କଥାକୁ କୋଟିଏ ପକାଏ ସାଣ ଗୋ; ପରେ ସେହି ଅବସରେ ସବୁ ସହି କରେ ଯେଡ଼େ ହାଇରାଣ ଗୋ । ୩ । ଜମି ରହେ ମନ ତା ଭଙ୍ଗୀରେ କାହିଁ ନ ମିଳଇ ପରିମାଣ ଗୋ; ଲଜବହଙ୍ଗଙ୍କୁ ଝାମ୍ପଇ ତା ଶୋଭାଦମ୍ପ-ତପଲ ସନ୍ଧାଣ ଗୋ । ୪ । ଜଣାଇଲେ ସଖୀ ଧୂର୍ତ୍ତି ସେ ଭୁଜଙ୍ଗଫଣା ନାଟୁଆ ପ୍ରମାଣ ଗୋ; ଜଗଦ୍ଦେବ କହେ ତା ସ୍ନେହ ବଳହେ ପକ୍ଷପାତ ଭଲ ଜାଣ ଗୋ । ୫ ।

( ୮୭ )

ରାଗ—କାମୋଦୀ, ଏକତାଳି

ଫୁଲ ମଲ୍ଲୀହାସି ରେ, ସତେ ତୁ କି ସାହସୀ । ପଦ ।

ଶୁଣିଥିବୁ ନୂତନା ଗରସ୍ତନା ପୁତନା, ଲଭିଲା ଅନ୍ତେ ସ୍ୱର୍ଗରେ ମୁକ୍ତି ଯେଡ଼େ; ତାକୁ ସୁଧା ମଧୁର ଗୁଣବନ୍ତ ଅଧର, ପିଆଇବାକୁ କର୍ପୀ ବାଞ୍ଛା ଏଡ଼େ । ୧ । ସାତ ବରଷୁଁ ଯାର, ଅଶ୍ଳୀଳ ନାହିଁ କର, କମଳ କନ୍ଦସ୍ଥ ଗୋବର୍ଦ୍ଧନ; ପଡ଼ିଛୁ ତା ହାତୁ ଡ଼େ, ପୁଣି କାହିଁକି ଏଡ଼େ, ଭକ୍ତଙ୍କୁ ଗର୍ବ ର୍ପଣେ ଅଭିମାନ । ୨ । ଚରବଗ୍ଗୁକୁ ପେଟ, ହେବାକାଳେ ଶକଟ, ହେଲଟି ଯାହା ସେ ବଲେଇ ମୃଦୁ; ନ ଥିଲ କାହୁଁ ଜଣା, ଏବେ ଯାଉଛୁ ଶୁଣା, ତୁ ପୁଣି ଚୁମ୍ବି ତହିଁ ସ୍ତନେ ଲଦୁ । ୩ । ଚମରୁନେତ୍ରା ଶତ, ଚେଲ ଚୌର ପଣ୍ଡିତ, ବୋଲି ପ୍ରସରୁଅଛୁ ଯାହା ନାମ, ଏକାକିନୀ ଅବଳା, ଚେଲହରଣ ଲୀଳା, କି ଭଳି ଚଳିଲେ ସେ ଘନଶ୍ୟାମ । ୪ । ହରଣାକ୍ଷି ରେ ନାନା ହର ଗନ୍ଧକୁ ଯା ନା, ବୋଲି ଯେ କହୁଥାଉଁ ବାରବାର; ତନୁମଧ୍ୟା କଶୋଗ୍ରୀ, ମନ୍ତ୍ର ଦେଇ ମାସୋର, ସେ ସ୍ନେହ ସମାଦୁଛୁ ଭାର ଭାର । ୫ । କହିଲେ ବସୁଦୁର୍ଗ ବସୁଧାଚନ୍ଦ୍ର ସ୍ୱର୍ଗ, ମହେନ୍ଦ୍ର ସଖୀ ମୁଖୁଁ ଶୁଣି ଏହା; ରଚ ସବ୍ରୀଡ଼ ହାସ, ଶ୍ରବଣଅବତଂସ, ତରାଇ ଜଣାଇଲେ ଚମ୍ପାଦେହା । ୬ ।

( ୮୮ )

ରାଗ—ତୋଡ଼ି ପରଜ । ତାଳ—ରୂପକ

ରେ ସଙ୍ଗାତ, ଦରଦ୍ରୁକାଧିଙ୍କ ଦ୍ୟୁତ,

ଦେଖୁଥିଲେ ଦେଖୁଥିବାକୁ ମୋ ମନ ଧାଉଁଥାଏ ନିତ ନିତ । ଘୋଷା ।

---

୮୬ । ଟୀକା—ଭୂରୁକମାଣ—ଭ୍ରୂ ଲତାରୂପ ଧନୁ, ଭୁଜଙ୍ଗଫଣାନାଟୁଆ—କାଳସ୍ତ ଫଣାଉପରେ ନୃତ୍ୟକାରୀ, ପକ୍ଷ—ବକ୍ର ।

୮୭ । ଟୀକା—ଗରସ୍ତନା—ବିଷପୂର୍ଣ୍ଣ ସ୍ତନ ଯାହାର, ଚମରୁନେତ୍ରା—ମୃଗନୟନା ।

ଦଶନ ବସନ ପଲ୍ଲବରେ ମଲ୍ଲୀ ରଶ୍ମି ଦରସ୍ମିତ ଛଳେ; ଦଣ୍ଡକୁ ଦ୍ୟୁମଣି ଅସ୍ତ ହେବା ଜାଣି ବନ୍ଧୁ ବାହୁଡ଼ିବା ବେଳେ । ୧ । ଦକ୍ଷ କରେ ଧରି ମୋହନ ଗୃତ୍ତୁରି ବିଶାରଦ ବେଣୁଦଣ୍ଡ; ଦକ୍ଷେତର ପଦପଙ୍କେରୁହ-ଯୁଗେ ମଣ୍ଡିଦେଲ କାଳେ ଦାଣ୍ଡ । ୨ । ଦେଇ ସାନ୍ଦୀପନି ମୁନୀନ୍ଦ୍ର ନନ୍ଦନେ ତା ଦକ୍ଷ କର ସାହସ; କୁତୁକେ ଶ୍ରୀଦାମ ପରିହାସକ୍ରମ କରିବା ହେଲେ ପ୍ରକାଶ । ୩ । ଦଳିତ ଲଳିତ ହରିତାଳଦେହ ସଭଯ ତନାବୀ ଗୁହିଁ; ଦୁର୍ମଦ ବିଳାସେ ନାଚିବା ଲୀଳା ସେ ଲେଖକସ୍ୟେ ନାହିଁ ନାହିଁ । ୪ । ଦର୍ଶିବ ଦୁଇଚା ନୟନକୁ କେତେ ମାଧୁରୀ ମୁଖଗୁନ୍ଦର; ଦମ୍ୟଖୁରଉଡ଼ା ଭୂପରାଗରୁଡ଼ା ଶ୍ରୀଅଙ୍ଗଟି କି ସୁନ୍ଦର । ୫ । ଦଶପୁର ଢେର ଗୃଲନ୍ତି ବାଛୁରୀ ବଲ୍ଲବବାଳକ ଜନ; ଦେଖିବାକୁ ସେ ସମୟ ବାଲୁକେଶ ଜଗଦ୍ଧେବ କରେ ମନ । ୬ ।

( ୮୯ )

ରାଗ—ଖଣ୍ଡକାମୋଦୀ

ଗଲା ସବୁ ସରି ରେ, ନବକିଶୋର । ପଦ ।

ଯାହା ଶ୍ୟାମ ଅଙ୍ଗ ଚୁମ୍ବି ଆସିବା ସମୀର, ଛୁଇଁଲେ କେବଳ ହୋଇ ରସ ଜରଜର, ପୁଲକେ ଭରତ କରୁ ମୃଦୁ କଳେବର, ସେ ଯେବେ ହୋଇଲେ ପର । ୧ । ଯାହା ବେଣୁ ଶୁଣି ଏକା ଧାଇଁ ନୀଶୀଥରେ, ବୋଲି ନାହୁଁ ଦନେ ଆସ ଯିବା ମିଶି ଥରେ, ହୃଦ ମଦନ ବିଭବ ସମ୍ଭାଳିସି ଥରେ, ବିରହ ତାହା ସାଥରେ । ୨ । ଦୂତୀ କର ଧରି କହି ଘେନାଇ ଘେନାଇ, ନୀପ ନିକୁଞ୍ଜ ପୁଞ୍ଜକୁ ଅନାଇ ଅନାଇ, ଦାନ ହରୁ ସୁମଶର ବନାଇ ବନାଇ, ମୀନନେତ୍ରା ଯାହା ପାଇଁ । ୩ । ସ୍ତନେ ଲଦ ଚୁମ୍ବିବାର ଯା ପାଦ-କମଳେ, ମନେ ବାଞ୍ଛିବା କୁବେରବାମାଙ୍କ ନ ମିଳେ, ଚୁମ୍ବିଲେ ସେ ତୋ ପଦ ଚନ୍ଦ୍ରକଚୂଳାଞ୍ଚଳେ, ଗୃହିଁ ଦେଲୁ ନାହିଁ ହେଳେ । ୪ । ରସବତୀ ଭଲ ନୋହୁ ଏ ଅପସନ୍ଦର, ଆସ ଏବେ ଯିବା କେଳିମଞ୍ଜରୀ ମନ୍ଦିର, ବନ୍ଦନ

---

୮୮ । ଟୀକା—ଦ୍ୟୁମଣି—ସୂର୍ଯ୍ୟ, ଦକ୍ଷକର—ଡାହାଣ ହାତ, ପଙ୍କେରୁହ—ପଦ୍ମ, ତନାବୀ—ଝରକା, ଦମ୍ୟ—ବାଛୁରୀ, ବଲ୍ଲବ — ଗଉଡ଼, ଭୂପରାଗ—ପୃଥିବୀଧୂଳି ।

୮୯ । ଟୀକା—ପୁଲକ—ରୋମାଞ୍ଚ, ଥରେ — କମ୍ପେ, ବିରହ — ବିବାଦ, ସୁମ—କୁସୁମ, ଫୁଲ ।

କରଇ ମୃଦୁ ପଦାରବିନ୍ଦର, ଟୋଷ ଶ୍ୟାମଳ ସୁନ୍ଦର । ୫ । ଅଷ୍ଟାଦୁର୍ଗନାଥ ଇଚ୍ଛେ ହୋଇ ଅଭିଳାଷୀ, ମିଳଣି କଥିତ ବଚନରେ ଶୁଦ୍ଧପାଣି, ଲମ୍ପଟ ହେବାରୁ ହୋଇ ଦରସ୍ପୃଷ୍ଟହାସୀ, ବିଜେ କଲେ ବାଣାଭାଷୀ । ୬ ।

( ୯୦ )

ରାଗ—ପୂରବି

ନୂଆ ରସିକା ରେ ଗୁଆଁର ମୋ ସମ କାହିଁ ।
ତୁ ଅଟରୁଥାଉ ଗୁମାନ ବୋଲି ଯା ମୁଁ ଅନମୁଥାଏ ତାହିଁ । ପଦ ।

ନବଲତା ଲେଲ ଶାଖେ ନିଷେଧିଲେ ଲଭି ସମୀରଣ ସଙ୍ଗ; ମକରନ୍ଦ ପାନ ଉତ୍ସବରେ ମନ ନ କରଇ କିକ ଭୃଙ୍ଗ । ୧ । ରସବନ୍ଧ ଧେନ ଠେଙ୍ଗଲେ ଜୀବନ ଝଷ ବରତିବ କେହ୍ନ; ମଣି ଇଚ୍ଛେକଶ ବୋଲି ବରଜିବା ବଣିକର ଭାଗ୍ୟ କାହିଁ । ୨ । ଅଗତିକ ମୁହିଁ ବୋଲି ତ ଜାଣଇ ଜଗତୀତଳେ ତୋ ବିନା; ଚରଣକଞ୍ଜେ ତୁ ପେଲି ଦେଲେ ହେଲେ ଶରଣ ବୋଲିବି ସିନା । ୩ । ଯାହା ପାଦେ ଲକ୍ଷା ଲେଖୁଥିଲେ ଶଚୀନାହା ପଦ ତୁଚ୍ଛ କର; ତାହା ପରି ରମ୍ୟ ପଦାର୍ଥକୁ ଯାହା ପର ପରିଭବ ସର । ୪ । ଅଷ୍ଟାଦୁର୍ଗନାଥ ବୋଲେ ଜାଣୁ ଜାଣୁ କଷ୍ଟଦ କାମ ଚରିତ; ଜମ୍ବାଲ ଲାଗିଲା ବୋଲି ବରଜିଲି ବିମ୍ବାଧରୀ ମରକତ । ୫ ।

( ୯୧ )

ରାଗ—କାମୋଦୀ

ଧନ ଘନ ରସ ବରଷିଲା ରେ, ଚଞ୍ଚଳା ଜ୍ୟୋତି ପ୍ରକାଶି,
ତୁରତେ ଉଲ୍ଲଣ୍ଠ ସରିତ ବଢ଼ିଲା ଦମ୍ଭ ଦ୍ରୁମ ଗଲା ଭାସି । ପଦ ।

ପୁଲକକଦମ୍ବ ପ୍ରଫୁଲ୍ଲ ହୋଇଲା, ନାଚିଲା ବେଣୀ ମୟୂରୀ, ଛୁଟି ମୋତିମାଳ ଦିଶେ କି ଚଞ୍ଚଳ କି ସେ ବକପନ୍ତି ପରି । ୧ । ଖରଶ୍ୱାସ ଝଞ୍ଜା ପବନ ପ୍ରସର କଳ୍ପାଏ ବଚନେ ମଲ୍ଲି, ଅଙ୍ଗ ଅମୋଦ ମାଳତୀ ବିକାଶଇ କି ପ୍ରସନ୍ନ ରସବଲ୍ଲୀ । ୨ । ନଖକ୍ଷତ ରକ୍ତ ଇନ୍ଦ୍ରଗୋପ ବ୍ୟକ୍ତ ଦିଶିଲା

---

୯୦ । ଟୀକା—ଜୀବନ—ଜଳ, ଝଷ—ମାଛ, ଜମ୍ବାଳ—କାଦୁଅ ।

୯୧ । ଟୀକା—ରସ—ଜଳ, ଚଞ୍ଚଳା—ବିଜୁଳି, ପୁଲକକଦମ୍ବ—ରୋମାଞ୍ଚରୂପ କଦମ୍ବଫୁଲ, ନଖକ୍ଷତରକ୍ତ ଇନ୍ଦ୍ରଗୋପ—ନଖକ୍ଷତରୂପ ସାଧବାଣୀ ପୋକ, ଜ୍ୟୋତିରିଙ୍ଗଣ—ଜୁଳୁଜୁଳା ପୋକ, ସ୍ୱରକକରଙ୍କ ତାଟଙ୍କ — ଯେଉଁ କାନଫୁଲ ମୁଣ୍ଡରେ ସ୍ୱର ଲଗିଥାଏ, ଶିଲୀନ୍ଧ୍ରକୁସୁମ—ଛତୁ ।

ଅତ୍ୟନ୍ତ ଉତ୍ସ, ସ୍ୱେଦବିନ୍ଦୁଛଳେ କରକା ନିପାତ ବୃଷ୍ଟିଜଳଧାର ପର । ୩ । କଟିଘଣ୍ଟି ଭେକ ପ୍ରକାରି ରଟିଲେ ଚଳେ ପୀନପୟୋଧର, ଭୂଷଣ ରତନକିରଣେ କି ଜ୍ୟୋତିରିଙ୍ଗଣଗଣ ପ୍ରଚୁର । ୪ । ସ୍ମରକ-କରଙ୍କ ତାଟଙ୍କ ଅଟକ ନ ରହି କର୍ଣ୍ଣରୁ ଗଳି, ଅବନୀରେ ପଡ଼ି ଶିଳୀନ୍ଧ୍ର-କୁସୁମ ଫୁଟିଲି ପରାଏ ଫଳି । ୫ । ନୀଳ ପୀତ ରକ୍ତ ମିଶ୍ରିତ କୁସୁମ ପ୍ରାପ୍ତ ନିଷ୍ଟେ ଇନ୍ଦ୍ରଧନୁ, ବୋଲେ କବିସୂର୍ଯ୍ୟ ଅନଙ୍ଗ ଅନଳ ଲିଭାଇଲା ହୃଦବନ୍ଧୁ । ୬ ।

( ୯୨ )

ରାଗ—କାମୋଦୀ

କହିବାକୁ ସଙ୍ଗିନୀ ତୋ ଆଗେ ଲେ ଲାଜେ ତୋଳି ନୁହେ ମଥା । ସାଧିବାକୁ ମନ ଥିଲେହେଁ ପ୍ରାଣକୁ ବାଧିବା ଯାଏ କି କଥା । ଘୋଷା ।

ଦେଖୁଛୁ ତ ମିତ ଚୁମ୍ବିବାର ମତ୍ତ ମିଳିନ୍ଦ ସୂନସମାଜ, ପିଏ କି ବଲ୍ଲରୀ ଗୋଟିଯାକ ଧରି ଘେନ ତ କି ଲୋକଲାଜ । ୧ । ଜଳି ଯାଇଥିବା ଦେବତାଟା ଅବା ଅଳି କରୁଥାଏ କେତେ, ବଳି ଦେବାକୁ କି ତାକୁ ଏତେ ସରି ଦଳି ଦେଉଥାନ୍ତି ମୋତେ । ୨ । କଞ୍ଜମଞ୍ଜରୀରେ କୁଞ୍ଜରର ହେଲେ କିଛି ଅନୁରାଗ ଥିବ, ଅଞ୍ଜନନିକର କୁଞ୍ଜ କଳଭର ଶତେ ନାହିଁ କୃପା ଲବ । ୩ । ରଖ ରଖ ବୋଲି ବୋଲି କି ଖର ସେ ନଖର ଶିଖର କେଳି, ନୁହଇ ମୋ ଦେହ ଅଳପ ତଳପ ତଳକୁ ଛୁଇଁବା ଭଳି । ୪ । ଯା ଚରଣ ଧରି ଜଣାଉ ଏପରି ଆଚରଣ ପରିପାକ, ପୁଣି କି ଭଙ୍ଗୀରେ ନବନୀତାଙ୍ଗୀ ରେ ବୋଲି ପଡ଼ୁଥାଏ ଡାକ । ୫ । କହି ଏ ରୂପରେ ପ୍ରଣୟ କୋପରେ ପୁରାଉ ସୁଖ ସୁକେଶୀ, ଛପି ଶୁଣୁଥିଲେ ତାପିଞ୍ଛ-ଶ୍ୟାମଳଛବି-ଦେଲେ ଜଣେ ହସି । ୬ । ସେ ସରସ ପଲାଙ୍କଣୀ ବେଳ ବଳାକଳାପ-କଙ୍କଣୀ ରବ, ଧ୍ୟାନେ ଜ୍ଞାନେ ସେବି କି ସୁଖାନୁଭବୀ ହେବେ ନୃପ ଜଗଦେବ । ୭ ।

---

୯୨ । ଟୀକା—ମିଳିନ୍ଦ—ଭ୍ରମର; ସୂନସମାଜ—ପୁଷ୍ପସମୂହ; ବଲ୍ଲରୀ—ଲତା; କଞ୍ଜମଞ୍ଜରୀ—ପଦ୍ମକଢ଼; କୁଞ୍ଜର—ହାତୀ, ନଖର—ନଖ; ତାପିଞ୍ଛ ଶ୍ୟାମଳ—ତମାଲ ପରି ଶ୍ୟାମବର୍ଣ୍ଣ ଶ୍ରୀକୃଷ୍ଣ ।

( ୯୩ )

ରାଗ—ସାବେରୀ, ଏକତାଳି

ବିଧାତା ରେ, କି କାଳେ କି ଦଣ୍ଡ ଦେଲୁ ଆଣି,
ମୁଁ ଯିବି ବୋଲି ବିଦେଶ ବନ୍ଧୁ ଛାମୁରୁ ନିଦେଶ ନେବାକୁ କହିବି କେହି ବାଣୀ । ଘୋଷା ।

ଯେବେ ମୁ ପ୍ରବଳ ଦୁଃଖ,-ଭରରୁ ଶୁଖାଇ ମୁଖ, ମାନସ ଯୋଡ଼ିବି ଜାଣି ପାଣି, ପଲକେ ଜୀବନ ଧରି ପାରିବ କି ସେ କିଶୋରୀ-ସୀମାନ୍ତ-ମଣିଙ୍କ ସାମନ୍ତାଣୀ । ୧ । ପ୍ରଳୟ ସମୟ ଭୟ କମ୍ପାଇ ଦେବ ହୃଦୟ, କି ବଞ୍ଚିବ ତେଡ଼େ ମୃଦୁ ପ୍ରାଣୀ, ସେହିକ୍ଷଣି ଯିବ ଭାଜି, ରୋହିଣୀରମଣ-ରାଜି, ରାଜୀବାକ୍ଷୀ ଜଣା ମୁଖ ଟାଣି । ୨ । ଥରାଇ ଓଷ୍ଠପଲ୍ଲବ, ଚରଣ ନଖେ ଚରିବ, ଧରଣୀ ବରଷି ନେତ୍ରୁଁ ପାଣି, ମାନସ ସରରୁ ତାର, ସନ୍ତାପଧୀବର ବାର, ଧୈର୍ଯ୍ୟ ଝଷକୁ ନେବ ଛାଣି । ୩ । ଅଚରୁ ଏହା ଯା ମନ୍ଦ, ଏଥିରୁ ବଡ଼ ପସନ୍ଦ, କରେ କରି କୃପାଣିକୁ ଶାଣି, ନ ଥାଉ ଥାଉ ବା ଦୋଷ, ଲଭୁ ବା ଯଶ ଅଯଶ, ଦେବାର ଶିରକୁ ମୋର ହାଣି ।। ପରାର୍ଦ୍ଧାଧିକ ମୋହର, ଠାରୁ ତ ବଳେ ମୋହର, ପ୍ରାଣପ୍ରିୟା ବୋଲି ଜାଣି ଜାଣି, ଦେହେ ପ୍ରାଣ ବହି ରହି, ତା ଛାମୁ ଛାଡ଼ିବ କେହି, କହେ ଜଗଦ୍ଦେବ ଭୂପମଣି । ୫ ।

( ୯୪ )

ରାଗ—କେଦାର, ଆଠତାଳି

କେଡ଼େ କଉତୁକୀ କଳାଚାନ୍ଦ ଲୋ । ପଦ ।

କେଉଁ ଯୁବତୀକି ନେଇ ନାହିଁ ଝିଙ୍କି ତା ନୟନ ଫାନ୍ଦ ଲୋ । ୧ । କୁଚେ ଥାଏ କର ବଦନେ ମଧୁର ହସିତ ଶୁଭିଲ କାନ୍ଦ ଲୋ । ୨ । କର୍ଣ୍ଣ-କୁବଳୟ ଉଞ୍ଚାଇ ପ୍ରଣୟ-କୋପୁଟି କେଡ଼େ ପସନ୍ଦ ଲୋ । ୩ । କା ମନ ନ ମୋହେ ସେ କିଶୋର ନୁହେ ଶୃଙ୍ଗାରଭୂରୁହ କନ୍ଦ ଲୋ । ୪ । କମନୀୟ କେକୀ ଝାଲରିଆ ସେ କି ଜଗତୀ ନୟନାନନ୍ଦ ଲୋ । ୫ ଅଷ୍ଟଦୁର୍ଗନାଥ ତାଙ୍କ ପାଦପାଥରୁହ ମରନ୍ଦ ମିଳିନ୍ଦ ଲୋ । ୬ ।

---

୯୩ । ଟୀକା—ଝଷ—ମାଛ, କୃପାଣ—ଖଡ୍ଗ, ମୋହର—ସ୍ୱର୍ଣ୍ଣମୁଦ୍ରା ।

୯୪ । ଟୀକା—ପାଥରୁହ—ପଦ୍ମ, ମରନ୍ଦ—ମକରନ୍ଦ, ମିଳିନ୍ଦ—ଭ୍ରମର ।

( ୯୫ )

ରାଗ—ଚୋଖି

ଅନା ଅନା ସୁନୟନା କଞ୍ଜୁତ କୂପାରେ । ପଦ ।

ତୋଷ ମୋତେ ଅନୁକମ୍ପାହାତା ଶିରୁପାରେ, ନ ହସି ମୋ ଭଗାରଏ ସହନ୍ତୁ ନପାରେ । ୧ । କେତେ କେତେ ଜନ୍ମେ ଧନ ମୁଁ ଜଲଜପାରେ, ଲେଖିଛୁ ଅଳତା ଶବ ତୋ ଜଳଜ ପାରେ । ୨ । ନ ଫିଙ୍ଗେ ଦୃଷ୍ଟି ତୋ ବିନା ଅନ ସ୍ୱରୂପାରେ, ଚନ୍ଦ୍ରାମଣି ଥାଉଁ ଥାଉଁ କେ ରସେ ରୂପାରେ । ୩ । ଭ୍ରମିଲଣି ଡାକକଟି ସ୍ମର ଅକୂପାରେ, ତରୁଣି ତରଣୀ ହୋଇ ଲଗାଅ ତୁ ପାରେ । ୪ । ଜଳନ୍ତର ପୁରନ୍ଦର ଗୃହୁ ଜଳପାରେ, ରସିଲ ରସିକା ରସ କୁତୁହଳପାରେ । ୫ ।

( ୯୬ )

ରାଗ— କୁମ୍ଭ କାମୋଦୀ

ମିତ ହତ ଯେତେ ତୁ କହିଲୁ ଗୋ, ଚିଉ ତା ନ ମଣେ ସୁଖ,
ପରମପଦବୀ ଲଭିଲେହେଁ ଯେବେ କରମରେ ଅଛୁ ଦୁଃଖ । ପଦ ।

ମୋହନ ମନ୍ତ୍ର କାଣୁ ଅଭର ମୋ ମନ କରିବୁ ବଶ, ସର ତ ଗଲ ହରଣାକ୍ଷୀବୃନ୍ଦରୁ ଶ୍ୟାମ ସଜଭାଗୀ ଯଶ । ୧ । ବିଷରେ ପୀୟୂଷ ବୁଦ୍ଧି କରିବାର ଫଳ ହେଲା ଏତେ ସରି, ମିଶାଚ ସ୍ମର ବଦନେ ପଡ଼ି ହେଲି ନଶା ଚକବାକୀ ପରି । ୨ । ଝଳ ମୋର ଯରଜରେ ପୁଣି କେତେ ବଳଥାଇ କନ୍ଦୁଥାଉ, ଖୁଅଦନ୍ତ ଛୁଅଁ ଖରାପ କ୍ଷୀରରେ ସୁଆଦ ଥାଏ କି ଆଉ । ୩ । ଅପ୍ରିୟ ହେଲେ ତାହାର ବୋଲାଇବା ଅଶା ସିନା ପରମାଣ, କହିବାରୁ ଏହା ସହ୍ନ ରହିଥାଏ ନାକ ସେହି ଦ୍ରୋହୀ ପ୍ରାଣ । ୪ । କହେ ଅଷ୍ଟଦୁର୍ଗ ମହୀଦମ୍ଭ ସ୍ୱର୍ଗ ମହେନ୍ଦ୍ର ଶ୍ରୀଜଗଦ୍ଦେବ, ଯିବା ଶମନପୁରକୁ ଯେବେ ନାକନିବାସରୁ କିସ ହେବ । ୫ ।

---

୯୫ । ଟୀକା—ଅନୁକମ୍ପା ହାତା ( ସମ୍ବୋଧନ ); ଶିରୁପାରେ—ମସ୍ତକରୁ ପଦଯାଏ, ତ୍ରପା—ଲଜ୍ଜା, ଜଲ ଜପାରେ—ପାଣିରେ ରହି ମନ୍ତ୍ରାଦ ଜପିବାରେ, ଜଳଜ ପାରେ— ପଦ୍ମାଗ୍ରାଦରେ, ଡାକକଟି—କ୍ଷୀଣକଟି, ସ୍ମରଅକୂପାରେ— କାମସାଗରରେ, ଜଳପାରେ—କଥାରେ, କୁତୁହଳପାରେ—କୌତୁକ ଶେଷ ସୀମାରେ ।

( ୯୭ )

ରାଗ—କାନଡ଼ା ଝୁଲ

ନଗୁଇଲା ଯାହା ସେ, ଭୂରୁରୂପ ଚପଳ ଚମରୀଦୃଶା । ପଦ ।

ମୋ ଧୈର୍ଯ୍ୟ ମୃଗକୁ ପାଶି, ନୟନାନ୍ତ ବରଚ୍ଛି ଅଶି, ବନ୍ଧୁଅ ବନ୍ଧୁକ ବନ୍ଧୁ ଅଧରରେ ବନ୍ଧ କରି କୁନ୍ଦ ପସନ୍ଦହସା । ୧ । ମୁନିଜନମାନସଭୁଲ, ଭଲ ମୋତି ଝଲଝୁଲ, ବାସବରତନ ନଥ ନରତନ ରସିକା ନାସିକା-ପୃଷ୍ଠ ଉଲ୍ଲସା । ୨ । ଧନ୍ୟ କାମ ଅମୋଘ ଶର, ମନ-କାରୀଭଙ୍ଗୀ ତାହାର, କନକାଚଳ ତ ଛନକା ହୋଇବ ସ୍ତନକାନ୍ତି ଦେଖି କାହା ଭରସା । ୩ । ଅଳଂକୃତ ନିତମ୍ବ ଫର, ଶୋଭା ଲେଭେ ଅଳପ ଫେର, ଅନାଇଲାବେଳେ ବିବେକ ଦଳିଲା କି ବେଙ୍କତଳିଅ ଲିହସା ଖୋସା । ୪ । ଛଣା ସୁଧା ବାଣୀ ବିଭ୍ରମ, ଜଣା କଲା ସେ ସବୁ କ୍ରମ, ଏଣିକି ଚରମେ ବେଣୀକି ଫଣୀକି ପରି ଖେଳାଇବ ବରସାରସା । ୫ । ଅଷ୍ଟଦୁର୍ଗ ମହେନ୍ଦ୍ର ଭଣେ, କିଶୋରୀଙ୍କ ଶୋଭା ବୀକ୍ଷଣେ, ଅଖଣ୍ଡ ଶିଖଣ୍ଡମଣ୍ଡନ ମଦନପଦନଦେ ଭାସି କଲେ ପ୍ରଶଂସା । ୬ ।

( ୯୮ )

ରାଗ—କୋଳାହଳ

ଜୀବବାନ୍ଧବୀ ରେ, ପ୍ରାଣବାନ୍ଧବୀ ରେ

ତୋ ବିନା ମୋତେ ନ ଦିଶେ ଆନ । ଘୋଷା ।

ଜଗତେ ନାଗରୀମାନଙ୍କ ମାଧୁରୀ କରୁଥାଏ ମୁଁ ଯେ ଅନୁମାନ, ଗୋଟିଏ ଗୁଣରେ ତୋ ନଖ କୋଣରେ ତୁଳିବାକୁ ନ ବଳଇ ମନ । ୧ । ପୂର୍ବ ତପବଳେ କରିବ ଯେ ବଳେ ତୋ ମଧୁର ରଦଚ୍ଛଦ ପାନ, ସୁଧା ନିର୍ଝରୀକି ମଧୁର କରି କି ଲେଖିବ ନ ଧରି ଅଭିମାନ । ୨ । ତରୁଣୀ ତୋ ବାଣୀ ମୃଦୁ ମୃଦୁ ଠାଣି ଶୁଣିଥିବ ପୁଣି ଯାହା କାନ, ସେ କି ଗଞ୍ଜରବ-ଯୋଗ୍ୟ ବିଚାରିବ ଶୁକ ପିକ ବେଣୁ ବୀଣା ଗାନ । ୩ । ଥରେ ଯାହା ଉର କରିଥିବ ତୋର ଘନ ପୀନସ୍ତନ ଆଲିଙ୍ଗନ, କୁମ୍ଭି-କୁମ୍ଭସ୍ଥଳ ଯୁଗଳକୁ ସ୍ଥୂଳ ମଣିବ କି ନ ବିଚାରି ନ୍ୟୂନ । ୪ । ମଧ୍ୟ ଥିଲେ ସିନା ତୋର ସୁଦର୍ଶନା

---

୯୭ । ଟୀକା—ବନ୍ଧୁକବନ୍ଧୁ ଅଧର—ରକ୍ତବର୍ଣ୍ଣବନ୍ଧୁକ ପୁଷ୍ପ ସଦୃଶ ଓଷ୍ଠ ।

୯୮ । ଟୀକା—ରଦଚ୍ଛଦ—ଅଧର, କୁମ୍ଭୀ—ହସ୍ତୀ, ହରିକଟି—ସିଂହକଟି, ଡାକ ଡମରୁ ଶେଷ—ଅନନ୍ତମୁଖଧାରୀ ଶେଷନାଗ ।

ଘଟନା କରନ୍ତ ଉପମାନ, ହରକଟି ତାଙ୍କ ବେଦୀ ମଧ୍ୟରେ କି କୃତାର୍ଥ କରନ୍ତେ ରୂପମାନ । ୫ । ହେଲେ ଯେ ମନ୍ଦରସ୍ତନା ତୋ ସୁନ୍ଦର ଗୃହରେ କରିବ ଦୃଷ୍ଟିଦାନ, ଯେବେ ଥିବ ଲଜ ଲୁଚିବ କି ରାଜହଂସ ଗଜରାଜ ଲୀଳାଯାନ । ୬ । କଣାଇବ କିସ ଶେଷ ମୁଖେ ଶେଷ ହେବାର ଅଭ୍ୟାସ ଯେ ବିଧାନ, କହେ ଜଳନ୍ତର ମହୀପୁରନ୍ଦର ଥିବ ମାନ କିଛି ଅବଧାନ । ୭ ।

( ୯୯ )

ରାଗ—କେଦାର

ପ୍ରାଣନାଥ ବିଜେ ବେଳ ବହିଲା ରେ । ପଦ ।

ସଖି ହେଲା କି ପାପ, ଦେଖ ଏ ଚନ୍ଦ୍ରାତପ, ବନ୍ଧା କୁସୁମ ଥୋପଅସି ଲୁଳିଲା ରେ । ୧ । ଭୁଟିଲାକ ମୋ ହୃଦମୁଠେ ଥିଲା ପ୍ରମୋଦ ମଥାପରୁ କୁମୁଦବନ୍ଧୁ ଟଳିଲା ରେ । ୨ । ଦେଲା ଅହା କି ଫଳ, ଭଲ ତ ମୋ କପାଳ, ଲଗାଇଲେ ରସାଳ ନିମ୍ବ ଫଳିଲା ରେ । ୩ । ମଣ୍ଡାଇଲି ନିବାସ, କାହିଁ ହେଲି ଏ ବେଶ, ଅନେ ଯେବେ ଜୀବେଶ ମନ ବଳିଲା ରେ । ୪ । ଶ୍ଳେଟରସୁ ନୃପତି, ବିଜେ କଲେ ଏ ରାତି, ଜାଣ ସବୁ ସମ୍ପତ୍ତି ମୋତେ ମିଳିଲା ରେ । ୫ ।

( ୧୦୦ )

ରାଗ—କାମୋଦୀ

ଗୃହିଁବୁ ଯେବେ ଶ୍ୟାମ ଦୂ୍ୟତକି ରେ, କାହିଁ ହଜାଇ ଦେବୁ ମତିକି ରେ । ନାହିଁ ବୋଲିବା କଥା, ଜାଣିବୁ କି ସର୍ବଥା, ଅଜ କି ସମ୍ଭାଳିବୁ ଧୃତିକି ରେ । ଘୋଷା ।

ଏ ନଗରେ ଏଣିକି, ଭ୍ରମେ ଚୁମ୍ବିବ ନିକି, 'ସତୀ' ଏ ଦୁଇବର୍ଣ୍ଣ ଶ୍ରୁତିକି ରେ, ସତେ ପ୍ରାଣମିତରେ ତା ସେବାରୁ ଇତରେ ଯୁବତୀଜନମାନୁ ଗତିକି ରେ । ୧ । ଯେବେ ସେ ହେବ କୋଳେ, କଳାବତୀ ମଣ୍ଡଳେ, ନ ଦେକବୁ କି ଶ୍ୱେତ ଛତକି ରେ, ଚୁମ୍ବିଲେ ତା ବଦନ-କଞ୍ଜଟି ଗୁରୁଜନ ଗଞ୍ଜନ ଲଭିଲେହେଁ କ୍ଷତି କି ରେ । ୨ । ଭବନ ମଣି ବାସ, ସେ ନବ ଯବା ପାଶ, ରବିନନ୍ଦନୀତୀର ସ୍ଥିତିକି ରେ, କି ସୁଖ ଇନ୍ଦ୍ର ଅଙ୍କେ, ନନ୍ଦନରେ ନାଃଶଙ୍କେ ଅରୋହିଲେ ଅଭ୍ରମୁପତିକି ରେ । ୩ । ଅବା ତା ପଥେ ଯିବା, ଜାଣି କଳପି ଥିବା, ତା ପଛେ ଯେତେ ପରିଭୂତିକି ରେ, ମୋହନସ୍ମିତ ଅବଲୋକେ

୧୦୦ । ଟୀକା—ରବିନନ୍ଦନା—ଯମୁନା, ଅଭ୍ରମୁପତ—ଐରାବତ ହାତୀ ।

ପାସୋର ଯିବ ନ ଅଗରବ କ ବନଭକ ରେ । ୪ । ଶୁଣି ଶ୍ରୀଠାକୁରାଣୀ, ଲାଜ ମଣିଲେ ଜାଣି, ନ ଥିଲାପର ହରପ୍ରୀତକ ରେ, ସେ କାଳେ ଦୁଇ ସଖୀ, କୃପା କଲେ ସୁମୁଖୀ, ମୁକୁନ୍ଦଦେବ ଗଜପତିକ ରେ । ୫ ।

( ୧୦୧ )

ଗୃହାଁ ରେ, ମଧୁବନ କେଳିକୁଶଳାଙ୍କୁ । ଘୋଷା ।

କୋମଳପାଦ ସରୋରୁହ ଯାବକ ରଚନଶଳାକାଧରାଙ୍କୁ, ତୋ ମଧୁରାଧର ଲାଲ-ଜବା-ମକରନ୍ଦଝୁରୀ ଭ୍ରମରାଙ୍କୁ । ୧ । ନିର୍ଜିତଶୋଣସରୋଜକରେ କରୁ ଯା ସଜଡ଼ା ବଢ଼ଉଅଙ୍କୁ, ହୀରକ-କୈରବ-କାଶ-ସୁଧାକର-ହାସ ବିଳାସିନୀତାଙ୍କୁ । ୨ । ଗୁରୁ ସୁନୀଳ ଚଳାଚଳ ଲୋଚନ କୋଣ ନିଦେଶକରାଙ୍କୁ, ଗୃମର ବାତଭରେ ରତି-କୌତୁକ-ସମ୍ଭବ-ଖେଦହରାଙ୍କୁ । ୩ । ଶୈଳସହୋଦର ପୀନପୟୋଧର ଚନ୍ଦନ ଭୋଗଦିଅଙ୍କୁ, ମଞ୍ଜୁଳମାଚଳ ବକ୍ଷତଳେ ନଖକେଳିକଳା ହଟିଅଙ୍କୁ । ୪ । ବାନ୍ଧବ ! ଯଦ୍ୟପି ମାନସରେ ଅଛି ଲେଶ କୃପା କରିବାକୁ, ରାଜ କଦମ୍ବ କିରୀଟ ଜଳନ୍ତରନାଥ ମହୀମଘବାଙ୍କୁ । ୫ ।

( ୧୦୨ )

ରାଗ—କେଦାର, ତାଳ—ସରିମାନ୍

ମିତ ଆମ୍ଭ ଶ୍ୟାମବନ୍ଧୁ ଗୃଲ କ ରସେ ଗୋ । ଘୋଷା ।

ଅଖଣ୍ଡ ଶୋଭାମଞ୍ଜୁଳ, ଶିଖଣ୍ଡମଣ୍ଡନ ଚୂଳ, ଖଞ୍ଜେ କ ଜନ-ନେତ୍ରକୁ ପରଚେ ଗୋ । ୧ । ରସପୀୟୂଷଲହରୀ, ପର ତା ବାଣୀ ନିର୍ଝରୀ ଜଗତୀ ମନୋମଞ୍ଜରୀ କାର ସେ ଗୋ । ୨ । ନୋହେ କୁସୁମ କମାଣ, ତା ନେତ୍ର ବାରିଜ କୋଣ, ମାର ମାରଗଣଗଣ ବରଷେ ଗୋ । ୩ । ତା ମୋହନ ସ୍ମିତ ଶିରୀ, ଭୁଲେ ସୁର ଚଲ ପର, କୁଳର ସୁନ୍ଦରପଣ କରଷେ ଗୋ । ୪ । ଶରଦ ରଜନୀ ଈଶ, ମୋହେ ତା ମୁଖ ନିବାସ, ସେ ତ ଲଭୁଅଛି ନାଶ ଦରଶେ ଗୋ । ୫ । କୃପାମୟ ଅବତାର, ରମା ଇଷ୍ଟ ଦେବତାର, ହେଲେ

---

୧୦୧ । ଟୀକା—ନିର୍ଜିତ ଶୋଣ ସରୋଜକର—ରକ୍ତପଦ୍ମଠାରୁ ଅଧିକ ମନୋହର ହସ୍ତ, କୈରବ—କଇଁ କୁମୁଦ; ମଞ୍ଜୁଳମାଚଳ—ସୌନ୍ଦର୍ଯ୍ୟପୂର୍ଣ୍ଣ ପର୍ବତସ୍ୱରୂପ, ମଦମ୍ବ—ସମୂହ, କିରୀଟ—ମୁକୁଟ ।

୧୦୨ । ଟୀକା—କମାଣ—ଧନୁ, ମାରଗଣ—ମାର୍ଗଣ ବା ଶର, ତରସ—ଉଦ୍‌ବେଗ ।

ଧନ ନେବ ତାର ସୁରଣେ ଗୋ । ୬ । ଲଭ ହେଉ ନୋହୁ ଅବା, ଅବସର ପୁହାଇବା, ତା ପଦତଳ ଚୁମ୍ବିବା ତରସେ ଗୋ । ୭ । କହଇ କବିତପନ, ଧାଉଥିଲେ ତା ଲପନ ସ୍ୱର୍ଗସୁଖେ ତ ମୋ ମନ ନ ରସେ ଗୋ । ୮ ।

( ୧୦୩ )

ରାଗ—ବଙ୍ଗଳାଶ୍ରୀ

ମାନ ଅବା ଲଜ, ନ ଜାଣିଲି ଆଜ, ମୁଖଚନ୍ଦ୍ର ନୁଆଇଲି ।
ଆନ ପକାଇଲି ଅନେକ ମୋ ଗିର କାନପାଖକୁ ନ ନେଲି ରେ । ୧ ।
ଦୋଷ ଦେଖି ଯେବେ ନେନେ ତେବେ ସିନା ରୋଷ ଅଙ୍ଗୀକାର କରି,
କି ସକାଶରୁଛି ମୋ ସକଳ ଭାଗ୍ୟ ମୋଷ ରଖିଲି ଚତୁରୀ ରେ । ୨ ।
ପିଅଇ ନ ଦେଲି ଅଧର, ଉରଜେ ଧଅଇ ନଦେଲି ପାଣି,
ଫିଅଇ ବାସ ମଦନମୁଖୁଁ ମୋତେ ଜୀଅଇବୁ କେହ୍ନା ପୁଣି ରେ । ୩ ।
ଛଳାଇ ସନ୍ଧିକି ସନ୍ଧରେ ନାବଢେ଼ ଜକାଇ ନ ଦେଲି ଦେହ,
ଧକାଇଲି ନାହିଁ କେଳିରୁ ପଛକୁ ପକାଇ ଦେଲି ମୋ ସ୍ନେହ ରେ । ୪ ।
ଗିରୀଶ-ପର-ଦଣ୍ଡରୁ ରେ କେତକୀଗୋର ସରଲ ମୁଁ ସିନା,
ଶିରୀଷ ସର ଶରୀର ଉଡ଼ାଇଲି ପୁରୁଷଘାତମାବାନା ରେ । ୫ ।
ମଦନମୋହନ ବଚନେ ଶ୍ରୀମତୀ ସଦସ୍ୟ ହାସ ରଚିଲେ,
ସେ ସମସ୍ତ ଛବି ଭାବି ଭାବି କବିରବି ରାସ୍ୟଗୁରୁ ବୋଲେ ରେ । ୬ ।

( ୧୦୪ )

ରାଗ—ତୋଡ଼ି ପରଜ, ଅଦତାଳ

ରେ କିଶୋରି, ପଛେ ଛୁଇଁବୁ ମୋ ତନୁ,
ପାସୋର ପଙ୍କାଅ ନୀପଅନାଇଣି ସୁଅଗ ତୁ ଆଗ ମନୁ । ଘୋଷା ।
ମାତଲ ନାକୁଞ୍ଜେ ଜଣାଯାଇ କୁଞ୍ଜେ ବୋଲି ହେଉଛୁ ଖବର,
ନୋହି ମନାଦର ଏ ଅପବାଦର ଅପାସ୍ୟ ଉପାସ୍ୟ କର ରେ । ୧ ।
ହିତକୁ ଛାଡ଼ି ମୁଁ ନ କହେ ମୋ ପ୍ରାଣମିତକୁ କଦାପି ଆନ,
ଚିତ୍ତକୁ ନ ଅସୁ ଅସୁ ତା ମୁରଲୀ ଗୀତକୁ ନ ଦଅ କାନ ରେ । ୨ ।
ନ ଜାଣିଲ ପର ଇନ୍ଦୀବରାଧରୀ ଚୁମ୍ବୁ ଯେ ଅନବରତ,
ହର ତୋତେ କୃପା କରନ୍ତୁ ମଦନକରତ ମୁଖୁଁ ବରତ ରେ । ୩ ।

୧୦୪ । ଟୀକା—ନଆଜ – ଅନୁମାନ, ଭାଡ଼ି—ଫିଙ୍ଗିଦେଇ, ଫୋପାଡ଼ି ।

ଧନ ମାନରେ ତୋ ଅଙ୍ଗେ ଯେ ପୂରିଛି ବନମାଳିକା ବାସନା,
ଘୁଞ୍ଚିବ ମୁଁ ଆଜ ଏ କଥା ନଆଜ ପଢ଼ିଲେ କହିଲେ ସିନା ରେ । ୪ ।
କାହିଁକି ହେଲାଣି ଏପରି ପଲ୍ଲବ ତଳପରେ ସଢ଼ି ଦେହ,
ଜନେ ଯେ ପୁଚ୍ଛିବେ ତହିଁକି ଜବାବ ଜଳପ ଅଳପ ରହ ରେ । ୫ ।
ସହଚରୀ ପରିହାସୁ ହସି ଗୋରୀ ଡାଢ଼ି ଅବତଂସଫୁଲେ,
ସେ ସମସ୍ତ ଛବି ଚନ୍ଦ୍ର ଚନ୍ଦ୍ରେ କବିରବି ରାସୁଗୁରୁ ବୋଲେ ରେ । ୬ ।

( ୧୦୫ )

କି ନ କରେ ପ୍ରେମରୀତରେ, ସଜନି ।

ମେ ଶ୍ୟାମ ଅନୁସରଣେ ସଖି ମୋର ହେଉଛି ଯେତେ ଅନୀତ ରେ
। ଘୋଷା ।

ଶିରୀଷ କୁସୁମ ତାଡ଼ନରେ ସହୀ ମେଲେ ଯେ ମୋହକୁ ଯାଇ ,
ସେ କରକାମିଶା ପ୍ରଖର ବରଷା ସହା ତୋରି ତୋରି ଯାଇ । ୧ ।
ଉଠେ ଯେ ସଜନୀ କରେ କର ଦେଇ ଦେହଳି ଲଙ୍ଘିବାପାଇଁ,
ସେ କଣ୍ଟା ଅବାଟ ନିଗଡ଼ ନିପଟ ନ ମାନି ସଙ୍କେତେ ଯାଇ । ୨ ।
ଦିବସେ ଯେ ଡରେ ସହଚରୀ ମେଲେ ତମଧାମେ ନ ପଶଇ,
ସେ ବିଜୁଳୀ ଦେଖା ହୋଇଣ ଅଶାଖୀ ନିତ ବୃନ୍ଦାବନେ ଧାଇଁ । ୩ ।
ଭିତ୍ତିରେ ଚିତ୍ରରେ ଲେଖା ଉରଗରେ ଭୟେ ଯେ ନ ଦିଏ ପାଣି,
ସେ ଶାଢ଼ୀ ଶେଷରେ ଚନ୍ଦ୍ର ଛପାଉଛି ଫଣିମଣି ତେଜ ଜାଣି ରେ । ୪ ।
କବିରବି ବୋଲେ ସେ ମୋହନଛବି ଯେ ଦେଖେ ନୟନ ଭୁଲେ,
କହିଲେ କି ବାଳୀ ମାନିବ ଏ କଥା ବୃଥା ହେବ କଥା ଛଳେ । ୫ ।

( ୧୦୬ )

ରାଗ—ମୂଳତାନି—ଆଡ଼ତାଳି

ଆଜ ଏ ରୁଷାରେ, ପାଳିଲି ନାହିଁକି ତୋର ହୁକୁମ ସୁସାରେ । ପଦ ।

ହେଲୁ ଯେ ଗଣ୍ଡମଣ୍ଡିତ-କର ସାରସାରେ, ତୋ ବିନା ଅଛି କେ ମୋର ଭରସା ରସାରେ । ୧ । ଚିନ୍ତାମଣି ପରି ତୁ ମୋ ଚିତ୍ତ ଘରସା ରେ, ଚିନ୍ତାଅ ନା ଲୁଚକୁମ୍ଭ ଅଶ୍ରୁ ବରଷାରେ । ୨ । ସହ ସରଲଟି ହର-

୧୦୫ । ଟୀକା—କରକା—କୁଆପଥର, ଦେହଳି—ଏରୁଣ୍ଡିବନ୍ଧ, ଦ୍ୱାରବନ୍ଧ ।

୧୦୬ । ଟୀକା—(ଶେଷ ପଦ)—କୃଷ୍ଣଙ୍କ ବିନସ୍ୱରୂପ ହିମସ୍ପର୍ଶରେ ଦେବୀଙ୍କ ମାନ ପଦ୍ମ ଅବସ୍ଥାକୁ ପ୍ରାପ୍ତ ହେଲା ଅର୍ଥାତ୍ ମାନ ସଙ୍କୁଚିତ ହୋଇଗଲା ।

ଅହ୍ନତ ତୃଷାରେ, ବନ୍ଧ ପଡୁସିନ୍ଧୁ ତ ମକରନ୍ଦ ପରଷା ରେ ॥ ୩ । ଗୁଣାମ୍ବୁଧି ଥରେ ସ୍ବର-ସମରେ ରସା ରେ, ଭଣାଯାଉ ତୋର ଗଣା ନ ଯା କାରଣା ରେ । ୪ । ଜଗଦ୍ଦେବ ବୋଲେ ଶ୍ୟାମ ବନସ୍ଥ ତୃଷାରେ, ଶଙ୍କିଲ ଦେବୀଙ୍କ ମାନ ପଙ୍କଜ ଦଶା ରେ । ୫ ।

( ୨୦୭ )

ହରିଭୁଲେ କରିବୁ ଯେ ପ୍ରୀତି, ମୋ ଅଭିନ୍ନା ରେ
ଧରିଛୁ କପଟ କହ ଧୃତି । ପଦ ।

ଥୋଇ ଯତନେ ସେ ଶ୍ୟାମଳ ଗାତ୍ର, ମୋ ସଖୀଟି ରେ । ସାଇଁ ପାରିବୁ କି ଦୂର ନେତ୍ର; କାତ ତ ସେ ବସ୍ତ୍ର ମଛେ ଚଳିବ, କାମିଙ୍କ ତ ଶତଯୁଗୁଁ ବଳିବ, କାମାନଳ ତୋ ହୃଦେ ଜଳିବ, ମୋ ଦଅଣା ରେ, ନେତ୍ରୁ ନୀର ନାରତେ ଗଳିବ । ୧ । ପରପୁରୁଷର ସ୍ନେହଭୂତ, ମୋ ସଜନା ରେ, ହରବର କରଇ ବହୁତ; ଲଗେ ପରେ ସ୍ନେହ ପରବଧୂର, ଗୃହୁ ସୁଧାଧାରା ଠାରୁ ମଧୁର, ଈଷିତରେ କରଇ ବଧୁର, ମୋ ଚଞ୍ଚଳ ରେ, ବଷ ହୁଏ କାରଣ ବଧୁର । ୨ । ବାରେ ଶ୍ୟାମଠାରେ ନେତ୍ରାଞ୍ଚଳ, ମୋ ଦ୍ବିତୀୟା ରେ, ସଖିଲେ କଲି ମୁଁ ଚଞ୍ଚଳ; ଥାଉ ଆଉ ବଡ଼ ସୁଖ ବିଭବ, ଯାଉ ଯାଉ କଷ୍ଟେ ରହିଲା ଜୀବ; ତାହା ଜାଣେ ଏକା ମୋ ମନଭାବ, ମୋ ସଙ୍ଗାତ ରେ, ଯାହା ହୋଇଛୁ ମୋ ଅନୁଭବ । ୩ । ନୂଆ ଭୂଆସୁଣୀ କାପଟ, ମୋ ମିତଣୀ ରେ, ଗୃହିଁ ଗୃହିଁ କେଲି ଚନ୍ଦପଟ, ଅରିଷ୍ଟେ ଯେ ହେତୁ ବକୀବଧର, ଅଙ୍ଗୁଳିଶିଖେ ଯେ ଧରିଲା ଧର, କି ସେ ରଖିବ ନବ ପୟୋଧର, ମୋ କେତକୀ ରେ; ଖଣ୍ଡିପର ଖଣ୍ଡିବ ଅଧର । ୪ । ନାଶି କାଦ ନ ଜାଣିବ ଅଖି, ମୋ ମରୁଆ ରେ, ବସିମାଦଲରେ ଯିବୁ ଲକ୍ଷି; ନବନୀତରୁ ଯେତୁ ସୁକୁମାର, ବାନ୍ଧିବ କି ଦଶ ଇଷୁକୁ ମାର, ହସୁଥିବ ଯଶୋଦା ସୁକୁମାର, ମୋ ମୋହନା ରେ, ନାଶ ତଟେ ଅର୍ଯମାଜେମାର । ୫ । ଚଉକୁ ଯେ ଆସିବ କର, ମୋ କାଅଳ ରେ, ଅଳି ଅଳି ହେଲେ ମୁଁ ଗୃକର, ଫଳିଗଲା କାଳ ବାଞ୍ଛା ସତେ, କଳିବାକୁ ଭାବ ପଗୃରୁ ମତେ, ତୋ ତରସ ପ୍ରଚୁ ଶ୍ୟାମରତେ, ମୋ ସଙ୍ଗୀନୀ ରେ, ଅଷ୍ଟାଦୁର୍ଗପତି ବୋଲେ ଗୀତେ । ୬ ।

---

୧୦୭ । ଟୀକା—ବିଧୁର—ବିକଳ, ବିଧୂର—ଚନ୍ଦ୍ରର, ଅରିଷ୍ଟ—ଅନ୍ତୁଡ଼ିଶାଳ ବକୀ—ପୁତନା, ଧର—ପର୍ବତ, ଦଶ ଇଷୁକୁ—ଦଶବାଣକୁ, ମାର—କନ୍ଦର୍ପ, ଅର୍ଯମାଜେମା—ଯମୁନା, ତରସ—ଅଭିଳାଷ ।

( ୧୦୮ )

ମୋହନ୍ତଲ ରେ ବରମହନ୍ତଲା ରେ । ପଦ ।

ନୁଆ ମୃଦୁ ଜଳପ,-ବଚ୍ଚାରସଙ୍କଳପ,-ବଲ୍ଲୀ କି ସଂକଳପ, କର ଗୃହିଁ ଅଲପ । ୧ । କର ଭ୍ରୂରୁ ନଭିନ, ନ ଗୃହୁଁ ସଖୀଜନ, ସ୍ନେହମୟ ମୋହନ ହାସେ ଧନ ମୋ ଧନ । ୨ । ପୁରୁବେ ମହାବ୍ରତେ, ଶିବା ଶିବଙ୍କୁ କେତେ, ସେବିଥିଲ କି ସତେ, ସ୍ନେହେ ବାଳା ମତେ । ୩ । କେବଳ ମୋ ବିବେକ, ହର ନାହିଁ ସେ ପିକ-ବାଣୀର କଉତୁକୁ, ଜଗତ୍ତା ଗୋଷ୍ଠିଯାକ । ୪ । ସତେ କି ବନ୍ଧୁ ସଞ୍ଜ-ବେଳେ ମଣ୍ଡିବ କୁଞ୍ଜ, ବନୀ ଅବନୀ କଞ୍ଜ,-ନେବାର ଛବିପୁଞ୍ଜ । ୫ । ଅଷ୍ଟଦୁର୍ଗେଶ ଭାଷେ, କିଶୋରଙ୍କ ଶୋଭା ସେ, କିଶୋରୀ ଦେଖି ତୋଷେ ଭାବିଲେ ସଙ୍ଗ ଆଶେ । ୬ ।

( ୧୦୯ )

ରାଗ—ସାରଙ୍ଗ, ଅଦତାଳ

ଚନ୍ଦନବାସି କୁନ୍ଦବର ହାସି ରେ । ପଦ ।

କରୁଣାମୟ ବରୁଣାଳୟ ହୃଦୟା ଘନକେଶି ରେ, ପରାପତ ତୁ ମତେ, ହେଲୁ ପରା ନିରତେ ହରାଙ୍ଗ୍ରିଭଜନରୁ କାଶୀରେ । ୧ । ଶରଣାଙ୍କିତ ଅରୁଣାମ୍ବୁଜଚରଣା ମୃଦୁଭାଷି ରେ, ଧରା ତରୁଣୀ ଶିର, ହୀରା ରତନ ମତେ ହରା ଅଜ ତୋ ନିଜ ଦାସୀ ରେ । ୨ । ମଦନେଷୁଜକଦନେ ଗଲି ଭାସି ରେ, ତୋ ପର ଅଙ୍କରେ, କର ନିବଡ଼ତରେ ପରିରମ୍ଭରେ ରଖ ଆସି ରେ । ୩ । ଲଳନାବର ତୁଳନା ପରିକଳନା ଗୁଣରାଶି ରେ, ଅନା ଅନା ଚପଳା, ନୟନାନ୍ତରେ ତୁ ମଦନାହବକୁ ଫେରମାସି ରେ । ୪ । କର ବନ୍ଦନ ହରଚନ୍ଦନ କହେ କୁଞ୍ଜବିଳାସି ରେ, ରୁଷା ବରଜ ମୃଗ-ଦୃଶା ପଡ଼ିଲେ ମୃଦୁ ମସାରନିଭ ଭୁଜପାଶୀ ରେ । ୫ ।

( ୧୧୦ )

ରାଗ—ସଦର

ବିପରୀତ ରତେ ଗୋ, କିପରି ତରୁଣୀଜନେ ପ୍ରବଳନ୍ତି ସତେ ଗୋ । ପଦ ।

ଏକା ପ୍ରଦୀପରୁ ଭୟ ଜନମି ଅମିତେ ଗୋ, ଠକର ଯେ ନୋହେ ପ୍ରାଣ ପ୍ରଣୟି-ପୁରତେ ଟଗୋ । ୧ । ତଳପକୁ ଧରି ନେବାବେଳେ

୧୦୮ । ଟୀକା—ହରାଙ୍ଗ୍ରି—ମହାଦେବଙ୍କ ପାଦ, ମଦନେଷୁଜକଦନ—କନ୍ଦର୍ପର ବାଣରୁ ଜାତ କଷ୍ଟ, ମସାରନିଭ—ଇନ୍ଦ୍ରନୀଳମଣି ସଦୃଶ ।

ଅସମ୍ଭବତେ ଗୋ, ହର ହରଣୀକ ନେଲ୍ଲ ହୁଅଇ ପରତେ ଗୋ । ୨ । ସମ୍ଭାଳି ନୋହିଲେହେଁ ବିକାର କଦାଚିତେ ଗୋ, ଚୁମ୍ବାଇ ତୁହର ମୁଖ ଚୁମ୍ବନ୍ତି କେମନ୍ତେ ଗୋ । ୩ । ମୁଁ ହେଲେ ରହିଲି ପର ତୁହର ଜୀବିତେ ଗୋ, ଦୁକୂଳାଡ଼ମ୍ବର କରୁଁ ମୁକୁଳା ହୁଅନ୍ତେ ଗୋ । ୪ । କଳାପ କଙ୍କିଣୀ ସ୍ୱର ଉଦ୍ରିମ ବିରତେ ଗୋ; ପଳା ଏ କେ ଲଜେ କହେ ଜଗନ୍ନାଥ ଗୀତେ ଗୋ । ୫ ।

( ୧୧୧ )

କଳାକୁଶଳା ରେ ସତେ କହିଲି କି ସଖି,
ତୋ ବିନା ମୋ ସ୍ନେହ ଆନେ ଥିଲି ପର ଦେଖି । ପଦ ।

ନୂତନାମ୍ବୁଦମଣ୍ଡଳୀକି କି ଶୃତକାଣ୍ଡଜ ତେଜଇ, ଭୂତଳେ ସରସୀଜଳେ ନିକି ତା ତୃଷାଭିଜଇ । ସ୍ୱର୍ଣ୍ଣଦୀକୃତଲୀଳହଂସ କି କୂପକେଳି କି ସାଜଇ, ଏ କର କି ଅନ ନାରୀ ଚିବୁକେ ବାଜଇ । ୧ । ତୋ କୃପାତରୁ ମୋ ମଦୋନ୍ନତ ଶାଖି-ମୌଳି ନମାଇଲି; କୌତୁକେ ରଚିବାର ପାଟବ ମୋ ପରି ଜନ ମାଇଲି । ମାନସେ ଅନୁମାନ ସେ ପରିହାସିନୀ ଜନ ମାଇଲି, ପଙ୍କଜବାନ୍ଧବେ ତ କଳଙ୍କ ଜନମାଇଲି । ୨ । ତଥ୍ୟ ମାନ ଅତଥ୍ୟ ଭାଷି ତ ପୋତନା ମୁଖ ମାନରେ, ବାହାକୁ ପ୍ରବଳାଇ ଦେ ପରଚମ୍ପୂବୈଭବ ଦାନରେ । ତୋଷ ମୋ ରସନାକୁ ତୋ ମଧୁରା-ଧରାମୃତ ପାନରେ, ରସ ଧନ ମଦନମର୍ଦ୍ଦନ ବିଧାନ ରେ । ୩ । ରସରଙ୍ଗିନୀ ଆସ ସୁନ୍ଦର ହାସକୁନ୍ଦ ବିକାଶ ରେ, ବାସବାଶ୍ରୟ ବାସ ଭାଗ୍ୟ ବିଲାସ ଦେ ନ ବିନାଶ ରେ । ଭାସମାନ ଜବାଧରା କି ନାଶରେ ନିଜ ଦାସରେ, ଅନ୍ତରାୟ ନ ରଚ ମୋ ସୁଖାଭିଳାଷରେ । ୪ । ଅଧିକାତର 'ନନ୍ଦନନ୍ଦନ ଶୃଙ୍ଗପାଟବ ବାଣୀରେ, ରାଧିକା ସୁଗୁଣାଧିକା ସ୍ୱକପୋଳକୁ ନିଜ ପାଣିରେ, ଛୁଇଁଲେ ରଖିବାର ମାନସମୋହନ ସ୍ଥିତ ଠାଣିରେ, ବନ୍ଦେ ଅଷ୍ଟଦୁର୍ଗ ନାଥ ଲୁଚି ଧରଣୀରେ । ୫ ।

( ୧୧୨ )

ରାଗ—ଜୌନପୁରୀ ତୋଡ଼ି । ତାଳ ଆଠତାଳି

କହି ନାହିଁ କରେ ପହିଲୁ ତୋଟଛ ମୋ ଗୃହିଲି,
ମହାମହିଳା ପର ମୋ ଦୋଷ ପ୍ରାଣ ସହ ସହନେବୁ ବୋଲି । ପଦ ।

୧୧୧ । ଟୀକା—ଶୃତକାଣ୍ଡଜ—ଶୃତକପକ୍ଷୀ, ନମାଇଲି—ନୁଆଁଇଲି ।

ନବ ଛଇଲାରେ ନାହିଁ କି ତୋ ଧବ୍ୟ ଅବଧାନେ ତହୁଁ ଲବ,
ପରିରମ୍ଭକାଳେ ଜଣାଇଥିଲି ଯା ଧରି ତୋ ପାଣିପଲ୍ଲବ । ୧ ।
ଛୁଆଇଁ ନ ଦେଇ ମୋ ଗୁରୁ ଚିବୁକ ନୁଆଇଁ ବସିଛୁ ମଥା,
କି ବନଜନେତ୍ରା ନ ଜାଣୁ ଏ ତ ମୋ ଜୀବନ ଘେନିବା କଥା । ୨ ।
ଚୁମ୍ବାଇ ମୋତେ ତୋ ଶ୍ରୀମୁଖ ମୋ ମୁଖ ଚୁମ୍ବୁ ପରା ଅନୁରାଗେ,
ଅନା ଥରେ ଏବେ ସଢ଼ିଗଲିଣି ଅନାଥ ପରି ତୋ ଆଗେ । ୩ ।
ବିଧୁବଦନାରେ ଏତକ ମୋ ଦୋଷ କ୍ଷମିବୁ ନେ ବାରମ୍ବାର,
ବସନ ନ ରଖି ପ୍ରତି ଅଙ୍ଗ ଚୁମ୍ବି ଦଶନ ଅଙ୍କ ଦେବାର । ୪ ।
ମୋଷ ହୋଇଯାଏ ଚେତନାର ବନ୍ଧୁ ତୋ ସଙ୍ଗମେ ମାର ମୋଦେ,
ସାରସରସାରେ ଘେନ ତ ମୁଁ ଜଟି ପାରଇ କି ପ୍ରତି ପଦେ । ୫ ।
ସାଧାରଣେତର ଶ୍ୟାମଚନ୍ଦ୍ର ଗିର ସୁଧା ପିଅନ୍ତେ ଶ୍ରବଣେ;
ଅଷ୍ଟଭୂତ ପରି ଆଲିଙ୍ଗନ କଲେ ଅଷ୍ଟଦୁର୍ଗନାଥ ଭଣେ । ୬ ।

( ୧୧୩ )

ସୁନାଗୋରି ରେ ନାଗରୀ ଏ କି ଅଜି । ପଦ ।

ଆସିଛୁ ଅଶାରେ, ଦାସୀ ପରିବାରେ, କୁସୁମଭୂଷାରେ ଦେବ ବୋଲି ସାଜି । ୧ । ଧୀରା ମୋର କୋଳେ ବିରାଜ ଗୋ ଲୋଳେ ଦିଅଇ ପଣାରେ ମୁଖଚନ୍ଦ୍ର ମାଜି । ୨ । ଦୋଷ ନାହିଁ ଲେଶେ, ରୋଷରୁହା ବେଶେ, ବସାଇଛୁ ତୋତେ ବନ୍ଧୁ କେଉଁ ପାଜି । ୩ । ଏଡ଼ି ମନ୍ଦୁ ଦମ୍ଭ, ଭିଡ଼ି ପରିରମ୍ଭ, ଦେଇ ମୋତେ ରଖ ରାଜୀବାକ୍ଷିରାଜି । ୪ । କରୀନ୍ଦ୍ରଗମନା, ସରିଲିଣି ଅନା, ମଦନପଠାଣି ବାଣରାଜି ବାଜି । ୫ । ଅଷ୍ଟଦୁର୍ଗେଶ୍ୱର, କଷ୍ଟମିଶା ଗିର, ଶୁଣି ଗଲା ମହିଳାର ମାନ ଭାଜି । ୬ ।

( ୧୧୪ )

ରସିକାମଣ୍ଡଳୀ ମଥାହୀରା ରେ, ବସିଛୁ ତ ରୁଷି ବସୁନ୍ଧରାରେ,
ଖସି ପଡ଼ିଲିଣି ଦେଲି ପରି କାଟି ଧୃତିଲତିକାଟି ମନ୍ମଥ ଛୁରୀରେ । ପଦ ।

କହିଛୁ ଛାମୁରେ କେ କି ଧୀରାରେ, ମହୀରେ କରିଛୁ ନଖଗିରାରେ,
ଅଧୀନ ତ ମୁଁ ହୁଏ, ଅଦୋଷେ ନିଗ୍ରହେ ନ ଦଣ୍ଡ ତୁ କୃପାନିଧି ପରା ରେ । ୧ ।
ଦୁଃଖିଙ୍କୁ ମୋହର ତୁ ପାସୋରାରେ, ମୁଖଚନ୍ଦ୍ର ନେକି ବିମ୍ବାଧରା ରେ, ସୁଖ-କୁସୁମାଳି, ନ ଯାଉ ମଉଳି, ବନ୍ଧୁ ତୋ ଗୁମାନ-ତୀବ୍ର ଖରାରେ । ୨ ।
ବଣା ମୃଗନେତ୍ରା ନାଗୀହାରା ରେ, ଗଣାଗଲିଣି ମୁଁ ତୃଷାତୁରା ରେ, ଛଣା

ରସଝର, ଆଜ ଆଜ ସୁନ୍ଦ, ତୋ ଉରଜ ବ୍ୟାଜ ସୁନାଗରୀ ରେ । ୩ । ମଦନମଦୂଅ ଇନ୍ଦୁ ଛୁରୀରେ, ମୋ ଧନ ମୁଁ ଯିବି ସିନା ମରି ରେ, କାଦନ ବିଧ୍ୱଂସ ନ କଲେ ତୁ ହଂସବିଜୟିଗମନା ଶୋଭାକାରୀ ରେ । ୪ । ହରି ବିନାଶର ମନୋହରୀ ରେ, ପ୍ରୀରିରେ ରୋଷକୁ ହସି ଜରିରେ, ହାରିଲେ କଷ୍ଟ ସିନ୍ଧୁ ତରିବା ଅଷ୍ଟଦୁର୍ଗ ସ୍ୱର୍ଗରାଜା ମନ ପୁରୀ ରେ । ୫ ।

( ୧୧୫ )

ଲୁଷା ବରଜ ମୃଦୁ କୃଶାଙ୍ଗୀ ଶିଶୁମୃଗଦୃଶାଟି ବିଚକଳ ହସାଟି ରେ । ଭସାଇ ନ ଦିଅ ସରସ ପ୍ରବର ଅଭରସା ଜଳେ ମୋ ଶୁଭ ଦଶାଟି ରେ । ପଦ । ପରିଭବରୁ ମୋତେ ଖରିବ ନ କର ରେ ତରିବରମୁଖି ମୁଁ ତୋ ଶାଠୀରେ ଧରିମାଣିକ୍ୟଝରି ମଦନ କରେ ମରିଇ ହେଲୁ ଲେଳହସାଟି ରେ । ୧ । କ୍ଷମାଜଳଧି ଭିଡ଼ି ଜମାଇ ଉରଜ ଭରମାଚଳରେ ନିଅ ନିଶାଟି ରେ, ଗୁମାନକୁ ନୁହଇ ସମାନ ମୁଁ ତୋହର ତମାଲ କାଶଲୟ କେଶାଟି ରେ । ୨ । ମନା ନ କର ସୁନୟନା ସଦୟ ରସ ଅନାଉଣି କି ଦର-ଯୋଷାଟି ରେ, ଅନାଥ ପରି ଦୀନମନା ହେଉଛୁ ଧନ, ଅନାଇ ନତମୁଖରସାଟି ରେ । ୩ । ଅକାରଣେ ସଦ୍ୟୁଂଛ, ଚକା ଲପନ ପୋତ, ନ କାନ୍ଦ ବସୁମତୀ-ଭୂଷାଟି ରେ, ଜକାଜକ ଚୁମ୍ବନ, ସକାମେ ରଚ ଧନ, ପକାଅ ହରି ମୋର ତୃଷାଟି ରେ । ୪ । ରସାଅ ରସରେ ତ ରସା ହେଉଛୁ ମଧୁରସା ସଦୃଶ ରସକଷାଟି ରେ, ରସାତଳକ ହରିଚନ୍ଦନ ଦେବ ଗୋରି ତୋ ଚରଣ ଶରଣପଶାଟି ରେ । ୫ ।

( ୧୧୬ )

ମନ ବିନା, ତ ନବୀନା, ଆନ ସ୍ଥଳେ ନ ଖେଳିଲୁ ରେ । ପଦ ।
ମଞ୍ଜୀର ମଞ୍ଜୁ ଶିଞ୍ଜିତ କାଳେ ଥରୁଥିଲ ଝରି କି ଚଞ୍ଚଳେ
ମନମଥ, ରଣରଥ, ପରି ସିନା ସେ ଚଳିଲୁ ରେ । ୧ ।
ଶ୍ରୁତମୋତ ଝୁମ୍ପ କମ୍ପୁଥିଲ, ତାକୁ ନେତ୍ରାଞ୍ଚଳ ଝାମ୍ପୁଥିଲ
ଧରିଚନ୍ଦ୍ର, ମୋତେ ଶଙ୍କ,—ରାଜଧାନୀରୁ ବଳିଲୁ ରେ । ୨ ।
ମାନସରେ କି ସଙ୍କଳପିଲ, ହସି ଅଳକ କି ଅଳପିଲ
ମୋ ଅଡ଼କୁ, ଚଅଡ଼କୁ, ପରି କଟାକ୍ଷ ଗୁଳିଲୁ ରେ । ୩ ।

---

୧୧୫ । ଟୀକା—ବିଚକଳ—ମଲ୍ଲୀ ।
୧୧୬ । ଟୀକା—ଚଅଡ଼—ଶର, ବାଣ ।

ଜଗତ ଯୁବତୀ ଚମ୍ପାଗର୍ଭା; ଜନନୟନମଣ୍ଡନ ଶୋଭା
କି ଶୋଭୀ ସେ, କା ସୋରକ୍ଷେ, ହେଲେ ସ୍ମରଣ ଝଲିଲା ମା । ୪ ।
ଅଦରଶ ସେ ସୁନ୍ଦରୀଙ୍କର, ତା ଦରଶନ ଲଭରୁ ମୋର
ମରମରେ, ମାର ମାରେ, ତହୁଁ ହୃଦୟ ଜଳିଲା ରେ । ୫ ।
ଜଗଦ୍ଦେବ ବୋଲେ ଶ୍ୟାମଚନ୍ଦ୍ର, ଜାଣି ଜଣାଇଲେ କେହି ମିତ
ତୁମ୍ଭ କାମ, ସ୍ମରଦ୍ରୁମ କୃଷ୍ଣ ଅବଶ୍ୟ ଫଳିଲା ରେ । ୬ ।

( ୧୧୭ )

ରାଗ—ମାଳବ । ତାଳ ତ୍ରିପୁଟ ।

ପାହି ପାହିଅ । ପାହି ବ୍ରଜପୁର ଯୁବପୁରନ୍ଦର, ପାହି କରଧୃତ-ମନ୍ଦର, ପାହି କୃତ ଅଭିସାର କନ୍ଦର, ପାହି ନବଘନସୁନ୍ଦର । ୧ । ମତ୍ତବାରଣ-ଗର୍ବନାଶନ, ଗମନ ଜନମନରଞ୍ଜନ, ମୀନକେତନ ଝଷକେତନ, ଯାମଳାର୍ଜୁନଭଞ୍ଜନ । ୨ । ନନ୍ଦନନ୍ଦନ ଜଗତବନ୍ଦନ ମୁରଲୀଧର ବ୍ରଜନାଗର, କମଳଲୋଚନ, ଶୋକନାଶନ, ସକଳ ଗୁଣଗଣ-ସାଗର । ୩ । କୋଟିଶାରଦ-ଚନ୍ଦ୍ରମାମୁଦ, ବନଜରୁଚିମୁଖଶ୍ୟାମଳ, ଗଣ୍ଡସୁଶୋଭିତ ରତନସୁଜଡ଼ିତ, ମକରସୁରୁଚିର କୁଣ୍ଡଳ । ୪ । ନାଗରୀଜନ, ଚିତ୍ତମୋହନ, ବସନରୁଚିଜିତ କୁନ୍ଦନ, ନିତ୍ୟ ନଉିନ ଶରଣ ତବ ଦୀନବନ୍ଧୁ ରାଜ ହରିଚନ୍ଦନ । ୫ ।

( ୧୧୮ )

ରାଗ—ମୁଖାରୀ, ଅଠତାଳ

କୁନ୍ଦରଦନା ରସବତୀ ରସବତୀ, ରମା ରସବତୀ । ପଦ ।

ଗଲା ନିଶି ତାହା ସଙ୍ଗତେ ମାତି, ଯେତେ ବନ୍ଦେ ହେଲା ସୁରତି, ରତିରେ ମାତି ନ ହେଜିଲି ରାତି, ଚାହିଁଥିଲା ତାର ନେତ୍ର ସମ୍ପତ୍ତି, ଭିଡ଼ିଲା ଦେଇ ସ୍ତନକି ସ୍ତୁତି । ୧ । ନାଚ କରୁଥିଲା ନାସିକାମଣି, ଫିଟି ଚରମେ ଲୋଟୁଥିଲା ବେଣୀ, ବାଜୁଥିଲା ତାର କଟି କିଙ୍କିଣୀ, ନେଉଥିଲା ମୋର ଚିତ୍ତକୁ କିଣି, ଭାଷିଲା ହୁଁ ହୁଁ ଶବଦବାଣୀ । ୨ । କରକେ କରକ ଗ୍ରୀଳଲେ ନେଇ, ଚମକ ଇଷି ବୋଲଣ ଭାଷଇ, କହୁଥାଇ କେତେ ବିନୟ ହୋଇ ଏଥକୁ ଆଉ ମୁହିଁ ନ ପାରଇ, ବୋଲଇ ଅଜ ମଡ଼ିଲି କାହିଁ । ୩ । କେତେବେଳ ଅନ୍ତେ ଜୀବଜୀବନ, ଅରମ୍ଭିଲା ବିପରୀତ ବହନ, ତେତେବେଳେ ଯାହା ହେଲା ମୋ ମନ, ତହିଁକି କେବଳ ସାକ୍ଷୀ

ମଦନ, ଗଣି ଦେଉଥିଲି ଚୁମ୍ବନ ଦାନ । ୪ । ଅଷ୍ଟଦୁର୍ଗପତି ବୋଲେ ଏ ରସ, ଏହି ଅଜ୍ଞା ମୋତେ ହେବ ଶିଗ୍ରଶ, ଖଟିଥିବ ଅନବରତ ପାଶ, ବସି ଶୁହୁଁଥିବ ମୁଖସାରସ, ଯେଣି ବଞ୍ଚୁଥିବ ସବିଦବସ । ୫ ।

( ୧୧୯ )

ରାଗ—ଦକ୍ଷିଣ ଶ୍ରୀକାଶ

ଶୁଣ ଶୁଣ ରେ ଜୀବର ଧନ ତୋ କରସାରଣୀ ରେ,
ତୁ ସିନା ଏକା ମୋ ସ୍ମରଶରକୁ ବାରଣୀ ରେ । ପଦ ।

ତୁ ଶୁହୁଁ ଶୁହୁଁ ମଦନଶରେ ନାଶ ଗଲି ରେ, ନ ଥିଲି ମୋ ମନେ ଏହା କରିବୁ ତୁ ବୋଲି ରେ, ମୋ ଶପଥଟି ରେ ରମାବର, କରିଥିଲୁ କଣ୍ଠ, ରତନହାର, ଏବେ କେଉଁ ବୁଦ୍ଧି ଶୁଣି କାହାର, ଯେଣିଲୁ ନାହିଁ ତୁ ସାର ଅସାର । ୧ । ଲଗାଇଥିଲେହେଁ ବିଷବୃକ୍ଷ ବିମ୍ବାଧର ରେ, କେତେବେଳେ ପ୍ରିୟେ ତାକୁ ବିନାଶ ନ କର ରେ, ଜାଣି ଜାଣି ତୁ ରେ ନବ ବନିତା, କିଛି ମନେ ନ କଲୁ ବିବେକତା, ସୁଖେ ରୋପଣ କରି ପ୍ରୀତିଲତା, ନିଜ କରେ ଉପାଡ଼ିଲୁ ଏବେ ତା । ୨ । କ୍ରମେ କ୍ରମେ ପ୍ରେମଦ୍ରୁମ ପରି ବଢ଼ାଇଲୁ ରେ, କି ବିଗୁରି ଏବେ ବନ୍ଧୁ ମୂଳ କାଟି ଦେଲୁ ରେ, ଦରିଦ୍ରକୁ ଦେଇ ଇନ୍ଦ୍ର ସମ୍ପତ୍ତି, ପୁଣି ନେବାକୁ ବଳାଇଲୁ ମତି, ପ୍ରୀତି ବିଚ୍ଛେଦରୁ ନାହିଁ ବିପତ୍ତି, ମରଣହିଁ ସିନା ପରମ ଗତି । ୩ । ମନ ନେଇ କର୍ଣ୍ଣେ ଆଦି ଯେତେ ମୋ ଥିଲା ରେ, ମୋ କଥା ସେ ନ ଶୁଣି ତ ତୋତେ ଆଶ୍ରା କଲା ରେ, ଏକା ମାତ୍ର ଦେହେ ଅଛି ଜୀବନ, ତୋର ସଙ୍ଗ ବିହୁନେ ଅତି କ୍ଷୀଣ, ସେ ଏବେ ରହି ନ ପାରେ ବହନ, ଯିବାକୁ କରିଛି କଣ୍ଠେ ପ୍ରସ୍ଥାନ । ୪ । ତୋ ନିମିଷ ଅନ୍ତର ଜଗତ ଶୂନ୍ୟ ମୋତେ ରେ, ବାଲ୍ୟତ କାଳରୁ ପ୍ରୀତି ଭାଙ୍ଗିବ କେମନ୍ତେ ରେ, ଏବେ କାହାଠାରୁ କି ବୁଦ୍ଧି ପାଇ, ସଦୟ ହୃଦୟ ନିର୍ଦ୍ଦୟ ହୋଇ, ମଦନ ନଦୀସ୍ରୋତ ମଧ୍ୟେ ନେଇ, କରେ କର ଧରି ଦେଲୁ ଭସାଇ । ୫ । ଶରଣ ଜନକୁ ନାଶି ଲଭିବୁ କି ଯଶ ରେ, ଦୋଷ ଥିଲେ କ୍ଷମା କର ମୁଁ ତୋ କିଣା ଦାସ ରେ, ଯେ ନବନାଗର ବଚନ ଶୁଣି, ତେଜି ମନୁ ମାନ ରମଣୀମଣି, ସୁପ୍ରେମରେ କଲା ଭଙ୍ଗୀ ଶୁହାଣି, ଦୀନବନ୍ଧୁ ହରିଚନ୍ଦନ ଭଣି । ୬ ।

( ୧୨୦ )

ରାଗ—ତୋଡ଼ି ପରଜ

ରେ ସଙ୍ଗାତ, ଏତକି ମୋ ସଙ୍କଳପ

କିଶୋର କିଶୋରୀ ଅନାଇଁବେ ଧରି ଅଧରେ ହାସ ଅଳପ । ପଦ ।

ମୁଁ କୋଟି କଳପ କରି ନାହିଁ ତପ, ଏ ଭରସା ହେବ କାହୁଁ, ଭିଡ଼ିବି ସୁନ୍ଦରତର ପୁରନ୍ଦର ମଣିମାଳା ରମ୍ୟ ବାହୁ । ୧ । ଦେଇ ନାହିଁ ସର ସାଚି ପାଚିବାର ତା ମଧୁରସା ହବନେ, ଚୁମ୍ବିବି ତାହାଙ୍କ ମୁଖ ହରିଣୀଙ୍କ ନିକି ନିକୁଞ୍ଜଭୁବନେ । ୨ । ଶଙ୍କର ଗିରିଜା ପଙ୍କଜାଙ୍ଘ୍ରିପୂଜା କରି ନାହିଁ ଗଙ୍ଗାକୂଳେ, ମରକତ ମାରି ମୂରତି ସୁନ୍ଦର ଖେଳିବ କେହି ମୋ କୋଳେ । ୩ । ଖଞ୍ଜି ନାହିଁ ମଣି ମାଳିକାଧରଣୀ ସୁର ସୁନ୍ଦରୀଙ୍କ ଗଳେ, କାହିଁ କଞ୍ଜନେତ୍ର ମୃଗମଦଚିତ୍ର ହେବ ମୋ କୁଚ ଯୁଗଳେ । ୪ । ନ ଥିବାରୁ ଭାଗ୍ୟ ନୁହଇ ତ ଯୋଗ୍ୟ ଲୋଡ଼ିବି କି ଆନ କଥା, ମୋହନ ପଙ୍କଜ ପଦଚିହ୍ନ ରଜ ଚୁମ୍ବୁଥାଉ ମୋର ମଥା । ୫ । ବଳଭୀ ତନାବି, ପାଶେ କରିଥିବ ରଜନୀ ବାସର ସ୍ଥାନ, ଚରଣମଣ୍ଡନ ମୁରଳିକା ସ୍ୱନସୁଧା ପିଉଥିବ କାନ । ୬ । କେଉଁରୂପେ ହେଲେ, ସେ କୃପା ନୋହିଲେ ତମାଳେ ଦେବି ଦଉଡ଼ି, ଜଳନ୍ତର ସିତଚନ୍ଦ୍ରବଳାରାତି କହଇ ସନ୍ଦେହ ଛାଡ଼ି ରେ । ୭ ।

( ୧୨୧ )

ରାଗ—ଚନ୍ଦ୍ରା ଭୈରବ

ସଜନି, ଆଜ ରଜନୀରେ ନଇଲେ ବ୍ରଜମୋହନ

ମନ କେହୁ ମୋହିଲା ରେ । ପଦ ।

ମୋ ଦେହେ ଦେଇ କର,-କମଳ ବାରମ୍ବାର ନିୟମ କରି କେତେ କହିଲା ରେ, କପଟ ମତି କରି, ସାହସେ ସେ କପରି ଧରମ ତାକୁ ସହି ସହିଲା ରେ । ୧ । ଲଗାଇ ପ୍ରେମରସ, ମଧୁ ଜନ୍ମାଇ ବିଷ, ନୟନୁ ଅଶ୍ରୁ ବରଷାଇଲା ରେ, ଭଜି ମୁଁ ନାଣି ଦବା, କି ଅପରାଧୁ ଅବା ମୋଠାରେ ଅବଧାନ ନୋହିଲା ରେ । ୧ । ଭାଙ୍ଗି ରଖିଛୁ ପାନ, କର୍ପୂର ଶ୍ରୀଚନ୍ଦନ, ଏବେ ତ ବେଶ ବାସି ହୋଇଲା ରେ, କାହା ସୁରତେ ମାତି, ଆସି ହେଲା

---

୧୨୦ । ଟୀକା—ମଧୁରସା—ମିଷ୍ଟ ଖାଦ୍ୟବିଶେଷ, ହବନ—ଯଜ୍ଞ, ବଳଭୀତନାବି—କୋଠାଘର ଝରକା, ବଳାରାତି—ଇନ୍ଦ୍ର ।

ପାହାନ୍ତି, କୁକ୍‌କୁଟ କୁକୁରାବେ ରଟିଲା ରେ । ୩ । ଏ ପାପ କାମ ମୋତେ ଦଣ୍ଡେ ଦେଲାଣି ଯେତେ, ପରାଣଗୁଲେ ପିଣ୍ଡେ ଦହିଲା ରେ; କବିମିହିର ଚନ୍ଦ୍ରା, ଅହା ବ୍ରଜବନିତା, କପାଳେ ବିହି ଏହା ଲହିଲା ରେ । ୪ ।

( ୧୨୨ )

ରାଗ—ହୁସେନ୍, ଆଦିତାଳ

ବାରନାରି । ଗୁମାନ ମନେ ଧରନା ରେ । ପଦ ।

ଅମ୍ବୁଜ ନେତ୍ର ସାଞ୍ଜନ, ଅମ୍ବୁ ନ ବରଷ ଧନ, କମ୍ବୁକଣ୍ଠି ଜାମ୍ବୁ-ନଦ ବରନା ରେ । ୧ । ନ ଖେଳ ମୋ କୋଳେ ରସେ, ସଖେଦେ ମାନସରୋଷେ, ନଖେ ଧରା ଚିରବାର କର ନା ରେ । ୨ । କାରବଦନେ ପ୍ରକାଶ, ପରବ ଚନ୍ଦ୍ରିକା ହାସ, ଗରବ ଗିରିକି ମୋର ଚୂରନା ରେ । ୩ । କାରାଧିପଭାଷୀ ଅସ, ବରାଜୁ କୁଞ୍ଜନିବାସ, ଧୀରା ମୋରେ ନିରାଶ ଆଚର ନା ରେ । ୪ । ଅନ୍ତର ରଖି ଭିଡ଼ିବ, ଯନ୍ତର ହୋଇ ଜଡ଼ିବ, ଦନ୍ତର ବ୍ରଣ ନୋହିବ ଡର ନା ରେ । ୫ । ଗାଲ ପଛେ ଦିଅ ପଦେ, ମାଳା ହୁଅ ତୁ ମୋ ହୃଦେ, କାଳାନ୍ଦୀରେ ପଡ଼ିବାର କର ନା ରେ । ୬ । ରାଧାକୃଷ୍ଣ ପଦ ଭାବି, ବିରଚିଲେ କବିରବି, ନରନାଥ ଜଗଦ୍ଦେବଙ୍କର ନାଁ ରେ । ୭ ।

( ୧୨୩ )

ଅରଜିବ ପଛେ ଜନ ଅପଖ୍ୟାତିକି ଗୋ,
ବରଜିବ କେହି ଘନଶ୍ୟାମ ପ୍ରୀତିକି ଗୋ । ଘୋଷା ।

ତେଜି ଜାଇଦଳ ଶେଯ, ଘନସାର ମଳୟଜ, କରିବ କେ ରାଜୀବ-ଦଳକୁ ଗତିକି ଗୋ । ୧ । ତା ସୁନ୍ଦର ମନ୍ଦ ହାସ, ରୁଚିର ଭ୍ରୂରୁବିଳାସ, ଛାଡ଼ି ଆଡ଼ିବ କେ ଫୁଲବାଣେ ଛାତିକି ଗୋ । ୧ । ପଦକୁ ପୁରନ୍ଦରର, କରିଦେବ କର ଛାର, ନିତି ନିତି ତା ସୁରତେ ମାତିକି ଗୋ । ୩ । ତେଜଣ କୋଣ ଗୃହାଣି, ପୀୟୂଷ ମଧୁର ବାଣୀ, ସହିବ କେ କାମରାଜ ଝଳ କାତିକି ଗୋ । ୪ । କରି ଗାଢ଼େ ପରିରମ୍ଭ, ତା ଅଧର ପକ୍ୱ ବିମ୍ବ, ପିଇଥିବ ପାହିଯିବା ଯାଏ ରାତିକି ଗୋ । ୫ । ବୋଲେ ବସୁଦୁର୍ଗପତି, ଧ୍ୟାନ କର ତା ମୂରତି, ନାମ ଭଜନରେ ହେବ ଯତି କି ଗୋ । ୬ ।

( ୧୨୪ )

କେହି ସରିକି, ପ୍ରଭୁ ପଣେ ନୀଳାଦ୍ରି କେଶରୀକି,
ଯା ଠାରେ ପୁରନ୍ତି ଦୁଃଖୀଜନଦିସ୍ଥା ନଖଠାରୁ ଶିଖା ସରିକି । ପଦ ।

କି କହିବା ଆଜ ତାଙ୍କ ଶ୍ରୀଚରଣ ଅନୁସରଣ ଶ୍ରୁତିଗିରିକି, ବଳାଛି-ଛନ୍ତି ବିଭୀଷଣ ଆଗରେ ଜଗତ ବିଜୟୀଶ୍ରୁତିଗିରିକି । ୧ । ଯାନକୁ ବଢ଼ି କରିବାରେ କଢ଼ାଇଅଛନ୍ତି ଧ୍ୱଜ ମଞ୍ଜରିକି, ଦେଖି ନାଗ ନର ଗନ୍ଧର୍ବ କିନ୍ନର ଉପରେ ଧ୍ରୁବ ନଗରୀକି । ୨ । କି କହିବ ତାଙ୍କ ପୀରତି କରିବା କୀରତିଚନ୍ଦ୍ର ମାଧୁରୀକି, ରଙ୍କ ବିପ୍ରପାଦ ଧୁଆଇ ଯା ଦେଲେ ରମା-କରେ ରତ୍ନହରିକି । ୩ । କ୍ଷମାସାଗର ଯେ ତାହାଙ୍କୁ ଭଜିଲେ କାଳ କିଙ୍କରଙ୍କୁ ଡରିକି, ବୋଲେ କବିସୂର୍ଯ୍ୟ ଆନ ଉପାୟୀକୁ ପେଲିଦିଅ ଗିରି-ଦରୀକି । ୪ ।

( ୧୨୫ )

ରାଗ—ଇମନ କଲ୍ୟାଣ, ଆଠତାଳି

କାଳିନ୍ଦୀକୂଳକୁ ମୋର ସଙ୍ଗାଳି ନ ଯାରେ । ପଦ ।

ଯା ଶିରେ ଚନ୍ଦ୍ରିକାଚୂଳ, ରଙ୍ଗସ୍ଥଳ ନୀପମୂଳ, ତା ନୟନ ଅଞ୍ଚଳଟି କ୍ଷାନହଜା ରେ । ୧ । ନବ ଯୁବତୀଙ୍କ ଜାତି, ନେବ ବୋଲି କେତେ ଜାତି, ସୁଆଗ ଜାଣଇ ସେ ନାଠୁଆ ରଜା ରେ । ୨ । ଜାମ୍ବୁନଦଘଟେ ବାରି, ଅଣନ୍ତୁ ତୋ ପରିବାରି, କୂପ ଉପକଣ୍ଠେ ଶ୍ରୀଅଙ୍ଗକୁ ମଜ୍ଜା ରେ । ୩ । ଏହି ପୁରେ ତୋ କାମନା, ଭରିତ ହୋଇବ ସିନା, ଶ୍ୟାମ ଅଙ୍ଗସଙ୍ଗ ଉର ଥିଲେ ମଜ୍ଜାରେ । ୪ । ତା ବେଣୁନିସ୍ୱନ ଦୂରୁ, ଜନମାଉଛୁ ଦେହରୁ, ନୀପଫୁଲ ପରିରେ ପୁଲକଗଜା ରେ । ୫ । ନ ଛପାଅ ମନ ଥିଲେ, ବନ୍ଦ କବିରବି ବୋଲେ, ସୁଖେ ବ୍ରଜମଣ୍ଡଳେ ଉଣ୍ଡିମ ବଜା ରେ । ୬ ।

( ୧୨୬ )

ରାଗ—କେଦାର । ତାଳ ରୂପକ

କହ ରେ ଜୀବସଙ୍ଗିନି । ତୋ ମନ ଘନଶ୍ୟାମରସେ ଦଳିଲା କି । ପଦେ ପଦେ ସୁଖଦେବା ପ୍ରେମ ଲେଖି ମିଳିଲା କି ବାଞ୍ଛା ଫଳିଲା କି । ପଦ ।

ତରଣିଜାକୂଳ, ନୀପମୂଳସ୍ଥଳ, କୁତୂହଳରୋଳ, ଏ ତୋ ନେତ୍ରାଞ୍ଚଳ ମୋହନ ବିଗ୍ରହେ, ଅକପଟ ସ୍ନେହେ, ଚଳିଲା କି ଚିତ୍ତ ଚଳିଲା କି । ୧ । ପୁରଦଳନାରି ଅମଳେ ତୁ ଘାରି ହେଉଥିଲୁ ନାରୀମଣି ମନୋହାରୀ, ଧଇର୍ଯ୍ୟ ସରୋଜ ବନମାଳ ଗଜ ଦଳିଲା କି ତନ୍ତୁ ଲୁଳିଲା କି । ୨ । ଅବସର ଦଣ୍ଡକରେ ସେ ଶିଖଣ୍ଡ-ମଣ୍ଡନ ଅଖଣ୍ଡ ନୟନାନ୍ତ ଦଣ୍ଡ, ତୋ

ମଠରେ ବକ ବସୁନ୍ଧରା ଚକ ନଳିଲା କି ସବୁ କଳିଲା କି । ୩ । ଏ କି ଚମତ୍କାର, ସେତ ସୁକୁମାର, ଶୃଙ୍ଗାର ମଙ୍ଗଳମୂରତ କିଶୋର, ତାହା ମନ ମୃଦୁ ତୋ କଠିନ ସ୍ତନ ଗଳିଲା କି ଏଥୁଁ ବଳିଲା କି । ୪ । ରଜତେ ରଜତ ଶାତକୁମ୍ଭେ ଶାତକୁମ୍ଭ ସିନା ହୁଏଲେ ଜଗତେ ବାଦିତ, ଜାମ୍ବୁନଦ-ସାର ତଳରେ ମସାର ହୁଏଲା କି ତାପ ଟଳିଲା କି । ୫ । ଜଗଦେବ ବାଲକେଶ ବସୁନ୍ଧରା,-ବଳୟ ଅମରପତ ବୋଲେ ଭ୍ରମ, ଖେଦ-ତମିରକୁ ମୁଦ କଉମୁଦୀ ଗିଳିଲା କି କାଳ ମିଳିଲା କି । ୬ ।

( ୧୨୭ )

ରାଗ—ତୋଡ଼ି, ଆଠତାଳି

ଗୃହିଁଛୁ ମାନ ଶିଖଣ୍ଡ ଲୋ, ସଖି ମୁଁ, ଭୁଞ୍ଜୁ ଅପବାଦେ ଚମକି ପଡୁଛୁ ଏ ବ୍ରଜ ବଜାର ଦାଣ୍ଡ ଲୋ । ଚକ୍କଣ-ଶ୍ୟାମଳଚନ୍ଦ୍ର ନିକଟକୁ ଗୃହ ନାହିଁଟି ପଦଣ୍ଡ ଲୋ, ସଖି ମୁଁ । ପଦ ।

ଚପରାସିଚୟ ପେଷି କଂସରାୟ ନିର୍ଦ୍ଧୋଷେ ନେବ କି ତଣ୍ଡ ଲୋ । ୧ । ଚଳୁଅ ଯେ ବଡ଼ ମୋହର ଗଜଡ଼ ଶୁଣିଲେ ହେବ ପ୍ରଚଣ୍ଡ ଲୋ । ୨ । ସଖୀ . ଥିଲେ ମୋର ପରଶନ୍ତେ ମୀର ତାଙ୍କ ଯୋଗୁଁ ଲଣ୍ଡଭଣ୍ଡ ଲୋ । ୩ । ଗୃହର ଯେବେ କରଥିଲ ମୁଁ ତାଙ୍କର ଚୁମ୍ବିଛୁ କି ଗୃହୁ ଗଣ୍ଡ ଲୋ । ୪ । ଅଷ୍ଟାଦୁର୍ଗ ଭଣି ଶୁଣ ଠାକୁରାଣୀ ଶ୍ୟାମ ପଦକଞ୍ଜେ ମଣ୍ଡ ଲୋ । ୫ ।

( ୧୨୮ )

ରାଗ—କାମୋଦୀ । ତାଳ ସରମାନ୍

କେଉଁ କାରଣୁ ମୁଁ ତୋ ସେବାକୁ ଗୋ
ମୋଠାରେ ଅବଧାନ ହେବାକୁ ଗୋ । ପଦ ।

ତୋ ଗୃହମୁଖ ମାଠି, ଧେନୁ ତଳକ କାଠି, ଭ୍ରଲଇ ଭ୍ରଲେ, ନିବେଶିବାକୁ ଗୋ; ଲଗଇ ମନେ ଦୁଃଖ, କୋଟିସୁଧାମୟୂଖ ଦଳିବା ହୁଏଲ ଛପି ଯିବାକୁ ଗୋ । ୧ । ମନୋହର କବରୀ, ସାଜ ପାରଇ ଗୋରି ଜାଣି ତୋ ଚଉ ରସାଇବାକୁ ଗୋ, ଭରସା ନୋହେ ମୋର ଘ୍ରର ନୀଳଗୃମର ଚଉଁର କେଶେ ମିଶାଇବାକୁ ଗୋ । ୨ । ତୋ ପୟୋଧର-

୧୨୬ । ଟୀକା—ପୁରଦଳନାରଥମଲେ—କନ୍ଦର୍ପଖେଳରେ; ନଲିଲ—ନଳଦ୍ୱାରା ମାପିଲ; ମସାର—ଇନ୍ଦ୍ରନୀଳମଣି; ଜମ୍ବୁନଦସାର—ସୁବର୍ଣ୍ଣ; ଶାତକୁମ୍ଭ—ସୁବର୍ଣ୍ଣ ।

ହେମ ଦାମ ଛଡ଼ା କୁସୁମ ପର ମୋ ଛଟେ ଅଭ୍ୟାସିବାକୁ ଗୋ; ମରଣୁଁ ଲଜ ବଳେ ଗୃହ୍ନୁଁ ଗୃହ୍ନୁଁ ତ କଳେବରକୁ ଅଲଙ୍କାର ଦେବାକୁ ଗୋ । ୩ । ସାର ସକଳ ବେଶ ଦେଖାନ୍ତୁ ଆଦରଣ ହେବା ନୋହିବା ପର୍ଯ୍ୟବାକୁ ଗୋ; କବିସିନ୍ଧୁର କହେ, ସତେ ଧଣେ ତୋ ଦେହେ କେବଳ ଅନୁଗ୍ରହ ଥିବାକୁ ଗୋ । ୪ ।

( ୧୨୯ )

ରାଗ—ଭୈରବୀ, ଆଦତାଳ

ଗଲା ତ ଅନୁରାଗ ଜଣା ଯା ଯା ମୋହନ ଯା । ପଦ ।

ଯା ପଦ ଅଲକ୍ତ ଶିଖଣ୍ଡ, ମଣ୍ଡି ସୁରତସୁଖ ଅଖଣ୍ଡ, ଦେଇଛୁ ସେ ବରତୁଲ ବରଜାକୁ ତାକୁ ଭଜ ଯା । ୧ । ଯା ସଙ୍ଗେ ମାତ୍ର ରଜନୀଯାକ, ସେହି ରସକୁଶଳାକୁ ଡାକ, ମୋ ନାମରେ ବୋଲି ନୀଳସ୍ବ ମୁରଲୀ ବାଜା ନ ବଜା । ୨ । ଅଳି ନ ବହି ବଟକିଶୋର, ଗାଳି ନ ଶୁଣି ବଦନ୍ତୁ ମୋର, ଚରଣ ନ ଧର ତୁ ମଧୁନଗର ରାଜା ଭଣୋଞ୍ଜା । ୩ । ଭାଷଇ ଜଳନ୍ତର ମହୀନ୍ଦ୍ର, ନନ୍ଦନୀଳସ୍ବ ଗଗନଚନ୍ଦ୍ର; ବରଜ ସୁନାସ୍ବ, କରୁ ଯେ ବିନାସ୍ବ, ନାହିଁ କି ଲଜ୍ଜା । ୪ ।

( ୧୩୦ )

ରାଗ—ଅହାରି, ଆଠତାଳ

ମନ୍ଦମଳୟାନିଳ ବହିଲା, ଚନ୍ଦ୍ରବଦନା ଦୂରେ ରହିଲା । ପଦ ।

ଖାଇ ନୂଆ ଚୂତ ବଳୁଲକୁଳ, କଳକଣ୍ଠ କରେ ଯା କଳକଳ, କଳ କଳକଳ ପ୍ରବାସୀ ବିକଳ କରିବ ବୋଲି ବୋଇଲା । ୧ । ଅଙ୍କଜଗଡରେ ପଙ୍କଜମୁଖୀ, ପହୁଡ଼ିଲେ ମୋର ହୁଏ ଯେ ସୁଖୀ, ମୃଦୁ ସରସିଜ କୋଶଳୟ ଶେଯ ଧନକୁ ଯୋଗ୍ୟ ହୋଇଲା ।୨। ଆହା ତାହା ସାହା ବାରେ ମୋତେ, ବନରୁ ଚମ୍ପକମାଳା କାଣ୍ଟିତେ, ମନମଥବଶେ ଏବେ ସେ ଅବଶେ ଦୁଃସହ ଦୁଃଖ ସହିଲା । ୩ । ପଲ୍ଲବକୁ ଦଣ୍ଡଧର ରସନା, ବଲ୍ଲୀରୁ କିଶୋରୀ ମଣିବ ସିନା, କିଂଶୁକସ୍ତବକ ଅନଳଯାବକ ତୁଲ୍ୟ ତ ଦେହ ଦହିଲା । ୪ । ଭଣିଲେ ଅଷ୍ଟାଦୁର୍ଗ ପୁରୁହୂତ, ଦୁଃଖ ତେଜିଲେ ବ୍ରଜରାଜସୁତ, ମୃଦୁଳ କଦଳୀ ବକ୍ରେ ଦେଲେ ଦଳି ହେବାର ବାଧା ବହିଲା । ୫ ।

---

୧୩୦ । ଟୀକା—କହଲୀ—ଭୂଇଁ କଦଳୀ, ପୁରୁହୂତ—ଇନ୍ଦ୍ର, ଦଣ୍ଡଧର—ଯମ, ଯାବକ—ଅଲତା ।

( ୧୩୧ )

ରାଗ—ତୋଡ଼ି ପରଜ

ରେ ରମଣୀ ଗୁରୁଜନେ ଯେବେ ଭ୍ରାନ୍ତ,
ପୁରୁବରୁ ମୀଳ ପରବଚନ୍ଦ୍ରରେ ବହିଲୁ କାହିଁକି ପ୍ରୀତ । ପଦ ।

ସିନ୍ଧୁ ତ ଗଭୀର ଅଛନ୍ତି କୁମ୍ଭୀର ଅହି ମହାମୀନଶ୍ରେଣୀ, ତଦ୍ଧୁଁତ ରତନ ଲଭନ୍ତି ଯତନ କରି କେହି କେହି ପୁଣି ରେ । ୧ । ମଳୟରେ ଅହିବଳୟ ତ ରହିଥିବାର ସକଳ ଜାଣି, କାହିଁକି ପଣ୍ଡିତେ ବସୁଥାନ୍ତି ସତେ ଗନ୍ଧସାରସାରେ ପୁଣି ରେ । ୨ । କଣ୍ଟକକନକରଯ ସକାଶରୁ ଭୟ ଲଭେ ଯେବେ ଶିଳୀମୁଖ, ହେଉଥାଏ ସେ କି ବସନ୍ତରେ କେତକୀ ଲତିକାର ପାଖ ପାଖ ରେ । ୩ । ହରିଚନ୍ଦଧାରା ପରାକ୍ରମୁଁ ପରା ହେଲେ ହେଲେ ଖଣ୍ଡ ଖଣ୍ଡ, ଛାଡ଼ିଲା କି କହ ସୁଧାରୁ ଆଗ୍ରହ ବଧୂତୁଦ ରାହୁ ତୁଣ୍ଡ ରେ । ୪ । ମୋହନ ବିଷମ ପଦାର୍ଥରେ ପ୍ରେମ ନ ଛୁଆଁଇବାର ଭଲ, ବଧୂ ବଶ୍ୟ କରି ଇତରରୁ ଡରିବାର ବଡ଼ କଲବଲ ରେ । ୫ । ବୁଡ଼ିଗଲେ ହେବ ଏକା ଶେଷଦେବ ଭୁବନକୁ ଅହିମୁଖ, କହେ ଜଳନ୍ତର-ମହୀ ପୁରନ୍ଦର ଓହୋରିଲେ କାହିଁ ସୁଖ ରେ । ୬ ।

( ୧୩୨ )

ରାଗ—ଆନନ୍ଦ ଭୈରବ

ପ୍ରାଣବନ୍ଧୁଆ, ଆଜ ତୋ ଅନାଉଣି ନୂଆ ରେ । ପଦ ।

ସ୍ମିତକାନ୍ତି ପ୍ରସରୁ, ସନ୍ଧ୍ୟମଧ୍ୟାରେ କରୁ, ବସୁଧା ସୁଧାରେ ଗାଧୁଆ ରେ । ୧ । ହୃଦୟାରେ ଭଲ ମୋର, ସୁଆଦ ରଦାମ୍ବର, ପିଆଇ ଧନ ମୋତେ ଜୀଆ ରେ । ୨ । ନିଶ ମରଦୁଅଛୁ, କି ସମଜୁଛୁ ଛୁ ଛୁ, ବିଷମ ବିଶିଖ ମଦୁଆ ରେ । ୩ । ଅମଳ ମୃଦୁଦେହା, ଶ୍ୟାମଳ ଉରେ ବୁହା, ମାମଳ ପୀୟୂଷ-ମାଠିଆ ରେ । ୪ । ଶ୍ରୀ ଜଗଦ୍ଦେବ ଭାଷେ, ଦେବୀ ସବ୍ରୀଡ଼ ହାସେ, ଅଣିମାଦ ସୁଖକୁ ଦିଆ ରେ । ୫ ।

( ୧୩୩ )

ମାନସରୁ ମାନ ସରୁ ମାନସରୁ ମଧ୍ୟମା । ଘୋଷା ।

ହର ବର ଦୁଃଖ ମୋର, ହରବର ତୁ ନ କର, ହରବରରେ ମୁଁ ତୋର, ବର ବର ବରନା । ୧ । ପରବଶସ୍ତନା ମୋତେ, ପର ବତ

---

୧୩୧ । ଟୀକା—ଶିଳୀମୁଖ—ଭ୍ରମର; ବଧୂ ତୁଦ—ରାହୁ ।

ବରୁ ବେଳେ, ପରବର୍ତ୍ତ ସୁରତେ, ପରସନେ ସୁମନା । ୨ । ତୁ ମୋ ଉରପଦଙ୍କରେ, ଯେମନ କଥା ଫଦଙ୍କରେ, ଧରୁଛୁ ତୋ ପଦ କରେ, ମୋଦକରେ ନବୀନା । ୩ । କବିସୂର୍ଯ୍ୟ ଦୀନବନ୍ଧୁ, ବୋଲି ହେଲି ଦୀନବନ୍ଧୁ, ରଖ ବାରେ ଦନବନ୍ଧୁ-ବନ୍ଧୁଜିତ ନୟନା । ୪ ।

( ୧୩୪ )

ମହୀଚମ୍ପାଗଭ୍ର ଧନ୍ୟ ଧନ୍ୟ ଶୋଭା ନିଧିରେ ତୁହି କି ମୋ ସଙ୍ଗାଳି,
ଗୋଭ୍ର ପରମାଣୁମଧୀ ସିନା କାଣୁ ପ୍ରୀତି ପଦାର୍ଥକୁ ଟେରପାଳି । ପଦ ।

ନାକ ନାଗ ନରଲୋକେ ଅଳଙ୍କାର, ହୋଇଛନ୍ତି ଯେତେ ଲଳନାପ୍ରବର; ମଣୁଛୁ ମୋ ମନ ସେମାନେଟି ଧନ, ତୋ ଚରଣତଳେ ନିଉଁଛାଳି । ୧ । ହଟି ମୋ କୋଳକୁ ଅସିବାବେଳକୁ ନିନ୍ଦ ଚନ୍ଦ୍ର ମିଶା ଚନ୍ଦନବୋଳକୁ, ଘସି ଘସି ସ୍ତନ ହସି ହସି ତନୁଲତାକୁ ମୋ ଅଙ୍କେ ଦେଇ ଢାଳି । ୨ । ଅଚେଷ୍ଟ ନିଦକୁ ଶରୀରଭେଦକୁ ଇତର ଦମ୍ପତୀ ନିଷ୍ଠୁର ହୃଦକୁ, ନିମିଷ ଦିବସ ନିଷେଧ ପ୍ରବାସ ବାଧିକା ଦିଆଉଥାଉ ଗାଳି । ୩ । ମୁଁ ତୋ ଚରଣର କହୁ ଭୂଷା ବରବରନା କହ ତୁ ବୋଲୁ ଏହି ଗିର, କୁଚେ କରତାଡ଼ ରସନା କାମୋଡ଼ ଦେଖାଇ କଣ୍ଠ ରତନମାଳି । ୪ । ସତ୍ୟ କହେ ଶିରୀ ଜଗଦ୍ଦେବ ହରିଚନ୍ଦନ ମହେନ୍ଦ୍ର ନବ କିଶୋରୀ ତେ, ତୋ ପ୍ରଣୟ ହୃଦେ ଯେମନ ମହାମୋଦେ ଦୁଃଖ ମୁଖେ ମୁଁ ଲଗାଇ କାଳି । ୫ ।

( ୧୩୫ )

କା ମନେ ଥିଲା ଏ କଥା ଗୋ,
ଶ୍ୟାମ ଅଙ୍ଗ ସଙ୍ଗ ହେବ ଅନ୍ୟଥା ଗୋ । ପଦ ।

ସ୍ୱପ୍ନ ହୋଇବ ଶିଖଣ୍ଡମଣ୍ଡନ, ନୋହିବ ନେତ୍ର ବିପଦଖଣ୍ଡନ ଗୋ । ୧ । ସସ୍ମିତ କୋମଳ ସରସ ଭାଷା, ଶୁଣିବେ ମଥୁରା ନଗର ଯୋଷା ଗୋ । ୨ । ପଙ୍କଜବାସିନୀ ପ୍ରିୟା ଯାର ସେ, ମଜ୍ଜିଯିବ ବୋଲି କୁଜୀଟା

---

୧୩୩ । ଟୀକା—ମାନସରୁ—ମନମଧରୁ; ମାନ ସରୁ—ଅଭିମାନ ଶେଷ ହେଉ; ମାନସରୁମଧ୍ୟମା—(ସମ୍ବୋଧନ) ହେ ଅତିକ୍ଷୀଣ କଟୀ, ହରବରରେ—ଶିବଙ୍କ ଅନୁଗ୍ରହରୁ; ବର—ସ୍ୱାମୀ; ବରବରନା—ସୁନ୍ଦରବର୍ଣ୍ଣଶାଳିନୀ; ପରବରତ—ପ୍ରବର୍ତ୍ତିତ ହୁଅ; ଦନବନ୍ଧୁବନ୍ଧୁଜିତନୟନା—ପଦ୍ମଠାରୁ ସୁନ୍ଦର ନେତ୍ର ଯାହାର ।

ପାଶେ ଗୋ । ୩ । ଭାଜି ହେଉଥିବ କାମ ଦହନେ, ରାଜୀବ ପଦ ନ ଲଦ୍‌ଦବା ସ୍ତନେ ଗୋ । ୪ । କସ୍ତୁରୀମିଶା ନୀଳୋତ୍ପଳ ବାସ, ବ୍ରଜମଣ୍ଡଳେ ହେବ ଇତିହାସ ଗୋ । ୫ । ସ୍ମରଜ୍ୱର ଶୋଷେ ଜୀବନ ଯିବ, ମଧୁରାଧର ତୋକେ ନ ମିଳିବ ଗୋ । ୬ । କେ ଜାଣିଥିଲା ଏ ଦଣ୍ଡ ପଡ଼ିଲେ, ଅଷ୍ଟାଦୁର୍ଗ ନରନାଥ ଛାଡ଼ିଲେ ଗୋ । ୭ ।

( ୧୩୬ )

ରାଗ—କାମୋଦୀ, ତାଳ ଆଦି

ଜଣା ତ ଅଛୁ ମାନ ଏତିକ ରେ ।

ଗଣା ନ ଯିବା ଗୁଣବତୀକ ରେ । ପଦ ।

ଉତ୍ତମ ଅଙ୍କଚ୍ଛେଦ, ଅନୁରାଗ ବିଚ୍ଛେଦ, ଦୁହିଁକି ନେଲା ଯେ ନାଳିକ ରେ; ଠେକିଗଲା ପ୍ରଥମ, ଯହିଁ ତୁଟିବା ପ୍ରେମ, ଦ୍ୱିତୀୟ ଚୁମ୍ବଦେଲା ଯିତିକ ରେ । ୧ । ବଳ ପାଉଛୁ ମୋର, ସହି ପାରିବି ଘୋର, କଳପାନ୍ତର ଖେଦ ତାତିକ ରେ; ମଧୁରାଧର ପ୍ରୀତି, ଅଧୁରା ହେବା କାତି, ସୁହାଇ ଜାଣି ନାହିଁ ଛାତିକ ରେ । ୨ । ଅବଳାମଣି ଅବ-ଧାନଅ ପଣେ ଯୁବ-ଚନ୍ଦ୍ରେ ଠେକାଇଥିବ ଛାତିକ ରେ; ଖେଦ ବଚନ ଶୁଣି, ଧନବଦନ ମ୍ଲାନ, ସମୟେ ଥାଇ ଆଜ ଗତିକ ରେ । ୩ । ସୂଚକ ଅଗେ ସତ୍ତ୍ୱ, କହିବାର ଲେସତ୍ତ୍ୱ, ରୁଚଇ ନାହିଁ ମୋର ମତିକ ରେ; ରୁଚକପୟୋଧରା, ତୁ ଚତୁରୀଙ୍କ ଧୀରା, ଝଗୁଡ଼ ପାଳିବୁ ମୋ ପ୍ରୀତିକ ରେ । ୪ । ସେବାରେ ତ ଫାବିତ, ହେବାର ଯେବେ ସତ, ବାଣୀ କେ ଶୁଣାଇବ ଶ୍ରୁତିକ ରେ; କବିସିଂହର ଗୀତେ, ବୋଲେ ପରଖି ମୋତେ, ସମର୍ପି ଦେବୁ ରତିପତିକ ରେ । ୫ ।

( ୧୩୭ )

ରାଗ—କାନନଗୌଡ଼ା, ତାଳ—ତ୍ରିପୁଟା

ବିଧାତା କି ନ କରଇ ଗୋ,

ଏକେ ନବୀନ ପ୍ରୀତି, ତହିଁ ବିଦେଶେ ପତି

ଏତ ଘୋର ବିପତ୍ତି ଏଥି ମୋର କି ଗତି । ପଦ ।

ମନେ ଥିଲା ଯାହା ତାହା ନୋହିଲା ଗୋ, ଯାହା ନ ଥିଲା ତା ମନେ ହେଲା ଗୋ; ଏବେ ପିକବଚନ, ମନ୍ଦ ମଧୁ ପବନ, ମଧୁର ଭୃଙ୍ଗସ୍ୱନ ଦହୁଛନ୍ତି ଜୀବନ । ୧ । ଆଲିଙ୍ଗନେ ମୋର ଅନ୍ତର ଡରେ ଗୋ, ପ୍ରିୟ

---

୧୩୬ । ଟୀକା—ସୂଚକ—ଖଳ ଲୋକ, ରୁଚକ—କଣ୍ଠାଭରଣ ।

ନ ରଖିନ୍ତି ତରେ ଦ୍ୱାର ଗୋ; ଏବେ ମଧୁରେ ପୁର ରହିଲି ବନଗିରି, ଅହା ମୋତେ ପାଶୋରି ରହିଲେ ମଧୁପୁରୀ । ୨ । ପ୍ରିୟ ଥିଲେ ଏ ମଧୁ ରଜନୀ ଗୋ, କେଉଁ ସୁଖ ନ ଦିଏ ସଜନୀ ଗୋ, କହି ମୋତେ ବଚନ କରନ୍ତେ ସେ ଯେମନ ତାଙ୍କ ପଛେ ଦାହନ, ନ ଗଲି ଏ ଜୀବନ । ୩ । ଯେବେ ହେଲେ ଏ ଜୀବନ ନାଉ ରେ, ପ୍ରୀତିଭଙ୍ଗ କଳଙ୍କ ନ ଥାଉ ରେ, ଚନ୍ଦ୍ର ଏବେ ସ୍ନେହ ସ୍ୱିତ, ଫାଟି ଯାଉଛୁ ଛାତି, ନ ସରେ ଦବାଗ୍ନି ପ୍ରୀତି ହେଲା ବିପତ୍ତି । ୪ । ଏହା କରମରେ ମୋର ଥିଲା ଗୋ, ପ୍ରୀତି ଏତେ-ସରକି ତ ଗଲା ଗୋ, ଏସନେ ସଖୀ ଶୁଣି, ଦୁଃଖେ କହନ୍ତି ବାଣୀ, ଆସିବେ ବେନୁପାଣି, ହରିଚନ୍ଦନ ଭଣି । ୫ ।

( ୧୩୮ )

ରାଗ—କାଫି

ବନ୍ଧୁଆ ରେ ବାରେ ଅନା ରେ । ପଦ ।

ରଦନବାସ, ସଦରହାସ, କରିକରମାନକୁ ମନା ରେ । ୧ ।

ଗଜେନ୍ଦ୍ରଗତି, ଗତି ଜଗତୀତଳେ ନାହିଁଟି ତୋହ ବିନା ରେ । ୨ ।

ନ ସହି ମୋତେ, କହୁ କେ କେତେ, ଧନ ମୁଁ ତୋ ଅଧୀନ ସିନା ରେ । ମୁଁ ତୋର ବୋଲ, ନ ଜାଣେ ଗୃଲ, ଆହା କି ସୁଖ କରୁଛୁ ଚୂନା ରେ ।୪। ଗୃହ ଶ୍ରୀମୁଖ ସୁଧାମୟୂଖ, ଟେକି କରୁଣା କରୁ କି ନା ରେ ।୫। କବିଦ୍ୟୁମଣି, ଗିରେ ତରୁଣୀ, ହେଲି ଆଶ୍ଳେଷ ସୁଖ ଘେନା ରେ । ୬ ।

( ୧୩୯ )

ଯୋଷାକୁ ରୁଷା କେ ଶିଖାଇଲେ ରେ । ପଦ ।

ନିର୍ଦ୍ଦୋଷ ନିର୍ମଳ, ସୁଧାରେ ଗରଳ, ଗୋଳିଦେଇ ଖଳ କି ଖାଇଲା ରେ । ୧ । ମୋ ନୟନସୁଖ, ବର୍ଦ୍ଧନ ଶ୍ରୀମୁଖ, ପୀୟୂଷ ମୟୂଖ ଶୁଖାଇଲା ରେ । ୨ । ଇନ୍ଦୀବରରୁ ନବ, କମଳ ସମ୍ଭବ, କମଳସମ୍ଭବ ଦେଖାଇଲା ରେ ।୩। କି ରହିବ ଜୀବେ, ଚନ୍ଦ୍ରମାକୁ ଯେବେ, ଅରୁଣ ରାଜୀବେ ରଖାଇଲା ରେ । ୪ । ଦୋଷ ଥିଲେ ମୋର, ଦୟାବତୀବର, କାହିଁକି ଅଧର ଚଖାଇଲା ରେ । ୫ । ଏ ଘେନି ସବ୍ୟଥ, ଅଷ୍ଟଦୁର୍ଗନାଥ; ସୁଖ ମନୋରଥ ଭୋକାଇଲା ରେ । ୬ ।

---

୧୩୮ । ଟୀକା—ରଦନବାସ—ଅଧର, ସଦରହାସ—ଦରହାସଯୁକ୍ତ ।

( ୧୪୦ )

ରାଗ—ପଞ୍ଜାବୀ

ଯା ନ ଘେନାଲ ସେ, ଗାନ ରସିକା ଅଜ ପାନ ମୋ କରୁ ଦରହାସେ । ପଦ ।

ତନୁ ମଧ୍ୟମା ମୋ ସହ୍ନ, ଅନୁକମ୍ପିଲା ନାହିଁ, ତନୁ କମ୍ପିଲ ଗୃହି ବାସେ । ୧ । ସଢ଼ଗଲ କେବଳ, ପଡ଼ ମୁଁ ଚନ୍ଦ୍ରଚୂଳ,-ଯର-ଶର ଅନଳ ହାସେ । ୨ । ତୋ ଭଞ୍ଜ ସୁନ୍ଦର, ପଣ ଜଣାଷି ମୋର, ଷଣ କଲ ଦୁସ୍ତର ମାସେ । ୩ । କେଉଁ ଦୁଃଖେ ଅଧର, ଲଭିଲ ବସୁମୀର, ମଉଳିଗଲା ଖର ଶ୍ୱାସେ । ୪ । ଅକପଟରେ ମୋର, ନ କଲ ତୋଷଭର, ମଙ୍କରେ ଛାଏ ପରମାସେ । ୫ । ବଳ କରଣ ପ୍ରୀତ, ଫଳ ହେଲା ଏ ଗତ, ଜଳନ୍ତର ଭୂନାଥ ଭାଷେ । ୬ ।

( ୧୪୧ )

ରାତ ପାହିଗଲା ହେ ହାଣ୍ଡି, ହୁଅ ଅପହ୍ନୁଡ଼ ତେଜ ସୁପାଣ୍ଡ । ପଦ ।

ହେମ ହେଲା ଉରମୁକୁତା, ପାନକଲ ଲାଗିଲା ପିତା, କରଟ କୁମ୍ଭାଠ ଚମକ୍କ ଚଟନ୍ତି ବାଜଲ ଅରୁଣ କରଣ କାନ୍ତି । ୧ । ଛୁଇଁ ଗଙ୍ଗଶିଉଳି ବନ, ବହିଲାଣି ମୃଦୁ ପବନ, ରଥାଙ୍ଗ ଦମ୍ପତି, ହୃଦୟରୁ କାଟୁ ଦୂର ହୋଇଲାଣି ବାରହ ତାତ । ୨ । ବାଲସିଲେ କୁମୁଦ ନାଦ, ଅଳିକୁଳ ହେଲେ ପ୍ରମୋଦ, ଲାଗିଲାଣି ଭୟ, ସଙ୍ଗିନୀ ନାଶ୍ଚୟ, ଇଙ୍ଗିତରେ ଘେନି ଯିବେ ମୋ ଜାତ । ୩ । ମନ ମୋର ଧୃତ ନ ଟଳୁ, ଧନ ମୋତେ ମେଲାଣି ମିଳୁ, ରାଧା ନନ୍ଦସୁତ ମାତଲେ ବୋଲି ତ ତୁମ୍ଭକୁ ଏ ବ୍ରଜମଣ୍ଡଳେ ଖ୍ୟାତ । ୪ । ଜଳନ୍ତର ଭୂପତ କହେ, ଅଙ୍ଗରାଗ ଅଛୁ ମୋ ଦେହେ, ଅତ ସେ ନଜରୁ ହେମ ଉରୋଜରୁ ଶିଥିଳାଇ ଦଅ ଅଳପ ଗୁତ । ୫ ।

( ୧୪୨ )

ରାଗ—କାଫି, ଏକତାଳି

ଅନା ଅନାଥରେ ଥରେ ରସି ରସିକାରେ । ପଦ ।

ଇନ୍ଦରାକୁ ନାନ୍ଦ ଇନ୍ଦୀବର ବନକାରେ, ବନ୍ଦଇ ମୁଁ ନାଳକଳ ଜନମ ଧିକ୍‌କାରେ । ୧ । ମୀନମାନେ ଜାଲେ ମର ସରନ୍ତୁ ବକାରେ, ସଅଁରୁ ତୋ ନେତ୍ର ଚଞ୍ଚଳ ଶିବକାରେ । ୨ । ଭ୍ରମରମଣ୍ଡଳୀ ସରୁ ଝଙ୍କାର ଡକାରେ, ଷଡ଼ାଗୁଗ ପଦଛଡ ସ୍ୱରକୁ ଟେକା ରେ । ୩ । ଆଜ ମୁଁ ମଣ୍ଡିବ

୧୪୧ । ଟୀକା—କରଟ—କୁଆ, ସୁପାଣ୍ଡ—ଶେଯ ।

ଗଣ୍ଡ ସୁମ କରକାରେ, ସ୍ତନ କନକ କଲଶ ମୂଳ କରକା ରେ । ୪ । ହସ୍ତଗିରେ ହରଣାକ୍ଷୀ ଲଜେ ଧାଡକାରେ, ଛପିଗଲେ ଜଗଦ୍ଦେବ ଚନ୍ଦ୍ର ଲତକାରେ । ୫ ।

( ୧୪୩ )

ରାଗ—ତୋଡ଼ି ପରଜ, ଏକତାଳ

ରେ ସଜନି ଆଜ ତୋର ଏ କି ରୀତ

ଗନ୍ଧଫୁଲ ପାଦେ ମରଦଲେ ମଦେ ଲଭି ସିନା ଅଙ୍ଗୀକୃତ ରେ । ପଦ ।

ଯାହା ପାଇଁ ତପ, କ୍ଲେଶରେ ପ୍ରତାପ, ଚନ୍ଦ୍ରପର ମ୍ଳାନ ହେଉ, ଏବେ ସେ ଶରଣ, ପଶିଲେ ଚରଣ,-କମଳେ ତ ପେଲି ଦେଉ ରେ । ୧ । ଥରେ ଯା କଟାକ୍ଷ ଲକ୍ଷ୍ୟ ହେଲେ ଲକ୍ଷ ଇନ୍ଦ୍ରପଦ ମଣୁ ଊଣା, ତାହାକୁ ନିଷେଧୁ କେଉଁ ଅପରାଧୁ ନ ବହ ଲବେ କରୁଣା । ୨ । ଲୋଡ଼ି ଯାହା ପ୍ରୀତି ଧରୁଥାଉ ଦୂତ କର ବଡ଼ପଣ ଛାଡ଼ି, ବିନୟେ ସେ ପୁଣି ଧରୁଛନ୍ତି ପାଣି ରୋଷେ ଦେଉଛୁ ଝୁଣାଡ଼ି । ୩ । ଯାହା ଦେଖା ଆଶେ, ନ ଛାଡ଼ୁ ନିମିଷେ, ସଉଧ ପଞ୍ଜର ପାଖ, ତା ଚାହିଁ ଚାତୁରୀ ନ ରୁଚିଲା ପରି କାହିଁକି ମୋଡ଼ୁ ଶ୍ରୀମୁଖ । ୪ । ଯାହା ରସେ ରସି ନିକୁଞ୍ଜକୁ ଜାଣି ନିବିଡ଼ ଅନ୍ଧାରେ ଯାଉ, ସେ କିଶୋର କୋଳେ ଧରୁଛନ୍ତି ତଳେ ଭିଡ଼ି ହୃଦେ ନ ଜଡ଼ାଉ । ୫ । ଚିନ୍ତାମଣି କରଗତ ହେଲା ପରି ହୋଇଲେ ହେଲେ କିତବ, ମୁରୁଛିବ ଧନ କି ନନ୍ଦନନ୍ଦନ କହେ ଶ୍ରୀମୁକୁନ୍ଦଦେବ । ୬ ।

( ୧୪୪ )

ରାଗ—କାମୋଦୀ, ଏକତାଳ

ସଖି କେ ସେ ନୀପମୂଳେ ଗୋ । ପଦ ।

ଅସିତ ଆକାଶଖଣ୍ଡେ, ରବିପରି ତାର ଗଣ୍ଡେ ମଣି ମକରକୁଣ୍ଡଳ ଲୋଳେ ଗୋ । ୧ । ମୁ ହାରେ ନାୟକ ଅଣି, କରନ୍ତି ସେ ନୀଳମଣି, କିଣା ହେବ ସଖି କେଉଁ ମୂଲେ ଗୋ । ୨ । ଚାହିଁ ତା ଚାରୁବଦନ, ମନ୍ଦିରେ ନ ରହେ ମନ, ଖେଳୁଛି ଅର୍ଦ୍ଧମାଜେମାକୂଳେ ଗୋ । ୩ । ସଖି ମୁଁ କହୁଛି ସତ, ଛାଡ଼ି ସବୁ କୁଳବ୍ରତ, ଖୁରଏ ଖେଳନ୍ତ ତାର ତୁଲେ ଗୋ ।। ଘୁମି ଆନନ୍ଦ ଅମଳେ; ତା ପଦପଙ୍କଜତଳେ, ଶ୍ରୀମୁକୁନ୍ଦଦେବ ଚଞ୍ଚଳ-ଭୂଲେ ଗୋ । ୫ ।

---

୧୪୪ । ଟୀକା—ଖୁରଏ—ମୁହୂର୍ତ୍ତେ, ନାୟକ—ହାରମଧ୍ୟବର୍ତ୍ତୀ ମଣି ।

( ୧୪୫ )

ସେ ଗଜେନ୍ଦ୍ରଗତି ମୋତେ ପ୍ରତି ଦଶେ ଦର୍ଶିଲା । ପଦ ।

ଏ ଜଗତେ ଭାବ ଯେତେ, ନ ରହିଲା ମୋର ଚିତ୍ତେ, ଯାହାକୁ ଚାହିଁଲେ ସେ ତ ତାହା ପର ଦର୍ଶିଲା । ୧ । ସହଜେ କାନ୍ତିରେ ଚୋରା, ଧଇଲେ ନ ଦିଏ ଧରା, ମାର ମାରଗଣ ଗାଢ଼େ ମରମରେ କଷିଲା । ୨ । ମୁଁ ତାହାର ପ୍ରୀତି କିଣା, ହେବାରୁ ଅଧିକେ ବଣା,-ମୃଗାକ୍ଷୀର ବିନା ଆନେ ମନ ମୋ ନ ରସିଲା । ୩ । ଅତି ଯତ୍ନ କରି ବଳେ, ଶୟନ କରିବା କାଳେ, କ୍ଷଣେ ହେଲେ ନିଦ୍ରା ମୋ ଈକ୍ଷଣକୁ ନ ଅସିଲା । ୪ । ବୋଲେ ଅଷ୍ଟାଦୁର୍ଗେଶ୍ୱର, ତା ପାଶୁ ହେବାରୁ ଦୂର, ଦିନକୁ ଦିନ ମଦନ ଜୀବନକୁ ଶୋଷିଲା । ୫ ।

( ୧୪୬ )

ରାଗ—ସାବେରୀ

ବୁଡ଼ି ପ୍ରୀତିରେ, ହୁଡ଼ି ପଡ଼ିଗଲି ପରମାଦେ ଅତି । ପଦ ।

ମନ ଛନ ଛନ ନିରନ୍ତରେ, ନ ରହିଲା ଆନ ବିଷୟରେ, ପୂର୍ଣ୍ଣ ବେଦନେକ ନୀରଭରେ, କ୍ଷୀଣ ହୋଇଗଲା ଅତି ତନୁ ନିତି ନିତି । ୧ । ନ ପାଇଲି ମୁଁ ସୁଖକୁ ଲେଶେ, ଅନୁଭବ ଦୁଃଖେ ତ ବିଶେଷେ, ନିମିଷକ ତ ହେଲା ବରଷେ ଶୁଣି ରହିଲଣି ଲୋକେ ପୁଣି ଅପଖ୍ୟାତି । ୧ । ଦଗ୍ଧ ହେଲା କାମାନଳେ ଦେହ, ସହି ନୁହେ କ କରିବ କହ, ଦଣ୍ଡେ ଦଣ୍ଡକେ ହେଉଛି ମୋହ, ରହୁ ନାହିଁ କେତେ ରୂପେ ବୋଧ କଲେ ଧୃତି । ୩ । ହେଲି ଜୀବନରେ ମୁଁ ନିରାଶ, ଦେଲି ଭଗାରଙ୍କ ମୁଖେ ହାସ, ନେଲି ଅକାରଣେ ଏ ବୟସ, ହାସ ବିଳାସ ବେଶରେ ରହୁ ନାହିଁ ମତି । ୪ । ବସୁଦୁର୍ଗ ଭୂପ ରସେ ଭଣି, ଏହା ବିରହରେ ଗୋପ ରମଣୀ, ଆହା ବିହି କି ବିହିଲା ଅଣି, ଜାଣି ନ ପାରଲି ବେଣୁପାଣି କୁଟ ରୀତି । ୫ ।

( ୧୪୭ )

ଆହା ମୋ ଗଞ୍ଜିନାକ୍ଷି ଅନଙ୍ଗେ ମୋ ବିନା ଦୁଃଖି ରେ,
ଅବନୀରେ ଢଳିପଡ଼ିବାରୁ ତୋଳି ଧରୁଥିବେ ପ୍ରିୟସଖି ରେ । ପଦ ।

ଅହର୍ନିଶ ଝୁରି ଝୁରି, ଅତି କୃଶ କୃଶୋଦରୀ, ଇନ୍ଦୁକଳା ତନୁ ତାକୁ ନିନ୍ଦିବନି ତାର ତାର ତନୁଶିରୀ ରେ । ୧ । ଅଶ୍ରୁଭରେ ନେତ୍ର ବେଣି, ଅକାରତେ ପୂରବନି, ଅସାର ମାର ଅକୂପାରେ ପଡ଼ିଣ ମୃଦୁହାସୀ ଭାସିବନି

ରେ । ୨ । ଆଭରଣ ଦୂର କର, କେଉଁ କୁମ୍ଭ ପୟୋଧରୀ, ଅମଳ ମୃଣାଳ ଖଣ୍ଡ ପାଣିପିଣ୍ଡେ ମଣ୍ଡିଥିବଟି କପର ରେ । ୩ । ଅବଧିରେ ତେଜି ଆଶା, ଅଧିକରେ ଅଭରସା, ଅଛି ଶ୍ୱାସଖେର ପଡ଼ୁଥିବ ପରି ହେବନି ଦଶମ ଦଶା ରେ । ୪ । ଅଷ୍ଟଦୁର୍ଗେଶ୍ୱର ଭଣି, ଅଭିନବ ରାମାମଣି, ଉମାଧବ କୃପା ସତେ ହେବ ଅବା ଜୀବ ଯିବାଯାଏ ପୁଣି ରେ । ୫ ।

( ୧୪୮ )

ରାଗ—କାମୋଦୀ

ଦେଖିବି ମୁଁ ପରାଣକୁ ବରଜି ଗୋ ।
ବୁଝ ତୁ ଥରେ ଶ୍ୟାମ ମରଜି ଗୋ ।

ପିଇ ଜୀଇବି ବୋଲି, କେତେ କଷ୍ଟରେ ଥିଲି, ପୀୟୂଷ ରସପାନ ସରଜି ଦେ ଗୋ; ସହି ମୋତେ ନ ସହି, ପାରନ୍ତି ତହିଁ ନେଇ, କେ ଦେଲା କାଳକୂଟ ପରଜି ଗୋ । ୧ । ଧନଜୀବନଚୟ, ପ୍ରିୟ ବାନ୍ଧବ ଭୟ, ଜାତି ମହତ୍ତ୍ୱ ଆଶା ବରଜି ଗୋ; ସଜନି କୋଟିକାମ, ବିଗ୍ରହଜିଣା ଶ୍ୟାମ, ସଙ୍ଗତେ ଥିଲି ପ୍ରେମ ଅରଜି ଗୋ । ୨ । ମୋ ତହୁଁ ରୂପବତୀ, କେଉଁ ବ୍ରଜଯୁବତୀ, ଧନ୍ୟ ତା ପ୍ରୀତିରେ ସେ ଭରଜି ଗୋ; ଯିଏ ଠାଇ ନେଲା ମନ, ମୋହଠାରୁ ମୋହନ, ସୀଇଁବାଠାରେ ସ୍ୱର ଦରଜି ଗୋ । ୩ । ଚଞ୍ଚଳ ବିଦ୍ୟୁଲ୍ଲେଖା, ସହିତେ ଦେଇ ଦେଖା, ବିରହୀ ସମୁଦାୟ ତରଜି ଗୋ; ଶ୍ରୀ ଜଗଦ୍ଦେବ ଦୁଃଖୀ, କହେ ସଜନି ଦେଖ, ଘୋଟିଆସୁଛି ଘନ ଗରଜି ଗୋ । ୪ ।

( ୧୪୯ )

ରାଗ—ତୋଡ଼ି ପରଜ

ରେ କିଶୋର, ତୁ ଲୋଡ଼ୁଅଛୁ ମାଡ଼କୁ,
ନାହିଁ କହୁ କରୁ ଗୃହିଲୁ କହିଁକି ଶ୍ୟାମଳ ଗୃନ୍ଦ ଅଡ଼କୁ ରେ । ପଦ ।

ମୋରେ ତ ନଜର ନ ଦେଉ ନଜର ନ ଦେଉ ଯେ ବିଶାଖାରେ ବୃଥା ନୀତି ରସେ କି ଥାଏ ତୋର ସେ ତମାଳ ତରୁ ଶାଖାରେ । ୧ । ଆନ ମହାଧନ ବିବିଧ ବସନ ଘମୁରୁ ନେଉଛୁ ମାଗି, ତୋର ତ ଜୀବିକା ହୋଇଅଛି ଏକା କଳାମେଘି ଶାଢ଼ୀ ଲାଗି ରେ । ୨ । ତଳପ ପରେ ଅନଳପ ସୁରଭି ଫୁଲ ଝଡ଼ି ପଡ଼େ ତଳେ, ମଣ୍ଡ ସୀମନ୍ତନ । ମଣି ମିଶାଇଛୁ ଅତସୀ-କୁସୁମ ଦଳେ । ୩ । ଗଣି ନୋହିବାର ମଣିଭୂଷା ଅଛି ତହିଁକି ନ ଗୃହୁଁ

ତାଳେ, ଗଳାଇ ଦେଇ ଗୁଞ୍ଜିରୁ ମନୁଟିକି କଳାଇନ୍ଦୀବରଂ ମାଳେ । ୪ । ଜଳାବାଟେ ହେଲେ ବଳାହକେ ଗୃହିଁ ଧୂଳକେ ହେଉ ଉରଢ, କାଳା ବୋଲ ସ୍ନେହେ ଦଳା ମଳୟଜ ବୋଳୁଛ ଯା ଅଙ୍ଗେ ନାତ । ୫ । ମାର ଜାଣିଅଛୁ ବାରଜାଷି ହସି ସବ ଅବତଂସ ଫୁଲେ, କଷ୍ଟ ପାଇବୁ ତୁ କାହାର କି ଯିବ ଅଷ୍ଟଦୁର୍ଗନାଥ ବୋଲେ । ୬ ।

( ୧୫୦ )

ମୋ ଭୂଲେ ଥିଲେ କି ଲିହ,

ଭଲ ମଲ୍ଲୀ ରୋପଣ, ତହୁଁ ଜନ୍ମିଲା ତୃଣ,

ଚନ୍ଦ୍ରା ରତନଗଣ ହେଲା ପାଷାଣ କଣ । ଘୋଷା ।

ଚୂତ ଫଳିଲା ନାଗରଙ୍ଗ, କଟିମେଖଳ ହେଲା ଭୁଜଙ୍ଗ,

ତଟିନୀ ତଟେ ବାସ, କରି ନ ଗଲା ଶୋଷ,

ପିଇବାର ପୀୟୂଷ,-ପାନରେ ହେଲା ବିଷ । ୧ ।

ମଧୁଶାକର ହେଲା ନିମ୍ବ, ରବି ପରି ହେଲା ଚନ୍ଦ୍ରବିମ୍ବ,

ଧାତାର କି ବିବେକ, ଚଞ୍ଚୁଜିତ କିଂଶୁକ,

ପଢ଼ା ପଣ୍ଡିତ ଶୁକ, ହେଲା ମୋ ଦ୍ରୋଣ କାକ । ୨ ।

ମନ୍ଦାକିନୀରେ ନିମଜ୍ଜିଲି, ନିନ୍ଦା କାହିଁକି ଅରଜିଲି,

ଚଢ଼ିଲି ମେରୁଚୂଳ, ଭୋଗ ହେଲା ଅତଳ

ବ୍ରହ୍ମକାଢ ପାତଳ, ହୀରା ହେଲା ପିତ୍ତଳ । ୩ ।

ଆଉ ନ ରଖିବି ନବୀନା, ଜୀବନ ଯିବ ତାଙ୍କ ବିନା,

ଏ ଚନ୍ଦ୍ରାର ମନ୍ଦିର, ହେଲେ ଶ୍ୟାମସୁନ୍ଦର

ବନ୍ଦଇ ଜଳନ୍ଧର, ଅବନୀ ପୁରନ୍ଦର । ୪ ।

( ୧୫୧ )

ରାଗ—ପୂରବୀ

ସରି ଯାଉଛି ରେ ଏହାଠାରୁ ମନୋରଥ,

ଗୃହିଁଦେଲେ ଆଉ କାହିଁ ନ ଦଶଇ ଅଖି ଥାଉଁ ଥାଉଁ ପଥ । ପଦ ।

---

୧୫୦ । ଟୀକା—ଲିହବା—ଲେଖିବା, ନାଗରଙ୍ଗ—ନାରଙ୍ଗନାମକ ଅମ୍ଳଫଳ ବିଶେଷ, ମେଖଳା—ଆଣ୍ଠାସୂତା, ଭୁଜଙ୍ଗ—ସାପ, ପୀୟୂଷ—ଅମୃତ, ଚଞ୍ଚୁଜିତ କିଂଶୁକ—( ଶୁକର ବିଶେଷଣ ) ଯାହାର ଥଣ୍ଟ ପଳାସ ଫୁଲଠାରୁ ଅଧିକ ଲାଲ; ଦ୍ରୋଣକାକ—ଡାମରାକୁଆ, ମନ୍ଦାକିନୀ—ସ୍ୱର୍ଗଗଙ୍ଗା ।

ସୀତା ସୀତାକାନ୍ତ ଲକ୍ଷ୍ମଣ ସହିତେ ଆରୋହଣ କରି ରଥ, କାନନ ଗମନ କରୁଁ ସୁମନ୍ତ୍ରରେ ଖେଦେ କହେ ଦଶରଥ । ୧ । ଶବର ଶରରେ ନ୍ୟସ୍ତ ହେବାକାଳେ କପଟରେ ଗୋପୀନାଥ, ଗାଣ୍ଡୀବ ବଢ଼ାଇ ଦେଇ ଶ୍ରୀଭୁଜଙ୍କୁ ମନେ ବିଚାରଇ ପାର୍ଥ । ୨ । ଅକ୍ରୂର ସହିତେ ମଧୁପୁର ଯିବେ ବୃନ୍ଦାବନ କଳାନାଥ, ଦେଖି ଅନ୍ୟୋନ୍ୟରେ କୁହାକୁହି ହୋନ୍ତି ସ୍ନେହେ ଗୋପାଙ୍ଗନାଯୂଥ । ୩ । ସନ୍ନ୍ୟାସବେଶ ଧାରଣ କରି ଗୋରା ତେଜିଣ ସକଳ ସ୍ୱାର୍ଥ, ନ ମାନନ୍ତେ ଶଚୀକୁହା ବିଷ୍ଣୁପ୍ରିୟା ଭାବେ କରେ ତାଙ୍କ ପାଥ । ୪ । ଦଶରଥ ପାର୍ଥ ଗୋପୀ ବିଷ୍ଣୁପ୍ରିୟା ପ୍ରାଣ ଧାରଣେ ସମର୍ଥ, ନୋହିବାରୁ ବୋଲେ ନୀଳାଦ୍ରିବିହାରୀ ହରିଚନ୍ଦନ ଯଥାର୍ଥ । ୫ ।

---

# କବିସୂର୍ଯ୍ୟ ଗ୍ରନ୍ଥାବଳୀ

ଚତୁର୍ଥ ଭାଗ

## କବିତା କଲ୍ଲୋଳିନୀ

# କବିତା କଲ୍ଲୋଳିନୀ

( ୧ )

## ଜଗତେ କେବଳ

ରାଗ—ଆଷାଢ଼ଶୁକ୍ଳ

ଜଗତେ କେବଳ, ଜନେ ହସିବେ ଏଥି ତହୁଁ ଫଳ । ଘୋଷା
ଜଟିଳ କର ସ୍କନ୍ଧ ରୋମରାଜି । ଶିଖରଦଶରେ ମନ୍ଦ୍ର ଗରଜି ।
କୁଟିଳ କର ଭ୍ରୁକୁଟୀକୁ ଗୃହୁଁ । ସରମା କଣ୍ଠୀରବ ହେବ କାହୁଁ । ୧ ।
ଅଲକ୍ତଦ୍ରବ ନୟନେ ବୋଳି । ରସାଳ ଟହଲ ଶାଖାରେ ଖେଳି ।
କବଳ କରୁ ତା କଳିକଲାପ । କାକ କି କରିବ ପଞ୍ଚମାଳାପ । ୨ ।
ବରଜୀବ-ରସେ ଦେଇ ମାନସ । ବରଜା ବରସେ ଅମେଧ୍ୟ ଗ୍ରାସ ।
ଦେହେ ମନ୍ଦାକିନୀ ରଜ ଲଗାଇ । ଗ୍ରାମ ଶୂକର କି ହୋଇବ ଗାଈ । ୩ ।
• ଚଞ୍ଚୁ ଚରଣେ ଲଗାଇ ହିଙ୍ଗୁଳ । ନିଜ ତୁଣ୍ଡେ ମଣ୍ଡି ଖଣ୍ଡ-ମୃଣାଳ ।
ଶୁକ୍ଳୁଁ ପୂର୍ବ ଅଙ୍ଗ ବୁଲାଇ ବକୀ । ତେବେ ସେ ମରାଳୀ ବୋଲାଇବ କି । ୪ ।
ରଞ୍ଜି ନାୟକ ରଙ୍ଗେ ଗ୍ରେପଦାର । ଖଞ୍ଜିଲେ ହେଲେ ଚାବୁକ ସବାର ।
ଖିଲାଇଲେ ହେଲେ ନାନା ମସଲା । ତୁରଙ୍ଗ ହୁଏ କି ରାସଭ ପିଲା । ୫ ।
ବଦରିକା ବନେ ନିତ୍ୟ ନିବାସ । କରି ଆଚରି ବ୍ରତ ଉପବାସ ।
ପ୍ରଯତ୍ନ କଲେ ହେଁ ନାନା ପ୍ରକାର । ଖଦ୍ୟୋତ ହୋଇବ କି ପ୍ରଭାକର । ୬ ।

---

୧ । ଟୀକା—ଶିଖରଦଶ—ପର୍ବତଗୁମ୍ଫା, ସରମା—କୁକୁର, କଣ୍ଠୀରବ—ସିଂହ, ଅଲକ୍ତଦ୍ରବ—ଅଳତାରସ, ରସାଳ—ଆମ୍ବ, କବଳ କରୁ—ଗ୍ରାସ କରୁ ବା ଖାଉ, ବରଜାବରସେ—ଗୋରୁଦୁଧରେ, ଅମେଧ—ବିଷ୍ଠା, ମନ୍ଦାକିନୀରଜ—ଗଙ୍ଗାଧୂଳି, ଚଞ୍ଚୁ—ଥଣ୍ଟ, ଖଣ୍ଡମୃଣାଳ—ପଦ୍ମନାଡ଼ଖଣ୍ଡ, ବକୀ—ବଗୁଲି, ମରାଳୀ—ରାଜହଂସୀ, ଗ୍ରେପଦାର—ଅଗ୍ରଗାମୀ ସିପାହି, ତୁରଙ୍ଗ—ଘୋଡ଼ା, ରାସଭ—ଗଧ, ବଦରିକା ବନ—ବରକୋଳି ବଣ ଓ ତୀର୍ଥ ବିଶେଷ, ଖଦ୍ୟୋତ—ଜୁଳୁଜୁଳିପୋକ, ପ୍ରଭାକର—ସୂର୍ଯ୍ୟ ।

ଯାହାକୁ ଯାହା କରିଛନ୍ତି ଦଇବ । ତହୁଁ ନିକି ସେ ଅନ୍ୟଥା ହୋଇବ ।
ଘେନିଲେ ହେଲେ ଯତନେ କୋଟି ପୁଟ । ପିତ୍ତଳଟି କେହି ହେବ ପୁରଟ । ୭ ।
ଦେବ ଉପବନେ ହୋଇ ଜନ୍ମିତା । ସ୍ୱବାସ-ମଦରୁ ଜବସଲତା ।
ତୁଳସୀ ତୁଲେ ହେଲେ ମିଶାମିଶି । ତାହାକୁ ଯେବେ ବୋଲିବା ତୁଳସୀ ॥
ସମଜଇ ନାହିଁ ସ୍ୱଜାତି ଭାଷା । କହିଲେ ଯେ ଦୁଅଇ ଲୋକହସା ।
ଜଡ଼ ମୁଁ ବୋଲି ନ ଜନ୍ମି ନିର୍ବେଦ । ଷଡ଼ଦର୍ଶୀ ତୁଲେ କଲେ ବିବାଦ ।
ଦେହରେ ବାଜିଲେ ପର ନିଃଶ୍ୱାସ । ସମ୍ଭାଳିବାକୁ ନ ଥାଇ ବିଶ୍ୱାସ ।
ନିର୍ଲ୍ଲଜ ଅଭିମାନେ ଡେରି ସ୍କନ୍ଧ । ହାତୀ ଲଢ଼ାଇକି ବାନ୍ଧିଲେ କାଢ । ୧୦ ।
କରପରେ ତ ହୋଇଅଛି ଲେଖା । କରମର୍ଦ୍ଦକ ଯୋଗ୍ୟ ତୋର ଶିଖା ।
ହରମଉଳିଯୋଗ୍ୟ ଚମ୍ପକକୁ । ଭ୍ରମରେ ବୃଥା ପଡ଼ି ଯା ଠାକୁ । ୧୧ ।
ଗୁରୁଚନ୍ଦ୍ରୋଦୟା ମଶାଲ ପାଖେ । ବହ୍ନି ଜାଳିବ ଯେବେ ଦଶାମୁଖେ ।
ଧାତା ତ କରିନାହିଁ ତାମୀକାଶ । କରୁପେ ହେବ ସେପରି ପ୍ରକାଶ । ୧୨ ।
ବୋଲି ହୋଇ ଭୁଢ ଧରି ପରଶୁ । ବଳୀବର୍ଦ୍ଦବର ଚରମେ ବସୁ ।
ଗଉରୀ-ପ୍ରାଣନାଥ ଅନୁଭାବ । ଠଉରି ପାରିବ ନାହିଁ ତା ଲବ । ୧୩ ।
ସରପର୍ପଟି ଯାହାକୁ ମିଳଇ । ସେ ସୁଖେ ତା ଭୋଜନେ ପ୍ରବଳଇ ।
ସହାଇବାକୁ ତା ବଢ଼ାଇ ବସି । ଦୁର୍ମତି ଯେବେ ଗୈବାଇବ ଘଷି । ୧୪ ।
ଶିର ଉପବନ୍ନ କେଉଁ ପୁରୁଷ । ସମ୍ବାଦ ଯୋଗ୍ୟ ଗୁଣି ପଉରୁଷ ।
କରଟେ ସଞ୍ଚରିବା ନ ସହିବ । କଣ୍ଟକକଣ୍ଠେ ଯେବେ ଆରୋହିବ । ୧୫ ।
ଗଙ୍ଗାର ପ୍ରବାହେ ଅଲପେ ବୁଡ଼ି । ଅଙ୍ଗାର କି କି ନିଜ ବର୍ଣ୍ଣ ଛାଡ଼ି ।
ବଳାହତ ରତ୍ନ ପରି ଦିଶିବ । ବାଳା ପୟୋଧର ହାରେ ମିଶିବ । ୧୬ ।

---

ପୁରଟ—ସ୍ୱର୍ଣ୍ଣ, ଜବସଲତା—ଦୁବଘାସ, ସ୍ୱବାସମଦରୁ—ନିଜ ଜନ୍ମସ୍ଥାନ ଗର୍ବରୁ, ନିର୍ବେଦ—ବୈରାଗ୍ୟ, ଷଡ଼ଦର୍ଶୀ—ଦର୍ଶନଶାସ୍ତ୍ରଜ୍ଞ ପଣ୍ଡିତ, କାଢ—ଶ୍ରେଷ୍ଠ କଟୁରୀ; କରମର୍ଦ୍ଦକ—କରଞ୍ଜଫୁଲ (?); ଶିଖା—ମସ୍ତକ, ହରମଉଳି—ଶିବଙ୍କ ମସ୍ତକ, ଠାକୁ—ଅପେକ୍ଷାକରୁ, ଗୁରୁଚନ୍ଦ୍ରୋଦୟ—ମନୋହର ଚନ୍ଦ୍ରଉଦିଆ ବଳିତା, ଦଶାମୁଖେ—ଗୃହଆଡ଼େ, ତାମୀକାଶ—ତତ୍ସଦୃଶ, ଭୁଢ—ପାଉଁଶ, ପରଶୁ—ଶସ୍ତ୍ରବିଶେଷ, ବଳୀବର୍ଦ୍ଦବର - ଷଣ୍ଢ, ଚରମ—ପିଠି, ଗଉରୀପ୍ରାଣନାଥ—ଶିବ, ଅନୁଭାବ—ତେଜ, ସରପର୍ପଟି—ଦୁଧସରରେ ତିଆରି ଏକ ପ୍ରକାର ମିଷ୍ଟାନ୍ନ, ବଢ଼ାଇ - ଗର୍ବ, ଘଷି—ଶୁଖିଲା ଗୋବର, କରଟେ—ବନ୍ଧୁମାନ, ଅତି-ସାମାନ୍ୟ; ସଞ୍ଚରିବା—ପାଦରେ ଚାଲିବା, କଣ୍ଟକକଣ୍ଠ—ଘଣ୍ଟିବନ୍ଧା ପଟା, ବଳାହତ ରତ୍ନ—ଇନ୍ଦ୍ରନୀଳମଣି ।

ସତର ବୟସୀ ସତତ ମନ । କରଇ ଯାହାଙ୍କୁ ଅନୁଗମନ ।
ଛବି-ଶୂନ୍ୟ, ଷଣ୍ଡ ବୃଦ୍ଧ ତା ତୁଲେ । ଅବିବେକବଶୁ ବିବାହୀ ହେଲେ । ୧୭।
ଗୁଞ୍ଜର କେଉଁ ପୁଣ୍ୟବଳୁ ସିନା । ସଙ୍ଗକୁ ଅଙ୍ଗୀକାର କଲା ସୁନା ।
ହୋଇଲା ତ ବୋଲି କନକ ତୁଲ୍ୟ । ଲୋଡ଼ିବ ଯେବେ ତାହା ତୁଲ୍ୟ ମୂଲ୍ୟ ।୧୮।
ଗଜପତି କୁମ୍ଭସ୍ଥଳ ବିଦାରି । ସଜ ପଳଲ ଭୁଞ୍ଜିବାରୁ ହରି ।
ଦୃଷ୍ଟି ନ ଦେଲା ବୋଲି ଅନ୍ୟ ଶବେ । ଜମ୍ବୁକେ ଯଶସ୍ୱୀ ବୋଲିବା ଯେବେ ।
ମାନୋଚ୍ଚାରଣ ଶରଣପଞ୍ଜରେ । ବଢିଲ ବାଦଶା ନୃପକୁଞ୍ଜରେ ।
ରାଜା ଜଗଦ୍ଦେବ ହରିଚନ୍ଦନ । ଲଙ୍ଘିଲେ ତାଙ୍କୁ ନ କରି ବନ୍ଦନ । ୨୦ ।
ତାଙ୍କ ସୁଧର୍ମା ତୁଲ୍ୟ ସଭା କବି । ଭଣିଲେ ରାଯ୍‌ଗୁରୁ କବିରବି ।
ଶ୍ରବଣ-ସର୍ବାବୟବୀ ମାନବ । ସହସ୍ରାକ୍ଷ ସାମ୍ୟ ଯେବେ ଲୋଡ଼ିବ ।
ଜଗତେ କେବଳ, ଜନେ ହସିବେ ଏହି ତହୁଁ ଫଳ । ୨୧ ।

( ୨ )

କାହାକୁ କହିବା

ରାଗ—ଅଷାଢ଼ଶୁକ୍ଳ

କାହାକୁ କହିବା, କପାଳରେ ସିନ କର ତାଡ଼ିବା । ଘୋଷା ।
ଭଜିଥିବ ଭାବି କଳପଲତା, କାଳେ ସେ ହୋଇଲେ ଅପରାଜିତା,
କରି ଗୋଦାବରୀ ନିକଟେ ବସା, କାଳଦେବତା ଯେବେ ହେବ ତୃଷା ।୧।
ନଥର ପରୀକ୍ଷିତ ହୀରାମଣି, ପଥରୁ ଯେବେ ହେବ ଊଣା ପୁଣି,
କର ହାଜର ଥିବ ପଦ୍ମନିଧି, ଜନମିବ ଯେବେ ଯାଚକ ବୁଦ୍ଧି । ୨ ।
ପିନ୍ଧିଥିବ ଜାମାଜାମାଗୁଡ଼ିକ, ଗୁପତ ଅଙ୍ଗ ଦିଶିଲେ ଝଲକ,
ହରିଭଜନମାଳା ଥିବ କରେ, ଧରି ନେବେ ଯେବେ ଯମ କିଙ୍କରେ । ୩ ।
ଶୟନକୁ ଥିବ ହଂସୁଲିତୁଳି, ନିଜ ଅଙ୍ଗରୁ ଜନମିଲେ ଧୂଳି,
ମାଧୁର୍ଯ୍ୟ ଲୋଭରେ ଖାଇଲେ ସିତା, କଣ୍ଠ ଉପକଣ୍ଠ ଲାଗିଲେ ପିତା । ୪ ।

---

ଛବିଶୂନ୍ୟ—କୁରୂପ, ଷଣ୍ଡ—ନପୁଂଷକ, ଗୁଞ୍ଜ—କାଇଁଚ, ପଳଲ—ମାଂସ, ହରି—ସିଂହ, ଜମ୍ବୁକ—ବିଲୁଆ, ସୁଧର୍ମାତୁଲ୍ୟ ସଭାକବି—ଦେବସଭା ତୁଲ୍ୟ ତାଙ୍କ ସଭାର କବି, ସହସ୍ରାକ୍ଷ—ଇନ୍ଦ୍ର, ଶ୍ରବଣସର୍ବାବୟବୀ ମାନବ—ଯେଉଁ ଲୋକର ସମଗ୍ର ଶରୀରରେ ଶ୍ରବଣ ପରି ଚକ୍ଷୁ ଥାଏ ।

୨ । ଟୀକା—ନଥ—ନୋଥ, ପଦ୍ମନିଧି—ଅତି ମୂଲ୍ୟବାନ ରତ୍ନବିଶେଷ, ଜାମାଜାମାଗୁଡ଼ି—ପାଇଜାମା ପ୍ରଭୃତି, ହଂସୁଲିତୁଳୀ—କୋମଳ ତୁଳାଶେଯ, ସିତା

ଜୀଇଁବା ପାଇଁ ପିଇବା ପୀୟୂଷ, ପରିପାକେ ଯେବେ ହେବ ସେ ବିଷ,
କୁନ୍ଦନ ଯେବେ ପାଲଟିବ ରଙ୍ଗ, କଟିସୂତ୍ର ଯେବେ ହେବ ଭୁଜଙ୍ଗ । ୫ ।
କେତକୀରୁ ସମ୍ଭବିଲେ ଦୁର୍ବାସ, ଶିରଗର୍ଭରୁ ଜନ୍ମିଲେ କୁଳିଶ,
ନିଜ ନିଶ୍ୱାସରେ ପଡ଼ିଲେ ଢଳି, ଜଠରାନଳେ ଦେହ ଗଲେ ଜଳି । ୬ ।
ସକଳ ସଉଭାଗ୍ୟ ଅଭିଳାଷେ, ଅନୁସରି ସୁରସୁରଭି-ପାଶେ,
ଦୋହନକାଳେ ଦୁଧରୁ ତାହାର, ଧତ୍ରପରାଗ ହୋଇଲେ ବାହାର । ୭ ।
ପିଞ୍ଜରମଣ୍ଡନ ପଢ଼ା ଶାରିକା, ପଢ଼ା ଛାଡ଼ି କଲେ ମଣ୍ଡୂକଡକା,
କପିତ୍ଥ ଫଳିଲେ ରସାଳଲତା, ଅଶୁଭ ପାଞ୍ଚିଲେ ଇଷ୍ଟଦେବତା । ୮ ।
ଜ୍ୟୋତିଷ୍ମନ୍ତ ତାର ନୟନେ ଥିବ, ସମୀପ ଦୀପ ଯେବେ ନ ଦର୍ଶିବ,
ଘନସାର ସାର ସଙ୍ଗମ କ୍ଷଣେ, ଆନ୍ଧ୍ୟ ଯେବେ ଜନମିବ ଇକ୍ଷଣେ । ୯ ।
ଦୂର ହୋଇବାକୁ ଦୁରିତ ବ୍ୟୂହ, ଗଙ୍ଗାପ୍ରବାହେ କରି ଅବଗାହ,
ନିତ୍ୟ ନିବାସ କରିଥିବ କାଶୀ, ଅସି ଗ୍ରାସି ଦେଲେ ପାତକରାଶି । ୧୦ ।
ହାତୀ ବିତରଣ କରି ଯାଚକେ, ଜାତି କୃପଣ ବୋଲାଇଲେ ଲୋକେ,
ପାତିତ୍ୟଧ୍ୱଂସୀ ଶ୍ରୀମହାପ୍ରସାଦେ, ଜାତିବିଧ୍ୱଂସ ହେଲେ ପରମାଦେ । ୧୧ ।
ଅବଲମ୍ବି କରି ଗରୁଡ଼ ନିଡ଼, ଡୁଣ୍ଡୁଭରୁ ହେଲେ ଭସ୍ମ ନିବାଡ଼,
ହରିଦରୀମଧ୍ୟ କରି ଶରଣ, ଶଶ ସକାଶୁଁ ଲଭିଲେ ମରଣ । ୧୨ ।
ସିନ୍ଧୁରେ ପଶି ନ ତିନ୍ତିଲେ ପାଦ, ସାଯୁଜ୍ୟ ମୋକ୍ଷରେ ଥିଲେ ବିପଦ,
ମାଜି ନିର୍ମଳ ମୁକୁରକୁ ଚାହିଁ, ପ୍ରତିବିମ୍ବ ଯେବେ ଦର୍ଶିବ ନାହିଁ । ୧୩ ।
ଦ୍ରବ୍ୟରୁ ଯେବେ ଗୁଣର ବିଚ୍ଛେଦ, କାମକାଣ୍ଡରେ ହେଲେ ଶିରଚ୍ଛେଦ,
ସେବିକା ସଞ୍ଜୀବନୀ ମହୌଷଧ, ନୋହିବ ଯେବେ ଆମୟ-ନିଷେଧ । ୧୪ ।
ହିମଗିରିଦରୀ କରି ଆଶ୍ରୟ, ହେଲେ ନିଦାଘ ଭୟ ଅତିଶୟ,
ପଣ୍ଡିତମଣ୍ଡଳୀରେ କରି ସ୍ଥିତ, ଜଣା ନୋହିଲେ ବଚନ ସଙ୍ଗତି । ୧୫ ।
ଜାଣି ବେଦବିଦ୍ୟା ତତ୍ତ୍ୱସାରକୁ, ମୂରୁଖ ବୋଲାଇଲେ ଆଖରକୁ,
ପରଶୁରାମଙ୍କୁ କରିବା ଗୁରୁ, ପଳାଇବା ଯେବେ ଅରି ଆଗରୁ । ୧୬ ।
ବୀଣାବାଦ୍ୟ ଶିକ୍ଷା ଦେଇ ଅଶେଷେ, ଅତାଳଜ୍ଞାନୀ ବୋଲାଇବେ ଶେଷେ,
ଧରଣୀଦେବଙ୍କ ଚରଣରଜ, ଶିରେ ଘେନିବା ଯେବେ ହେବ ଲାଜ । ୧୭ ।

—ନବାତ, କୁନ୍ଦନ—ସ୍ୱର୍ଣ୍ଣ ବା ରତ୍ନ, ରଙ୍ଗ—ଟିଣ, ଘନସାର—କର୍ପୂର, ଆନ୍ଧ୍ୟ—ଅନ୍ଧଭାବ, ଦୁରିତବ୍ୟୂହ—ପାପସମୂହ, ଡୁଣ୍ଡୁଭ—ଧଣ୍ଡସାପ, ହରିଦରୀ—ସିଂହ ରହିବା ଗୁମ୍ଫା, ସାଯୁଜ୍ୟମୋକ୍ଷ—ଆତ୍ମା ଓ ପରମାତ୍ମାର ପୂର୍ଣ୍ଣ ମିଳନ, ଆମୟ—ରୋଗ, ଧରଣୀଦେବ—ବ୍ରାହ୍ମଣ, ତାଳଜ୍ଞ—ବଜ୍ଞଣା ।

ଶରୀର ଖେଦ ହୋଇବାକୁ ଶାନ୍ତ, ଗୁଳିବା ମନ୍ଦ ମନ୍ଦ ତାଳବୃନ୍ତ,
ତହୁଁ ନ ଜନମି ମୃଦୁ ଅନିଳ, ସମ୍ଭବିବ ଯେବେ ପ୍ରଳୟାନଳ । ୧୮ ।
କହଇ କଲନ୍ତର ପୁରନ୍ଦର, ଶୋଭି କାମନ୍ତେ ବହୁ ଅଳଙ୍କାର,
ତହୁଁ ସୁନ୍ଦରଭାବ ନ ଦର୍ଶିବ, ପିଶାଚ ପରି ଯେବେ ଆଭାସିବ ।
କାହାକୁ କହିବା, କପାଳରେ ସିନା କର ତାଡ଼ିବା । ୧୯ ।

( ୩ )

ରାଗ—ଆଷାଢ଼ଶୁକ୍ଳ

ଶିଖଣ୍ଡ ମୁକୁଟ, ଶିଖିଛ ଭଲ ଅଳକମୁକୁଟ । ଘୋଷା ।
ହେଲା ଯେ ସକଳ ଗୁଣ ପ୍ରକଟ, ପୁରୁଷ ଜାତି ତୁମ୍ଭେ ମଧୁଲିଟ,
ନାରପରାଧେ ଅନୁରୋଧ ତୁଟ, କଞ୍ଜରୁ ଡେଇଁ କୁଟଜକୁ ଗୃଟ । ୧ ।
ପ୍ରତି ନିକୁଞ୍ଜେ ତାଳ ପଦପଟ, ଅବଶେଷକୁ ସାକ୍ଷୀ ନଦୀତଟ ।
ବୃନ୍ଦାବନଜାତରେ ବସେ ଏହି ହାଟ, ପୁଣି ସାହସେ ନାୟିମକୁ ଦଟ । ୨ ।
କି ମନ୍ତ୍ରେ କରାଇ ମନ ଉଚାଟ, ଗୃହୁଁ କହୁ କହୁ ଗୋଟିକି କାଟ ।
ବଚନ ସୁଧାସାର ପ୍ରତିଭଟ, ପେଟୁଁ ଟିପାକ ନିପଟ କପଟ । ୩ ।
ପ୍ରିୟାଙ୍କୁ ପିନ୍ଧାଇ ସ୍ୱ ପୀତପଟ, ଆପେ ପିନ୍ଧିବା ତାହାଲାଗି ଧଟ ।
ଆହା ଏ ଗୁଣ କରିବାକୁ ସ୍ଫୁଟ, ଜଗତେ ଘଟିବେ ନାହିଁ ଯେ ଭାଟ । ୪ ।
ହୋଇଗଲ କେଡ଼େ ଅକଲ ଗ୍ଲୋଟ, ଚନ୍ଦ୍ରକେ ଲଯା ଲାଗି ହେଲ ଛୁଟ ।
ଏରୂପେ ଯେବେ ସକଳ ପାଲଟ, ମନମଥ ଯେସି ଥିଲ କି ଥାଟ । ୫ ।
ବୋଲଅ ପରି ପ୍ରଣୟିଲମ୍ପଟ, ଯେ କରେ ବିଶ୍ୱାସ ତାହାକୁ ଜଟ ।
ଏ ରୀତିରୁ କେ ନ ବହିବ ରୁଟ, ଋଷି ତ ହେଲେ ଛୁଣ୍ଡାଇବେ ଜଟ । ୬ ।
ତୁମ୍ଭ ବୁଦ୍ଧିବଳ ପରା ନିରାଟ, ଜାଇ ଫିଙ୍ଗିଦେଇ ତୋଳ ଚରାଟ ।
ମାଳା କରିବାକୁ ସଞ୍ଚି ବରାଟ, ଫିଙ୍ଗିଲ ମଞ୍ଜୁଷୁ ହୀରକରାଟ । ୭ ।
ନୀପ ନିକୁଞ୍ଜ ଅବା କେତେ ବାଟ, ଶ୍ରମ ହୋଇଥିବ ବୋଲି ଉତ୍କଟ ।
ଶ୍ରୀହସ୍ତେ ଗୃଳ କୁସୁମ ଆଳଟ, କରପରା ଉରଃସ୍ଥଳକୁ ଖଟ । ୮ ।

---

୩ । ଟୀକା—ମଧୁଲିଟ – ଭ୍ରମର, କଞ୍ଜ—ପଦ୍ମ, କୁଟଜ—ବଣମଲ୍ଲୀ, କୁଟ—କପଟ, ଲଗିପଟ—ପିନ୍ଧା ଲୁଗା, ପ୍ରତିଭଟ—ପ୍ରତିପକ୍ଷ ଯୋଦ୍ଧା, ଚନ୍ଦ୍ରକ—ମୟୂରପୁଚ୍ଛ, ଛୁଟ—ଚ୍ୟୁତ, ଜଟ—ଠକାଅ, ରୁଟ—ଦୁଃଖ ବା ରୋଷ, ବରାଟ—କଉଡ଼ି, ମଞ୍ଜୁଷ—ପେଡ଼ିରୁ, ହୀରକରାଟ—ଶ୍ରେଷ୍ଠ ହୀରା, ଉରଃସ୍ଥଳ—ବକ୍ଷୋଦେଶ ବା ଗୃହ, ସ୍ତନସମ୍ପୁଟ—ସ୍ତନରୂପ ଫରୁଆ, ସେ ଶେଯେ କରି କଞ୍ଜଦଳକୁଟ ସେ ଶଯ୍ୟାରେ

ହୃଦରେ ଲଦ ଯା ସ୍ତନ-ସମ୍ପୁଟ, ପିଅ ଯାହା ସ୍ୱାଦୁ ଅଧରପୁଟ ।
ସେ ଶେଯେ କର କଞ୍ଜଦଳକୂଟ, ବସିଛୁ ଗିଳିବାକୁ କାଳକୂଟ । ୯ ।
ଆଉ ଯେ ହୁଅଇ ନାହିଁ ସେ ଲଟ, କସ ହୋଇବ ହେଲେ ଛଟପଟ ।
ଏତକ ମୋ ପ୍ରାଣସଖୀର ଭେଟ, କାଲକୁ ହୋଇଲାଣି ଅନ୍ତକଟ । ୧୦ ।
ହେବାରୁ ତୁମ୍ଭ ସ୍ନେହେ ଲଟପଟ, ଉତ୍ତମ ପକ୍ଷ ଛାଡ଼ିବାର ଘଟ ।
ଯାହାର ଥିବ ତେଡ଼ିକା ଅକଟ, ଦେଖିବ ତୁମ୍ଭେ ତାହାର ଶୁକଟ । ୧୧ ।
କରଜର ମୂନେ ଚିରି କନ୍ୟାଟ, ଯେ ଦେଖି ଫୁଲ୍ଲୁଥାଏ ତୁମ୍ଭ ନାଟ ।
ଯେ ତୁମ୍ଭ ଦରଶନ ଚାଟପଟ, ତା ମୁଖ ମୂଖେ ଛୁଟାଇଲ ଛାଟ । ୧୨ ।
ଜାଣି ଯେ ଯିବାର ଯମୁନାଘାଟ, ଦେଖିବାକୁ ତାକୁ ଆଗେ ଝପଟ ।
ବହ ଯାହାକୁ ରତି ବାହାପଟ, କହ କି ଦୋଷ ନୁହ ତାହା ପଟ । ୧୩ ।
ନିଶିତମ ହୋଇଥାଏ ବିକଟ, ଆସି ନଖେ ଠୁଙ୍କ ଯାହା କବାଟ ।
ଯେ ତୁମ୍ଭ ସ୍ନେହବନ୍ଧ୍ୟା ବଡ଼ଗୃଟ, କରି ଠିକି ତାକୁ ଏଡ଼େ କପଟ । ୧୪ ।
ଜଳଦ ହୋଇଥାଏ ସଙ୍ଘୋଟ, ଚପଳା ଖେଳୁଥାଇ ଝଟ ଝଟ ।
ଦୂରୁ ଡାକୁଥାନ୍ତି ଯାମିକ ଭଟ, ଆସି ପଶ ତୁମ୍ଭେ ତା ସେବା ଖଟ । ୧୫ ।
କରି ଅନ୍ଧର ତୁମ୍ଭେ ସର୍ପଘଟ, କୁଞ୍ଜ ଶବର କହୁଛି କରଟ ।
କ୍ଷଣେ ଯତନେ କଲେହେଁ ଅପଟ, ନ ବାସିଯାଏ କି ଚମ୍ପକପୁଟ । ୧୬ ।
ଦେଖାଇ ମାମୁଁ ବୋଲି ଦ୍ୱିଜରାଟ, କାଲି ଦେଉଥିଲ ଯା ନେନେ ଅଟ ।
ତୁମ୍ଭେ ତ ସେହି ଶ୍ୟାମବନ୍ଧୁ ଅଟ, ଶିକ୍ଷା କଲ କାହୁଁ ଏତେ କପଟ । ୧୭ ।
କାହିଁକି ଦେଲ ଏ ପ୍ରାଣ ସଙ୍କଟ, ନୋହୁଁ ବଳୀ ବକ କେଶି ଶକଟ ।
କି ହେବ ଆଉ ହୋଇ ଭଟ ଭଟ, ହେମକୁ ଭର୍ମ ହେଲା ଆରକୂଟ । ୧୮ ।
ଶୁଣି ଭଣିଲେ ହସି ନବ ନଟ, ଆନ ସଙ୍ଗ ମୋର ହଟ ଚମଟ ।
ଏକା ତୋ ସଖୀ ଜୀବନ ମୁଁ ଘଟ, ତା ଜାଣେ ଅଷ୍ଟାଦୁର୍ଗ ତୁରାସାଟ ।
ଶିଖଣ୍ଡ ମୁକୁଟ, ଶିଖିଛ ଭଲ ଆଜନମୁଁ କୂଟ । ୧୯ ।

---

ପଦ୍ମପତ୍ରକୂଟ କର ଅର୍ଥାତ୍ ଜମା କର, କାଳକୂଟ—ବିଷ, ଘଟ ଛାଡ଼ିବା—ପ୍ରାଣ ତ୍ୟାଗ କରିବା, ଶୁକଟ—ଦୁର୍ଦ୍ଦଶା, କନ୍ୟାଟ—ସ୍ତ୍ରୀମାନଙ୍କ ରହିବା ଘର, କରଜର ମୂନେ···ତୁମ୍ଭ ନାଟ—ଯେଉଁ ସ୍ତ୍ରୀ ତୁମ୍ଭଙ୍କୁ ଦେଖି ଆନନ୍ଦିତ ହୁଏ, ସେ ଦୁଃଖରେ ନଖମୁନରେ ସ୍ତ୍ରୀସ୍ଥ ରହିବା ଘରକୁ ଚିରେ, ଛାଟ—ଆଘାତ କରିବାର ଦଣ୍ଡ, ବାହାପଟ—ବାହୁବଳ, ପଟ—ପକ୍ଷ, ଯାମିକଭଟ—ପ୍ରହରୀ, ଚୌକିଦାର; କରଟ—କୁଆ, ଅପଟ—ନିରୁଢ଼, ଚମ୍ପକପୁଟ—ଚମ୍ପାଫୁଲର ଆବରଣ, ଦ୍ୱିଜରାଟ—ଚନ୍ଦ୍ର, ଅଟ—କଜ୍ଜଳ, ଭର୍ମ—ସୁନା, ଆରକୂଟ—ପିତ୍ତଳ, ତୁରାସାଟ୍—ଇନ୍ଦ୍ର ।

( ୪ )

## ଗ୍ରୁହିଁଲ ତ ନାହିଁ

### ରାଗ—ଆଷାଢ଼ଶୁକ୍ଳ

ଗ୍ରୁହିଁଲ ତ ନାହିଁ, ଚକ୍ଷୁକୋଣେ ଗ୍ରୁରୁଚନ୍ଦ୍ରମାମୁହିଁ । ଘୋଷା ।
ଗ୍ରୁମରକୁନ୍ତଳ ବସନ୍ତେ ରୁଷି, ଚନ୍ଦ୍ରାଜଳେ କେଉଁ ତରୁଣ ଭାସି ।
ଚତୁର ସହଚରୀ ଆଗେ ବୋଲେ, ଚତ୍ତ୍ୱରେ କ୍ଷଣ ଧେନୁ ଠିକଏ ହେଲେ ।୧।
ଚରମ ଅଢ଼େ ଡର ଜଭା ହେଲା, ଗ୍ରୁଙ୍କର ସ୍ମୁମୁରେ ଭେଟୁଛି ବୋଲା ।
ଗ୍ରୁଟୁ ଗ୍ରୁତୁରୀ ଚଟୁଳବଚନ, ଗ୍ରୁଶଣ ପଦ କଲା ନିବେଦନ । ୨ ।
ଚିବୁକ କମ୍ପାଇ ହୋଇ ବିକଳ, ଚରଲା ଚରଣନଖେ ଭୂତଳ ।
ଚର ଅରଞ୍ଜିତ ସ୍ୱେଦସମ୍ପଦେ, ଚଡ଼କ ପକାଇ ନିର୍ଦ୍ଧୟେ ହୃଦେ । ୩ ।
ଚନାଏ ଅପରାଧ ନାହିଁ ବୋଲା, ଚେଲ ଅଞ୍ଚଳ ପ୍ରସାରି କହିଲା ।
ଚଣ୍ଡି ମୂରତ ଧଇଲା କା ବୋଲେ, ଚରଣପଙ୍କଜ ଧଇଲେ ହେଲେ । ୪ ।
ଚମ୍ପକଗଜରାଗୀ ପ୍ରଭୁପଣେ, ଚେଟୀଙ୍କ ତୁଲେ ମୁଁ ହୋଇଲା ଜଣେ ।
ଚେର ଦେବା କାଳେ ମୋ ଭାଗ୍ୟବଲ୍ଲୀ, ଚଳି ଉପୁଡ଼ାଇ ଦେଲା କା ବୋଲା ।
ଚଡ଼ାଇ ଜନ୍ମତ ସୁଖପାଦପେ, ଚକାଆଇ ମୂଳ୍ରୁଁ କାଟିଲେ କୋପେ ।
ଚକ୍‌କଣ ନୁହଇ ବୋଲା ନ ଜାଣି, ଚଠା ହେଲା ମୋରେ କାହୁଁକି ଶୁଣି ।୬।
ଚଣ୍ଡାଳ ଦୁର୍ଯୋଗରୁ ହୋଇ ଦୋଷୀ, ଚାହାଁ ଯେବେ ମୋରେ ରହିଛି ଗ୍ରାସି ।
ଚନ୍ଦ୍ର ଥରେ ଆଗ ପଛେ ନବୀନା, ଚତୁର୍ଥ ଉପାୟୁ କରନ୍ତା ସିନା । ୭ ।
ଗ୍ରୁତୁର୍ଥୀବତୀ ନଜକର କର, ଗ୍ରୁଲା ନ ଜାଣେ ମୁଁ ଗରବେ ପୁର ।
ଚରାଳ ଯୁବାଗଣେ ବାନ୍ଧିଥାଇ, ଚୂନା କର ମୋର ତେଡ଼େ ବଡ଼ାଇ । ୮ ।
ଗ୍ରୁରୁବେଣୀର ମୁହିଁ ଅନ୍ତରଙ୍ଗ, ଚଉପଦୀ ଗୀତ ରଚନା ସଙ୍ଗ ।
ଚଉଠେ ନ ରଖିଲା ସେ ସ୍ନେହରୁ, ଚପଳେ ଛଡ଼ାଇ ଦେଇ ଦେହରୁ । ୯ ।
ଗ୍ରୁମୀକରସାରଦେହା ଦେହରେ, ଚୀନବାସ ପରି ଧନ ଯେ ହରେ ।
ଚଉକେ ଅନ୍ତର ନୁହଇ କେବେ, ଗ୍ରୁର ହେଲା ତାହା ସ୍ମୁମୁକୁ ଏବେ ।୧୦।

---

୪ । ଟୀକା—ଚେଟୀ—ଦାସୀ, ଭାଗ୍ୟବଲ୍ଲୀଚେର ଦେବାବେଳେ—ମୋ ଭାଗ୍ୟରୂପ ଲତାରୁ ଚେର ବାହାରିବା ବେଳରେ, ଚନ୍ଦ୍ର—ଗାଳି ଦେଇ, ଚତୁର୍ଥ ଉପାୟ—ଭେଦ ବା ବିଚ୍ଛେଦ, ଚରାଳ—ପତାକା ( ? ), ଗ୍ରୁମୀକର—ସୁବର୍ଣ୍ଣ, ଚୀନବାସ—ସୂକ୍ଷ୍ମ ବସ୍ତ୍ର । ଚକାମୁଆଁ—ଗୋଲାକାର ମୁଆଁ ନାମକ ମିଷ୍ଟାନ୍ନ,

ଚାହିଁଥାଇ ଯାକୁ ଭାଳକେ ଧନେ, ଚେତ ତ ପୁଣି ସେ ପଡ଼େ ନୟନେ ।
ଚୂଦରଧରଙ୍କୁ ଏହା କି କର, ଚତୁରପ୍ଷ କେବେ ନ ହେଲା ପର । ୧୧ ।
ଚଣ୍ଡମୟୂଖମଣ୍ଡଳ ସମାନ, ଚୁହୁଁ ଚୁହୁଁ ଯହୁଁ କଲା ବଦନ ।
ଚୁଳୁକ ବାଜଲା ପରି ମୁଁ ଡରେ, ଚାହିଁକି ପଡ଼ଇ ପହ୍ଲାଙ୍କ ଥରେ । ୧୨ ।
ଚମଟିନେଶା କି ସୁଖ ପାଦରେ, ଚକଟି ପକାଇଲା ଅନାଦରେ ।
ଚଖାଇ ସୁଧା ଯା କଲା ଅନ୍ୟଥା, ଚମତ୍କାର ଲାଗୁଛି ଏହି କଥା । ୧୩ ।
ଚିରନ୍ତନ ଜନ୍ମ ସୁକୃତରାଶି, ଚନ୍ଦ୍ରଚୂଳପାଦ ପ୍ରସାଦେ ମିଶି ।
ଚୁଣ୍ଡେ ଦେଇଥିଲା ବାଳାମଣିକି, ଚିପୁଡ଼ି ଦେଲା ସେ ଭାବ ଏଣିକି । ୧୪ ।
ଚେତ ମୋ ଯେବେ ନ ବଳେ ଅନ୍ୟକୁ, ଚକାମୁଆଁ ସହେ ଦେବୀମାନଙ୍କୁ ।
ଚଳୁଆ ସ୍ୱର ଶାର୍ଦ୍ଦୁଳକୁ ଯେବେ, ଚର୍ବଣ କର ବୋଲି ଦେଲା ଏବେ ।୧୫।
ଚକସ୍ତାଭଙ୍ଗୀ ମୋ ଅଙ୍ଗରେ ହେଜ, ଚଣ୍ଡିକା ସ୍ତୋତ୍ର ପଣ୍ଡିତାଙ୍କୁ ଖୋଜ ।
ଚନ୍ଦ୍ରଚନ୍ଦନ ବୋଳାଇ ମୋଦରେ, ଚୁପସରି ଝାଡ଼ି ଦିଏ ଆଦରେ । ୧୬ ।
ଚୁଲଇ ଯେବେ ମୁଁ ଶୁଭ ସନ୍ଦେଶ, ଚିଠାଉରେ ଲେଖି ରହି ବିଦେଶ ।
ଚୁଙ୍ଗଡ଼ାଘର କୁରେ ଫରମାସେ, ଚରଣ୍ଟ କରେ ଚୁରକୁ ହରଷେ । ୧୭ ।
ଚନ୍ଦ୍ରକୁ ଚନ୍ଦ୍ରିକା ପିଇବା ଆଶେ, ଚକୋର ପରି ଅନୁସରି ପାଶେ ।
ଚାକୁଥାଇ ଅସାଧାରଣ ଫଳ, ଚହକିଲା କାଳେ ସମ୍ପତ୍ତିମୂଳ । ୧୮ ।
ଚିକୁରପାଶରେ ଦାନ୍ତପନିକା, ଚଳାଇବାକୁ ହେବାରୁ ମୋ ଦକା ।
ଚୁଳୁରେ କରଜ ଚରୁଣୀ ପରି, ଚାରି ସଜଡ଼ାଇ ଆଶ୍ୱାସି କରି । ୧୯ ।
ଚେତା ବିହୁନେ ପହୁଡ଼ିବା କାଳେ, ଚାପଇ-ଚରଣ ଅଳତାବୋଳେ ।
ଚେଉଲେ ଯାହା ବୋଲେ ଲଭି ଲାଜ, ଚେତାଉ ନାହିଁ ସେ ରସକୁ ଆଜ ॥
ଚନ୍ଦ୍ରିକାବିହୀନ ରଜନୀକାଳେ, ଚନ୍ଦନୀସୋପାନ ଉଠିବାବେଳେ ।
ଚନ୍ଦ୍ରଦୀପ ତା ଆଗରେ ନ ଥିଲେ, ଚେତନା ମୋ ଦେହେ ନ ଥାଇ ଭଲେ ॥
ଚୁନ୍ଦୁଆ ଅବନ୍ଧା ମନ୍ଦିର ତଳେ, ଚୁଲଇ ଯେବେ କେବେ କୁତୂହଳେ ।
ଚଢ଼ପଦବୀ ଦାସୀଙ୍କ ଉପରେ, ଚୁପଡ଼ି ଫରମାସଇ କୋପରେ । ୨୨ ।
ଚୁକଚକ୍ୟବନ୍ତ ସୁନ୍ଦର ଗାଲେ, ଚୁମ୍ବଇ ଯେବେ ମୁଁ କାମଅମଳେ ।
ଚମକଇ ଭିଚୁ ବୋଲି ଏ ଡରେ, ଚୁମୁତ୍କାର ରବ ନ କରେ ଥରେ ।୨୩।

---

ଚକସ୍ତାଭଙ୍ଗୀ—ସ୍ୱାସ୍ଥ୍ୟଭଙ୍ଗ, ଚନ୍ଦ୍ର—କର୍ପୂର, ଚୁଙ୍ଗଡ଼ାଘର—ଗନ୍ଧାଘର ବା ସରଘର, ଦନ୍ତପନ୍ତିକା—( ଏଠାରେ ) ପାନିଆ, ଚନ୍ଦନୀସୋପାନ—ମଣ୍ଡପରପାହାଚ, ଚଣ୍ଡମୟୂଖ—ସୂର୍ଯ୍ୟ, ଚଉଡ଼ାଇ ଦେଇ—ଚଡ଼କାଇ ଦେଇ ବା ଫଟାଇ ଦେଇ ।

ଚଉଦରୁ ବଳି ବୟସ ହେଲା, ଚଞ୍ଚଳ ଭ୍ରମ ତା କେବେଁ ନ ଗଲା ।
ଚାକରୀ ଛଳେ କରୁଥାଏ ହଠ, ଚଉଡ଼ାଇ ଦେଇ କି ସ୍ନେହ ଘଟ । ୨୫ ।
ଚାହାଁ ଚାହିଁ ନାହିଁ ଆନରେ ବୋଲି, ଚକାରେ ନୟନ ଯେତେ ମୁଁ କଲି ।
ଚଉବିଂଶ ପଦୁଁ ବଳେ ଗଣିଲେ, ଚତୁର ଶ୍ରୀ ଗୋଷ୍ଠରାୟ ଭଣିଲେ ।
ଚାହିଁଲା ତ ନାହିଁ, ଚକ୍ଷୁକୋଣେ ଚାରୁଚନ୍ଦ୍ରମାମୁହାଁ । ୨୫ ।

( ୫ )

ସେ ପୀରତି ସତେ

ରାଗ—ଆଷାଢ଼ଶୁକ୍ଳ

ସେ ପୀରତି ସତେ, କି ପଦାର୍ଥ କହ ପଣ୍ଡିତେ ମୋତେ । ଘୋଷା ।
ଶାରଦା ନୁହେଁ କରେ ବାବଦୂକ, ଅମଳ ନୋହେ ଅତି ଉନ୍ମାଦକ,
ହୋଇ ହୃଦୟ ଅଦୃଶ୍ୟ ପଦକ, ହଜାଇ ଦିଅଇ ବିବେକଯାକ । ୧ ।
ସୁମ ନୋହି କରେ ଦିବ୍ୟ ସୁଗନ୍ଧ, ସମକଇ ନାହିଁ ନୁହଇ କନ୍ଧ,
ପଟଳ ନୋହି ଚକ୍ଷୁ କରେ ଅନ୍ଧ, ଶୃଙ୍ଖଳ ନୋହେ ଦୃଢ଼େ କରେ ବନ୍ଧ । ୨ ।
ନୋହେ ବଇରାଗ୍ୟ ତେବେ ସେ ଦେହେ, ତାହା ବିନା ଯତି ଲବେ ନ ରହେ
ଅଜ୍ଞାନ କରେ ମୂର୍ଚ୍ଛାପଣ ନୋହେ, ଅନଳ ନୋହି ଶୀର୍ଣ୍ଣ କରେ ବିରହେ । ୩ ।
ନୋହେ ଚନ୍ଦ୍ରକର କରେ ଆହ୍ଲାଦ, ଅମୃତ ନୁହେଁ ସେ ତହୁଁ ସୁଆଦ,
ଶଙ୍କା ନୁହେଁ ଜାତ କରେ ବିଷାଦ, ବଢ଼ାଏ ଗରବ ନୁହେଁ ସମ୍ପଦ । ୪ ।
ନୁହଇ ଶରୀରରଖା ମନ୍ତ୍ରର, ଦର ହେତୁରୁ ନ ଜନ୍ମାଏ ଦର,
ହୁଏ ନିଦାନଭୂତ ବିନାଦର, ପଲ୍ଲବାଏ ଅସଦୃଶେ ଆଦର । ୫ ।
ନୋହେ ଧୂକନେତ୍ରଗୋଳା କଜ୍ଜଳ, ଦୃଶ୍ୟ କରାଏ ଗାଢ଼ତମ ସ୍ଥୂଳ,
ଲଙ୍ଘାଏ ଦୁର୍ଗ ନୋହେ ଜଙ୍ଘାବଳ, ବୁଡ଼ାଇ ଦିଅଇ ନୁହଇ ଜଳ । ୬ ।
ଅତି ଚମତ୍କାରତର ତା ଲୀଳା, ନାହିଁ ଦେହ ନୁହେଁ ଶିଳ୍ପକୁଶଳା,
ଲେଖଇ ସଂସାରେ ନ ରଖି ତୁଳା, ପ୍ରତି ଦିଗେ ପ୍ରିୟଜନ ପିତୁଳା । ୭ ।
ଅଭିପ୍ରେତ ଗଲେ ନୟନେ ପଡ଼ି, ଅଟକଇ ପଦ ନୁହଇ ହଡ଼ି,
ନ ଥାଏ ଭୃଙ୍ଗ ରହିଥାଏ ଭିଡ଼ି, ନୁହଇ ପରାଣ ନୁହଇ ଘୁଡ଼ି । ୮ ।

---

୫ । ଟୀକା—ଶାରଦା—ସରସ୍ୱତୀ, ବାବଦୂକ—ବାଚାଳ, ପଦକ—ହାର ମଧ୍ୟବର୍ତ୍ତୀ ଅଳଙ୍କାରବିଶେଷ, ସୁମ—ଫୁଲ, କନ୍ଧ—ଅରଣ୍ୟଜାତୀୟ ଲୋକ, ଧୂକ—ପେଚା, ଜଙ୍ଘାବଳ—ବେଗଗାମୀ ଦୂତ, ହଡ଼ି—ହରିକାଠ, ପ୍ରତିବନ୍ଧକ;

ପୁତ୍ର କଳତ୍ର ସମସ୍ତ ଅବାସେ, ରୁଚି ବିନା ବିଷ ପରି ଆଭାସେ,
ଚିନ୍ତା ଜନ୍ମାଇ ଦିଅଇ ମାନସେ, ଅହୋ କି ବିଚିତ୍ର ରସନଦୀ ସେ । ୯ ।
ବିଚ୍ଛେଦ କ୍ଷଣ କରଇ ବରଷେ, ସଙ୍ଗମେ ଅଶେଷ ସୁଖ ବରଷେ,
ବରି ଅଙ୍କରି ସବୁ ଭାବରି ସେ, ଅତି ବିଷମ ହୁଏ ନବ ରସେ । ୧୦ ।
ସନ୍ତପ୍ତ କରେ ନୁହଇ ତପନ, ଅନ୍ତକ ନୁହେଁ ହରଇ ଜୀବନ,
ମନ୍ତୁ ଜନମେ ନୁହଇ ମଦନ, ଦନୁଜ ନୋହେ ସେ ପିଶିତାଶନ । ୧୧ ।
ନୁହଇ ପରଶୁ କେଦାର ପରି, ପାରଇ ଫଣୀ ଫଣା ମଣି ହରି,
ମନୋରଥ ପଥେ ନ ଥିବା ଶିରୀ, ହେଲେ ଦିଅଇ କରଗତ କରି । ୧୨ ।
ନୋହେ ବିହଲ ଉପାନହ ଯୋଡ଼ି, କଣ୍ଟକେ କଟାକ୍ଷ ନ କରେ ଅଢ଼ି,
ବୃଷ୍ଟିବାରଣ ଛତ୍ର ନ ପକଡ଼ି, ନ ମାନେ ନଭମାସ ନିଶା ଝଡ଼ି । ୧୩ ।
ନୁହଇ ପାଷାଣ ମୂଷା ସମାନ, ନ ମାନେ ଗଡ଼ପଣେ ଦାଢ଼ ମୂନ,
ନୁହଇ ଖେଚର ସିଦ୍ଧସାଧନ, ଧନଦାଳୟକୁ ପେଷଇ ମନ । ୧୪ ।
ଫଳେ ନାନାଫଳ ନୋହେ ବ୍ରତତୀ, ସ୍ୱର ସନ୍ଧଚରୀ ନୁହେ କେଳତି,
ମର୍ମରେ ଭେଦଇ ନୁହଇ କାତି, ମଦିରା ନୋହି ଯା ହରଇ ଜାତି । ୧୫ ।
ଅବି ମୁନିଙ୍କର ଗୋତ୍ର ସମ୍ଭବୀ; ଭୂଦେବ ଗୁରୁଗୁରୁ କବିରବି,
ସଂଶୟ ଧ୍ୱଂସ ନୋହିବାରୁ କହୁ, ବିଗ୍ରହ ମାନସେ ପଗୁରୁଅଛୁ ।
ସେ ପୀରତି ସତେ, କି ପଦାର୍ଥ କହ ପଣ୍ଡିତେ ମୋତେ । ୧୬ ।

( ୬ )

ଜ୍ୟେଷ୍ଠ ଚୁମ୍ବା

ତୋ ଗୁରୁ ଗୁହାଣି ଗୁହିଁ, ମରି ତୁ ଅବୁରି ସାରି ପକା ପଛେ, ମୋ ନିଅଳୀ, ମୋ ଦେହ ତ ସହୁ ନାହିଁ । ୧ । ଦିଅ ଯେତେ ଇଚ୍ଛା ଦଣ୍ଡ, ଝୁମି କାମ ସଙ୍ଗେ ଝୁଣି ଦେବ ସିନା, ମୋ ନିଅଳୀ, ଝଳ ଝଳମଲ ଗଣ୍ଡ ।। ହେବୁଟି କି ଶିରଗଣ୍ଡ, ଢାଳ ସହୁନାହିଁ ବାଲମୃଗଦୃଶା, ମୋ ନିଅଳୀ, ନୂଆ ବିକଶିତ ଶୋଭା । ୩ । ତୋହ ପରି ତୁହି ସିନା, ବିଜେ କଲ୍ପ ପୂରେ ପୂରି ରହିଥାଏ, ମୋ ନିଅଳୀ, ବନଜ-ବନ-ବାସନା ।୪। ଅଛୁ ଯେବେ ଅନୁକମ୍ପା, ଛାଡ଼ି ଝଙ୍କି ପଛେ ଗ୍ଲୁଚରେ ପ୍ରହାର, ମୋ ନିଅଳୀ, ହୀରା ବୁଲକି ନ କମ୍ପା ।।

---

ପିଶିତାଶନ—ମାଂସଭକ୍ଷକ, ପରଶୁକେଦାର—ଏକପ୍ରକାର ଗଦ, ଏହାର ଗନ୍ଧରେ ସାପ ମୁଣ୍ଡ ନୁଆଇଁ ପଡ଼ି ରହେ । ଉପାନହ—ଯୋତା, ନଭମାସ—ଶ୍ରାବଣମାସ ।

୬ । ଟୀକା—ବନଜବନବାସନା—ପଦ୍ମବନର ସୁବାସ, ହୀରାବୁଲକି—ହୀରାର ଦଣ୍ଡୀ ।

ପାସୋର ବାସବ ଲାଜ, ପଛକୁ ପକାଇ ନ ଦେଲେଂ ନ ଚଳେ, ମୋ ନିଅଳୀ, ବିଧି ନିଷେଧକୁ ଅଜ । ୬ । ତୋ କୁଚ ତ ଉରକଶ, ସବୁ ଗୁମାନ ଅଜ କେତେବେଳକୁ, ମୋ ନିଅଳୀ, ଥରେ ମୋହ କରେ କଷ । ୭ । ଚୁମ୍ବନେ କଲେ ଶରଧା, ଚରଣଠାରୁ କବରୀଯାଏ ତୋର, ମୋ ନିଅଳୀ, କାହିଁ ପୁର ନାହିଁ ସୁଧା । ୮ । ଚତୁରଦଶ ଭୁବନେ, ରସବତୀ ଚନ୍ଦ ଚୂଡ଼ାମଣି ବୋଲି, ମୋ ନିଅଳୀ, ତୋ ବିନା ଆନେ ନ ମାନେ । ୯ । କାହିଁକି ଗୁଲ୍ଲଛୁ ତଳେ, ଘାଣ୍ଟି ହେଉଅଛ କଣ୍ଠୀରବମଧ୍ୟା, ମୋ ନିଅଳୀ, ମୋ ମନଯାକ ବିକଳେ । ୧୦ । ଆନ ନାହିଁ ତୋହ ବିନା, ଅଷ୍ଟାଦୁର୍ଗଧରାବର ଅରେ ଧୀରା, ମୋ ନିଅଳୀ, ତୋହର ଅଧୀନ ସିନା । ୧୧ ।

( ୭ )

### ଜାଇଫୁଲ ଚୁମ୍ବା

କରଗତ ଚନ୍ଦମୁହିଁ, କରି ଗଢ ରତେ ରଜନୀ ପୁହାଏ, ଜାଇଫୁଲ ରେ ତୋ ରୂପ ଲାବଣ୍ୟ ଚୁହିଁ । ୧ । ଖରପରଶୁମୋହନା, ଖଣ୍ଡପରସା ବଚନକୁ କହ, ଜାଇଫୁଲ ରେ, ଖଣ୍ଡ ହୃଦୟ ବେଦନା । ୨ । ଗିରୀଷମ କାଳେ ଧନ, ଗିରିସମ କୁଚେ ଲେପି ଚନ୍ଦନ, ଜାଇଫୁଲ ରେ, କରୁଥାଉ ଆଲିଙ୍ଗନ । ୩ । ଘନସାର ମୋ ହୃଦରୁ, ଘନସାରକେଶୀ ଝାଡ଼ି ଦେଇ କରି, ଜାଇଫୁଲ ରେ, ଗାଢ଼େ ଆଲିଙ୍ଗନ କରୁ । ୪ । ନାଗରମଣିଙ୍କ ତତେ, ନାଗମଣିକୁମ୍ଭସ୍ତନା ସମାନ ରେ, ଜାଇଫୁଲ ରେ, ହୋଇବେ ନୋହେ ପରତେ । ୫ । ଚନ୍ଦ୍ରମୁହିଁ ପ୍ରାଣଧନ, ଚନ୍ଦ୍ର ମୁହିଁ ଚୁଳି ରତ୍ତ କଲା କାଳେ, ଜାଇଫୁଲ ରେ, ଶୀତ୍କାରେ ଭଜୁ ଅଜ୍ଞାନ । ୬ । ଛୁଇ ବିପରୀତ ମୋର, ଛୁଇଟି ପରାଏ ଦେହକୁ ନ ଛୁଡ଼େ, ଜାଇଫୁଲ ରେ, ସେରୂପେ ଥିବି ପାଶର । ୭ । ଜାତୀକରଜା ସୁକେଶୀ, ଜାତକର ଦବ୍ୟହୀରକ ସୁଦନ୍ତୀ, ଜାଇଫୁଲ ରେ, ଚନ୍ଦ୍ରଚନ୍ଦ୍ରମା ସୁହାସୀ । ୮ । ଝଳ ସୁନାଅଙ୍ଗୀ ରତେ, ଝଳ ସୁନା ପରି ଗାଢ଼େ ଭିଡ଼ି କରି, ଜାଇଫୁଲ ରେ, ନ ଦେଉ କି ସୁଖ ମତେ । ୯ । ନିଶାରେ ସିତକରଜା,

---

୭ । ଟୀକା—ଖଣ୍ଡପରଶୁମୋହନା—ଶିବଚିତ୍ତହାରିଣୀ, ଘନସାର—କର୍ପୂର ବା ଚନ୍ଦନ, ଘନସାରକେଶୀ—କଜ୍ଜଳକୁନ୍ତଳା, ନାଗରମଣୀ—ପାତାଳପୁରବାସିନୀ, ନାଗମଣିକୁମ୍ଭ—ବଡ଼ ହାତୀର କୁମ୍ଭସ୍ଥଳ, ଛୁଇ ବିପରୀତ—ଇଚ୍ଛା, ଜାତକର—ଉତ୍କୃଷ୍ଟ, ଚନ୍ଦ୍ର—କର୍ପୂର, ସିତକରଜା—ଶୁକ୍ଳବର୍ଣ୍ଣ ନଖ ଯାହାର,

ନିଶାରେ ଶୀତରେ ଆଦର ନ କର, ଜାଇଫୁଲ ରେ, ଅଙ୍ଗସଙ୍ଗେ ଦେଇ ମଜା । ୧୦ । ଟିକାଏ ବିକଳ ନୋହି, ଟୀକା ଏବେ କାମରଜାର ଭାଙ୍ଗିବି, ଜାଇଫୁଲ ରେ, ତୋ ସାହାରେ ପ୍ରାଣସହି । ୧୧ । ଠକିବି ନାହିଁ ବୋଲି, ଠକିଲ ବିରାଗ ପାଇଣ ମଦନ, ଜାଇଫୁଲ ରେ, ପଳାଏ ରତେ ଛଇଲି । ୧୨ । ଡାକ କରଗତ ତୋତେ, ଡାକ କରିଅଛୁ ଡାକମଣ୍ଟା ସବୁ, ଜାଇଫୁଲ ରେ, ନୁହଇ ମୁଁ କଦାଚିତେ । ୧୩ । ଚାଲ ମୁଧାକର-ମୁଖୀ, ଚାଲ ସୁଧା କି ଭଙ୍ଗୀରେ ଗୃହୁଁ ଆଜ, ଜାଇଫୁଲ ରେ, ଉପୁଜାଇ କେତେ ସୁଖୀ । ୧୪ । ଅବଧର ତୋ ଆଜ୍ଞାକୁ, ଅବଧ ରିପୁ କାମକୁ ଦଣ୍ଡ ଦେବି, ଜାଇଫୁଲ ରେ, ସେବାରେ ଘେନି ମନକୁ । ୧୫ । ତାରତମ କଲେ ସହି, ତାରତ ମଧ୍ୟରେ କଲଙ୍କ ମୁଖକୁ, ଜାଇଫୁଲ ରେ, ଇନ୍ଦ୍ରସମ ହେବ କେହି ॥ ଥର ଥରକେ ମୋ ଅଙ୍ଗ, ଥରଥର ହୁଏ କାମଶରଘାତେ, ଜାଇଫୁଲ ରେ, ଋତୁରେ ନ ପାଏ ସଙ୍ଗ । ୧୭ । ଦରଶନକମୋହିନୀ, ଦରଶନ ବିନା ତୋହର କାମକୁ, ଜାଇଫୁଲ ରେ, ନୋହିଲେ ଥାଏ ନ ମାନି । ୧୮ । ଧରମ ନ କର ନିକ, ଧର ମନରେ ପାଇଛୁ ମୁହିଁ ହେମ, ଜାଇଫୁଲ ରେ, ଚମ୍ପକସୁବରନୀକି । ୧୯ । ନରବର-ସୁତା ଘେନ, ନରବରଜେ ସମାନ ସତେ ନାହିଁ, ଜାଇଫୁଲ ରେ, ପାଇ ତୋ ପ୍ରେମରତନ । ୨୦ । ପରମଦା-ବତ ସହି, ପରମ ଦାରୁଣ ଫୁଲଧନୁ ପାଦେ, ଜାଇଫୁଲ ରେ, ଅନୁସର ଅଛୁ ମୁହିଁ । ୨୧ । ଫୁଲୁଥାଏ ଯେବେ ନାସା, ଫୁଲୁଥାଏ କାମ ମନ ସାହା ପାଇ, ଜାଇଫୁଲ ରେ, କରିଣ ତୋତେ ଭରସା । ୨୨ । ବରଷ ଶହେ ତପରେ, ବଡ ସଂଶୟେ ଖଣ୍ଡ ପୁବେ ପାଇଛୁ, ଜାଇଫୁଲ ରେ, ଶିବଙ୍କୁ ମନାଇ ବାରେ । ୨୩ । ଭାରତୀକି ଶୁଣି ତୋର, ଭାରତୀ କି ପାଣ୍ଟି ବୀଣା ଫିଙ୍ଗି ଦେବେ, ଜାଇଫୁଲ ରେ, ଲଜ୍ଜାରେ ହୋଇ କାତର । ୨୪ । ମନମଥ ନାମ ଯାର, ମନମଥନୀ ତୁ ଅଟୁ ତାହାର, ଜାଇଫୁଲ ରେ, ଶଶିହାସୀ ସମାଦର ॥ ଜୀବନଜବଦନାକୁ, ଜୀବନ ଯତନେ ବିକ ଦେଇଅଛୁ, ଜାଇଫୁଲ ରେ, କି ଡର କାମ ଘାତକୁ । ୨୬ । ରତିକର ତୁଳା ତୋର, ରତି କରକେରଦନା

---

ନିଶାରେ—ଅନୁରାଗାଧିକ୍ୟରେ, ନିଶାରେ—ରାତରେ, ଟୀକା—ଟେକ, ବଢ଼ିମା; ଅବଧ ରିପୁ—ଦୁର୍ଜୟ ଶତ୍ରୁ, ନରବରସୁତା—ରାଜକନ୍ୟା, ନରବରଜ—ନରଶ୍ରେଷ୍ଠ, ଭାରତୀ—କଥା ଓ ସରସ୍ୱତୀ, ଜୀବନଜବଦନା—ପଦ୍ମମୁଖୀ, ରତିକର ତୁଳା—ଅତି ସାମାନ୍ୟ ଓଜନରେ, ସୁରମଣି—ଇନ୍ଦ୍ରମଣି ।

ଉଣାହେବ, ଜାଇଫୁଲ ରେ, ସମ କେ ଅଛୁ ସଂସାରେ । ୨୭ । ଲକ୍ଷ ଦେବୀ ସେବା କର, ଲକ୍ଷ୍ୟ ଦେବ ତୋତେ ବିଗୁରୁ କବିଏ, ଜାଇଫୁଲ ରେ, ନ ପାଇଲେ ତନ୍ନ ପ୍ରଶ୍ନ । ୨୮ । ବଳାଅଇ କହ ଧନ, ବଳାଅଇ ଶୂର ରଖି ଜୀବନରେ, ଜାଇଫୁଲ ରେ, ତୋ ଅଧର ସୁଧାପାନ । ୨୯ । ସାରସଗତି ମହୀଳା, ସାରସଙ୍ଗତ ପାଇ ମୁହିଁ ନାରଚେ, ଜାଇଫୁଲ ରେ, ଭାବେ ହେଉ-ଥାଏ ଭୋଳା । ୩୦ । ସୁବରନକୁ ତୋହର, ସୁବରନ ସବୁ ନୋହଣ ଅନଳେ, ଜାଇଫୁଲ ରେ, ଦହୁଅଛୁ ତା ଶରୀର । ୩୧ । ସୁରମଣୀ ପାଶେ ଥିଲେ, ସୁରମଣି ପଦ ବଳାଙ୍କାରେ ମୋର, ଜାଇଫୁଲ ରେ, ପଡ଼ିଥାଏ ପାଦ ତଳେ । ୩୨ । ହରବର ପାଇ କେତେ, ହର ବର ପାଇ ପାଇଲ ତତେ, ଜାଇଫୁଲ ରେ, ନ ଥିଲା ମନେ ପରତେ । ୩୩ । ଷିତ ପହଞ୍ଚିବା ଭାବ, ଷିତପ ହରିଚନ୍ଦନ କହେ ତତେ, ଜାଇଫୁଲ ରେ, ଦେଖି ଦେବକୁ ତେଜିବ । ୩୪ ।

( ୮ )

କାମଦୁହା ଚଉତିଶା

ରାଗ—ପୁରବୀ

କିଶୋରୀଙ୍କ ବର ଯଦୁପତି, କରି ଚିର ପରବାସେ ସ୍ଥିତି ।
କୁନ୍ଦକଇରବହାସୀଙ୍କ ପୂରୁବ ରସବଶ ହୋଇ ଜଳପନ୍ତି ।
ଆରେ କଳଭାଷି । କୁଶୋଦରୀ କମନୀୟ ମୁଖଶଶୀ ।
କଳାକଲ୍ଲୋଳିନୀ କେଳିକଳହଂସୀ, କାମ ମଦରୀ ମହତ୍ତ୍ୱ ସମୁଲ୍ଲାସୀ । ୧ ।
ଖଟଣି କିଙ୍କରଙ୍କର ମେଳେ, ଖଟିଥିବ ଯେ ତୋ ଖଟତଳେ ।
ଖମଣିମଣ୍ଡଳ ଜିଣି ଯିବା ଫଳ ଲୁଟିଯିବ ତା ଚରଣ ମୂଳେ ।
ଆରେ ଖେଳାଲୋଳା, ଖଞ୍ଜରୀଟରୁ ବଳେ ତୋ ନେତ୍ରଲୀଳା ।
ଖୁରଅର୍ଦ୍ଧ ନ ଥାଇ ସ୍ନେହରେ ହେଲା, ଖଣ୍ଡପରଶୁ ମନମୋହନଶୀଳା । ୨ ।
ଗତିରେ ବିବିଧ ଭଙ୍ଗୀ ଭରୁ, ଗଜେନ୍ଦ୍ର ଗରବ ହେଲେ ହରୁ ।
ଗଗନ ସଲିଳଚୁରୀ ହଂସକୁଳ ଦିନଯାଏ ଡରି ମରୁ ମରୁ ।

---

୮ । ଟୀକା—କୁନ୍ଦକୈରବହାସୀ—କୁନ୍ଦଫୁଲ ଓ କଇଁଫଳ ପରି ହାସ ଯାହାର, ଖଟଣୀ—ସେବା, ଖୁରଅର୍ଦ୍ଧ—ମୁହୂର୍ତ୍ତିମାତ୍ର, ଗର—ବିଷ, ଘୋର

ଅରେ ଗଣିଧନ, ଗୁଣବତୀ ମୁଁ ଗୃହକ ନବଘନ ।
ଗତିରସ ହେଲା କେତେ ସୁଖମାନ, ଗର ଗିଳିବାକୁ ହେଉଅଛି ମନ । ୩ ।
ଘଟପୀନସ୍ତନା ଗୁଚ୍ଛ ବେଣୀ, ଘେନାଘେନି କେତେ ଜାଣୁ ମୃଗୀ,
ଘୋରତର ସ୍ମରପ୍ରତାପ ସାଗର ମଧ୍ୟରୁ ତୁ ମୋର ଉଦ୍ଧାରଣୀ ।
ଅରେ ଘନକେଶା, ଘନଜଘନା ମହୀମଣ୍ଡନ ବେଶା ।
ଘୋରି ଶ୍ରୀଖଣ୍ଡବାସିନୀ ବରଯୋଷା, ଘାରିପକାଇଛୁ ତୋ ବିଚ୍ଛେଦଦଶା ।୪ ।
ନ ପାରେ ମା ବୋଲି ଅଡୁଥାଉ, ନମ୍ରେ କରଯୁଗ ଯୋଡୁଥାଉ,
ନାଶ ପରି ଗେଲେ ମୋଡୁଥାଉ, ହସି ନତନୁ ଲଜ୍ଜାଇ ଲେଉଟୁଥାଉ ।
ଅରେ ନତ ଅଙ୍ଗୀ, ନୂଅ ବୟସୀ ନର୍ମରଞ୍ଜିଲାପାଙ୍ଗୀ ।
ନେଇ ବରଛୁ ତୁ ଏକା ଜାଣୁ ଫିଙ୍ଗି, ନାହିଁ କରିବାରେ ଥାଏ କେତେ ଭଙ୍ଗୀ ।୫।
ଚରଣୁ ଚିକୁର ଯାଏ ତୋର, ଚୁମ୍ବିବାରେ ଚଉ ଥାଏ ମୋର,
ଚେତା ବହୀନେ ପଡୁଥାଉ, ଚେଲ ଗ୍ରେରିଇ ମୁଁ କରେ ଦିଗମ୍ବର ।
ଅରେ ଚନ୍ଦ୍ରମୁଖୀ, ଚେତ ନମକ କି ଲଜେ ବୁଜୁ ଆଖି ।
ଚେଲ କରୁ ମୋତେ ମୋ ଅଙ୍ଗରେ ଲାଖି, ଚକ୍ଷୁଇଷ୍ଟ ଅଙ୍ଗ ନ ପାରଇ ଦେଖି ।।
ଛଣା ପୀୟୂଷ ସଦୃଶ ରସେ, ଛପିଥାଏ ଲାଜ କି ବିଳାସେ,
ଛ ଗୃହଦିଗ ସୁନ୍ଦର ଦିଶୁଥାଏ, ଛଇଳା ଲାବଣ୍ୟ ପରକାଶେ ।
ଅରେ ଛବିନିଧି, ଛାମୁ ଛାଡ଼ିବାକୁ କଲା ମନ୍ଦ ବିଧି ।
ଛେଦ ହୋଇବାକୁ ଜାତ ହୁଏ ବୁଦ୍ଧି, ଛେଳି ମାରି ହେବ ରହିଥାଉ ସିଦ୍ଧି ।୭।
ଜପାମାଳା ତୁ ମୋ ସ୍ୱପ୍ନବାସ୍ତୁ, ଯେତେବେଳେ ନିକୁଞ୍ଜକୁ ଅସୁ,
ଜଙ୍ଗମ ହେବାର ଜମ୍ବୁନଦ ସାର ଜଗତଜୀବାତୁ ପରି ଦିଶୁ ।
ଅରେ ଜବାଧରା, ଜମ୍ବାରିତମଣି ନୀଳତର ତାରା ।
ଜମ୍ବୁନଦ ଧରାଧର ପୟୋଧରା, ଜକାଜକି କରିଛୁକା ଧୁରନ୍ଧରା । ୮ ।
ଝୁଲି ଝୁଲି ଗୃହ ମୋଦମଦେ, ଝୁମୁ ଝୁମୁ ତୋ ଝୁଣ୍ଟିଆ ନାଦେ ।
ଝଟତ ନିର୍ଜରପ୍ରଭୁ-ଶିରି ଶିର ଝରାକୁ ମୁଁ ଝୁଣ୍ଟିଯାଏ ପାଦେ ।
ଅରେ ଝଳି ଗୋରି, ଝୁଲି ଜାଣୁ ଭଲ ହେଲେ ମୋହ ପରି,
ଝଳକଇ ହାଲବ୍ୟାଜ ସୁଧା ଝରି, ଝଟ ଝଟ ହେଉଥାଏ ଭୂଷା ଶିରି । ୯ ।

---

ଶ୍ରୀଖଣ୍ଡବାସିନୀ—ଘୋରି ହୋଇଥିବା ଚନ୍ଦନ ପରି ଯାହାର ଦେହ ବାସେ, ନର୍ମ—ପରିହାସ, ଚିକୁର – କେଶ, ଚେଲ—ବସ୍ତ୍ର, ଦିଗମ୍ବର—ବସ୍ତ୍ରଶୂନ୍ୟ, ଜମ୍ବୁନଦଧରାଧର—ମେରୁପର୍ବତ, ନିର୍ଜର ପ୍ରଭୁ—ଇନ୍ଦ୍ର, ମଣିସାନୁ—( ଏଠାରେ )

ଜମ୍ବମୁଖେ ମଣିସାନୁ ଥାଏ, ଜାକଣ୍ଠେ ପୀଯୂଷଭାନୁ ଥାଏ,
ଜଥ ଛୁଇଲେ ନାଠ ବାଦେ କର ହଠ ବୁଲ୍ଚି ଝୁଲି କ ମାନୁଥାଏ ।
ଅରେ ନାଗରବର, ନୃତ୍ୟ କରୁଥାଏ ପୟୋଧରେ ହାର ।
ନେଜଦ୍ରବ୍ୟ ଏକା ସିନା ସାକ୍ଷୀ ମୋର, ନାଦେ ତୋଷୁଥାଏ ମଧ୍ୟ ଅଲଙ୍କାର ॥
ଝୋପି ଝୋପି ଝାଳ ଚୂର୍ଣ୍ଣ କେଶେ, ଝିକ ଝିକ ମୋତି ପର ଦଶେ,
ଝେକ ଝେକ ଘେନ ଯାଉଥାଉ ସ୍ୱର୍ଗସୁଖ ବଡ଼ଭାଜ ବଢ଼ ରସେ ।
ଅରେ ଝଞ୍ଜନା, ଝଲି ପଡୁଥାଏ ମୋର ବିବେଚନା ।
ଝାଣି ଘେନଯାଉ ହେଲେ ମୋ ବେଦନା, ଝିକାସ୍ଥିତ ତୁ ରସିକା-
ଚକ୍ରେ ସିନା । ୧୧ ।
ଠବୁଲି ମୁଖ ସୁଧାଧାମ, ଠାଣି ତ ହିଲ୍ଲୋକେ ନିରୂପମ,
ଠୁଳ ଦେହଥାଏ ଥରେ ଥରେ ନେଜ ନୀଳକୁଞ୍ଚ ଛୁଳା ଶୋଭାସ୍ତୋମ ।
ଅରେ ଠିକହାସି, ଠକପଣ ପୁଣି କିଛୁ ଥାଏ ମିଶି ।
ଠଉରାଇବ କେ ତୋ ବିଭ୍ରମରାଶି, ଠାର ନେଜାନ୍ତ ମନମୋହନପାଶୀ ।୧୨।
ଡରୁଅଛି ପର ଝେକ ଚଲ୍ଲୀ, ଡେର କର୍ଣ୍ଣପାଶ ନ ଚହଲି ।
ଡାକଲେଣି ସଖୀ ଦେଉଅଛୁ ରଖି ଏବୁଲୁ ଏତିକ ହେଉ ବୋଲି ।
ଅରେ ଡାକକଟି, ଡଆଁ ମାର ଯିବାକୁ ବସନ୍ତେ ହଟି ।
ଡକା କରଇ ମୁଁ ବନ୍ଧୁ ସରଳଟି, ଡୋଳା କରାଉ ଅପାଙ୍ଗତଟି ନଠୀ । ୧୩ ।
ଢାଳ ଅନୁକମ୍ପା ରସଝରେ, ଢୁକାଇ ମୋ ଉରେ ପୟୋଧର ।
ଢୋକେ ଢୋକେ କର ପିଅଉ ନାଗରୀମଣି ଅତି ସ୍ୱାଦୁ ଶୋଣାଧର ।
ଅରେ ଢଳାଢଳା, ଢାଙ୍କି ପକ୍ଷ୍ମ ଫେଡ଼ି ପୁଣି ରଚୁ ଖେଳା ।
ଢକ୍କା ସ୍ୱରରଣେ ତୋ କିଙ୍କିଣୀମାଳା; ଢମ ଢମାଳି ଶ୍ରବଣେ
ଅନୁକୂଳା । ୧୪ ।
ଅସିତ ତିଲକ ଲଲାଟରେ, ଅଳକ ଅନାଇ ଅଳୀକରେ,
ଅମ୍ଳାନ ଶ୍ରୀମୁଖସରୋଜରେ ମୋତେ ଅଳି କର ବୋଲି ଅଳୀକରେ ।
ଅରେ ଅନାଦୃତା, ଅଙ୍ଗୀକାର କରୁ ହୋଇ ଅନାଦୃତା ।
ଅନର୍ଗଳ ଅଧିକାର ପରଚିତା, ଅନଳସ ସୁଖଦାନ କଳ୍ପଲତା । ୧୫ ।

---

ଭଲ୍ଲ ସଦ୍ଗୁଣ ସୂଚକ, ବଡ଼ଭାଜ—ଚନ୍ଦ୍ରଶାଳା, ରସିକାଚକ୍ରେ—ରସିକାସମୂହରେ, ଝିକାସ୍ଥିତ—ସମ୍ଭ୍ରାନ୍ତ, ଶୋଭାସ୍ତୋମ—ଶୋଭାସମୂହ, ଚଲ୍ଲୀ—ଭ୍ରୂଲତା, ଶୋଣାଧର—ରକ୍ତବର୍ଣ୍ଣ ଓଷ୍ଠ, ଅସିତ—କୃଷ୍ଣ, ଅଳକ—ଭ୍ରମରକୁ, ଅଳକର—

ତୁଙ୍ଗସ୍ତନେ ମୋତେ କରୁଥିବୁ, ତରଳ ମସାର ନାଡ଼ ବନ୍ଧୁ,
ତରଣିଜାତଟ ତାପିଞ୍ଛ ବିଟପ ତଳେ ନ ସଞ୍ଚରୁ ନିନ୍ଦା ଡରୁ ।
ଅରେ ତନୁଦରି, ତାଙ୍କ ତରଙ୍କ ତୁ ଜାଣୁ କେତେ ପରି ।
ତୁଲା ତିଳକେ ନିଲେକେ ନାହିଁ ସରି, ତାପତମକୁ ତପନଙ୍କର ଶିରୀ ।୧୬।
ଥାଏ ତ ରତେ ନିରତେ ମନ, ଥରେ ମୁଁ ସ୍ମରେ ପକାନ୍ତେ ଅନ,
ଥରୁଥିକୁ ଅଉ ଅଧିକ ନାହିଁଟି ଭୂଷି ହସି କରୁ ଅଲିଙ୍ଗନ ।
ଅରେ ଥିରମତି, ଥାନ ବାକି ନ ରଖେ ମୋ ଚୁମ୍ବିତଛ ।
ଥୋକେ ହେଲେ ଜଣାଇ କି ରତିପତି, ଥରି ଥରି ଭିଡ଼ୁ ମୋତେ
କୁନ୍ଦଦନ୍ତୀ । ୧୭ ।
ଦୃଷ୍ଟି କୋଣ କରି ଅପଲକ, ଦେହବଲ୍ଲୀ କରି ସପୁଲକ
ଦୃଢ଼େ ମୋ ମଧ୍ୟକୁ ଉରୁଯୁଗେ ଭିଡୁ ପଦଭୂଷା କରି ବାବଦୂକ ।
ଅରେ ଦୁଃଖିଧନ, ଦୟାଜଳଧୀ-ମୀନ ମୁଁ ତୁ ଜୀବନ ।
ଦୂର ହୋଇଅଛୁ କେତେ ସୁଖମାନ, ଦୁଷ୍ଟ ଦଇବ କରିଛୁ ସିନା ଅନ ।୧୮।
ଧରଣୀମଣ୍ଡଳିରମୋଗଭି, ଧରି ନିଲୋକମୋହନ ଶୋଭି,
ଧୃତକୁ ତୁ ସିନା ଧମକାଇ ଜାଣୁ, ଧୂର୍ଜଟିପରବଲ୍ଲଭନାଭି,
ଅରେ ଧୀରବରି, ଧୀରାଧରି କଲେ ରମ୍ୟ ପୟୋଧର,
ଧରାଧର ପରି ଲାଗେ କି ଦୁର୍ଦ୍ଧର, ଧାରାଧରମାଲଚେଲ କି ସୁନ୍ଦର । ୧୯ ।
ନାନାବନ୍ଧେ ରସୁ ମୋର ଚିତ୍ତ, ନଷ୍ଟେ ଯେବେ ବୋଲେ ମୋ ଶପତ,
ନଖି ନଖି ଦେଖି ବୋଲ ମୋର ମୁଖ ବରଧନା ହେଉ କି ସଂଯତ,
ଅରେ ନଳନାକ୍ଷି, ନେତ୍ର ମନ ଦୁହେଁ ସେ ସମୟ ସାକ୍ଷୀ,
ନାତ ମାତ ମତେ କରୁ ଯେତେ ସୁଖୀ, ଅନ୍ତରରେ ତା ମାନସେ ଅଛୁ ରଖି ॥
ପ୍ରଣୟର ପର୍ଯ୍ୟାଲୋଚନାରେ, ପୁରିଥାଏ କୃପା ଲୋଚନରେ,
ପସନ୍ଦ ପଡ଼ିବ ବୋଲି ସିନା ମାନ ପରଦା ବନ୍ଧାଉ ବଚନରେ ।
ଅରେ ପ୍ରେମଶୀଳା, ପ୍ରିୟମ୍ବଦା ତୁହି ମୋ ନେତ୍ରପିତୁଳା ।
ପୁଷ୍ପହାସୀ ତୁହି ଜାଣୁ ପ୍ରୀତିତୁଳା, ପୁଷ୍ପଦଳ ଉପୃଳ ତୋ ତନୁ ତୁଳା । ୨୧ ।

---

ପ୍ରାର୍ଥନା କରି, ଅଲୀକରେ—ମିଛରେ, ତରଳ ମସାର—ହାର ମଧ୍ୟର ନୀଳମଣି, ତନୁଦରି—ହେ କ୍ଷୁଦ୍ର ଉଦରଧାରିଣୀ, ଆନ—ଗୁଣ, ଜୀବନ—ଜଳ, ଧୂର୍ଜଟିପରବଲ୍ଲଭନାଭି—ରତିସଦୃଶୀ, ଦୁର୍ଦ୍ଧର—କର୍କଶ, ଧାରାଧରମାଲଚେଲ—ମେଘପରି କୃଷ୍ଣବସ୍ତ୍ର,

ଫଟା କପାଳେ ତ ଅଛି ଲେଖା, ଫେରଯାଇ ନୋହିବାକୁ ଦେଖା,
ଫେର ଲଗି ରେଳଗ୍ରନ୍ଥି କାହୁଁ କୋଳ କରିବ ନାହିଁ ଏ ଶୁଭ ଲେଖା,
ଅରେ ଫନ୍ଦାଧନ ଫଶୁଅରୁ ଫିଙ୍ଗିଦେଲ ମୁଁ କାଞ୍ଚନ ।
ଫୁଲବନବିହାରିଣୀ ମୋ ଜୀବନ, ଫେର ଗୃହିବା ଗୃହାଣୀ କି ମୋହନ ।
ବକୁଳବଲ୍ଲୀ ମଳୟ ବନେ, ବେଢ଼ିଥିଲେ ସହଚରୀମାନେ,
ବାସନ୍ତିକ ଦଳ ବହଳ ବଛଣା ବଜେ ବେଳ ଜାଣି ଅନୁମାନେ ।
ଅରେ ବଧୂମୂଖି, ବେଶ ଫେରାଇଥିଲ ତ ଦୂରୁଁ ଦେଖି ।
ବଡ଼ ବାଲିଶ ପଛେ ରହିଲ ଲଖି, ବୀଣା ଦେଲ ତୋ ଶ୍ରୀହସ୍ତେ ଏକ ସଖୀ ।
ଭର୍ମଦେହା ସରସିଜବ୍ରଜ, ଭ୍ରମରବର ମୋହନରାଜ,
ଭଣି ଗୀତେ ଏତେ ଅଳାପନ୍ତେ ମତେ ଭୁଲିଦେଲ ଭାଲେ ହଂସଧ୍ୱଜ ।
ଅରେ ଭାରୁବର, ଭୁଷୁଡ଼ାଇ ଦେଇ ଫୁଲ ଅପସର ।
ଭୁଜେ ଭିଡ଼ି ଚୁମ୍ବିଲ ସହସ୍ର ଥର, ଭାଙ୍ଗିଗଲା ସେ ସଙ୍ଗୀତ ଆଡ଼ମ୍ବର । ୨୪ ।
ମହାରାଜ ଜୟଗୃର ଖଟି, ମାତିଥିଲେ ଯେତେ କ୍ରୁଶକଣ୍ଠୀ,
ମୁଦିର ଶେଷରୁ ହଂସୀ ମାନସରୁ ହେଲା ପରି ହେଲେ ଗୋଟି ଗୋଟି ।
ଅରେ ମଦାଳସୀ, ମଳି ଲାଜେ ମୋ ତନୁରେ ଗଲୁ ମିଶି ।
ମନରଥ ରଣେ ହାରିଗଲା ଖସି, ମହୀ ଚୁମ୍ବିଦେଲା ଶେଫାଳିକା ଖସି । ୨୫ ।
ଯୁକ୍ତିପଣ୍ଡିତାରେ ରତିପତି, ଯାନକତ ରାଜହଂସଗତି ।
ଯମକ ଶୃଙ୍ଗାର ରସ ବିଭବର ତୁହି ବୋଲି ହୁଏ ମୋ ପ୍ରତୀତି ।
ଅରେ ଯୋଷାବର, ଯତିମୋହନ ବର୍ତ୍ତୁଳ ପୟୋଧର ।
ଯତ୍ନ କର ସାଜଥାଅ ଉରେ ହାର, ଯଥାର୍ଥରେ ସୁଖଦାତା ଅଟୁ ମୋର ॥
ରତିଶେଷ କାଳ ଗୃଲ ଶିରି, ରହିଛୁ'ମୋ ନେତ୍ରଯୁଗେ ପୁରି,
ରସପ୍ରସଙ୍ଗରୁ ରଥାଙ୍ଗଭଙ୍ଗରୁ ମନ୍ଥର ମନୁଥରଥ ପରି ।
ଅରେ ରସିକାଟି, ରଙ୍ଗସ୍ଥଳୀ ମୋ ମନ ତୁ ଲସିକାଟି ।
ରମ୍ଭା ରତି ଦ୍ୟୁତି ପରିହାସିକାଟି, ରେଖେ କେ ଦେଲ ମୋ ଅଶାରସି କାଟି ।
ଲୁଗାଲଗିକାଳେ ଦନେ ମୋଦେ, ଲୁଚି ଦେଖୁଥିଲି ଅପ୍ରମାଦେ,
ଲଗଡ଼ ଜରେଜ ବଳେକେ ସ୍ୱୟମ୍ଭୂ ଶମ୍ଭୁ ସ୍ତବ ପଢ଼ିଦେଲ ପଦେ ।

---

ବାଲିଶ—ତକିଆ, ଭର୍ମଦେହା—ସ୍ୱର୍ଣ୍ଣବର୍ଣ୍ଣ ଗୌରାଙ୍ଗୀ, ମୁଦିର—ବର୍ଷାକାଳ, ମାନସରୁ—ମାନସରୋବରରୁ, ଯମକ—ପୁନରାବୃତ୍ତି ସ୍ଥଳ, ରଥାଙ୍ଗ—ଚକ, ଲସିକା—ନୃତ୍ୟକାରଣୀ, ରସି—ଦଉଡ଼ି, ଲଗଡ଼—ଦୃଢ଼ସଲଗ୍ନ, ରଦମୋଦ —ଦାନ୍ତରୂପ ମୋଦକୁ ରସନାରେ ରଖି ଅର୍ଥାତ୍ ଜିଭ କାମୁଡ଼ି ଦେଇ,

ଅରେ ଲୀଳାବତୀ, ଲଜେ ରସନାରେ ରଖି ରଦମୋତି,
ଲୋକେ ପଳାଇବାକୁ ବଳାନ୍ତେ ମତି, ଲୋଭେ ଭଙ୍ଗ କରାଇଲ ଅଙ୍କେସ୍ଥିତ ।।
ବୋଇଲ ବସ ରେ ରସବତି, ବସନ ତ ପିନ୍ଧୁଆଜ ନୀତି,
ବିବସନ ଶିରୀ ଦିବସେ ଏପରି ଦେଖିଲେ ନ କାଟେ ସ୍ମରହେତି ।
ଅରେ ବିମ୍ବାଧରୀ, ବିଶ୍ୱ ଲାବଣ୍ୟସାରସମ୍ଭାର-କାରୀ ।
ବରଷିଲୁ ଶୁଣି ସ୍ମିତ ସୁଧାଧାରା, ବକ୍ଷେ ଜମାଇଲୁ ତହୁଁ ଫେଇ ହାରା । ୨୯ ।
ଶୃଙ୍ଗାରକୁ ତ ମୁଁ ରଙ୍କ ପରି, ଶଶଧରକୁ ସୁରଙ୍କ ପରି,
ଶିରୋଗର୍ଭକରୁ ଶୋଣକଞ୍ଜନଭ ଚରଣେ ଯାଏ ଚୁମ୍ବିଲ ଧରି ।
ଅରେ ଶଶିହାସି, ଶାତପ୍ରବାହେ ଗଲୁଁ ଦୁହେଁ ଭାସି ।
ଶିରୀ ମଘବାର ହୋଇଗଲୁ ଦାସୀ, ଶର୍ମ ଏପରି ସ୍ୱପ୍ନ ହୋଇଲା ଆସି । ୩୦ ।
ଷଟ୍‌ପଦଚୁମ୍ବିତ ପୁଷ୍ପପୁଞ୍ଜେ, ଷଟରତୁ ରମାପୂର୍ଣ୍ଣ କୁଞ୍ଜେ,
ଷଡ଼ାନନତାତ ପରିପନ୍ଥି-ରଣେ ଚୁମ୍ବିବି ନାକୀ ତୋ ମୁଖକଞ୍ଜେ ।
ଅରେ ଷୋଳବୟୀ, ଷଷ୍ଟି ଦଣ୍ଡ ହୋଇବି ତୋ ତନୁସ୍ଥାୟୀ
ସନ୍ତୁ ପାଦ୍ୟେ ହେବୁ କୃତାର୍ଥପରିଚୟୀ, ଷଟ ଦୁଇ ଶ୍ରୁତି କରିବେ କା ଦୟୀ । ୩୧ ।
ସୁନ୍ଦରୀ ଚକ୍ରବର୍ତ୍ତିନୀ ବାନା, ସଂସାରେ ସୁନ୍ଦର ତତେ ସିନା
ସୁରସୀମନ୍ତିନୀ ଗୁଡ଼ାକ ତ ଅନିମିଷ ଦୋଷୁ ନେଇଲୀଳାହୀନା
ଅରେ ସୃଷ୍ଟିଶୋଭା, ସରେ ଉପମା ତୁ ହୋଇଥିଲେ ଉଭା ।
ସବୁ ମଧ୍ୟମା ତ୍ରିଲୋକୀ ଶିରଗଭା, ସରସ୍ୱତୀଙ୍କର ତୁ ସଙ୍ଗୀତ ସଭା । ୩୨ ।
ହସି ମାତି ହୋଇ ରସଲୋଳ, ହରିବା ପୂର୍ବ ପରି କାଳ ।
ହରିତାଳଗୋରୀ ଶ୍ରୀଅଙ୍ଗରୁ ମୁହିଁ ହରିବି କି ସତେ ନୀଳଚେଳ ।
ଅରେ ହାତୀଗତି, ହତକପାଳ ଦେବ କା ଏ ସମ୍ମତି ।
ହାରସ୍ଥଳେ ରଖୁଥିବି ତତେ ନିତି, ହଜିଯିବ ମାନସରୁ ଏ ବିପତ୍ତି । ୩୩ ।
କ୍ଷୋଭ ଲେଶକୁ ନ ରଖି ମନେ, କ୍ଷଣେ ହେଲେ ଅତି ସାବଧାନେ,
କ୍ଷିତୀନ୍ଦ୍ର ବାଲୁଙ୍କେଶ୍ୱର ଦେବ ଲୋକେ ବର୍ତ୍ତିବି କି ତୋ ଚରଣ ଧ୍ୟାନେ ।
ଅରେ କ୍ଷିତିଭୂଷା, କ୍ଷପାମୟୂଖବଦନା ବରଯୋଷା
କ୍ଷତି ହୋଇ ଯାଉଛି ମୋ ପ୍ରତିଆଶା, କ୍ଷୁଣ୍ଣ ନୋହୁ ପୂରିଲା ଏ ଚଉତିଶା ।।

---

ସ୍ମରହେତି—କନ୍ଦର୍ପଅସ୍ତ୍ର, ଶିରୋଗର୍ଭକ—କେଶ, ଶୋଣକଞ୍ଜନଭ—ରକ୍ତପଦ୍ମ ସଦୃଶ, ଶାତ—ସୁଖ, ଶିରୀମଘବାର—ଇନ୍ଦ୍ରସମ୍ପତ୍ତି, ଶର୍ମ—ସୁଖ, ଷଷ୍ଟି ଦଣ୍ଡ—ସମଗ୍ର ଦିବା ଓ ରାତ୍ର, ଷଟ୍ ଶ୍ରୁତ—ବ୍ରହ୍ମା, ସୁରସୀମନ୍ତିନୀ···ଲୀଳାହୀନା—ଦେବ ଲୋକରେ ସ୍ତ୍ରୀମାନଙ୍କର ଚକ୍ଷୁରେ ନିମେଷ ପାତ ହୁଏ ନାହିଁ, କ୍ଷପାମୟୂଖ—ଚନ୍ଦ୍ର ।

( ୯ )

ସର୍ପ ଜଣାଣି

ରାଗ—କାମୋଦୀ

ବାଧିଲ ଜାଣି କ୍ଷମା କର ନୋହିଲେ ରମାରମଣ ଦଣ୍ଡେ ଦାଅ ଠାଳି । ତୁମ୍ଭଙ୍କୁ ଜଗନ୍ନାଥ ଆଜ ମୋ ମନୋରଥ ଭରତି କରି ଦେବା ଗାଳି ହେ କୃପାନିଧି । କରୁଣାସିନ୍ଧୁ ବୋଲି କରି, କହନ୍ତି ବୁଧେ ଡରି ମରି । କାଳସର୍ପ ଆପଣ, କବଳ କର ପ୍ରାଣ-ପବନମାନଙ୍କୁ ସବୁରି ହେ କୃପାନିଧି । ୧ । ଜଳଧିଅନ୍ତେ ନିଜ, ଘର ଦେବାଧିରାଜ, ବୁଡ଼ାଇ ଦେଇଛନ୍ତି ଆପଣ । ତୁମ୍ଭର ସିନା ଢେନ, ଅଶ୍ଚର୍ଯ୍ୟ ନୁହେ ଆନ, ଜନର ଘରବୁଡ଼ାପଣ ହେ କୃପାନିଧି । ଭୁଜଙ୍ଗ ସାମ୍ୟ ଆମ୍ଭ ତୁଲେ, ବତାଅ ବୋଲି ଅଜ୍ଞା ହେଲେ, ମୁଁ ନୁହେଁ ଘରବୁଡ଼ା, ବତାଇବାକୁ ଛୁଡ଼ା ହୋଇଛୁ ବତାଇବ ଭଲେ ହେ କୃପାନିଧି । ୨ । ତାହାକୁ ବୋଲି ଚକ୍ରୀ, ଚକ୍ରଥିବାରୁ ଚକ୍ରୀ, ତୁମ୍ଭେ ତ ବୋଲାଅ ମଣ୍ଡଳେ । ବୋଲାଇ କୁଣ୍ଡଳୀ ସେ ଆପଣ ତ ବିଶେଷେ ଭୂଷିତ ମକର କୁଣ୍ଡଳେ ହେ କୃପାନିଧି । ଅଦୃଶ୍ୟ ହେବାରୁ ତା ପାଦ, ତାହାକୁ ବୋଲି ଗୂଢ଼ପଦ । ଆପଣା ଚରଣ ତ ବିରଞ୍ଚିଙ୍କୁ ରୁପତ କାହିଁ ତାଠାରୁ ତୁମ୍ଭ ଭେଦ ହେ କୃପାନିଧି । ୩ । ହେବ ବା ଅବଧାନେ, ତାହାକୁ ହିଜ୍ଜିବନେ, ବୋଲନ୍ତି କାକୋଦର ନରେ । ଏ ନିପିଷ୍ଟପଯାକ ମଧ୍ୟେ ଗୋଟିଏ କାକ ନାହିଁ କି ତୁମ୍ଭର ଉଦରେ ହେ କୃପାନିଧି । ବିବରେ ସେ ଅତି ଲମ୍ପଟ, ବିବର ବିହଙ୍ଗମ ରାଟ, ବିଧିରେ ସେ ଲମ୍ପଟ, ଆପଣ ସେ ତ ପଟପଟଲେ ହୋଇଅଛ ସ୍ଫୁଟ ହେ ମହାପ୍ରଭୁ । ୪ । କାନ ନ ଥାଇ ଅଖି, ଭୁଜଙ୍ଗଠାରେ ଦେଖି, ନୟନଶ୍ରବା ବୋଲି ତାକୁ । କହ କମଳାନନ କାହିଁଛି ତୁମ୍ଭ କାନ, ସର୍ପ ବୋଇଲେ ଚଳିବାକୁ ହେ କୃପାନିଧି । ଫଣିକାୟାକୁ ବୋଲି ଭୋଗ, ଥିବାରୁ ସେ ଦୁଇ ସଂଯୋଗ, ତାହାକୁ ବୋଲି ଭୋଗୀ ତୁମ୍ଭେ କି ନୁହ ଭୋଗୀ କରୁ ଯା ଅଛ ମହାଭୋଗ, ହେ କୃପାନିଧି । ୫ । ଯେବେ ଭୁଜଙ୍ଗ ନୁହ; କାଳିୟ-ଠାରେ ଦ୍ରୋହ କଲ କାହିଁକି ଏଡ଼େ କର । କେତେ ନ ଥିଲେ ଗୋପେ,

---

୯ । ଟୀକା—କବଳ କରପ୍ରାଣପବନମାନଙ୍କୁ ସବୁରି—ସମସ୍ତଙ୍କର ପ୍ରାଣରୂପ ପବନକୁ ନେଇଯାଅ । ( ସର୍ପ ପକ୍ଷରେ - ସର୍ପ କେବଳ ପବନ ଖାଇ ବଞ୍ଚେ । ) କାକୋଦର— ( କାକବକ୍ରଗାମୀ ଉଦର ଯାହାର ) ସର୍ପ, ଶ୍ଳେଷାର୍ଥ ହେଲେ— କାକ—କୁଆ ଉଦରରେ ଯାହାର, ବିବର—ଗାତ, ଅନ୍ୟନ୍ନ ବି ଅର୍ଥାତ୍ ପକ୍ଷୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଗରୁଡ଼, ପଟ—ଚନ୍ଦ ଓ ସାପକାତ; ପଟଲ—ସମୂହ

ତୁମ୍ଭେ କାହିଁକି କୋପେ, ତାହାକୁ ଦେଲ ପ୍ରାଣେ ମାରି ହେ କୃପାନିଧି ॥ ତାହାର ନାମେ ତୁମ୍ଭ ନାମ, ଅଦ୍ୟାପି ହୋଇଛି ଜନମ, ଯେବେ ସ୍ୱଗୋତ୍ର ଦ୍ରୋହ, ନ ଥାନ୍ତା ନାଥ କହ କିପାଇଁ ହୁଅନ୍ତା ଏ କମ ହେ ମହାପ୍ରଭୁ । ୬ । ଜାଣି ବାଳୁତକାଳୁ, ଲବଣୀ ହାଣ୍ଡିତଳୁ, ଧରି ପାଟରେ ଦୃଢ଼େ ଭିଡ଼ । ଦୟା ନ କରି ତଳେ, ଯାମଳା ତରୁତଳେ ଜନନୀ ନେଇ ଦେଲେ ଘୁଡ଼ ହେ କୃପାନିଧି । ଯେତେକ ଥିଲ ଗର୍ଭେ ପଡ଼, ଜୀର୍ଣ୍ଣ ହେବାକୁ ହେଲ ଭିଡ଼, ତିନି ଜଗତ ଯାକେ, ଜାଣି ତ ଥିବେ ଲୋକେ ସେ ତରୁ ଯିବାର ଉପୁଡ଼ି, ହେ କୃପାନିଧି । ୭ । ବ୍ରହ୍ମା ଶଙ୍କର ମୁଖ୍ୟ, ଦେବଙ୍କଠାରୁ ମୋକ୍ଷ-ପ୍ରଧାନ ଧନ ଗୁଡା କଲ । ପଢିତକୁ ନ ପୋଷି,-ବାରୁ କମରେ ଅଣୀ,-ବିଷ ପରିଏ ଆଭାସିଲ ହେ କୃପାନିଧି । ଅସାବଧାନେ ଗଲେ ମିଳି, ଗୋଟିକୁ ଗିଳଇ କୁଣ୍ଡଳୀ, ଅଗଣିତ ବ୍ରହ୍ମାଣ୍ଡ ହାଣ୍ଡିମଣ୍ଡଳୀ ତୁଣ୍ଡ କରି ଆପଣ ଅଛ ଗିଳି ହେ କୃପାନିଧି । ଅହି ତ ବୋଲାଏ ସେ, ଏକ ଅକ୍ଷର କୋପେ, 'ଅ'ହିତ ବୋଲାଅ ନିପୁଣ । କଂସ ପ୍ରମୁଖାସୁର ବିପକ୍ଷମାନଙ୍କର ଅହିତ ହୋଇଛ ଆପଣ ହେ କୃପାନିଧି । ଜଗତେ ଧରି ଯେବେ ଅହି, ଘଟ ଗୋଟିକେ ନେଇ ଥୋଇ, ଅଛ ଯାବତ ଘଟେ, ବଞ୍ଚାଅ ଯେ କପଟେ, ମୋର ହାବୁଡ଼ୁ ଯିବ କାହିଁ, ହେ କୃପାନିଧି । ୯ । କେଉଁ ଶିଶୁ କାମିନୀ ସ୍ତନ୍ୟପାନରୁ ଘେନି ଜୀବନ ଯାଇଛି ଜଗତେ । ଶୋଷି ପୁତନା ପ୍ରାଣ, ଘେନିବାର ଜୀବନ, ନାହିଁକି ତୁମ୍ଭ ଦିବ୍ୟ ଚରିତେ, ହେ କୃପାନିଧି । ସଙ୍କଳ କଥା ମୋର ଦେଖି, ଅଛନ୍ତି ଲକ୍ଷ ଲକ୍ଷ ସାକ୍ଷୀ, ବ୍ରଜେ ଭୁଜଙ୍ଗ ଗୃହ, କରି ମୁଁ ନାହିଁ ବୋଲି, ତୁଅଁ ତ ଥରେ ଚକାଅକ୍ଷି ହେ କୃପାନିଧି । ୧୦ । ନୁହେ ଅବାସ ଘର, ମାନସ ସରୋବର ଶୁଭିଲା ନାଗେଶ୍ୱର ରବ । କ୍ଷଣେ ନ ରହି ଧାଇଁଗଲଟି କାହିଁପାଇଁ, ଅଭ ନ ଥିଲେ କେତେ ଦେବ ହେ କୃପାନିଧି । ମନ୍ତ୍ର ଜାଣିବା ଲୋକେ ବଶ, ହୁଅନ୍ତି ସବୁ ଅଣୀବିଷ, ମନ୍ତ୍ରାଧୀନ ତ ତୁମ୍ଭେ, ବଞ୍ଚାଉଅଛ ଦମ୍ଭେ, ଭୁଜଙ୍ଗ ନୁହ ଆଉ କିସ, ହେ କୃପାନିଧି । ୧୧ । କହଇ କବିସୂର୍ଯ୍ୟ ନାଥ ନୁହ ଅଧୈର୍ଯ୍ୟ ଏଣିକି ମହତ ନ ଯାଉ । ମୁଁ ତୁମ୍ଭ ପରିଗ୍ରହ, ଜାଣିଲେ କି ବିଗ୍ରହ ଇତରେ ନ ଜାଣନ୍ତୁ ଆଉ, ହେ କୃପାନିଧି । ଯେତେବେଳେ ମୋ ଅନ୍ତ ହେବ, ଏତିକି ମାନ ମୋତେ ଦେବ, ପରେତରାଟଦ୍ୱାରସୀମାରୁ ପରିହାର କରାଇ ଯହିଁ ତହିଁ ନେବ ହେ କୃପାନିଧି । ୧୨ ।

---

ଗୁଡାକଲ—ଏକଗୁଟିଆ କଲ । ଅ—ବିଷ୍ଣୁ, ଅହିତ—ଶତ୍ରୁ, ଭୁଜଙ୍ଗ—ସର୍ପ ଓ ବିଟପୁରୁଷ ନାଗେଶ୍ୱର—ହସ୍ତି ଶ୍ରେଷ୍ଠ ଓ ସାପୁଆକେଳାର ବାଦ୍ୟଯନ୍ତ୍ର; ପରେତରାଟ—ଯମ ।

( ୧୦ )

## ଜଗନ୍ନାଥ ଜଣାଣ

### ରାଗ—ତୋଡ଼ିପରଜ

କ୍ଷୀରମୟ ସିନ୍ଧୁ-କୋମଳୀବିବନ୍ଧୁ, ତୁମ୍ଭେ ତ ଜଗତପତି । କେଉଁକି ସମ-ଦୃଷ୍ଟିପତାକାକୁ ପୁଣି ଏ କି ପକ୍ଷପାତ ରୀତି ହେ ମହାପ୍ରଭୁ । କେ କି କଲା ମୁଁ ନ କଲି । କେ କି ଦେଲା ଅବା ମୁଁ ଅବା ନ ଦେବା ଯୋଗ୍ୟ ଏତେ ସରି ହେଲି ହେ ମହାପ୍ରଭୁ । ୧ । ମୃଗ ଯୁବତୀକି ରଖିଲ ଯେ ନାଶି ମୃଗୟୁ ବିଦ୍ୱେଷ ଦାଉ । ଚରଣପଙ୍କଜ ସ୍ମରଣ ବିନା ସେ କିସ କରିଥିଲା ଆଉ ହେ ମହାପ୍ରଭୁ । କୁମ୍ଭୀର ଗ୍ରାସନ୍ତେ ଗାଜ । ଜନେ କହିବାରେ ଅନେକପ-ରଜା ମନେ କଲା ସିନା ମାନ ହେ ମହାପ୍ରଭୁ । ୨ । ନୃପସଭା ମଧ୍ୟେ ଅସ୍ଥିର ହୁଅନ୍ତେ ଦ୍ରୁପଦ-ସୁତା ଅବର । ଧ୍ୟାନରୁ ତ ଆନ କିଛି କରିବାର କାନ ଶୁଣି ନାହିଁ ମୋର ହେ ମହାପ୍ରଭୁ । ହିତେ ଯେ ଥାଅ ନରତେ । ଲାଞ୍ଚ ଦେଇଥିଲେ କାଞ୍ଚନ କେତେ କି ପାଞ୍ଚପଣ୍ଡୁରାଜ ସୁତେ ହେ ମହାପ୍ରଭୁ । ୩ । ରୂପରେ କେଳତି ଉପରେ ପତାକା ଦିଆଇଲ ଯେ କୁଜାକି । ଯାହା ହୋଇଥିଲା ଯାହା ହେଲା ତୁମ୍ଭ ପ୍ରସାଦବଶୁଁ ରଜକୀ ହେ ମହାପ୍ରଭୁ । ଜଗତେ ତ ତାହା ଜଣା । ଅନ୍ଧକୁ ନେଇ ମିଳିବାରୁ ହୋଇଛି ଯଶ ଡିଣ୍ଡିମ ବାଜଣା ହେ ମହାପ୍ରଭୁ । ୪ । ନଳକୁବରଙ୍କ ଚରିତକୁ ବୁଧେ ବଳକୁ ଅଛନ୍ତି ଏବେ । ପ୍ରହ୍ଲାଦକୁ ମହା ଆହ୍ଲାଦ ଅପଣ କରିଛ ପରା ପୂରୁବେ ହେ ମହାପ୍ରଭୁ । ମୁନିଙ୍କ ଆଶ୍ରମ ଶିଳା । ତୁମ୍ଭଙ୍କୁ କି ଉପକାର କରି ରୂପବତୀ ହୋଇ ବିଳସିଲା ହେ ମହାପ୍ରଭୁ । ୫ । କେବଳ ସୁଦାମା ଦ୍ୱିଜ ନିଜ ଶକ୍ତି ଅନୁରୂପ ଆଚରିଲେ । ଗଳିତାଏ ଖୁଦ ନଜର ଦେବାରୁ ଫଳ ତାଦୃଶ ଲଭିଲେ ହେ ମହାପ୍ରଭୁ । ଆଉ କେ କି କଲା କହ । କାହା କାମକୁମ୍ଭ ପୁରି ନାହିଁ ତୁମ୍ଭ ଅହେତୁକ-ଅନୁଗ୍ରହ ହେ ମହାପ୍ରଭୁ । ୬ । ଅନନୁଗତ ତୋ ମନ ନୋହେ ବୋଲି ଆଜ୍ଞା ହେବ ଅବା ମୋତେ । ନାମ ସ୍ୱସୁତର ଡାକିବାରୁ

---

୧୦ । ଟୀକା—ମୃଗୟୁ—ଶିକାରି, ବାଣୁଆ; ଅନେକପ-ରଜା—ଗଜରାଜ, ଦେବର୍ଷି ନାରଦଙ୍କ ଶାପରେ ନଳକୁବର ଯାମଳାର୍ଜ୍ଜୁନରୂପରେ ଜନ୍ମିଥିଲେ; କୃଷ୍ଣାବତାରରେ ଭଗବାନ୍ ତାହାଙ୍କୁ ଉଦ୍ଧାର କରିଥିଲେ—ଭାଗବତ କଥା; ଗଳିତାଏ—ପୋଷେ, ନଜର—ଭେଟି ।

ଦିବ୍ୟଧାମ ଲଭିଲେ କେମନ୍ତେ ହେ ମହାପ୍ରଭୁ । ଅଜାମିଳ ମହାସୁର । କେଉଁ ସାବଧାନ ହୋଇ ନାମଗାନ କରିଥିଲେ ସେ ତୁମ୍ଭର ହେ, ମହାପ୍ରଭୁ ।୭। କବିରବି ଗୃହୁଁ ଯୋଡ଼ି କରଯୁଗକୁ ଛାମୁରେ କହେ, ଭଲ ଅବା ମନ୍ଦ କରିବାକୁ ତ ମୁଁ ମୋହର ଅଯୁକ୍ତ ନୁହେ ହେ ମହାପ୍ରଭୁ । ସବୁ ତୁମ୍ଭ ଇଚ୍ଛା ବିନା, ରଖ ବା ନ ରଖ ମୋହର ଗତି ତ ପତିତପାବନବାନା ହେ ମହାପ୍ରଭୁ ।୮।

( ୧୧ )

ମହାବାହୁ ଜଣାଣ

ରାଗ—କାମୋଦୀ

କମଳବାସିନୀପ୍ରାଣବାନ୍ଧବ ହେ ଅଭିନବ କମନୀୟ କଳାମୁଖଚନ୍ଦ୍ର । କମ୍ବୁମଧ୍ୟପୁରୀ ନୀଳବସୁନ୍ଧରାଧରଚୂଳ ଗୁହାଗୃହ ବିହାରୀ ପାରୀନ୍ଦ୍ର ହେ । ମହାବାହୁ । କୌଣପକୁଳକ୍ଷୟଦକ୍ଷ, କୃପଣକାମିତ କଳ୍ପବୃକ୍ଷ, କହି ନୋହିବା ବଦନ, ସିନ୍ଧୁ ନନ୍ଦନଜନ କର୍ଣ୍ଣଧାରବର ରକ୍ଷ ରକ୍ଷ ହେ ।୧। ଖଣ୍ଡପରଶୁ ବନ୍ଦନ, ମୁରଲୀସୁସାବଧାନ ଖମଣିମଣ୍ଡଳମଧ୍ୟବାସୀ । ଖଗାଧିପଧ୍ୱଜ ବ୍ରଜ-, ଖଞ୍ଜନନେତ୍ରାସମାଜ, ଚଞ୍ଚଳା କୌତୁକ ଅଭିଳାଷୀ ହେ । ମହାବାହୁ । କ୍ଷୀଣଜନଙ୍କର ଅନ୍ତଃସାର, ଖଣ୍ଡିତ ମେଦିନୀ ଭୟଭାର, ଖରମୟୂଖର ପୁତ୍ର ଚରକର କରପତ୍ର ଦରନିବାରଣ ଦୟାକର ହେ ।୨। ଗହନେ ଗର୍ଭିଣୀ ଏଣୀ, ଗରଷ୍ଟ ଶ୍ୱାପଦ ପୁଣି, ଗୁହାରି ଗର୍ଭକ ସୁତ କଲା । ଗୋତ୍ର ଅମିତଙ୍କୁ ଫରମାସିବା ମାତ୍ରକେ ତାର କେତେ ବଡ଼ ଦର ଦୂର ହେଲା ହେ । ମହାବାହୁ । ଗୋପେ ଗୋବତ୍ସା ଗୋପିକା ଗୋପ, ରାସି ଦେଉଥିଲା ଶଙ୍କ

---

୧୧ । ଟୀକା—କମଳବାସିନୀ—ଲକ୍ଷ୍ମୀ, କମ୍ବୁମଧ୍ୟପୁରୀ—ଶଙ୍ଖକ୍ଷେତ୍ର, ପାରୀନ୍ଦ୍ର—ସିଂହ, କୌଣପକୁଳ—ଅସୁରବଂଶ, କୃପଣକାମିତ କଳ୍ପବୃକ୍ଷ—ଦରିଦ୍ରଲୋକର ପ୍ରାର୍ଥନାପୂର୍ଣ୍ଣ କରିବାରେ କଳ୍ପବୃକ୍ଷ ସଦୃଶ, ଖଣ୍ଡପରଶୁ ବନ୍ଦନ—ଶିବଙ୍କ ପୂଜ୍ୟ, ଖମଣିମଣ୍ଡଳ—ସୂର୍ଯ୍ୟମଣ୍ଡଳ, ଖଗାଧିପଧ୍ୱଜ—ହେ ଗରୁଡ଼ଧ୍ୱଜ, କ୍ଷୀଣଜନ—ତପସ୍ୱୀ, ଖରମୟୂଖପୁତ୍ର - ସୂର୍ଯ୍ୟପୁତ୍ର ଯମ, ଚରକର—ଦୂତ ହାତରେ ଧରିଥିବା, କରପତ୍ର—କରତ, ଦର—ଭୟ, ଗୋତ୍ରଅମିତ—ଇନ୍ଦ୍ର, ଉପଦାପ—ଅମଙ୍ଗଳ, କରଜ—ନଖ, ନାଗନାଥ,—ଗଜରାଜ, ନକ୍ର—କୁମ୍ଭୀର, ଅକ୍ଷଖେଳ—ପଶାଖେଳ,

କୋପ, ଗୋବର୍ଦ୍ଧନ ଗିରିଛତ୍ର, ଟେକି ଟେକି ପଦ୍ମନେତ୍ର ବାହିଲ ସେ ଉପତାପ ଲୋପ ହେ । ୩ । ଘନା ଘନଘଟା ଘୋର, ନୃଶଂସ ହିରଣ୍ୟାସୁର ବାଞ୍ଛି ନିଜ ତନୁଜର ବଧ । ଘର୍ମାକ୍ତ ତୀବ୍ରକୋପରେ, ଘନାଇଲା ତା ଉପରେ, ବଜ୍ରାଧିକ ଅନେକ ଆୟୁଧ ହେ । ମହାବାହୁ । ଘେନି ଯୁବାସିଂହ ଅବତାର, ଘାତ-ମାତ୍ରକରେ କରିଜର, ଘଟୀ ଅର୍ଦ୍ଧକରେ ଭକ୍ତ ପ୍ରହ୍ଲାଦର ଭୟମୁକ୍ତ, କଲ ପରା ତୁମ୍ଭେ ଚକ୍ରାୟୁଧ ହେ ।୪। ନାଗନାଥଙ୍କୁ ସଲିଲେ, ନକ୍ର ଆକର୍ଷିଲା କାଳେ, ଲକ୍ଷ୍ମୀ ଅକ୍ଷ ଖେଳେ ଥିଲ ମାତ । ନିରେଖି ସାରଙ୍କୁ ଭଲେ, ନିମେଷ ମଧ୍ୟେ ଦେଖିଲେ, ନାଗାରି ହେବାର ଗିରି ଶ୍ୱାସୀ ହେ । ମହାବାହୁ । ନକ୍ର କଣ୍ଠିନରୁ ରକ୍ତଧାର, ନିନ୍ଦୁଥିଲା ବନ୍ଧୁକ ପ୍ରକର, ନିଖିଳ ଲୋକେ ଏ ଯଶ ନାଚୁଛି ହେ ଜଗଦୀଶ, ନୋହିଲଟି କେଉଁ ଖ୍ୟାତ କର ହେ । ୫ । ଚତୁର୍ଦ୍ଦଶ ଲୋକେ ମେଉଁ, ଚକ୍ରପରାକ୍ରମ ଗାଉଅଛନ୍ତି ଅଭୟ ପାଇ ନିତ । ଚକ୍ରାନୟନ ହେ ସେହି ଚକ୍ରକୁ ଶ୍ରୀକରେ ବହି, ଗୃହୁଁଛ ତ ମୋହର ବିପତ୍ତି ହେ, ମହାବାହୁ । ଚରାଚରେ ଚନ୍ଦ୍ର ଅନ୍ତ ହେଲା, ଚକୋର କି ଚକ୍ର ନ ପାଇଲା, ଚିନ୍ତୁଛି ମୁଁ ଚିରନ୍ତନ ହେବାରୁ ତାର୍କ୍ଷ୍ୟକେତନ, ଚିରାଳ କି ଚିରା ହୋଇଗଲା ହେ । ୬ । ଛଳଯତି ବେଶ ଧରି, ଛଦନ ଶାଳାରୁ ହରି ନେଲା ଟେ ଦେବୀଙ୍କୁ ସୁରମିତ୍ର । ଛେଦି ତାହାଙ୍କୁ ମାର୍ଗଣେ, ଛୁଦ୍ର କୁହା ବିଭୀଷଣେ, ଟେକାଇଲ ଆପଣେ ତ ଛତ୍ର ହେ, ମହାବାହୁ । ଛାର ଦୁଃଖେ କେତେ ଅବା ମୋର, ଛାୟାନାଥ ତୁମ୍ଭେ ସେ ଅନ୍ଧାର, ଛଦ୍ମେ ବଳିଦ୍ୱାର ଖର୍ବ ଦ୍ୱିଜେନ୍ଦ୍ର ବେଶେ ତା ପର୍ବ ଛଡ଼ାଇଲ ପରମଈଶ୍ୱର ହେ । ୭ । ଜଗତେ ଜାଣନ୍ତି ଜନ, ଯାହାକଲା ଦୁଃଶାସନ, ଦ୍ରୁପଦ ଜେମାକୁ ସଭାତଳେ, ଜଳଜ ଚରଣେ ସ୍ତୁତି କଲିବାରୁ ମହାସତୀ, ପ୍ରତିଷ୍ଠା ତୁଟିଲା ନାହିଁ ତଳେ ହେ, ମହାବାହୁ । ଜମା ହୋଇଥିଲେ ଯେତେ ଜନ, ଜଣେ

---

ନାଗାରି—ଗରୁଡ଼; ବନ୍ଧୂକ ପ୍ରକର—ବଧୁଲି ଫୁଲର ରକ୍ତବର୍ଣ୍ଣ ସ୍ତବକ; ତାର୍କ୍ଷ୍ୟକେତନ—ଗରୁଡଧ୍ୱଜ; ଚିରନ୍ତନ—ପୁରୁଣା; ଚିରାଳ—ପତାକା; ଛଦନଶାଳା—ପତ୍ର କୁଡ଼ିଆ; ସୁରମିତ୍ର—ଦେବଶତ୍ରୁ ରାବଣ; ମାର୍ଗଣ—ବାଣ; ଛାୟାନାଥ—ସୂର୍ଯ୍ୟ; ଜଳଜଚରଣେ—ପଦ୍ମପାଦରେ; ଅପଘନ—ଶରୀର; ଜଠର—ଉଦର, ଗର୍ଭ; ଜମ୍ବାଲ—ପଙ୍କ; ଝଷ—ମାଛ; ଝରସ୍ଥ—ନରକ; ଝୁକ—ଝୁକଲାସ (?) ଏଣ୍ଡୁଅ; ନାକନିତମ୍ବିନୀ—ସ୍ୱର୍ଗନାରୀ; ପ୍ରସୂନ—ଫୁଲ, ପୀନ—ସ୍ଥୂଳ; ମୋଟା; ବାହୁବୃନ୍ଦାରକମହୀରୁହ—ବାହୁରୂପ ସୁବୃହତ୍‌ବୃକ୍ଷ. ଅନାତପ—ଛାୟା; ଟାଳି—

ଦେଖି ନାହିଁ ଅପଘନ, ଜଯ୍ମରବେ ଜଗତ୍ରଯ୍ ଜଠର ପୂରିଲା ଭଯ୍ ନିବାରଣ ଜଳଧିଶୟନ ହେ । ୮ । ଝଞ୍ଜାନିଳେ ଝାଡ଼ଦାଲ ଝଡ଼ିଗଲାପରି ଜଳ, ଝରିଗଲା ପରି ଫଟା ଘଟ୍ଟ । ଝାଙ୍କି ମନସ୍ତାପ ଭଯ୍ ଅମଟଲ ମୋ ଅଯ୍ଯସ୍ଥ, ହୋଇଲଟି ଘୀନା ଯ୍ୱାହାନ୍ତୁ ହେ, ମହାବାହୁ । ଝଟଡ ମୋ ଅଭିଳାଷପୂର, ଝିମିଛ ହେଲଟି ମନ୍ଦ୍ୱନ୍ତର, ଝାଙ୍କିତପ୍ର ଅଳ୍ପ ଜଳ ଜମ୍ବାଳ ବଶୁଁ ବ୍ୟାକୁଳ ଝଟଦଶା ହୋଇଲା ମୋହର ହେ । ୯ । ନୃଗ ନାମେ ନୃପବର ନିରଯ୍ୟେ ନିମଜ୍ଜି ଚରଣାକ୍ରୁ ହୋଇଥିଲେ କୃକସର । ନବୀନ ନୀରଦ ନିନ୍ଦା, ନବ ରତନବସନ୍ଧା, ଶ୍ରୀହସ୍ତେ ତାହାଙ୍କ କର ଧରି ହେ । ମହାବାହୁ । ନେଇ ଯିବାଜାଳେ ତୁଲେ ତୁଲେ, ନିରେଖି ତାହାଙ୍କ ତେଜ ଭଲେ, ନାକ ନିତମ୍ବିନୀମାନେ, ନନ୍ଦନବନ ପ୍ରସୂନେ, ନିତ ନିତ ଉପହାର ଦେଲେ ହେ । ୧୦ । ଠେକିଛୁ ଅଦ୍ୟାପି ପୀନ, ବାହୁଯୁଗଳକୁ ଦୀନ, ଜନରେ ଘୁଯ୍ୟାଦେବାକୁ ଚନ୍ତ୍ର । ଠାକ ରହିଛୁ ମୁଁ ସେହି ବାହୁବୃନ୍ଦାରକ ମହୀରୁହ ଅନାତପକୁଟି ନିତ ହେ । ମହାବାହୁ । ଠିକିଏ କରୁଣା କାତ ହେଉ, ଠୋପାଏ ତହୁଁ ଏ ଠେକା ପାଉ, ଠାଲି ଦେଲେ ଭବଗାମ୍ପ୍ରୀ, ଦୁର୍ଗତି ଦୁଃଖକୁ ଗୁହିଁ, ଠମକ ପିଷ୍ଟପେ ବାଜଯାଉ ହେ । ୧୧ । ଠଣାଦାରପରି କାଳ, କରରେ ଧରି କରାଳ, ଦଣ୍ଡ ଜଗି ରହିଅଛୁ ଠଣା । ଠିକମାର୍ଗ ପରିହରି, ଠକ ଅଚରଣ କରି ବଞ୍ଚିବା ଜନ୍ତୁର କି ଠିକଣା ହେ, ମହାବାହୁ । ଠକରଥିବାର ଏ ଜଗତେ, ଠକିଗଲ ଗତ ହିତାହିତେ, ଠାକୁରମାନଙ୍କ ମଥାମଣି ହେ ମୁଁ କେଉଁ କଥା କରିବି ବଗ୍ଭର ଦ୍ୱାଦ୍ୟ-ଚଉ ହେ । ୧୨ । ଡାକ ଗଜରବେ ଅଣି ବଦନୀଯ୍ ଜନ ପାଣି, ପଦ୍ମେ ଦେଉ ନାହିଁ ବରାଠକୀ ଡୁବାଇ ନାହିଁ ମସ୍ତକ, ମନ୍ଦାକିନୀ ହ୍ରଦୋଦକ, ପୁରେ ପଶି ହରି ହରି ଡାକ ହେ, ମହାବାହୁ । ଡରୁଛୁ ଯେ ଘୁମୁରେ

---

ଦେଲେ—ଦୂର କରିଦେଲେ, ଏଡ଼ି ଦେଲେ; ଠମକ—ନାଗରାବାଦ୍ୟ; ପିଷ୍ଟପେ—ଜଗତରେ; ଠଣାଦାର—ପ୍ରହରୀ, ପହରିବାଲା; ଠଣା—ସ୍ଥାନ, ବରାଠକୀ—କଉଡ଼ି; ମନ୍ଦାକିନୀହ୍ରଦୋଦକ ପୂରେ—ଗଙ୍ଗାନଦୀର ଜଳ ପ୍ରବାହରେ; ଡମ୍ଭ—ଶିଶୁ, ଅଜ୍ଞ; ମାପ୍—କ୍ଷମା, ଡାଳେ—ଥରେ, ଅଘବିଧ୍ୱଂସନ—ପାପନାଶକ, ଅଘ—ପାପ, କଙ୍କର—ଗୃକର, ଢାପାର୍ତ୍ତି—ଦୁଃଖକର, ଭୂପମାପ୍ତ ଗିରିତଳେ—ସୁମେରୁ ପର୍ବତ ତଳରେ ଅର୍ଥାତ୍ ପୃଥିବୀ ମଧ୍ୟରେ; ବିଭୂତି—ଐଶ୍ୱର୍ଯ୍ୟ; ଢକ୍କର

ତୁମ୍ଭର, ଡାକୁଅଛୁ ଅହେ ବିଶ୍ୱମ୍ଭର, ତୁମ୍ଭର ଦୋଷଛଳାଦ, ତୁମ୍ଭେ ପରି ବାପ ମାଫ, ନ କଲେ କି କରିବ ଇତର ହେ । ୧୩ । ଡାଳି କରୁଣା ପୀୟୂଷ; ଅଶେଷ ଦୋଷୀଙ୍କ ଦୋଷ, ନାଶିବାରୁ ସିନା ବାରମ୍ବାର । ଚକ୍ର ବାଜୁଛି ସଂସାର, ମଧ୍ୟେ ଏହି ଅନ୍ତଃସାର, ସକାଶୁଁ ମୁଁ କରୁଛି ବ୍ୟାପାର ହେ ମହାବାହୁ । ତାଳେ ଯିତ ଅନାଇ ନ ଗୃହିଲ, ତମ କରୁଅଛୁ ଘାତ ଠେଲି, ତାଙ୍କି ରହିଥିବା ଘୋର, ଦାବାଗ୍ନିକି ନାଥ ମୋର ତୋଳ ଦେବେ ଅନାୟାସେ ବୋଲି ହେ । ୧୪ । ଅମରମିତ ମନ୍ତ୍ରମ ଅଘବିଧ୍ୱଂସନ ନାମ, ଅତ୍ୟନ୍ତ ପ୍ରବଳ ହେଲେ ହେଲେ । ଅପରାଧ ହେବା ଡରେ, ଅଘରେ ଆତଙ୍କନରେ, ଅସକ୍ତ ନୋହିବା ଜାଣେ ଭଲେ ହେ, ମହାବାହୁ । ଅଣୁଏ ଆୟୁତ୍ତ ନାହିଁ ମୋର, ଅଚରୁଛୁ ପାତକୀ ପ୍ରକାର, ଅପଣ ହୃଦେ ନିବାସ କର ଯେଉଁ ପରମାପ, କରୁଛ ତା କରୁଛି କଙ୍କର ହେ । ୧୫ । ତାରିବାକୁ ମାରିବାକୁ ତାପାର୍ତ୍ତି ନିବାରିବାକୁ ତୁମ୍ଭତୁଲ୍ୟ ପ୍ରଭୁ ଆନ ନାହିଁ । ତପମାୟୁ ଗିରିତଳେ ତପୋଧନମାନେ ଛଳେ ତବ ତତ୍ତ୍ୱ ଜାଣନ୍ତି ବା ନାହିଁ ହେ, ମହାବାହୁ । ତର୍କି ନ ପାରିବାରୁ ବିଭୂତି, ତସ୍କର ବନିଲେ ପ୍ରଜାପତି, ତନୁରୁ ତର୍ଣ୍ଣକ ଶିଶୁ, ତକ୍ଷଣେ ହେବା ସକାଶୁଁ, ତଳେ ଲୁଠି ଲଜେ କଲେ ସ୍ତୁତି ହେ । ୧୬ । ଥିବାରୁ ମଞ୍ଜୁଷେ ଗଣ୍ଠି, ପର ହେ, ବୈକୁଣ୍ଠକଣ୍ଠୀ,-ରବ ତବ ପ୍ରଭାବ ମୋ ମନେ । ଥୁଆଧନ ସିନା ଭୋଗ, କରି ହରିବ ଉଦ୍‌ବେଗ, ବୋଲି ଭାବୁ ଭାବୁ ଅନୁଦିନ ହେ, ମହାବାହୁ । ଥାଏ ମୋ ଭରସା ମେରୁପର, ଥାପିରେ ଧଇର୍ଯ୍ୟ ଥାଏ ପୁର, ଥରୁଅଛି ଏବେ ଭୟଭରେ ଅନୁକମ୍ପାମୟ, ନୟନାନ୍ତ ଛଟା ଦିଅ ଠାରି ହେ । ୧୭ । ଦନେ ଦୟାଳୁତା ବାନା ଦୃଶ୍ୟ କରାଇଲେ ସିନା, ଦୀନବନ୍ଧୁ

---

ବନିଲେ—ଚୋର ହୋଇଗଲେ; ପ୍ରଜାପତି—ବ୍ରହ୍ମା, ତର୍ଣ୍ଣକ ଶିଶୁ—ବାଛୁରି, ମଞ୍ଜୁଷ—ପେଡ଼ି, ଗଣ୍ଠି—ଧନ, ବୈକୁଣ୍ଠକଣ୍ଠୀରବ—ବୈକୁଣ୍ଠର ସିଂହ ସ୍ୱରୂପ, ବୈକୁଣ୍ଠର ଅଧିପତି; ଥାପି—ଶାନ୍ତ, ଦନ୍ଦଶୂକ—ସର୍ପ, ଦନ୍ଦଶୂକଦଷ୍ଟହୃଦନ୍ତର ଲୋକ—ଯେଉଁ ଲୋକ ହୃଦୟରେ ସର୍ପଦଂଶନ କରିଅଛି । ଜଙ୍ଗଳିକପୁରନ୍ଦର—ଶ୍ରେଷ୍ଠ ଗୁଣିଆ, ଆଶ୍ଳେଷ—ଆଲିଙ୍ଗନ, ଦ୍ରବିଣବନ୍ତ—ଧନବନ୍ତ, ବିତ୍ତ—ଧନ, ଧାତାପୁତ୍ରମୁନି—ଦେବର୍ଷିନାରଦ, ଧନାଧିନାଥଙ୍କସୁତେ—ନଳ-କୁବେର ଓ ମଣିଗ୍ରୀବ ଦୁଇ ଭାଇ, ଧଡ଼ଶେଷୁଁ—କାନପଣତରୁ, ନଜର—ଭେଟି, ଭୂସୁର—ବ୍ରାହ୍ମଣ, ନଳିନ—ପଦ୍ମ, ଉଲ୍ଲାସଶ୍ରୀ—ଆନନ୍ଦପୂର୍ଣ୍ଣଶୋଭା, ମିହିରମୟୂଖ—

ନାମକୁ ତୁମ୍ଭର । ଦୁଷ୍ଟ ଦୁଃଖ ଦାନ୍ଦଶୂକ—ଦଷ୍ଟ ହୃଦନ୍ତର ଲୋକ, ରକ୍ଷା ଗାରୁଡ଼ିକ ପୁରନ୍ଦର ହେ, ମହାବାହୁ । ଦରିଦ୍ରକୁ ଦାନଦେବା ଯଶ, ଦାନ୍ତକୁ କରଇ ଅପ୍ରେକ୍ଷ, ଦାଇବେ ଦ୍ରବିଣବନ୍ତ ଜନେ କଲେ ଖଣ୍ଡ ଦଣ୍ଡ ଦାତାର କି ହେବ ପଉରୁଷ ହେ । ୧୮ । ଧରିଥିଲେ ତରୁ ରୂପ, ଧାତାପୁତ୍ର ମୁନିଶାପ, ବଶୁଁ ଧନାଧିନାଥଙ୍କ ସୁତେ । ଧରାଇଲ ଦିବ୍ୟତନୁ; ଧ୍ରୁବକୁ ବାଳକ ହନୁଁ, ଦିବ୍ୟ ଧାମ ଦେଲ ଏ ଜଗତେ ହେ, ମହାବାହୁ । ଧନ୍ଦି ଶେଷୁ ସମର୍ପି ନିଜର, ଧନୀ ହେଲେ ସୁଦାମା ଭୂସୁର, ଧବଳ କରିଛି ଏହି, ଯଶବ୍ୟୋମ ତୁଲେ ମହି ଧର୍ମ ଧାରିବନ୍ତ ଧୁରନ୍ଧର ହେ । ୧୯ । ନିରର୍ଗଳ ଅଧିକାର, ନିତ୍ୟ ନିଳୟ ଯାହାର, ନାଥଙ୍କର ନାମ ଶୁଭୁଅଛି । ନିସ୍ତାରଣ ହୋଇ ତାର, ନରଦେହ ବହିବାର, ନାଶଗଲା ବୋଲାଇଣି ଛି ଛି ହେ, ମହାବାହୁ । ନ ନଶୁଇ ଏହା ଜନମୁଖ, ନିଯୋଜନା କର ମୋର ସୁଖ, ନଳିନେ ଉଲ୍ଲାସଶିରି; ନିଧାନ ରଚିଲା ପରି ନବୋଦିତ ମିହିରମୟୂଖ ହେ । ୨୦ । ପ୍ରପନ୍ନ ହୋଇ ମୁଁ ବାରେ ପଦପଙ୍କେରୁହ ତଳେ ପଡ଼ୁ ପଡ଼ୁ ପେଲିଦେବା ନୋହୁ । ପଢ଼ିବି ସିନା ତୁମ୍ଭର ଗର୍ଭେ ଦେଇ କରଭର ପଦାରେତ ସ୍ଥଳ ନାହିଁ ଅଉ ହେ, ମହାବାହୁ । ପରମ ସୌଭାଗ୍ୟ ମୋର ଏକା, ପର ପରମାଣୁ ନାହିଁ ଦେକା, ପ୍ରଭୁ ପଣିକୁ ମାନିକ ପ୍ରପଞ୍ଚ ମଣ୍ଡଳଯାକ, ନିନ୍ଦା ହେବ ବୋଲି କରେ ଡକା ହେ । ୨୧ । ଫନ୍ଦା କର ଆପଣଙ୍କୁ, ଫଳଲାଭ ବିନା ରଙ୍କୁ, ବଳାଇଲିଣି ଅଚିରଣେ ସିନା ଫେଡ଼ି ଏ ମାନସକଥା, କା ଆଗେ କହିବି ବ୍ୟଥା, ଫେଡ଼ି ନେବ ଅଉ ତୁମ୍ଭ ବିନା ହେ, ମହାବାହୁ । ଫାଟିଅଛି ଯେବେ ମୋ କରମ, ଫନ୍ଦାଇବାକୁ ଆପଣ କ୍ଷମ, ଫୁଟୁଥିଲା ପହଣ୍ଡକେ, ଯେଉଁ କୁବୁଜୀ ଏହି ଲୋକେ, ନ କଲ କି ତାକୁ ରମ୍ଭା ସମ ହେ । ୨୨ । ବିଳମ୍ବ ସହିବା ପୀଡ଼ା, ହେଲେହେଁ ବରହଚୂଡ଼ା,-ବତଂସ ମୁଁ ବଳିଅଛି ଏତେ । ବିରକତ କର ଅତି,

---

ସୂର୍ଯ୍ୟକରଣ; ପ୍ରପନ୍ନ—ଶରଣାଗତ, ପଦପଙ୍କେରୁହ—ପାଦପଦ୍ମ, ପ୍ରପଞ୍ଚମଣ୍ଡଳ—ଧରାମଣ୍ଡଳ, ରଙ୍କୁ—ଦରିଦ୍ର ଅପେକ୍ଷା, ଫନ୍ଦାଇବା—ଯୋଡ଼ିଦେବା, ଯୁକ୍ତ କରିବା; ଫୁଟୁଥିଲା—କ୍ଳାନ୍ତ ହୋଇପଡ଼ୁଥିଲା, ବର୍ହିଚୂଡ଼ାବତଂସ—ମୟୂରଚନ୍ଦ୍ରିକ ମସ୍ତକଭୂଷଣ ଯାହାଙ୍କର, ବଳଦେବ ବଳାନ୍ୱିତାଦରଜ—ବଳରାମ ଓ ଇନ୍ଦ୍ରଙ୍କ ସାନଭାଇ ( ସ ) ସିନ୍ଧୁସୁତାବର—ଲକ୍ଷ୍ମୀଧବ, ଅମନ୍ଦବିକଳେ—ଅତି ଦୁଃଖରେ, ଭବଅହି—ସଂସାରରୂପସର୍ପ, ଭବ୍ୟକଥା—ସୌଭାଗ୍ୟକଥା, ମଣି

ବିଜ୍ଞାପନ, ନ କରନ୍ତୁ, ବାଧାବଳି ପଡ଼ିଲାଣି ମୋତେ ହେ, ମହାବାହୁ । ବଳିଷ୍ଠ ବାହୁଯୁଗଳ ତଳେ, ବେଗେ ମୋତେ ଘୁସୁଥିଅ ବେଳେ, ବଳଦେବ ବଳାହତାବରଜ ହେ ସିନ୍ଧୁସୁତା-ବର ବନ୍ଦେ ଅମନ୍ଦ ବିକଳେ ହେ । ୨୩ । ଭୟାନକ ଭବ ଅହି ମୁଖେ ପଡ଼ିଛୁ ତ ମୁହିଁ, ଭବ୍ୟ କଥା ଶୋଡ଼ିଲେ କେ ଦେବ । ଭରଜାଲେ ଭଲେ ଏହା ଭ୍ରମରୁ ହେ ରମାନାହା, ଭଲ ଲୋଡ଼େ ନ ଲୋଡ଼ ଲାଘବ ହେ, ମହାବାହୁ । ଭରସା ଏତିକା ଥାଏ ମୋର, ଭଣ୍ଡି ଯେଣୁ ତୁମ୍ଭେ ବଳିଅର, ଭୁରୁଭଙ୍ଗ ମାତ୍ରକରେ, ଭସାଇଲ ରତ୍ନାକରେ, ମହୋନ୍ନତ ବହୁତ ଭୂଧର ହେ । ୨୪ । ମହାମହିମ ହେ ମଣି, ମଙ୍ଗଳ ଗର୍ଭକମଣି ମହୋନ୍ନତ ମହୀଧର ସିନା । ମନାସି ତୁମ୍ଭର ଯଶ, ପଙ୍ଗୁ ଲଙ୍ଘିଲା ନିମିଷ, ମାତ୍ରକେ ତାହାକୁ ଶ୍ରମ ବିନା ହେ ମହାବାହୁ । ମଣ୍ଡିଥିବା ନିଗମକୁ ଘେନି, ମଧୁ ଗୁରୁତନୟଙ୍କୁ ଅଣି, ମହଦାଦି ଲୋକେ ଦର, ମଲ୍ଲୀମାଳା ମନୋହର, କୀର୍ତ୍ତିରେ ମଣ୍ଡିଲ ଯଦୁମଣି ହେ । ୨୫ । ଯମଙ୍କ କିଙ୍କରେ ମନ୍ଦୁ-ମନ୍ତ ହେବା ଯେଉଁ ଜନ୍ତୁମାନଙ୍କୁ ଯାତନ ଦେଉଥାନ୍ତି । ଯାଗ ଭାଗ ଭୁଞ୍ଜିବାକୁ, ଯୋଗ୍ୟ କରାଅ ତାହାଙ୍କୁ, ଯଶୋଦାଙ୍କ ଯବିଷ୍ଠ ସନ୍ତତ ହେ, ମହାବାହୁ । ଯଦୃଚ୍ଛା ବିଳାସବିଚକ୍ଷଣ, ଯତ୍ନ କଲେ ନ ମିଳ ଆପଣ, ଯାବତ ଘଟରେ ବହି-ରନ୍ତରେ ସନ୍ତତ ରହି, କରୁଛ କି ଇଚ୍ଛା ତୁମ୍ଭେ ଜାଣ ହେ । ୨୬ । ରତ୍ନାକର ଯା ମନ୍ଦର, ରମା ରମଣୀ ଯାହାର, ଯାହାର କୌସ୍ତୁଭ ମଣିବର । ରଥ ସୁତବିନତାର, ରଥଚରଣ ହତ୍ୟାର, ରୁଦ୍ରଦେବ ପର ପରିବାର ହେ, ମହାବାହୁ । ରସାତଳମରେ ପଡ଼ି ପଡ଼ି, ରହିଛୁ ସନ୍ତତ କରଯୋଡ଼ି, ରଙ୍କ ଗୁହାରି — ଭାରତୀ, ରତ୍ନକୁଣ୍ଡଳଥ ଶ୍ରୁତି, ରଖିପାରେ ଥରେ ଯାଇ ପଡ଼ି ହେ । ୨୭ । ଲାଗିକାଳେ ଏ ମକର-କୁଣ୍ଡଳ ଯୁଗଳ ମୋର ଦୁଃଖ ଜଣାଇବେ ବୋଲି ଚିନ୍ତ । ଲଗାଇ ରସାରେ ଶିର, ଲକ୍ଷ ଲକ୍ଷ ନମସ୍କାର, ଲାଜ ଦେଇ କରୁଥାଏ ସ୍ତୁତି ହେ, ମହାବାହୁ । ଲବଦହୋଇ ଏତେ ରତ୍ନଗଣ, ଲାଗିଲେ କାହିଁକି ମୋର ରଣ, ଲଭି ଶ୍ରୁତି ପଶେ ଘର, ଲଗଡ଼ି ବି ଲଟସାର ଲୋକରେ ଲଳିତ ଲବ୍ଧଗୁଣ ହେ ।୨୮।

---

ମଙ୍ଗଳଗର୍ଭକ—ଯାହା ଗର୍ଭ ଓ ମସ୍ତକରେ ମଣିପୂର୍ଣ୍ଣ, ମଣି—ମନେକର, ମହୀଧର—ପର୍ବତ, ନିଗମ—ବେଦ, ମହଦାଦି ଲୋକେ—ଭୂଃ, ଭୁବଃ, ସ୍ୱଃ, ମହଃ ପ୍ରଭୃତି ଲୋକରେ । ମନ୍ଦୁମନ୍ତ—ପାପୀ, ଯବିଷ୍ଠ—ସର୍ବସାନ, ରତ୍ନାକର—ସମୁଦ୍ର, ରମା—

ବଡ଼ ମୃଦୁଳ ଏ ବନମାଳା ବୋଲି ପ୍ରତିଦିନ, ବାନ୍ଧି କରୁଥାଏ ବାଞ୍ଛାପନ । ବିଶେଷେ ତାହାଙ୍କ ସଙ୍ଗ, କରି ଆସୁଥିବା ଭଙ୍ଗ, ପଛେ ଗୋଡ଼ାଇବାକୁ ମୋ ମନ ହେ, ମହାବାହୁ । ବରଜ ବନକାଯାକ ବୁଲି, ବୁଝୁଥାଏଁ ଦେଖି ପ୍ରତି ବଲ୍ଲୀ, ବଇଜୟନ୍ତୀ ବଲ୍ଲରୀ, ବକ୍ଷରେ ଯେ ଥିଲେ ଗିରି, ଭୂମିରେ କି ପଡ଼ିଥିଲା ବୋଲି ହେ । ୨୯ । ଶରଧିବେଳାକୁ ବଳି, ଅଦ୍ୟାପି ନାହାନ୍ତି କଳି, କାଳେହେଁ କାତ୍ୟ ମୁଁ ଲଭି ରତି । ଶଶି କୁରଙ୍ଗକୁ ଶେଷ, ଧରାକୁ ଶଙ୍କର ବିଷ କଳଙ୍କ ପରାଏ ବହିଛନ୍ତି ହେ, ମହାବାହୁ । ଶରଣ ବୋଲିବା ଡାକପଣେ, ଶରଣାର୍ଥୀ ଜନ ତତେ କାଣେ, ଶତ୍ରୁ ହେଲେ ସେ ମୋହର, ବୋଲି ତ ହୁକୁମ କର, ପ୍ରତିପାଳୁ ନାହିଁ ଏବେ କେଣେ ହେ ।୩୦। ଷୋଡ଼ଶ ସହସ୍ର ବ୍ରଜସରୋରୁହାକ୍ଷୀ-ସମାଜ ଘେନି ସୁରସୁତା ତୀର କୁଞ୍ଜେ । ଷଡ଼ାସ୍ୟ-ଜନକାହିତ ସଙ୍ଗର ପ୍ରସଙ୍ଗେ ମତ୍ତ, ହୋଇ ପ୍ରଫୁଲ୍ଲିତ ପୁଷ୍ପକୁଞ୍ଜେ ହେ, ମହାବାହୁ । ଷଡ଼ଙ୍ଘ୍ରି ରଞ୍ଜିଲପରି କେଳି, ଷଡ଼ାହୃତ କାରସନଶାଳୀ, ଷଡ଼ଅଙ୍ଗୀ ଶ୍ରୁତିମାନେ, ସ୍ତୁତି କଲେ ଅବସାନେ, ନ ଲଗିଲା ଅପବାଦ ଧୂଳି ହେ ।୩୧। ସବୁ ସଂସାର-ସଦନ୍ତୁ, ସମସ୍ତ ଜନ ବଦନ୍ତୁ, ଶୁଣିଅଛୁ ସତ ଅବା ମିଛ । ସହସ୍ର ସଂଖ୍ୟକ ଅପ-ରାଧ କଲେ ହେଲେ ମାଫ, କରି ପ୍ରସନ୍ନକୁ ରଖୁ ଅଛ ହେ, ମହାବାହୁ । ସେ ସକାଶୁଁ ମୋର ଏ ସାହସ, ସଙ୍କୋଚକୁ ମନେ ନାହିଁ ବାସ, ସରସ ସକଳ ସୁର, ସାମନ୍ତମାନଙ୍କ ସାର ସଂରଜ-ସେବକ ସମୁଲ୍ଲାସ ହେ । ୩୨ । ହରିହୟ ବିଭୂତିକି, ହଂସରଥାଧି-ଭୂତିକି, ହଠି ରହୁନାହିଁ ମୁଁ ସମ୍ମୁଖେ । ହର୍ମ୍ୟତଳେ ଥିବାଯାକେ, ହାସ୍ୟାସ୍ପଦ ନୋହି ଲୋକେ, ହରିନେବ କାଳ କିଛି ସୁଖେ ହେ, ମହାବାହୁ । ହଇରାଣି ନୋହି କ୍ଲେଶଜାଳେ, ହରେ ହବେ ବୋଲି ଅନ୍ତଃକାଳେ, ହସି ହସି ଯିବି ହରିଦାଶ୍ୱ ସୁତଙ୍କ ନଗରୀ, ସୀମା ମାନ ନ ଦେଖିବି

---

ଲକ୍ଷ୍ମୀ, ବନତାର ସୁତ ରଥ—ଗରୁଡ଼ ଯାହାଙ୍କ ବାହନ, ରଥଚରଣ—ଚକ୍ର, ହତ୍ୟାର—ହତିଆର, ଆୟୁଧ; ରସା ତରମରେ—ପୃଥିବୀ ଉପରେ, ଲଗଡ଼—ସୁନ୍ଦର, ଲଟସାର—ଉତ୍କୃଷ୍ଟ, ପିନ୍ଧାଲୁଗା; ବରଜ ବନକା—ବ୍ରଜପୁରର ବନଦେଶ, ପ୍ରତିବଲ୍ଲୀ—ପ୍ରତ୍ୟେକ ଲତା, ଶରାବଧି—ଜଳଧି, ସମୁଦ୍ର; ବେଳା—ସମୁଦ୍ର କୂଳ, ସରୋରୁହାକ୍ଷୀସମାଜ—ପଦ୍ମନେତ୍ରା ସ୍ତ୍ରୀ ସମୂହ, ସୁରସୁତା—ଯମୁନା ଷଡ଼ାସ୍ୟଜନକାହିତ—ଶିବଶତ୍ରୁ କନ୍ଦର୍ପ, ସଙ୍ଗର ପ୍ରସଙ୍ଗେ—ଯୁଦ୍ଧ ବ୍ୟାପାରରେ

ତୋଳେ ହେ । ୩୩ । କ୍ଷିତିକି ବହିବା ଅହି, କ୍ଷମ ନୋହିବାରୁ କହି, ନ ପାରନ୍ତି ଯାହାଙ୍କ ପୁରତେ । କ୍ଷମା ପୀୟୂଷ ସମୁଦ୍ର, ହେବାର ମୁଁ ଅତି କ୍ଷୁଦ୍ର, ଶୀଘ୍ରମୁରେ ଜଣାଇଲି ଏତେ ହେ, ମହାବାହୁ । କ୍ଷମ ଅପରାଧ ଏ ତ ନୁହେଁ, କ୍ଷମାଧିପବାନାଧିବାସ ହେ, କ୍ଷମାକର ଅଜ୍ଞା ହେବ, କ୍ଷିତିସୁର ବଳଦେବ କବିରବି ସମ୍ମୁଖୁ କହେ ହେ । ୩୪ ।

---

ଷଡ଼ଙ୍ଘ୍ରୀ—ଭ୍ରମର, ଷଡ଼ାହିତନିରସନଶାଳୀ—କାମ କ୍ରୋଧାଦି ଷଡ଼୍‌ରିପୁଙ୍କୁ ଯେ ନିରାକରଣ କରିପାରନ୍ତି, ଷଡଙ୍ଗାଶ୍ରିତ—ଶିକ୍ଷା କଳ୍ପ ବ୍ୟାକରଣ ପ୍ରଭୃତି ଷଡଙ୍ଗ ଯୁକ୍ତ ବେଦମାନେ, ହରିହସ୍ତିବିଭୂତି—ଇନ୍ଦ୍ରସମ୍ପତ୍ତି, ହଂସରଥାଧିକୃତ—ବ୍ରହ୍ମାଙ୍କ ଅଧିକାର, ହରିଦଶ୍ୱସୁତଙ୍କ ନଗରୀ—ଯମପୁରୀ, କ୍ଷିତିବହିବା ଅହି—ଶେଷଦେବ, ଅନନ୍ତ ।



# ଚନ୍ଦ୍ରକଳା



## ପ୍ରଥମ ଛାନ୍ଦ

ରାଗ—ମଙ୍ଗଳଗୁଜ୍ଜରୀ

( ପୁରୀ ଜଗନ୍ନାଥ ମନ୍ଦିର ବେଢ଼ାର ଦେବଦେବୀଙ୍କ ସ୍ତୁତି )

ଜୟ ଲବଣଜଳଧି ତୀରଅଳଙ୍କାର । ଜୟ ଜମ୍ବୁଦ୍ୱୀପ କମ୍ବୁମଧ୍ୟ କ୍ଷେତ୍ର-ବର ହେ ।୧। କଷ୍ଟଧ୍ୱଂସୀ ଅଷ୍ଟ ଅଷ୍ଟମୂର୍ତ୍ତି ଜୟ ଜୟ । ବସୁସଂଖ୍ୟ ଭବାନୀ କର ମୋ ଭୟ କ୍ଷୟ ହେ ।୨। ମାର୍କଣ୍ଡେୟ ସିତଗଙ୍ଗା ଶ୍ରୀ ରୋହିଣୀକୁଣ୍ଡ । ତୀର୍ଥରାଜ ଇନ୍ଦ୍ରଦ୍ୟୁମ୍ନ କଳିତାପ ଖଣ୍ଡ ହେ ।୩। ଯହିଁ ମହେନ୍ଦ୍ର-ଚରମେ ବେତ୍ରବଲ୍ଲୀ ଖେଳେ । ଦୀନ ପ୍ରପନ୍ନ ପ୍ରବେଶ ହୋଇ ନିରର୍ଗଳେ ହେ ।୪। ସେ ସିଂହଦ୍ୱାରକୁ ବାର ଲକ୍ଷେ ନମସ୍କାର । ଆଶା କରିଅଛୁ ତରିବାକୁ ଏ ସଂସାର ଯେ ।୫। ପତିତ ଉଦ୍ଧାର ତ ଆମ୍ଭର ଅବଶ୍ୟକ । ଅବଲମ୍ବ କରିଛନ୍ତି ମୁମୁକ୍ଷୁ ଅନେକ ଯେ ।୬। ଆଗ ପଛ ହେଲେ ହେବ ପ୍ରଭୁପଣ କ୍ଷତି । ଏହି ଚିନ୍ତାରେ ଯେ ଚିତ୍ତ ପୂରି ଅଭ୍ୟାସନ୍ତି ଯେ ।୭। ସେ ପତିତପାବନଙ୍କ ଚରଣକମଳେ । ବନ୍ଦେ ନନ୍ଦାବର୍ତ୍ତି-ତଳ ବନ୍ଦାପନା ବେଳେ ଯେ ।୮। ଭବଭୟହାରୀଙ୍କି ଯେ ନାଶିବାରେ

---

ପ୍ରଥମ ଛାନ୍ଦ

୧ । କମ୍ବୁମଧ୍ୟକ୍ଷେତ୍ରବର—ପୁରୀ ଶଙ୍ଖକ୍ଷେତ୍ର ନାମରେ ପ୍ରସିଦ୍ଧ । ୨ । ଅଷ୍ଟ ଅଷ୍ଟମୂର୍ତ୍ତି—ଜଳ, ଅଗ୍ନି, ବାୟୁ, ଆକାଶ, ପୃଥିବୀ, ଯଜମାନ, ଚନ୍ଦ୍ର ଓ ସୂର୍ଯ୍ୟ—ଏହି ଅଷ୍ଟରୂପବିଶିଷ୍ଟ ଅଷ୍ଟଶମ୍ଭୁ । ବସୁସଂଖ୍ୟ ଭବାନୀ—ଅଷ୍ଟଦୁର୍ଗା । ୩ । ସିତଗଙ୍ଗା—ଶ୍ୱେତଗଙ୍ଗା ନାମକ ତୀର୍ଥ, ତୀର୍ଥରାଜ—ସମୁଦ୍ର । ୪ । ମହେନ୍ଦ୍ର ଚରମେ—ଇନ୍ଦ୍ରଙ୍କ ପିଠିରେ, ଦୀନପ୍ରପନ୍ନ—ଦରିଦ୍ର ଆଶ୍ରିତ ଲୋକ । ନିରର୍ଗଳେ—ବିନା ବାଧାରେ । ୮ । ନନ୍ଦାବର୍ତ୍ତିତଳ—ନନ୍ଦାବର୍ତ୍ତି ନାମକ ଦ୍ୱାରର ନିମ୍ନଭାଗ ।

କ୍ଷେମ । କାଶୀଶ୍ୱର ସେହି ପରକାଶିବେ ମୋ କ୍ଷେମ ଯେ । ୯ । କାକଚଞ୍ଚୁପୁଟଭ୍ରଷ୍ଟ ଯାହାଙ୍କର ଲବ । ବିତରନ୍ତି ସିନ୍ଧୋକ ନିର୍ବାଣ ମହୋତ୍ସବ ହେ । ୧୦ । ସେ ଶ୍ରୀମହାପ୍ରସାଦ ସୌରଭ ନିକେତନ । ମୋ ଶରଣ ଦ୍ୱାବିଂଶତି ସଂଖ୍ୟକ ସୋପାନ ଯେ । ୧୧ । ବିରଚିତ ସୂଚି-କର୍ମରୁଚି ମନୋହର । ହରଷ ବରଷ ଭୋଗମଣ୍ଡପ ମୋହର ହେ । ୧୨ । ଅଜାଣନଗଜାପତି ଜଗତ ଜୀବାତୁ । ଆତୁରତା ନାଶ ଆନନ୍ଦେ ମୋ ଚିତ୍ତ ମାତୁ ହେ । ୧୩ । ସ୍ୱଦିଗକୁ ପତିତବ୍ରଜକୁ ଧରି ବଳେ । ଶମନଙ୍କର କଙ୍କରେ ଘେନିଯିବା ବେଳେ ଯେ । ୧୪ । କରଜଳଜର ଚନ୍ଦେ ତରଜନ କରି । ଉଦୀଚୀକି ଛାଡ଼ି ବୋଲି ଦେଲପରି ଠାରି ଯେ । ୧୫ । ସେହି ଦିଗେ କରି ମୁଖଚନ୍ଦ୍ରକୁ ଅପଣ । ପୃଷ୍ଠେ ପକାଇଛ ଶେଷ ଜନ୍ମୁ ନାରାୟଣ ହେ । ୧୬ । ନିମିଳନା କେଳିକାଳେ ଯା କୁମ୍ଭ ଶଙ୍କାରେ । ଭ୍ରମା କୁଚ୍ଚଚେଳନୀଳଦୁକୂଳ ଝିଙ୍କାରେ ଯେ । ୧୭ । କୁମାର ହଟ ପ୍ରକଟ କରୁଁ ତାହା ଦେଖି । ହର ହସୁ ହେଟମୁଖ ହେଲେ ଚନ୍ଦ୍ରମୁଖୀ ଯେ । । ୧୮ । ସେ ଭକ୍ତଜନସମୂହ ମହାବିଘ୍ନବାର । ଅଟକିବା ବିଟଗଣେଶଙ୍କୁ ନମସ୍କାର ହେ । ୧୯ । ନମୋ ନମୋ ନମୋଽସ୍ତୁ ତେ ଇନ୍ଦ୍ରାଦିରେ କରି । କରିମୁଖଜନନୀ ମଙ୍ଗଳା ବିଶ୍ୱେଶ୍ୱରୀ ଗୋ । ୨୦ । ଯାହା ନଟନପାଟବ ପ୍ରକଟନ ଘେନି । ଜଟାଟବୀ ଅଗ୍ରବିନିର୍ଗତ ମନ୍ଦାକିନୀ ଗୋ । ୨୧ । ଦିଗଙ୍ଗନାକୁଚକୁମ୍ଭ ପଟଭଙ୍ଗ ଚୁଲେ । ଦଶଗଜଥାନ ସ୍ଥଳୀ ଦାନ ଧୋଇ-

---

କ୍ଷେମ—ମଙ୍ଗଳ । ୧୦ । କାକଚଞ୍ଚୁପୁଟଭ୍ରଷ୍ଟଲବ—କୁଆଥଣ୍ଟରୁ ଖସିପଡ଼ିଥିବା ମହାପ୍ରସାଦ କଣିକା । ନିର୍ବାଣ ମହୋତ୍ସବ—ମୁକ୍ତିରୂପ ଆନନ୍ଦ । ୧୨ । ସୂଚିକର୍ମ-ରୁଚି—ସୂକ୍ଷ୍ମକାରିଗିରି ଯୋଗୁଁ ସୁନ୍ଦର । ୧୩ । ଅଜାଣନଗଜାପତି—ଭୋଗ-ମଣ୍ଡପ ପୂର୍ବରେ ଗାଛ ଭିତରେ ଥିବା ପାର୍ବତୀ ପତି ବା ମହାଦେବ । ଜୀବାତୁ—ଜୀବନ । ୧୪ । ସ୍ୱଦିଗକୁ—ଯମଙ୍କ ଅଧିଷ୍ଠିତ ଦକ୍ଷିଣ ଦିଗକୁ । ପତିତବ୍ରଜ—ପାପିସମୂହ । ଶମନଙ୍କର କଙ୍କର—ଯମଦୂତ । ୧୫ । କରଜଳଜର—ହସ୍ତପଦ୍ମରେ ଥିବା, ଉଦୀଚୀ—ଉତ୍ତର ଦିଗ, ସ୍ୱର୍ଗମାର୍ଗ । ୧୬ । ବେଢ଼ାର ଅଗ୍ନି କୋଣରେ ଥିବା ନାରାୟଣମୂର୍ତ୍ତି ଉତ୍ତରମୁଖୀ । ୧୭ । ନିମୀଳନାକେଳି—ଆଖି ବୁଜାବୁଜି ଖେଳ, ଯା କୁମ୍ଭଶଙ୍କାରେ—ଯେଉଁ ଗଣେଶଙ୍କ କୁମ୍ଭଦ୍ୱୟ ବୋଲି ଭ୍ରମ କରି । ୧୮ । କୁମାର—କାର୍ତ୍ତିକେୟ, ହେଟମୁଖ—ନମ୍ରମୁଖ, ଚନ୍ଦ୍ରମୁଖୀ—(ଏଠାରେ) ଚନ୍ଦ୍ରାନନା ପାର୍ବତୀ, ୧୯ । ମହାବିଘ୍ନବାର—ବଡ଼ ବଡ଼ ବାଧାସବୁ, ଅଟକିବା—ଅଟକାଇବା, ବନ୍ଦ କରି ରଖିବା । ୨୦ । ଯାହା ନଟନପାଟବ ପ୍ରକଟନ ଘେନି—ଯେଉଁ ଦୁର୍ଗାଙ୍କ

ଦେଟଲ ଯେ । ୨୨ । ସେ ବଟ ବିଟପୀଶ୍ୱର ଚରଣପଙ୍କଜେ । ଶରଣ ପ୍ରପନ୍ନ ହୋଇ ଅହର୍ନିଶ ଭଜେ ଯେ । ୨୩ । ଧରାସ୍ତନ ଭ୍ରମାବହ ନୀଳ ଶିଳୋଚ୍ଚୟ । ପତାବଳି ଚତାକୃତ ମହାମହୋଚ୍ଛ୍ରୟ ଯେ । ୨୪ । କଳ୍ପ-ବଟଙ୍କର ସେ ଅନଳ୍ପ ଅନାତପ । କରନ୍ତୁ ମୋ ଭବଭ୍ରମ ଭବଶ୍ରମ ଲୋପ ଯେ । ୨୫ । କବଳିତ କଳା କାଦମ୍ବିନୀ କାନ୍ତି କେଳି । କରନ୍ତୁ କଳ୍ପଣି କୃଷ୍ଣ ମୋ ମାନସେ ଖେଳି ଯେ ।୨୬। ସୁଧାମୁଖାମ୍ବୁଜ ଭ୍ରମେ ସ୍ୱପାଦ ସାରସ । ଚୁମ୍ବନେ ଯେ ନିରନ୍ତରେ ବଳାଇ ମାନସ ଯେ । ୨୭ । ପ୍ରଳୟଜଳରେ ଖଟ କର ବଟଦଳ । ପହୁଡ଼ିଲେ ମୋଦେ ନୀଳନବୀନକୁନ୍ତଳ ଯେ । ୨୮ । ଭବଭୟ ପୟୋଧିକି ତାରିବା ଆନନ୍ଦେ । ବନ୍ଦେ ମେ ବାଲମୁକୁନ୍ଦ-ଚରଣାରବିନ୍ଦେ ଯେ । ୨୯ । ଭୁଜଙ୍ଗପୁଙ୍ଗବତଳ୍ପ ଅର୍ଥିକଳ୍ପତରୁ । ଦନୁଜମଣ୍ଡଳୀମୁଣ୍ଡ ଧରାଧର-ସ୍ୱରୁ ଯେ । ୩୦ । ରମା ସରସ୍ୱତୀଙ୍କର କର ସେବ୍ୟପଦ । ଶ୍ରୀପୁରୁଷୋତ୍ତମ ହର ମୋହର ବିପଦ ହେ । ୩୧ । ଖଡ଼ଗ ଧର ଯେ ହର ଗର୍ବ ଗଡ଼ଭୟ । ନିରତେ ନିବାର କ୍ଷେତ୍ରପାଳ ଜୟ ଜୟ ହେ । ୩୨ । ଉତ୍ତୁଙ୍ଗ ମହୀଧ୍ରବୁଦ୍ଧି ହୋଇଲେ ପ୍ରାସାଦେ । ଜମ୍ଭାରି ଦମ୍ଭୋଳିକେଳି ହୋଇବ ପ୍ରମାଦେ ଯେ । ୩୩ । ତାହା ନିବାରଣ ପରାକ୍ରମ ଚତ୍ତେ ଚନ୍ତ୍ର । ଦେଉଳମଣ୍ଡଳ ସ୍ଥଳେ ଯେ ବିରାଜେ ନିତ ହେ । । ୩୪ । କ୍ଷମା କର ନିଖିଳ ପାତକୀ ଜନ୍ତୁମନ୍ତୁ । ସେ ନୀଳଚକ୍ର ମୋ ଦୁଃଖ ଚକ୍ର ନିବାରନ୍ତୁ ଯେ । ୩୫ । ପ୍ରବଳନ୍ତେ ହିରଣ୍ୟଦନୁଜଗଜବଳେ । ସମଗ୍ର କେଶରବେଶ ପରଗ୍ରହବେଳେ ଯେ । ୩୬ । ବିପତ୍ତି ଅଶକ୍ତ ଭକ୍ତ କରନ୍ତେ ସ୍ମରଣ । ହୃଦକଞ୍ଜ ଦ୍ରବମୟ କରନ୍ତେ କରୁଣା ଯେ । ୩୭ ।

---

ନୃତ୍ୟନିପୁଣତା ପ୍ରକାଶ ପାଇବାରୁ । ଜଟାଟବୀ—ଶିବଙ୍କ ଜଟାରୂପ ଅରଣ୍ୟ । ୨୨ । ଦିଗଙ୍ଗନା କୁଚକୁମ୍ଭପତ୍ରଭଙ୍ଗାବଳେ—ଦଶଦିଗରୂପ ସ୍ତ୍ରୀମାନଙ୍କ କୁଚରୂପକୁମ୍ଭରେ ଚିତ୍ର ହୋଇଥିବା କସ୍ତୁରୀ ପ୍ରଭୃତିରେ ଅଙ୍କିତ ପତ୍ରର ଚିତ୍ର ଧୋଇଦେବା ସାଙ୍ଗେ ସାଙ୍ଗେ, ଦଶଦିଗ୍‌ଗଜଙ୍କର ଗଣ୍ଡସ୍ଥଳର ମଦଜଳଧାରାକୁ ଯେ ପ୍ରଳୟରେ ଧୋଇଥିଲେ । ୨୩ । ବଟ ବିଟପୀଶ୍ୱର—କଳ୍ପବଟ ମୂଳରେ ଥିବା ବଟକୃଷ୍ଣ । ୨୪ । ମହାମହୋଚ୍ଛ୍ରୟ—ଅତି ଉଚ୍ଚ । ୨୫ ଅନଳ୍ପ ଅନାତପ—ପ୍ରଚୁର ଛାୟା । ୨୬ । କବଳିତ କଳା କାଦମ୍ବିନୀକାନ୍ତି କେଳି—କୃଷ୍ଣବର୍ଣ୍ଣ ମେଘଭଳି ମନୋହର । ୨୭ । ସ୍ୱପାଦସାରସ—ନିଜ ପାଦରୂପ ପଦ୍ମ । ୩୦ । ଭୁଜଙ୍ଗପୁଙ୍ଗବତଳ୍ପ—ଅନନ୍ତ ନାଗ ଉପରେ ଶୋଇଥିବା । ଧରାଧରସ୍ୱରୁ—ପର୍ବତର ବଜ୍ର । ୩୩ । ଉତ୍ତୁଙ୍ଗମହୀଧ୍ର ବୁଦ୍ଧି—ଉଚ୍ଚପର୍ବତଜ୍ଞାନ । ପ୍ରାସାଦ—ବଡ଼ ଦେଉଳ । ଜମ୍ଭାରିଦମ୍ଭୋଳି—ବଜ୍ର । ୩୫ । ପାତକୀ ଜନ୍ତୁମନ୍ତୁ—ପାପୀ ଜୀବଙ୍କର ଅପରାଧ । ୩୬ । ହିରଣ୍ୟ-କଶିପୁ ରାକ୍ଷସ ମତ୍ତ ହାତୀ ପରି ପ୍ରବଳ ହେଲା ବେଳେ । ୩୭ । ବିପତ୍ତି ଅଶକ୍ତ-

କଣ୍ଠୁ ଯାଏ କଣ୍ଠୀରବ ବେଶ ହୋଇଥିଲେ । ସ୍ତମ୍ଭରୁ ସମ୍ଭବ ଦନୁଜକୁ ଯେ ମାଇଲେ ଯେ । ୩୯ । ପାପବଶୁଁ ଯିବାବେଳେ ମୁଁ ନରକେ ସର । ଅବଲମ୍ବ ହୋଇବେ କି ସେ ନରକେଶରୀ ଯେ । ୩୯ । ବିଭ୍ରାଜିତ ସୁରଗୁର୍ଯ୍ୟ ଧରାସୁରଙ୍କର । ବିଦ୍ୟାକେଳିସ୍ଥଳୀ ଶମ୍ଭୁ ଦୁରିତପଙ୍କର ଯେ । ୪୦ । ଯହିଁ ସୁନାସୀର ଶିରେ କରନ୍ତି ବନ୍ଦନ । ସେ ମୁକ୍ତିମଣ୍ଡପ ହେବେ ମୋର ଆନନ୍ଦନ ଯେ । ୪୧ । ତୁରୀୟ ସମୟେ ଚୂର ପ୍ରତ୍ୟୂହ ମୋହର । ପୂରିବେ କି ମନୋରଥ ଖଗେଶ୍ୱର ଯେ । ୪୨ । ଯହିଁ ଅବଗାହିବାରୁ ଥିର କାଳପାଳ । ବନ୍ଦିଲେ ତାହାକୁ ଇନ୍ଦ୍ର ଆଦି ଦେବଜାଲ ଯେ । ୪୩ । କଳ୍ମଷମଣ୍ଡଳଧ୍ୱଂସୀ ସେ ରୋହିଣୀକୁଣ୍ଡେ । ଖଣ୍ଡନ କରନ୍ତୁ ଚଣ୍ଡଭାନୁସୁତଦଣ୍ଡେ ହେ । ୪୪ । ଯାହା ପ୍ରସାଦବଶରୁ ମହାପ୍ରସାଦରେ । ପବିତ୍ର ହୁଅଇ ଜଗତ୍ରୟ ପ୍ରମୋଦରେ ଯେ । ୪୫ । ମୃଗେନ୍ଦ୍ରବାହିନୀ କ୍ଷେତ୍ରବର ଅଧୀଶ୍ୱରୀ । ନାଗସୁତା ସୁଧାକୁମ୍ଭଧାରିଣୀ ସୁନ୍ଦରୀ ଯେ । ୪୬ । ବିମଳା ବିମଳ-ଅମ୍ଭୋରୁହବିଲୋଚନା । ହୋଇବେ କି ମୋର ପାପକଳାପମୋଚନା ହେ । ୪୭ । ରଜ ତମ ସତ୍ତ୍ୱ ତିନିଗୁଣ ମଧ୍ୟ ମୟ । ରଜତମହାଧ୍ୱଜକେତନା ଜୟ ଜୟ ହେ । ୪୮ । ଶିଖଣ୍ଡମଣ୍ଡନ ଭଣ୍ଡପୂର୍ବ ଗଜାନନ । ନରହର ରାଧାଧବ ମଦନମୋହନ ଯେ । ୪୯ । ବରଷ ହରଷେ କୃପାପୀୟୂଷନର୍ଝର । ଏ ପଞ୍ଚ ମୋ ପ୍ରପଞ୍ଚ ବାସନା ଦୂର କର ହେ । ୫୦ । ସରସ୍ୱତୀ ବୋଲି ଖ୍ୟାତ ଏକେ ଯାହାଙ୍କର । ସୁତ ଉଚ୍ଚାରନ୍ତି ଶ୍ରୁତିମୁଖାଦି ଶଙ୍କର ଯେ । ୫୧ । ତ୍ରିଭୁବନଜନୟିତ୍ରୀ ଶ୍ରୀ ଭୁବନେଶ୍ୱରୀ । ପରିପାଳନ୍ତୁ ମୋ ଶିରୀ-କପଟବଲ୍ଲରୀ ଯେ । ୫୨ । ଇନ୍ଦ୍ରଦ୍ୟୁମ୍ନମୋଦମହୋଦଧିରାକାଧବ । ପ୍ରସନ୍ନ ହୁଅନ୍ତୁ ମୋରେ ଶ୍ରୀ ନୀଳମାଧବ ଯେ । ୫୩ । ସ୍ମିତ ଅଚ୍ଛହସନ-

---

ଭକ୍ତ—ବିପତ୍ତି ସମୟରେ ଅକ୍ଷମ ହୋଇଥିବା ଭକ୍ତ ପ୍ରହ୍ଲାଦ । ୩୭ । କଣ୍ଠୀରବ—ସିଂହ । ୪୦ । ବିଭ୍ରାଜିତ—ଶୋଭିତ, ସୁରଗୁର୍ଯ୍ୟଧରାସୁରଙ୍କ—ବୃହସ୍ପତି ସଦୃଶ ବ୍ରାହ୍ମଣମାନଙ୍କର । ୪୧ । ସୁନାସୀର—ଇନ୍ଦ୍ର । ୪୨ । ତୁରୀୟ ସମୟେ—ଚତୁର୍ଥାବସ୍ଥାରେ, ପ୍ରତ୍ୟୂହ—ବାଧା, ଦୁଃଖ । ୪୪ । ଚଣ୍ଡଭାନୁସୁତଦଣ୍ଡ—ଯମଦଣ୍ଡ । ୪୫ । ଜଗନ୍ନାଥଙ୍କ ଭୋଗ ବିମଳାଙ୍କୁ ସମର୍ପିତ ହେବା ପରେ "ମହାପ୍ରସାଦ" ରେ ପରିଣତ ହୁଏ । ୪୮ । ବଳରାମ ରଜୋଗୁଣରୂପୀ; ସୁଭଦ୍ରା ତମୋରୂପିଣୀ ଓ ଜଗନ୍ନାଥ ସତ୍ତ୍ୱରୂପୀ । ରଜତମହାଧ୍ୱଜକେତନ ରୂପାପର୍ବତତୁଲ୍ୟ ପ୍ରାସାଦ, ବଡ଼ ଦେଉଳ । ୪୯ । ଭଣ୍ଡପୂର୍ବଗଜାନନ—ଭଣ୍ଡ ଗଣେଶ । ୫୦ । ପ୍ରପଞ୍ଚବାସନା—ସଂସାରକାମନା । ୫୧ । ଶ୍ରୁତିମୁଖ—ବ୍ରହ୍ମା । ୫୨ । ଶିରୀକପଟବଲ୍ଲରୀ—ସୌଭାଗ୍ୟ ରୂପ କପଟଲତା । ୫୩ । ଇନ୍ଦ୍ରଦ୍ୟୁମ୍ନ...ଧବ—ଇନ୍ଦ୍ରଦ୍ୟୁମ୍ନଙ୍କ ଆନନ୍ଦସାଗର

ମାଳିକା ବକାଳିକା । କରନ୍ତୁ ଶଂ-ବରବୃଷ୍ଟି ମୋ'ଠାରେ କାଳିକା ଗୋ ୫୪ । ଶ୍ରୀବତ୍ସଲାଞ୍ଛନ ବତ୍ସଗୁଚ୍ଛସହଚରୀ । ଚରାଚରେଶ୍ୱରୀ ନୈଋ ଅନ୍ତେ ରଚ ଶିରୀ ଗୋ । ୫୫ । ସମୃଦ୍ଧ ରାକ୍ଷସଯୁଦ୍ଧ ବୁଦ୍ଧିର ପ୍ରଭାବ । ସମୀରନନ୍ଦନ ବଢ଼ାଅ ମୋ ନୈବୋତ୍ସବ ହେ । ୫୬ । ବାତାବ ଚାବବାନ୍ୟସ୍ତ ଗଣେଶ ନ୍ନହର । ହରନ୍ତୁ ମୋହର ଚାଉସନ୍ତାପ ଲହରୀ ହେ । ୫୭ । ସୁରଧୁନୀ ଆଦି ନଦୀମାନଙ୍କର ତୀର୍ଥ । ଶ୍ରୀଚରଣାମୃତ କୁଣ୍ଡ କରନ୍ତୁ କୃତାର୍ଥ ହେ । ୫୮ । ଅମ୍ବରସ୍ଥଳୀମହାଲା ରତନଭୂଷଣ । କରନ୍ତୁ ପୂଷଣ କଳିକଲ୍ମଷ ଶୋଷଣ ଯେ । ୫୯ । ପାତାଳେଶ ନାମ ବ୍ୟୋମକେଶ ଉତ୍ତରାଣୀ । ଦୁହେଁ ମୋର ହୁଅନ୍ତୁ ରକ୍ଷକ ଉଦ୍ଧାରଣୀ ଯେ । ୬୦ । ଅମରାଗୀତ ଲବଣ୍ୟବର୍ଦ୍ଧିତ ସେ ମୋତେ । ରଖନ୍ତୁ ଶୀତଳା କୃପା ଅପାଙ୍ଗେ ନିରତେ । ୬୧ । ଧରାଧର ଅଧିରାଜ କନ୍ୟାକୁଲେ ମିଶି । କର ଲୋକେଶ୍ୱର ମୋତେ ସ୍ୱପଦନିବାସୀ ହେ । ୬୨ । କାଶୀ ତେଜି ଅସି ଯେଉଁ ଛଳେ କ୍ଷେତ୍ରସ୍ଥିତ । ବିଶ୍ୱନାଥ ନିଃସ୍ୱ ଚିନ୍ତାମଣି ସେ ମୋ ଗତି ହେ । ୬୩ । ଶ୍ମଶାନନିଳୟ ଦିଗମ୍ବର ହେଲେ ହେଳେ । କୃଷା ନ ଦେଖିବା ଶିରୀ ଦିଅନ୍ତି ଯେ ଭଲେ ହେ । ୬୪ । ଈଶାନ ପ୍ରଭାବ ପ୍ରଭୁ ଈଶାନନାଥର । ସମଗ୍ରତା ସେ କରିବେ ମୋ ମନୋରଥର ଯେ । ୬୫ । ସୁନ୍ଦର ମନ୍ଦିର ଜଗନ୍ମୋହନ ଯା ନାମ । ଲକ୍ଷବାର ଘେନନ୍ତୁ ସେ ମୋହର ପ୍ରଣାମ ଯେ । ୬୬ । ସଦାଶିବ ଶିବ ସେ ବାରିଜସୂତ ଦୁହେଁ । ପ୍ରତିକୂଳକୁଳକୁ ନାଶନ୍ତୁ ଅନୁଗ୍ରହେ ଯେ । ୬୭ । ତକ୍ଷକର ଦକ୍ଷଜନରକ୍ଷକ ଯା ନାମ । ପକ୍ଷପାତ

---

ବଢ଼ାଇବାରେ ପୂର୍ଣ୍ଣିମା ଚନ୍ଦ୍ରସ୍ୱରୂପ । ୫୪ । ଶ୍ରୀ...ଅଟ୍ଟହସନ—ଯାହାଙ୍କର ଅଟ୍ଟହାସ ବକପନ୍ତି ପରି ଓ ଯାହାଙ୍କର ବର୍ଣ୍ଣ କଳାମେଘ ପରି । ଶଂ-ବରବୃଷ୍ଟି—ମଙ୍ଗଳରୂପ ବରଦାନ ଏବଂ ଜଳବୃଷ୍ଟି । ୫୫ । ଶ୍ରୀବତ୍ସ···ସହଚରୀ—ଶ୍ରୀକୃଷ୍ଣଙ୍କ ବକ୍ଷସ୍ଥଳନିବାସିନୀ । ନୈଋ···ଶିରୀ—ନୈଋକୋଣରେ ମୋ ସୌଭାଗ୍ୟର ସଙ୍କେତ କର । ୫୬ । ସମୃଦ୍ଧ···ପ୍ରଭାବ—ପରାକ୍ରାନ୍ତ ରାକ୍ଷସମାନଙ୍କର ଯୁଦ୍ଧ ବୁଦ୍ଧିର ଶାସକ । ସମୀରନନ୍ଦନ—ହନୁମାନ । ୫୯ । ପୂଷଣ—ସୂର୍ଯ୍ୟ, କଳିକଲ୍ମଷ—କଳିକାଳଜନିତ ପାପରୂପ ପଙ୍କ । ୬୦ । ପାତାଳେଶ୍ୱର ଶିବ ଓ ଉତ୍ତରାଣୀ ଠାକୁରାଣୀ—ଯଥାକ୍ରମେ ମୋ ରକ୍ଷକ ଓ ଉଦ୍ଧାରଣୀ ହୁଅନ୍ତୁ । ୬୨ । ଲୋକେଶ୍ୱର—ଲୋକନାଥ ମହାଦେବ, ସ୍ୱପଦନିବାସୀ—ଶିବଲୋକବାସୀ । ୬୪ । ହେଳେ—ଅକ୍ଳେଶରେ, ଦିଗମ୍ବର—ଲଙ୍ଗଳା, କୃଷା—ଇନ୍ଦ୍ର । ୬୫ । ଈଶାନ —ସୂର୍ଯ୍ୟଙ୍କପରି ପ୍ରଭାବଶାଳୀ ଈଶାନେଶ୍ୱର । ୬୭ । ସଦାଶିବ-ଶିବ—ମଙ୍ଗଳମୟ ମହାଦେବ, ବାରିଜସୂତ—ବ୍ରହ୍ମା । ୬୮ । ପକ୍ଷିସାର୍ବଭୌମ -ପକ୍ଷୀରାଜ, ଗରୁଡ଼ ।

କରନ୍ତୁ ସେ ପକ୍ଷିସାର୍ବଭୌମ ଯେ । ୬୮ । ଜୟ ବିଜୟଙ୍କୁ ମୋ ଅନେକ ନମସ୍କାର । କଳାହାଟକୁ ଯିବାବେଳେ ନ ନିବାର ହେ । ୬୯ । ନମସ୍ତେ ଶ୍ରୀ ପଚଂଚନ୍ଦ୍ର ଚତୁର୍ଦ୍ଧା ବିଗ୍ରହ । ଅବଦାତ କୃଷ୍ଣ ହରିଦ୍ରାଭ ମହାମହ ହେ । ୭୦ । ଅବକାଶଠାରୁ ପୁଷ୍ପାଞ୍ଜଳିଯାଏ ରହି । କରୁଥିବ ଦଣ୍ଡବତ ଚମା ବାଞ୍ଛିତ ଏହି ହେ । ୭୧ । ବନ୍ଦଇ ହେ ବିଶାରଦ ରସାତଳଦେବେ । ଦୟାଳୁ ମୋଠାରେ ହୃଦୟାଳୁମାନେ ହେବେ ଯେ । ୭୨ । ସରସ ଶ୍ରୀହରିଷାଦ ମହାକବିମାନେ । ବିହରଲେ ମହୋନ୍ନତ କବନବିମାନେ ଯେ । ୭୩ । ସେବି ମାନ ତେଜ ସେ ବିମାନ ଅନାତପ । କଲି ଚନ୍ଦ୍ରକଳା ଗ୍ରନ୍ଥାରମ୍ଭ ସଙ୍କଳପ ହେ । ୭୪ । ବିଷଦୋଷ କଣ୍ଠେ ରଖି ଗଜଗିରମଣି । ଚନ୍ଦ୍ରକଳାକୁ ଯେମନ୍ତ ଘେନିଲେ ତ ଜାଣି ହେ । ୭୫ । ନିରକ୍ଷର ଖଳ ନୋହେ କଠାକ୍ଷର ଲକ୍ଷ୍ୟ । ତାହାକୁ ମାଗୁଣୀ ଏତେ ନୋହୁ ସେ ମୋ ପକ୍ଷ ହେ । ୭୬ । ଚରନ୍ତନ ଭଉରୂ୍ୟତ ଲେଷ୍ଟୁଜ ଧ୍ୱନିକି । ସ୍ତୁତ ନିନ୍ଦା କେଉଁମତେ ପଣ୍ଡିତେ ଘେନି କି ହେ । ୭୭ । ତଥାପି ସେ କର୍ଣ୍ଣବିଲେ ବ୍ୟଥା ନ ଦେବାକୁ । ବିରତ ଲଭନ୍ତୁ ବୋଲି କହୁଚ୍ଛି ତାହାଙ୍କୁ ଯେ । ୭୮ । ପଦଲଗ୍ନ କମ୍ବାଳକୁ ଜଳେ ଧୂଆଇଲେ । ତା ମାର୍ଜନା କଲି ବୋଲି କେହି ତ ନ ବୋଲେ ହେ । ୭୯ । ଦ୍ୱିତୀୟ ଛାନ୍ଦରେ ହେବ ଚରିତ ଆରମ୍ଭ । ନିବାହରୁ ଅନ୍ତରାୟ ହରିବେ ହେରମ୍ବ ହେ । ୮୦ । ଚନ୍ତା ରଖି ସୀତାକାନ୍ତ ପଦସରୋରୁହେ । ଜଳନ୍ତରଧରାମରାବତୀପତି କହେ ହେ । ୮୧ ।

---

୬୯ । କଳାହାଟ—ଜଗମୋହନ ଓ ରତ୍ନସିଂହାସନ ମଧ୍ୟରେ ଥିବା ପ୍ରଥମ ଦ୍ୱାରକୁ ଜୟ ବିଜୟ ଦ୍ୱାର ଓ ରତ୍ନସିଂହାସନର ନିକଟବର୍ତ୍ତୀ ଦ୍ୱାରକୁ କଳାହାଟ ଦ୍ୱାର କୁହାଯାଏ । ୭୦ । ଅବଦାତ—ଶୁକ୍ଳ, ମହାମହଃ—ମହତ୍ ତେଜଃସ୍ୱରୂପ । ୭୨ । ରସାତଳଦେବେ—ବ୍ରାହ୍ମଣମାନେ । ୭୩, ୭୪ । ଶ୍ରୀ ହର୍ଷ—ନୈଷଧ-ଚରିତ ନାମକ ସଂସ୍କୃତ ମହାକାବ୍ୟପ୍ରଣେତା । କବନବିମାନ—କବିତ୍ୱରୂପ ବିମାନ । ମାନ ତେଜ—ଅହଙ୍କାର ଛାଡ଼ି, ସେ ବିମାନଅନାତପ ସେବି—ସେ ବିମାନର ଛାଇକୁ ଆଶ୍ରୟ କରି । ୭୬ । ଚରନ୍ତନ ଭଉିଚ୍ୟୁତ—ପୁରୁଣା କାନ୍ଥରୁ ଖସୁଥିବା । ଲେଷ୍ଟୁଜ—ଢେଲାରୁ ଜାତ ହେଉଥିବା । ୮୦ । ହେରମ୍ବ—ବିଘ୍ନରାଜ ଗଣେଶ ।

# ଦ୍ୱିତୀୟ ଛାନ୍ଦ

## ରାଗ—କେଦାରକାମୋଦୀ

## ( ପୂର୍ବଜନ୍ମ ବୃତ୍ତାନ୍ତ )

ଶୁଣିମା ହେଉ ବିଶାରଦେ ସାଦରେ । ବଳଦଳନ ଶେଷ ମହା ମୋଦରେ ଯେ । ମହେନ୍ଦ୍ର ବସିଥିଲେ ଆରମ୍ଭି ସଭା । କେ ଭାରତୀରେ କହୁ ସଭାର ଶୋଭା ଯେ । ୧ । ନବ ଦିଗୀଶ ଏକାଦଶ ଗିରୀଶ । ଦ୍ୱାଦଶ ବାସରେଶ ନବ ଲୋକେଶ ଯେ । ସପ୍ତବିଂଶତି ଋକ୍ଷ ଚନ୍ଦ୍ରାଦି ଗ୍ରହ । ବିରାଜି ଥିଲେ ଧରି ନିଜ ବିଗ୍ରହ ହେ । ୨ । ଦ୍ୱିଶତବିଂଶତି ଯେ ମହାରାଜିକ । ହୋଇ ନ ଥିଲେ ନିକ ସେ ସାମାଜିକ ହେ । ପ୍ରସିଦ୍ଧ ସିଦ୍ଧ ସାଧ୍ୟ ଧାଟୀରେ ମିଶି । ହରଷେ ଥିଲେ ଅଷ୍ଟବସୁଏ ବସି ଯେ । ୩ । ତ୍ରିଶତ ଷଡ଼ଧିକ ତୁଷିତ ସୁରେ । ପ୍ରବନ୍ଧସଂଖ୍ୟା ଆଭାସୁର ନିର୍ଜରେ ହେ । ବ୍ରାହ୍ମୀ ପ୍ରମୁଖ ମାତା ଥିଲେ ବିରାଜି । ଶ୍ରୁତିମଣ୍ଡଳୀ ଥିଲେ ମୂର୍ତ୍ତିକି ଭଜି ଯେ । ୪ । ଭଣି ମାନବ ଗିରେ କେ କରୁ ଶେଷ । ଅଣିମା ଆଦି ବିଭୂତିଙ୍କ ବିଳାସ ଯେ । ରାଶି ବାସର ତିଥି ଯୋଗ କରଣ । କାଶୀବାସିଭୂଷଣ ଭୂପତିଗଣ ହେ । ୫ । ନିମିଷୁଁ ମନ୍ୱନ୍ତର ଯାଏ ଶରୀର-ମାନଙ୍କୁ ଘେନି କାଳ ଥିଲା ହାଜର ହେ । ଦୁଇ ଯୁଗଳ ଯୁଗ ଯାଗଙ୍କ ରାଜି । ଷଡ଼ଋତୁଙ୍କ ପାଶେ ଥିଲେ ବିରାଜି ଯେ । ୬ । ଗୁରୁସଂବର୍ତ୍ତି ବର୍ତ୍ତିଥିଲେ ହରଷେ । ସପତ ଦ୍ୱୀପ ଗୁରୁ ସମୁଦ୍ର ପାଶେ ଯେ । ଅଷ୍ଟସଂଖ୍ୟକ କୁଳ ଧରଣୀ ଧରେ । ଅଭ୍ରମୁ-ରମଣୀଦି ଆଶାକୁଞ୍ଜରେ ଯେ । ୭ । ଅତଳ ଆଦି ବିଶ୍ୱଲୋକ ନିକର । କରକୁ ଯୋଡ଼ି ହୋଇଥିଲେ କିଙ୍କର ଯେ । ପ୍ରଭବ ଆଦି ସମ୍ବତ୍ସରଙ୍କ ତୁଲେ । ଇନ୍ଦ୍ରପ୍ରମୁଖ ଖଣ୍ଡ ମଣ୍ଡଳେ ଥିଲେ ଯେ । ୮ । ଊନପଞ୍ଚାଶ ସଂଖ୍ୟା ଜଗତ-

---

ଦ୍ୱିତୀୟ ଛାନ୍ଦ

୧ । ବଳଦଳନ ଶେଷ—ବଳାସୁର ବିନାଶ ପରେ । ୨ । ନବଦିଗୀଶ—ଇନ୍ଦ୍ରଙ୍କ ଭିନ୍ନ ଅନ୍ୟ ନବଦିକ୍‌ପାଳ, ଦ୍ୱାଦଶବାସରେଶ—ବାରସୂର୍ଯ୍ୟ, ଲୋକେଶ—ପ୍ରଜାପତି, ଋକ୍ଷ—ନକ୍ଷତ୍ର, ବିଗ୍ରହ—ଶରୀର ।୩। ଧାଟୀ—ଧାଡ଼ି ।୪। ତୁଷିତସୁର—ଗଣ ଦେବତାବିଶେଷ, ପ୍ରବନ୍ଧସଂଖ୍ୟ ଆଭାସୁରନିର୍ଜରେ—୬୪ ସଂଖ୍ୟକ କାନ୍ତଦେବତା, ଶ୍ରୁତିମଣ୍ଡଳୀ—ଦେବସମୂହ । ୬ । ଦୁଇଯୁଗଳଯୁଗ—ଚାରିଯୁଗ । ୭ । ଗୁରୁସଂବର୍ତ୍ତି—ସଂବର୍ତ୍ତି ଆଦି ଗୁରୁ ମେଘ, କୁଳଧରଣୀଧରେ—କୁଳପର୍ବତମାନେ, ଅଭ୍ରମୁରମଣୀ—ଐରାବତହସ୍ତୀ, ଆଶାକୁଞ୍ଜରେ—ଦିଗ୍‌ହସ୍ତୀମାନେ । ୮ । ଇନ୍ଦ୍ରପ୍ରମୁଖଖଣ୍ଡମଣ୍ଡଳ—

ପ୍ରାଣ । ଅଗମ୍ୟାଦି ଅରଣ୍ୟ ଶରୀରଗଣ ହେ । ଅଯୋଧ୍ୟା ଆଦି ସପ୍ତପୁରୀ ମୂରତି । ଏକ ପ୍ରଦେଶେ ହୋଇଥିଲେ ଭରତି ହେ । ୯ । ଅଙ୍ଗ ବଙ୍ଗାଦି ଷଟ୍ ପଞ୍ଚାଶ ଦେଶ । ହାଜର ଥିଲେ ଧରି ନିଜର ବେଶ ହେ । ଯକ୍ଷ ଗନ୍ଧର୍ବ-କୁଳ ଗନ୍ଧବାନନେ । ହାହାଦି ମହାଗୁଣଶାଳୀ ଗାୟନେ ହେ । ୧୦ । ମରୀଚି ଆଦି ଅତି ଚିରନ୍ତ ଋଷି । ଧରି ଚିନ୍ମୟରୂପ ଥିଲେ ସେ ବସି ହେ । ବେଦସଂଖ୍ୟକ ସମ୍ପ୍ରଦାୟ ଆଶ୍ରମ । ଷଟ୍ ପ୍ରମାଣ ବ୍ରତ ସନ୍ତତ ଶମ ହେ । ୧୧ । ହୀଭ୍ରାନ୍ତ କାନ୍ତ କୀର୍ତ୍ତି କରୁଣା କ୍ଷମା । ସମୃଦ୍ଧି ଲଜ୍ଜା ଯେତେ ନିଧି ଉପମା ହେ । ରମ୍ଭାଦି ଜମ୍ଭାରାତି ପ୍ରିୟ ସୁକେଶୀ । ଜୃମ୍ଭାଦି ନିଦ୍ରା ଯାଏ ଥିଲେ ବିଳସି ଯେ । ୧୨ । ସଂକଳ୍ପ ମଣି ମହୌଷଧିଏ ସୁଖେ । ଥିଲେ ଅଶ୍ୱିନୀତନୁଭବଙ୍କ ପାଖେ ଯେ । ନନ୍ଦନବନୀ ହରିଚନ୍ଦନଲତା । ଏ ସମସ୍ତଙ୍କ ପରଣାମ ଦେବତା ଯେ । ୧୩ । ଯହିଁ ସାକ୍ଷାତ ସୁର ଈଶ୍ୱର ବିଜେ । କେତେ କହିବା ଯେତେ ଥିଲେ ସମାଜେ ଯେ । ଏକାଳେ ମେରୁପାଦ କୃତମନ୍ଦିର । ଲବଣ୍ୟଧ୍ୱଜ ନାମ ଗନ୍ଧର୍ବ ବର ଯେ ।୧୪। କେଳି-ମଞ୍ଜୁଳା ନାମ ମହିଳାସାଥେ । ଯେନି ମୋହନା ନାମ ବିପଞ୍ଚୀ ହାତେ ଯେ । ପ୍ରବେଶ ହୋଇ ଦିବ୍ୟ ସଂସଦତଳେ । ଜମ୍ପତି ଶିରେ କର ଯୋଡ଼ିବା ବେଳେ ଯେ ।୧୫। ଏକାବେଳକେ ସଭ୍ୟ ନେତ୍ରମଣ୍ଡଳୀ । କଲା ସେ ଯୁଗଳର ଉପରେ କେଳି ଯେ । ଶକ୍ରମାନସେ ଏହି ଚିନ୍ତା ରହିଲା । ଏଶତକୋଟି ଆହା ନେତ୍ର ନୋହିଲା ଯେ ।୧୬। ସଂଯତ ତେତେଡ଼େ ବଡ଼ ବିବୁଧ-ସଭା । ମଦନେ କର୍ମିଗଲା ଗୃହିଁ ତା ଶୋଭା ଯେ । ଗନ୍ଧର୍ବ କଲା ଗୁଣାଙ୍ଗୁଳି ସଂଯୋଗ । ତା ରାମା କଲା ମନୋରଞ୍ଜନା ରାଗ ଯେ । ୧୭ । ନୟନେ ଗୃହିଁ

---

ଇନ୍ଦ୍ରାଦି ନବଖଣ୍ଡ ମହୀମଣ୍ଡଳ । ୧୦ । ଗନ୍ଧବାନନେ—ଘୋଡ଼ାଙ୍କ ମୁହଁ ପରି ଯେଉଁ କିନ୍ନରମାନଙ୍କ ମୁହଁ, ଗାୟନେ—ଗାୟକମାନେ । ୧୧ । ଅତି ଚିରନ୍ତ—ଖୁବ୍ ପୁରାତନ, ଚିନ୍ମୟ—ଜ୍ଞାନମୟ, ବେଦସଂଖ୍ୟକ— ଚାରିସଂଖ୍ୟକ, ଷଟ୍ ପ୍ରମାଣବ୍ରତ—ଜନ୍ମାଷ୍ଟମୀ ପଭୃତି ଷଡ଼୍ ଜୟନ୍ତୀ, ସନ୍ତତ—ଗୋଷ୍ଠଦେବତା, ଶମ ଶାନ୍ତିଦେବତା । ମହାପଦ୍ମାଦିନିଧିମାନେ ହୀଭ୍ରାନ୍ତ ପ୍ରଭୃତିଙ୍କ ସଙ୍ଗେ ଶୋଭା ପାଉଥିଲେ, ଜମ୍ଭାରାତିପ୍ରିୟ—ଇନ୍ଦ୍ରଙ୍କ ପ୍ରଣୟିନୀ, ଜୃମ୍ଭା—ହାଇମାରିବା ଏକଗୋଟି ଦେବତା ) ।୧୩। ସଂକଳ୍ପ-ମଣି—ଚିନ୍ତାମଣି, ଅଶ୍ୱିନୀତନୁଭବ—ଅଶ୍ୱିନୀକୁମାର, ପରଣାମ ଦେବତା—ଇଷ୍ଟ-ଦେବତା ।୧୪। ମେରୁପାଦକୃତ ମନ୍ଦିର—ମେରୁପର୍ବତ ପାଦଦେଶରେ ଯେ ଘରକରି ରହିଥିଲା । ୧୫ । ବିପଞ୍ଚୀ—ବୀଣା, ଦିବ୍ୟସଂସଦ—ସ୍ୱର୍ଗୀୟ ସଭା, ଜମ୍ପତି—ଦମ୍ପତି, ପତି ଓ ପତ୍ନୀ ।୧୭। ଗୁଣାଙ୍ଗୁଳିସଂଯୋଗ—ବୀଣାର ତାରରେ ଆଙ୍ଗୁଠି ଲଗାଇବା ।

ଛବି ଅମରମିତ । ଶ୍ରବଣେ ଶୁଣି ସବୋତ୍ତର ସଙ୍ଗୀତ ହେ । ସଭ୍ୟ ଦର୍ଶିଲ ହେଲ ପର ଯା ଲେଖା । ସେ ଦନ୍ତ ବୋଲଇଲ ଗୀର୍ବାଣେ ଲେଖା ଯେ ॥ ରାକାରସିକ ବଶ୍ମମୟୂଖ ରଡ଼ି । ତାରାଡ଼ମ୍ବର ଯଥା ଛାଇ ମଣ୍ଡ ନେ । ଯନ୍ତୁଁ ଦୁହିଁଙ୍କ କରକାନ୍ତି ଢାଳିଲା । ନିର୍ମଳଙ୍କର ତେଜଃପୁଞ୍ଜ ଭାଳିଲା ଯେ । ୧୯ । ନିର୍ବାଣୋଲାତ ସର ହେବାରୁ ଶିଘ୍ର । ଗୀର୍ବାଣାବଳି ଶଚତ୍ତ ହେଲ ଏପର ଯେ । ଭ୍ରମରେ ହେଲେ ଏହା ମମରେ ଜାଣ । ଅମରେ ଆସ୍ମେ ଦର୍ଶିଲାଣିତ ନାହିଁ ଯେ । ୨୦ । ଭ୍ରମରେ ତୁଲ୍ୟ ଲୋଚନାରୁ ନାରେଣି । ନେମରାନସୁନାଙ୍କୁ ତାହାର ଦେଖି ଯେ । ଅମରେ ବରୁଣରେ ନ ମଣ ଅସ୍ମେ । କାହିଁକି ଧରଥାଇଁ ଦେହକୁ ଦମ୍ଭେ ଯେ । ୨୧ । ତଦନନ୍ତରେ ସୁରେ ଭାଳ ମାନସେ । ଗନ୍ଧର୍ବ ଦମ୍ପତିଙ୍କ ବସାଇ ପାଶେ ଯେ । କହିଲେ ତୁମ୍ଭ ରୂପ ଗୁଣ ବର୍ଣ୍ଣବ । ପ୍ରସନ ହେଲୁଁ ସର୍ବ ବିଦ୍ୟାବର୍ଣ୍ଣବା ଯେ । ୨୨ । ଏ ଲୋକେ ଅମ୍ଭ ତୁଲେ ହେବ ଦେବତା । ଯାହା ମାଗିବ ଏବେ ଦେବେ ଦେବତା ଯେ । ଦୁହେଁ ଦୁହିଙ୍କ ଦେହ ଲାବଣ୍ୟେ ଲବ । ଦେବଙ୍କୁ କାନ୍ତି କାନ୍ତି ଦେବୀଙ୍କେ ଦେବ ହେ । ୨୩ । ସୁରଙ୍କ ରୂପରଙ୍କ ଭାରତୀ ଶୁଣି । ସରୂପ ସ୍ୱରୂପାତ ହେଲ କାମିଣୀ ଯେ । ବିସ୍ମିତ ହୋଇ କର ଯୋଡ଼ି କହିଲେ । ଉଚିତ ପ୍ରକାରେ ତ ଆଜ୍ଞା ନୋହିଲେ । ୨୪ । ନିର୍ଦ୍ଦୋଷ ଦେମ୍ୟରୂପ ଗୁଣପଙ୍କଲୀ । ଗନ୍ଧର୍ବମାନଙ୍କର ମୂଳ ସଙ୍ଗୋଳା ଯେ । ହାଜର ଅଛୁଁ ପ୍ରାଣ ସମର୍ପଣକୁ । କେ ଦେବ ସଜ୍ଜନର୍ଷ ଗୁଣ କଣକୁ ହେ । ୨୫ । ପରସମ୍ପତେ ଚକ୍ଷିବାର ଈଷଣ । କୁହାଇ ତୁମ୍ଭ ପର ପ୍ରଭୁ ଲକ୍ଷଣ ଯେ । ଦେବ ଯାହାକୁ ନାକ ନେଇ ତାହାର । ଏ ରୀତ ଚତୁର୍ଦ୍ଦଶ ଲୋକୁଁ ବାହାର ହେ । ୨୬ । କର ଏ କଠକଣ୍ଠିର ଶ୍ରବଣ । କୁପିତ ହୋଇ ନାକନିବାସିଗଣ ଯେ । ଗାୟନ ଯୁବା ଯୁବତୀଙ୍କ ଉପରେ । ପ୍ରହାର କଲେ ତୀବ୍ରଶାପ ରୋଷରେ ଯେ । ୨୭ । ନାଶ ରଥାଙ୍ଗ ଯୁବା ଯୁବତୀ ପର । ବଞ୍ଚିଲ ହୁଅ ନିତ୍ୟେ ଛାଡ଼ି ଏ ଶିଘ୍ର ଯେ । ତିନ୍ତୁଁ ଉଦିତ ହେଲ ପ୍ରଳୟ ଭୟ । ଝାମିଲ କମ୍ପ ଜମ୍ପତିର ହୃଦୟ ଯେ । ୨୮ । ଶୋକବିବଶ

୧୮ । ସବୋତ୍ତର—ଅତ୍ୟୁତ୍କୃଷ୍ଟ, ଲେଖା—ଚିହ୍ନ, ଦେବତା; ଗୀର୍ବାଣ—ଦେବତା । ୧୯ । ରାକାରସିକ—ପୂର୍ଣ୍ଣିମାଚନ୍ଦ୍ର, ବଶ୍ମମୟୂଖ—ସମଗ୍ରକିରଣ, ତାରାଡ଼ମ୍ବର—ନକ୍ଷତ୍ରମାନଙ୍କର ଶୋଭା. ଛପାଇ—ଲୁଚିଯାଏ, କରକାନ୍ତି— ଶରୀରର ) ତେଜର ଶୋଭା । ୨୦ । ନିର୍ବାଣୋଲାତ—ନିଆଁ ନିଭି ଯାଇଥିବା ଅଙ୍ଗାର ପର । ୨୪ । ସରୂପ ସ୍ୱରୂପାତ—ପ୍ରକୃତ ବଜ୍ରପାତ । ୨୫ । ଗୁଣପଙ୍କଲୀ—ଗୁଣସମୂହ ।

ହୋଇ କଲେ ଏ ସ୍ତୁତ । ନମୋ ନମସ୍ତେ ସୁଧାଶନସନ୍ତତ ହେ । ନମସ୍ତେ ନାକଲୋକନବାସିବାର । ଉଚିତ ନୋହେ ଦୀନ ବିନାଶିବାର ହେ । ୨୯ । ପୀୟୂଷ ଅମ୍ଭୋଦରୁ ଦମ୍ଭୋଳି ବୃଷ୍ଟି । ସମ୍ଭବିଲେ କି ଆଉ ସ୍ତମ୍ଭିବ ସୃଷ୍ଟି ହେ । ରକ୍ଷକଠାରେ ହେଲେ ତକ୍ଷକରୀତ । ଶରଣଠାରୁ ହେଲେ ମରଣ ଭୀତ ହେ । ୩୦ । ଫନ୍ଦା ହୁଅଇ ନନ୍ଦା ସର୍ବ ବଦନେ । ବନ୍ଦାରୁ ବିନାଶନ ନାହିଁ ଭୁବନେ ହେ । ହରିଙ୍କ ଭଜ ଯମୁଁ ଉର ଲାଜ ଲଭେ । ତସ୍କର ପାଇ ବୁଢ଼ି ମରିବା କେବେ ହେ । ୩୧ । ପ୍ରପନ୍ନତ୍ରାଣପରାୟଣ ଲକ୍ଷଣେ । ରକ୍ଷଣ କର ରକ୍ଷା ସୁବିଚକ୍ଷଣେ ହେ । ଘେନି ଇତ୍ୟାଦି ସ୍ତବ ଶ୍ରବଣପୁଟେ । ଦେବେ ବିହିଲେ କୃପା ହୃଦସମ୍ପୁଟେ ଯେ । ୩୨ । ତପ୍ତ ଅଙ୍ଗରେ ଯଥା ସୁଧା ସେବନ । ରଚିଲେ ତଥା ଏହି ମୃଦୁ ବଚନ ଯେ । ବୃଥା ନୁହଇ କଥା ତ୍ରିଦଶଙ୍କର । ତଥାପି ହେଉ ବ୍ୟଥାହର ଏ ଗିର ଯେ । ୩୩ । ଦେହାନ୍ତେ ଏହି ରୂପ ଗୁଣ ବହିବ । ଏ ଦେହେ ଆଉ ତୁମ୍ଭ ସଙ୍ଗ ନୋହିବ ଯେ । ଏହି ନାକଠେ ଲବ୍‌ଧ ହେବ ପଞ୍ଚତା । ତୁ ହେବୁ ଦ୍ରୁମ, ଲତା ହେବ ବନିତା ଯେ । ୩୪ । ଗୋମତୀତୀରେ ହେବୁ ତୁ ଚୂତତରୁ । କୈଳାସେ ଦ୍ରାକ୍ଷା ଲତା ହେବ ରମ୍ଭୋରୁ ମେ । ଫଳେ ଋଷିଙ୍କି ଶଶିଚୂଳ ଶିବାଙ୍କୁ । ତୋଷିବ ତରୁ ଜନ୍ମୁ ତରିଯିବାକୁ ଯେ । ୩୫ । ନୃଲୋକେ ରବିଭବ ବାହୁଜକୁଳେ । ଜନକଜନସ୍ଥିରୀ ତପସ୍ୟାବଳେ ଯେ । ବଦାନ୍ୟ ବିଶାରଦ ଶୂର ସୁନ୍ଦର । ହୋଇ ହୋଇବୁ ମହାରାଜକୁମାର ଯେ । ୩୬ । ସରୋଜସମୁଦ୍ଭବ କ୍ଷତ୍ରବଂଶରେ । ଗିରିସାମନ୍ତତନୁଭବା ଅଂଶରେ ଯେ । ଏଥୁଁ ଅଧିକ ଶୋଭା ଗୁଣକୁ ଧରି । ତୋ ରାମା ହେବ ଚକ୍ରବର୍ତ୍ତିକୁମାରୀ ଯେ । ୩୭ । ସେହି ଦେହରେ ପୁଣି ଦାମ୍ପତସୁଖ । ପାଇବ ଯଥା ରତିଫୁଲବିଶିଖ ଯେ ।

---

୨୮ । ଦଶାରଥାଙ୍ଗ ଯୁବାଯୁବତୀ ପରି—ରାତିରେ ପରସ୍ପର ବିଚ୍ଛିନ୍ନ ରହୁଥିବା ଚକ୍ରବାକ ଦମ୍ପତି ପରି, ପ୍ରଳୟ—ମରଣ । ୨୯ । ସୁଧାଶନସନ୍ତତ—ଅମୃତଭୋଜନକାରୀ ଦେବବୃନ୍ଦ, ନାକଲୋକନବାସିବାର—ସ୍ୱର୍ଗଲୋକବାସିଗଣ । ୩୦ । ପୀୟୂଷ-ଅମ୍ଭୋଦରୁ—ଅମୃତପୂର୍ଣ୍ଣମେଘରୁ, ଦମ୍ଭୋଳି—ବଜ୍ର, ସ୍ତମ୍ଭିବ—ସ୍ଥିର ହେବ, ରହିବ, ତକ୍ଷକରୀତ—ସର୍ପପରି ବ୍ୟବହାର । ୩୧ । ଫନ୍ଦା—ବ୍ୟବସାୟ, ବନ୍ଦାରୁ—ବନ୍ଦୀ, ଭାଟ ( ଗନ୍ଧର୍ବମାନେ ଦେବତାଙ୍କର ଭାଟକାର୍ଯ୍ୟ କରନ୍ତି ) । ୩୨ । ହୃଦସମ୍ପୁଟେ—ହୃଦସ୍ୱରୂପ ଫରୁଆରେ । ୩୪ । ପଞ୍ଚତା ଲବ୍‌ଧ ହେବ—ପଞ୍ଚତ୍ୱ ପ୍ରାପ୍ତ ହେବ ଅର୍ଥାତ୍ ମରିବ । ୩୬ । ରବିଭବ ବାହୁଜ—ସୂର୍ଯ୍ୟବଂଶୀୟ କ୍ଷତ୍ରିୟ, ବଦାନ୍ୟ - ଦାତା, ବିଶାରଦ—ପଣ୍ଡିତ । ୩୭ । ସରୋଜସମୁଦ୍ଭବ କ୍ଷତ୍ରବଂଶରେ—ପଦ୍ମନାଭ କ୍ଷତ୍ରିୟକୁଳରେ,

ଏ ଆଜ୍ଞା ଅନ୍ତେ ଊର୍ଦ୍ଧ୍ୱେ ଦଅନ୍ତେ ଦୃଷ୍ଟି । ହୋଇଲା କଳ୍ପତରୁ କୁସୁମବୃଷ୍ଟି ଯେ । ୩୮ । ସପକ୍ଷ ଯାନଯୁଗ ହାଜର ହେଲା । ବହି ଦୁହିଁଙ୍କ ଦୁଇ ପ୍ରଦେଶେ ନେଲା ଯେ । ବାତାମ୍ବୁପର୍ଣ୍ଣାଶନ ତପ ଆଚରି । ମୁନିମଣ୍ଡଳପାଦେ ସେବନ କରି ଯେ । ୩୯ । ଲବଣ୍ୟଧ୍ୱଜ କଲା ବାସ ସେ ବନେ । ରହିଲା ରମା ଉମାପାଶ ସେବନେ ଯେ । ତାହା ଲବଣ୍ୟଶିରିଗୁଣ ବଟ୍ଟର । ଅହ୍ଲାଦବେ ନିଜ ପୁତ୍ରୀଙ୍କ ପରି ଯେ । ୪୦ । ପରମ ସ୍ନେହେ କଲେ ପରିପାଳନ । ଦୈବ ସଂକଳପ ହେବ କି ଅନ ଯେ । ଦିନେ ନାରଦ ବ୍ରହ୍ମାନନ୍ଦ ଅମଳେ । ମତ୍ତି ଅମ୍ବରୋଦରେ ବାହରୁଥିଲେ ଯେ । ୪୧ । ମହତୀ ଦଣ୍ଡେ ଭୂଷା କୁସୁମ ମାଳ । ଜବନ ପବନରୁ ହୋଇ ଅନ୍ଦୋଳ ଯେ । ପୁନ୍ନାଗ ମଲ୍ଲୀ ଦୁଇ କୁସୁମ ଝଡ଼ି । ଚପଳେ ଗଲେ ଦୁଇ ଦିଗକୁ ଉଡ଼ି ଯେ । ୪୨ । ଗନ୍ଧର୍ବେ ପଡ଼ି ସେ ପୁନ୍ନାଗ କୁସୁମ । କଲା ତାହାକୁ ପିକବଲ୍ଲଭ ଦ୍ରୁମ ଯେ । କେଳିମଞ୍ଜୁଳା ଭରେ ବାଜିଲା ମଲ୍ଲୀ । ହେଲା ସେ କଇଲାସେ ମୃଦ୍ୱିକା ବଲ୍ଲୀ ଯେ । ୪୩ । ସମ୍ପୂର୍ଣ୍ଣ ହେଲା ଭାବ ପ୍ରତ୍ୟୂହଦ୍ୱନ୍ଦ୍ୱ । ଶାପାନୁକମ୍ପ ନାମ ଦ୍ୱିତୀୟ ଛାନ୍ଦ ହେ । ଶ୍ରୁତିପ୍ରେ ସର୍ବଜନ ଶ୍ରବଣୋତ୍ସବ । କହିବ ମହାଗଜଘୋଷ ଭବ ହେ । ଯେ ବନବାସୀ ହୋଇ ଅବନିପ୍ରିୟ । ଅସିତାମ୍ବୁଜଦ୍ୟୁତି ସୀତା ପ୍ରଣୟ ଯେ । ସେ ରାମ ରମଣୀୟ ପଦସାରସ । ବନ୍ଦଇ ରାମଚନ୍ଦ୍ର ଦେବ ନରେଶ ଯେ । ୪୫ ।

---

ଗିରିସାମନ୍ତତନୁଭବା ଅଂଶରେ—ପାର୍ବତୀଙ୍କ ଅଂଶରେ । ୩୮ । ଫୁଲବଶିଖ—କନ୍ଦର୍ପ । ୩୯ । ସପକ୍ଷ ଯାନଯୁଗ—ପକ୍ଷ ଲାଗିଥିବା ଦୁଇଟି ବ୍ୟୋମଯାନ, ବାତାମ୍ବୁ-ପର୍ଣ୍ଣାଶନତପ—ଯେଉଁ ତପସ୍ୟାରେ କେବଳ ବାୟୁ, ଜଳ, ପତ୍ର ମାତ୍ର ଭକ୍ଷଣ କରାଯାଏ । ୪୦ । ବ୍ରହ୍ମାନନ୍ଦ ଅମଳେ—ପରଂବ୍ରହ୍ମ ଚନ୍ଦ୍ରାରୂପ ଆନନ୍ଦରେ ବା ଜଣାରେ ଉନ୍ମତ୍ତ ହୋଇ, ଅମ୍ବରୋଦରେ—ଆକାଶ ମଧ୍ୟରେ । ୪୨ । ମହତୀ—ନାରଦଙ୍କ ବୀଣା ଜବନ—ବେଗବାନ୍ । ୪୩ । ପିକବଲ୍ଲଭଦ୍ରୁମ—ଆମ୍ବଗଛ, ମୃଦ୍ୱିକାବଲ୍ଲୀ—ଦ୍ରାକ୍ଷାଲତା । ୪୪ । ପ୍ରତ୍ୟୂହଦ୍ୱନ୍ଦ୍ୱ—ବାଧା ଦୁଇଗୋଟି, ମହାଗଜ ଘୋଷ—ରାଜଧାନୀର ନାମ । ୪୫ । ଅବନିପ୍ରିୟ—ପୃଥିବୀପତି, ଅସିତାମ୍ବୁଜଦ୍ୟୁତି—ନୀଳପଦ୍ମପରି କାନ୍ତି ଯାହାଙ୍କର(ରାମଚନ୍ଦ୍ରଙ୍କ ବିଶେଷଣ), ସୀତାପ୍ରଣୟ—ସୀତାପତି ।

## ତୃତୀୟ ଛାନ୍ଦ

### ରାଗ—କୃଷ୍ଣକଳା

### (ମହାକେଳଘୋଷ ରାଜଧାନୀର ବର୍ଣ୍ଣନା)

ଶୁଣ ଗୁଣନିକୁରମ୍ବ ନିପୁଣ ନାଗରେ । ମଳୟ ଉତ୍ତର ମେରୁ ଦକ୍ଷିଣ ଭାଗରେ । ଅଛି ଅଭିରୂପ କାମରୂପ ନାମ ଦେଶ । ତହିଁ ରାଜେ ରାଜଧାନୀ ମହାକେଳଘୋଷ ହେ ।୧। ଯା ପରିଖା ଧାରେ ଖାତ ନୋହେ ମହାର୍ଣ୍ଣବ । ତ୍ରିକୂଟକୂଟକୁ ବଳି କରେ ନେତ୍ରୋତ୍ସବ ଯେ । ସ୍ୱର୍ଗୀୟ ମାର୍ଗସଂସର୍ଗୀ ମନୋହରିତ ଦୁର୍ଗ । ଗୁରୁଜଳଧରଚୁମ୍ବି ଗୁରୁ ଯେ ଉତ୍ସର୍ଗ ଯେ ।୨। ଭଣ୍ଡିରନ୍ଧ୍ରେ ମଣ୍ଡା ହୋଇବାରୁ ଗୁରପାଶେ । ଭାର୍ଗବମାର୍ଗଣଭିନ୍ନ ଗିରି ପରି ଦିଶେ ଯେ । ଅଶେଷ ସୁବର୍ଣ୍ଣମାନେ ହେବାରୁ ବରଣ । ନାଗଶାଳା ପରି ସେ ନଗରୀ ଆଚରଣ ଯେ ।୩। ଅନେକ ସହସ୍ରନେତ୍ର ମଣ୍ଡିତ ହେବାରୁ । ଅତଏବ ପ୍ରତିଷ୍ଠିତ ତ୍ରିପିଷ୍ଟପଠାରୁ । ଅସଂଖ୍ୟ ନର ବାହନେ ସଞ୍ଚରିବା ଘେନ । ଅଳକାକୁ ହସୁଛି ସେ ମହାରାଜଧାନୀ ଯେ ।୪। ଅମିତ ହିରଣ୍ୟଗର୍ଭଗୃହ ସମ୍ପର୍କରୁ । ସେ ନଗରୀ ଗରୀୟସୀ ବିରଞ୍ଚିଲୋକରୁ । ବହୁ କୁଣ୍ଡଳୀନ ମ୍ନେହମାନ ସେ କଟକ । ଏଣୁ ଜଣା ହୋଏ ତହୁଁ ଊଣା ନାଗଲୋକ ଯେ ।୫। ଚନ୍ଦ୍ରାବଳୀ ଅଛି ନିକି ସେ ମଧୁ ପୂର୍ଣ୍ଣିମା । ପଦ୍ମାବଳୀ

---

ତୃତୀୟ ଛାନ୍ଦ

୧ । ନିକୁରମ୍ବ—ସମୂହ । ୨ । ପରିଖା—ଗଡ଼ଖାଇ, ଖାତ—ଗଭୀର (ଖୋଳା ଯାଇଥିବା), ତ୍ରିକୂଟକୂଟ—ଲଙ୍କାସ୍ଥିତ ତ୍ରିକୂଟ ପର୍ବତର ଶିଖର, ସ୍ୱର୍ଗୀୟ ମାର୍ଗସଂସର୍ଗୀ—ଆକାଶସ୍ପର୍ଶୀ, ଗୁରୁଜଳଧରଚୁମ୍ବୀ—ଅତି ଉଚ୍ଚରେ ଥିବା ମେଘକୁ ସ୍ପର୍ଶ କରୁଥିବା, ଉତ୍ସର୍ଗ—ଉଚ୍ଚତା । ୩ । ଭଣ୍ଡିରନ୍ଧ୍ରେ—ପ୍ରାଚୀର ଗାତରେ ଖୋଳା ଯାଇଥିବା ଗର୍ତ୍ତରେ, ମଣ୍ଡା—ଭୂଷିତ, ଭାର୍ଗବମାର୍ଗଣଭିନ୍ନ ଗିରି—ପରଶୁରାମଙ୍କ ଶରରେ ବିଦୀର୍ଣ୍ଣ ହୋଇଥିବା କ୍ରୌଞ୍ଚ ନାମକ ପର୍ବତ ।( ଶ୍ଳେଷାଲଙ୍କାର ) । ବରଣ—ପ୍ରାଚୀର, ଅନ୍ୟପକ୍ଷରେ—ନିଯୁକ୍ତିକରଣ, ସୁବର୍ଣ୍ଣ ସୁନା ( ଅନ୍ୟପକ୍ଷରେ ) ବ୍ରାହ୍ମଣ । ୪ । ଅନେକ ସହସ୍ର ନେତ୍ର—ବହୁସଂଖ୍ୟକ ପତାକା ( ଅନ୍ୟପକ୍ଷରେ ) ଅନେକ ଇନ୍ଦ୍ର, ତ୍ରିପିଷ୍ଟପ—ସ୍ୱର୍ଗ, ବାହନେ—ଶୁଆଶିପ୍ରଭୃତି ଯାନରେ, ନରବାହନ—କୁବେର, ଅଳକା—କୁବେରପୁରୀ । ୫ । ହିରଣ୍ୟଗର୍ଭଗୃହ—ସୁବର୍ଣ୍ଣପୂର୍ଣ୍ଣ ଘର, ହିରଣ୍ୟଗର୍ଭ—ବ୍ରହ୍ମା, ବିରଞ୍ଚିଲୋକ—ବ୍ରହ୍ମଲୋକ, ଗରୀୟସୀ—ଅତି ଉତ୍କୃଷ୍ଟ, କୁଣ୍ଡଳୀନ—

ଅଛୁ କି ସେ ବେଶବତୀ ବାମା । ଗୁଣବତୀ ହେବାରୁ ପ୍ରତୀତ ସେ କି ସ୍ରଜା । ମହା ସେନାଦରବତୀକି ଦେବ ଫଉଜ ଯେ । ୬ । ଅନୁସାର ଅଛୁ ଯାହା ସୁମଧୁର ଧ୍ୱନି । କବୀନ୍ଦ୍ର ଭାରତୀ କି ସେ ନୋହେ ରାଜଧାନୀ । ହେବା ଘେନି ସୁରୁଚି ରମଣୀଗଣପୂତ । ଭାଗ୍ୟବନ୍ତ ଗୃହପର ହୁଅଇ ପ୍ରତୀତ । ୭ । ଭାସ୍ୱଦଂଶୁ କ୍ରାନ୍ତ ହୋଇଅଛି ଚୂଳଦେଶେ । ମହାପୁରୀ, କଇତବ ବିଷ୍ଣୁ ପଦୀ କି ସେ । ବହୁବିଧ ଅଗ୍ରହାରରାଜିରେ ବିରାଜେ । ଜବାଧର ପୟୋଧର ବିବାଦକୁ ସାଜେ ଯେ । ୮ । ବିବିଧ ସୁମନ୍ତ୍ରେ ଚଳିବାରୁ ଅଧିକାର । ଅଯୋଧ୍ୟା ନଗରୀକି ସେ କରୁଛୁ ଧିକ୍‌କାର । ସମସ୍ତ ଅର୍ଥଦାୟିନୀ ହରିଭକ୍ତି ପର । ବିମାନ ଉଦୟା କି ସେ ଅନୁକୂଳା ନାରୀ ଯେ । ୯ । ନୀତିମତୀ ସେ ଅନୀତିମତୀ କଲି ବିହୁ । ଅବାଦନା ହେଲେ ହେଲେ ମହାଦନା ସେହୁ । ଅଗରେଯ୍ୟାଶତା ପୁଣି ସେ ନାଗରୋଚତା । ଗଜଘଣ୍ଟା ପୂର୍ଣ୍ଣ ହୋଇ ନଗଜା ରଚିତା । ୧୦ । ଭୂପରାଗ ନାହିଁ ନିତ ହେବାରୁ ମାର୍ଜିତ । ପୁଣି ଭୂପରାଗରୁ ସେ ହୋଇଛୁ ନିର୍ମିତ । ମଧ୍ୟେ ମଧ୍ୟେ ବିଭୂଷିତ ରତ୍ନ ପଚ୍ଚାରେ । କାହାର ମାନସ ହେଉ ନାହିଁ ପର ଦାରେ । ୧୧ ।

---

କୁଣ୍ଡଳପିନ୍ଧିଥିବା, (ଅନ୍ୟପକ୍ଷରେ)—କୁଣ୍ଡଳୀ ବା ସର୍ପ । ୬ । ଚନ୍ଦ୍ରାବଳୀ—ଚନ୍ଦ୍ରସମୂହ ଓ ଚନ୍ଦ୍ରାନକ୍ଷତ୍ରସମୂହ, ମଧୁପୂର୍ଣ୍ଣିମା—ଚୈତ୍ରପୂର୍ଣ୍ଣିମା, ପତ୍ରାବଳୀ—ନାନାକାରୀୟ କୁକ୍ଷର ପତ୍ର ଓ ସ୍ତନକପୋଳ ପ୍ରଭୃତରେ ପତ୍ରାକୃତ ଚନ୍ଦନରଚନା, ଗୁଣବତୀ—ଗୁଣଯୁକ୍ତା ଓ ସୂତାରେ ଗୁନ୍ଥା ହୋଇଥିବା, ସ୍ରଜ—ଫୁଲମାଳ, ମହାସେନାଦର-ବତୀ—ବହୁ ସୈନ୍ୟଙ୍କୁ ଯେ ଆଦରରେ ରଖିଅଛୁ ଓ ମହାସେନ ଅର୍ଥାତ୍ କାର୍ତ୍ତି-କେୟଙ୍କୁ ଆଦର କରୁଥିବା, ଦେବଫଉଜ—ଦେବସେନା । ୭ । ସୁମଧୁର ଧ୍ୱନି—(ସେ ନଗରୀରେ) ସର୍ବଦା ହେଉଥିବା ସୁନ୍ଦର ଶବ୍ଦ, କବୀନ୍ଦ୍ର ଭାରତୀ—ବାଲ୍ମୀକିଙ୍କ କଥା ବା ରଚନା । ସୁରୁଚିରମଣୀଗଣ ପୂତ—ସୁନ୍ଦର ହୀରାପ୍ରଭୃତି ମଣିରେ ପରିପୂର୍ଣ୍ଣ, (ଅନ୍ୟପକ୍ଷରେ) ସୁରୁଚି (ସୁନ୍ଦର ରୁଚିଯୁକ୍ତା) ରମଣୀଗଣ ( ସ୍ତ୍ରୀସମୂହ )ଙ୍କ ଦ୍ୱାରା ପୂର୍ଣ୍ଣ । ୮ । ଭାସ୍ୱଦଂଶୁକାନ୍ତ—ଶୁକ୍ଳକିରଣମୟ ( ସ୍ୱର୍ଗ ଗଙ୍ଗା ପକ୍ଷରେ ) ଧଳା କରଣବୋଲା । ମହାପୁରୀକୈତବ ବିଷ୍ଣୁପଦୀ କି ସେ—ମହାରାଜଧାନୀ ଛଳନାରେ ପ୍ରକୃତରେ ସେ ବିଷ୍ଣୁପଦୀ ଅର୍ଥାତ୍ ଗଙ୍ଗା ( ଅପହ୍ନୁତ ଅଳଙ୍କାର ), ଅଗ୍ରହାର ରାଜି—ବ୍ରାହ୍ମଣଶାସନସମୂହ ଏବଂ ଆଗରେ ପଡ଼ିଥିବା ହାର, ପୟୋଧର—କୁଚ । ୯ । ସୁମନ୍ତ୍ରେ—ଉତ୍ତମ ମନ୍ତ୍ରଣାଦ୍ୱାରା, ସୁମନ୍ତ୍ର—ଦଶରଥଙ୍କ ସାରଥି ମନ୍ତ୍ରୀ, ଅର୍ଥଦାୟିନୀ—ଧନଦାୟୀ ଓ ଚତୁର୍ବର୍ଗଦାୟିନୀ, ବିମାନ ଉଦୟ—ନାନାବିଧ ରଥଦ୍ୱାରା ଶୋଭମାନା ଓ ବିଶେଷରୂପେ ମାନବତୀ । ୧୦ । ନୀତିମତୀ—ନ୍ୟାୟପରାୟଣା, ଅନୀତିମତୀ—ଶସ୍ୟବିନାଶକ, ଈତିଭୟ ଶୂନ୍ୟ; ବିହୁ—ବିଧାତା, ଅବାଦନା—

ଅନବରତରେ ନବରତ ମହୋତ୍ସବ । ହୁଳୁଳେ ମଙ୍ଗଳଗୀତ ହୁଳହୁଳି ରବ ଯେ । ଅନଙ୍ଗବିଳାସସ୍ଥଳୀ ପର ରସୋତ୍ତର । ପୁଣି ଶତ ଶତ ଶତାଙ୍ଗରେ ମନୋହର ଯେ । ୧୨ । ମରକତ ମାଣିକ୍ୟ ସ୍ଫଟିକ ବାହମୟ । ହୋଇ ପ୍ରତି ଗୃହାଙ୍ଗଣେ କେଳି ଜଳାଶୟ । ଘେନି ସର୍ବରତୁ ମଳୟଜ ପବନକୁ । ସେବିଛନ୍ତି ପ୍ରତିବାଟୀ ପୁଷ୍ପୋପବନକୁ । ୧୩ । ନ ଥିବାରେ କେଳିଗିରି ମଣ୍ଡପ ଜଗତୀ । ନାହିଁ ତହିଁ ମହାଜନମାନଙ୍କ ବସତି । କୁରୁବିନ୍ଦ ଇନ୍ଦ୍ରନୀଳ ବଇଡୂର୍ଯ୍ୟମୟ । ହେବାରୁ ସେ ପୁରେ ଅଛି କୁଛିମ ନିଳୟ । ୧୪ । ଖମଣ୍ଡଳେ ଖେଳିଲା ଯା ତହୁଁ ନାନାଭିନୁ । ଘନେ ବୋଲାଇଲେ କାମରୂପୀ ସେହି ଦନୁ । ହଜାର ସ୍ଥଳରେ ଯହିଁ ବଜାର ବସୁଛି । ବାଜାର ନିର୍ଘୋଷ ତହିଁ ଉଦରେ ମିଳୁଛି । ୧୫ । ଗଜଘଣ୍ଟା ଘଣ୍ଟା-ନାଦ ବୃଂହିତରେ ମିଶା । ହରିହୟହୟାନ୍ୱୟ ହୟଚୟ ହ୍ରେଷା । ଚନ୍ଦ୍ରସୂର୍ଯ୍ୟ ଚିହ୍ନ ଗୃହୁ ଚଞ୍ଚଳ ମର୍ମର । କର କର୍ଣ୍ଣତାଳ ଧ୍ୱନି ଘରଛଦ୍ଘର୍ଘର ଯେ । ୧୬ । ଉଷ୍ଟ୍ରୀ ପଟଳୀର ପଟୁତର ଗରଜନ । ସଂଳାପ ଆରମ୍ଭିବାରେ ସେ ନଗରଜନ । ବୀଣା ରବା ବେହେଲା ସିତାରାଦି ସଙ୍ଗୀତ । କେତେ କେତେ ସ୍ଥାନେ ବାରବିଳାସିନୀ ନୃତ୍ୟ । ୧୭ । କେତେ ପ୍ରଦେଶରେ ରସୋତ୍ତର ବାକ୍ୟାଳାପ । ଛାନ୍ଦ ଚଉପଦୀ ଚଗ ପହଲୀ କଳାପ । ବେଦାନ୍ତ

---

—ଅବାଧୀ ଅର୍ଥାତ୍ ମିତ୍ରମାନଙ୍କୁ ରକ୍ଷା କରେ ଯେ, ସଦାବାଦ୍ୟା—ସର୍ବଦା ଯେଉଁ-ଠାରେ ବାଦ୍ୟ ବାଜୁଥାଏ । ଅଗବହ୍ୟୋତତା—ନାନାବୃକ୍ଷପୂର୍ଣ୍ଣା, ନାଗରୋଚତା—ରସିକପୂର୍ଣ୍ଣସ୍ଥାନ, ଗଜଘଟା—ହାତୀସବୁ, ନଗଜାରଚିତା—ପାର୍ବତୀମୂର୍ତ୍ତି ଶୋଭିତା । ୧୧ । ଭୂପରାଗ—ଧୂଳି, ମାର୍ଜିତ—ପରିଷ୍କୃତ, ଭୂପରାଗ—ରାଜାଙ୍କ ସ୍ନେହ ବା ଅନୁଗ୍ରହ । ଚିର ପରଦାରେ—ଚିତ୍ରିତ ଯବନିକାରେ, ପର ଦାରେ—ପର ସ୍ତ୍ରୀ ଠାରେ । ୧୨ । ଅନବରତ—ସର୍ବଦା, ନବରତ ମହୋତ୍ସବ—ନୂତନ ରତ ମହୋତ୍ସବ, ରସୋତ୍ତର—ଶୃଙ୍ଗାରାଦି ରସର ଯୋଗ୍ୟ, ଶତାଙ୍ଗ—ରଥ । ୧୩ । କେଳିଜଳାଶୟ—କ୍ରୀଡ଼ା ପୁଷ୍କରିଣୀ, ବାହମୟ—ପାର୍ଶ୍ୱଯୁକ୍ତ, ଗୃହବାହ୍ୟଥିବା । ୧୪ । ଜଗତୀ—ବଡ଼କୋଠା, ଅଛିକୁଛିମନିଳୟ—ସମୁଚ୍ଚ ଅଟ୍ଟାଳିକା । ୧୫ । ଖମଣ୍ଡଳ —ଆକାଶଦେଶ, ନାନାଭିନୁ—ନାନାବିଧ କରଣ, ଘନେ—ମେଘମାନେ, କାମରୂପୀ —ନିଜଇଚ୍ଛାରେ ବିଭିନ୍ନ ରୂପଧାରଣକାରୀ । ୧୬ । ଗଜଘଟା—ହସ୍ତିସମୂହ, ବୃଂହିତ —ହାତୀର ରବ, ହରିହୟହୟାନ୍ୱୟ—ଇନ୍ଦ୍ରଙ୍କ ଉଚ୍ଚୈଃଶ୍ରବା ଅଶ୍ୱବଂଶୀୟ, ହୟଚୟ —ଅଶ୍ୱମାନେ, ହ୍ରେଷା—ଘୋଡ଼ାର ଧ୍ୱନି, ଚଞ୍ଚଳ—ପତାକା, ଘରଟ୍ଟଘର୍ଘର—

ମୀମାଂସା ତର୍କ ବ୍ୟାକରଣ ନ୍ୟାୟ । ସିଦ୍ଧାନ୍ତ କରନ୍ତି ଶୁକସାରୀ ସମବାୟ ॥ ନିଜ ମତ ପକ୍ଷପାତୀ ଦ୍ୱିଜାତି ଭାରତୀ । କେଉଁ କେଉଁ ସ୍ଥଳେ ଗୀତ ହେଉଛନ୍ତି ଶ୍ରୁତି । କବାଟ ଫେଟନା ରବେ ହୋଇଛି ସଂଯୁତ । ରମଣୀଗଣ ବାଳେଣୀ ଭୂଷଣଶିଞ୍ଜିତ । ୧୯ । ସମସ୍ତ ପ୍ରାସାଦ ଚିତ୍ରଶିଳ୍ପରୁ ଇତରେ । ନାହାନ୍ତି ବର୍ଣ୍ଣସଙ୍କର ସେ ପୁର ଭିତରେ । ରତ ବିନା ଆନେ ତହିଁ ନାହିଁ କେଶଗ୍ରହ । ଅକ୍ଷକ୍ରୀଡ଼ା ବିନା ଦେଖା ନାହିଁ ଶୂନ୍ୟଗୃହ । ୨୦ । ଦନ୍ତବାସ ଗୀତ ବିନା ରାଗ ନାହିଁ ଆନେ । କୁଞ୍ଜରେ ମଦବିକାର ଅଛି ନାହିଁ ଜନେ । ବିପକ୍ଷ ବୋଲାଏ ଏକା ବିହଙ୍ଗମ ପକ୍ଷ । କୁଟିଳ କେବଳ କଳାବତୀଙ୍କ କଟାକ୍ଷ । ୨୧ । କାବ୍ୟେ ଦୃଢ଼ବନ୍ଧ ଶାସ୍ତ୍ରେ ଚିନ୍ତା କମ୍ପ ଧ୍ୱଜେ । କଠିନତା ମଣି ମାନ ରମଣୀଉରଜେ । କନକ କଳିତ ଦଣ୍ଡ ସିତ ଆତପତ୍ରେ । ଚଞ୍ଚଳତା ବାରନିତମ୍ବିନୀ ଜନନେତ୍ରେ । ୨୨ । ଜ୍ଞାନ-ପ୍ରଦୀପରୁ ହୃଦନ୍ତରେ ତମ ନାହିଁ । ମଣିପୂରମୟୂଖରୁ ବାହାରେ ସେ କାହିଁ । ରଜୋଗୁଣ ମାନ ମନ୍ଦ କେତକୀ କେଶରେ । ମହା ସତ୍ତ୍ୱବନ୍ତ ପ୍ରତି ଗୁଣ ପୁରୁଷରେ । ୨୩। ଡଳ ଦୁଇବର୍ଣ୍ଣେ ଅଭିପ୍ରାୟ ଜାଣି ଏକ । ଖଳ ବୋଲି ରସଭଙ୍ଗୁ ଜାଣନ୍ତି ରଜକ । ଡଳ ଦୁଇବର୍ଣ୍ଣେ ନ ଥିବାରୁ ଭେଦମତ ।

---

ପେଷଣାମାନଙ୍କର ଘର୍ ଘର୍ ଶବ୍ଦ, ରବା ( ପାରସି ରବାବ୍ )—ଏକପ୍ରକାର ବାଦ୍ୟ-ଯନ୍ତ୍ର । ୧୮ । ରସୋତ୍ତର—ରସମଗ୍ନ, ସମବାୟ—ସମୂହ । ୧୯ । ଦ୍ୱିଜାତି—ବ୍ରାହ୍ମଣ, ଭାରତୀ—ବିଦ୍ୟା, ଶ୍ରୁତି—ବେଦ, ଫେଟନାରବ—ଫିଟାଇବା ଶବ୍ଦ, ଶିଞ୍ଜିତ—ଅଳଙ୍କାରଧ୍ୱନି । ୨୦ । ସେ ନଗରର ପ୍ରାସାଦମାନଙ୍କରେ କେବଳ ବର୍ଣ୍ଣସଙ୍କର ( ବିଭିନ୍ନ ବର୍ଣ୍ଣର ମିଶ୍ରଣ ) ଦେଖାଯାଏ କିନ୍ତୁ ବର୍ଣ୍ଣସଙ୍କର ଅର୍ଥାତ୍ ମିଶ୍ରଜାତି ସେଠାରେ ନାହାନ୍ତି । ରତ ବିନା ଆନେ—ରତିକ୍ରିୟା ଛଡ଼ା ଅନ୍ୟତ୍ର, କେଶଗ୍ରହ—ମସ୍ତକର କେଶକୁ ଧରିବା, ଅକ୍ଷକ୍ରୀଡ଼ା—ପଶାଖେଳ, ଶୂନ୍ୟଗୃହ—ପଶାପାଳରେ ଗୋଟି ମରିବାରୁ ଖାଲି ହୋଇଥିବା ପାଲର ଘର, ଶୂନ୍ୟଗୃହ—ମନୁଷ୍ୟାଦି ନ ଥିବା ଘର । ୨୧ । ଦନ୍ତବାସ—ଅଧର, ରାଗ—ରକ୍ତିମା ଅଥଚ କ୍ରୋଧ, କୁଞ୍ଜରେ—ହାତୀଠାରେ, ମଦବିକାର—ମଦଜଳଧାରର କ୍ଷରଣ, ଅଥଚ ଗର୍ବ । ବିପକ୍ଷ—ପକ୍ଷୀର ଡେଣା ଅଥଚ ଶତ୍ରୁ । କୁଟିଳ—ବଙ୍କ ଅଥଚ ଠକ, ଧୂର୍ତ୍ତ । ୨୨ । କନକକଳିତଦଣ୍ଡ—ସୁନା ଦ୍ୱାରା ଶୋଭିତ ଯଷ୍ଟି, ଅଥଚ ଶାସନ ରକ୍ଷାପାଇଁ ଅର୍ଥ ଦଣ୍ଡ ହୁଏ ନାହିଁ । ସିତ ଆତପତ୍ର—ଶୁକ୍ଳ ବର୍ଣ୍ଣ ରାଜଛତ୍ର, ବାରନିତମ୍ବିନୀ—ବେଶ୍ୟା । ୨୩ । ମଣି···କାହିଁ—ମଣିରେ ନିର୍ମିତ ଗୃହମାନଙ୍କରୁ ତେଜ ବାହାରୁଥିବାରୁ ଅନ୍ଧକାର ନଗରର ବହିର୍ଦେଶରେ ବି ନ ଥାଏ । ରଜୋଗୁଣ ରାଜସିକତା ଅଥଚ ପରାଗମୟତା; ମନ୍ଦ—ମନ୍ଥଣା, କେତକୀ ଓ କେଶରେ—କେତକୀ

ଜଳକୁ ସକଳେ ଜଡ଼ ବୋଲି ବିଗୁରନ୍ତି । ୨୪ । ଅମୀକରେ ନଖରଞ୍ଜୁ ଯୋଧି ବିହଗନେ । ଦ୍ୱିଜାଳି ଖୁଣ୍ଟି ଭଞ୍ଜନ୍ତି ନରେ ସେ ନଗରେ । ଦର ବୋଲି ତହିଁ ଜନ କମ୍ବୁକୁ ଭାଷଇ । ବିରୋଧ ମାଏକ ଅଳଙ୍କାରେ ଆଭାସଇ । ୨୫ । ଗୁପ ବିଦ୍ୟା ଖୁରଲୀରେ ମାତ୍ର ଗୁଣଚ୍ଛେଦ । ଜନମନେ ନାହିଁ ଶରବ୍ୟରେ ଏକା ଭେଦ । ବାମାକଟୀ ମାତ୍ର କୃଶ କୃଶ ନାହିଁ ଜନ । ଜାତିହୀନ ନାହିଁ ପୁଷ୍ପ ସମଯୂଥି ଆନ । ୨୬ । ସାତପୁରୀ ମହଲଙ୍କ ମହୋନ୍ନତ ଶିର । ଧିଷଣା-ନେଦିଷ୍ଠ ନୋହେ ଧିଷଣାଗୋଚର । ଦେବଙ୍କର ସଲିଳମର୍ଦ୍ଦନକାଳେ ନିତ । ଦେବବନ୍ଦୀମାନେ ହୋଇ ସମ୍ଭ୍ରମ ଅତି । ୨୭ । ସ୍ୱସଞ୍ଚିତ ଜଳଘଟ ରାଶି ବୋଲି ଆସି । ଧରନ୍ତି ବଡ଼ଭୀଚୂଳ କନକ କଳସୀ । ନୀରନ୍ଧ୍ର ହେବାରୁ ବଚଳନ୍ତି କେଉଁମାନେ । ପତାକାକୁ ଦେଖି କେ ହସନ୍ତି ମନେ ମନେ । ଯହିଁ ପୁରେ ଶୋଇଥିଲା ସତିବଯୁବତୀ । ମାରବିକାରବିଧୁର ହୋଇ ବାଚସ୍ପତି । ନିଜ ଅନ୍ତଃପୁର ଭ୍ରମେ ପଶିଲେ ସେ ପୁରେ । ଦେଖିଲେ ଶୋଇଛି ବାଳା ପଲଙ୍କ ଉପରେ । ୨୯ । ନିଜ ସରସିଜନେତ୍ରା ଭ୍ରମେ ରତି କରୁ । ନିଦ୍ରାଭଙ୍ଗେ ପଚାରିଲା ସେ ହେମରମ୍ଭୋରୁ । କାହିଁ କେ ତୁ ଆସିଲୁ ଏ କେମନ୍ତ ଅନୀତି । ଶୁଣି ସଙ୍କୋଚରେ ବୁଝାଇଲେ ବୃହସ୍ପତି ।୩୦। ପୂର୍ଣ୍ଣ ଶରଇନ୍ଦ୍ର ମୂର୍ତ୍ତି କୁପିତ କ୍ରୁହ ରେ । ନିଜପୁରୀ, ନାରୀଭ୍ରମେ ମଦନମୋହରେ । ସୁରଗୁରୁ ଅଟେମ୍ଭ ଏଥି ହୋଇଲୁ ପ୍ରବେଶ । ଏଥୁଁ ତତେ ନ ଲାଗିବ ବ୍ୟଭିଚାର ଦୋଷ । ୩୧ । ଏଥି ଗର୍ଭାଧାନେ ଜାତ ହେବ ଯେଉଁ ସୁତ ।

---

ଫୁଲରେ ଓ ନାଗେଶ୍ୱର ଫୁଲରେ । ପ୍ରତ୍ୟେକ ପୁରୁଷଠାରେ ମହାସତ୍ତ୍ୱ ଗୁଣ ଅଛି । ୨୪ । ଖଳ—ଦୁର୍ଜନ, ଖର—ଗଧ ।୨୫। ଅମୀକରେ—ଯୁଦ୍ଧରେ, ବିପତ୍ତି—ବିପଦ ଅଥଚ ବି (ପକ୍ଷୀମାନଙ୍କର) ପତି, ଶ୍ରେଷ୍ଠପକ୍ଷୀ; ଦର—ଭୟ ଓ ଶଙ୍ଖ, ବିରୋଧ-ମାଏକ ଅଳଙ୍କାରେ ଆଭାସଇ—ସେଠାରେ ବିରୋଧ ଅର୍ଥାତ୍ ଶତ୍ରୁତା ନାହିଁ କେବଳ ଅଳଙ୍କାର ଗ୍ରନ୍ଥରେ ବିରୋଧାଭାସ ନାମକ ଅଳଙ୍କାର ଅଛି । ୨୬ । ଗୁପବିଦ୍ୟାଖୁରଲୀରେ—ଧନୁର୍ବିଦ୍ୟା ଅଭ୍ୟାସରେ, ଗୁଣଚ୍ଛେଦ—ଧନୁର ଜ୍ୟା ଛିଣ୍ଡିବା ଅଥଚ ଗୁଣହୀନତା, ଶରବ୍ୟରେ ଏକା ଭେଦ – ଲକ୍ଷ୍ୟକୁ କେବଳ ଭେଦ କରାଯାଏ, କିନ୍ତୁ କାହାର ମଧ୍ୟରେ ଭେଦଭାବ ନ ଥାଏ । ଜାତିହୀନ – ନୀଚଜାତି ଅଥଚ ମାଲତୀଫୁଲର ଅଭାବ । ୨୭ । ସାତମହଲ କୋଠାମାନଙ୍କର ଉପରଭାଗଗୁଡ଼ିକ ଅର୍ଥାତ୍ ବୃହସ୍ପତିଙ୍କର ମଧ୍ୟ ଧିଷଣାଗୋଚର ଅର୍ଥାତ୍ ଜ୍ଞାନଗୋଚରରେ ନେଦିଷ୍ଠ ( ନିକଟତମ ) ହୁଏ ନାହିଁ । ସମ୍ଭ୍ରମ – ଉଦ୍‌ବିଗ୍ନ । ୨୮ । ବଡ଼ଭୀ – ଚନ୍ଦ୍ରଶାଳା, ନୀରନ୍ଧ୍ର – ଛିଦ୍ରଶୂନ୍ୟ । ୨୯ । ମାରବିକାରବିଧୁର —କାମପୀଡ଼ିତ, ବାଚସ୍ପତି – ବୃହସ୍ପତି । ୩୦ । ନିଜ ସରସିଜନେତ୍ରା ଭ୍ରମେ—

ଏ ରାଜ୍ୟ ରାଜପୁରର ହେବ ପ୍ରିୟମିତ । ଆମ୍ଭ ତୁଲ୍ୟ ନୃପକେ ବଦ୍ୟାବାନ୍ତ ହେବ । ଏତେ କହି ସ୍ୱପୁରକୁ ବଳେ କଲେ ଜୀବ ।୩୨। ମୃଗର୍ଥୀ ସୁରେ ବଳେ କରନ୍ତେ ବିବାସ । ଅମରୀ ଏ ହୋଇ ଅପତ୍ରପାରେ ବିବଶ । ସେ ପୁରୀ ସତ୍ତ୍ୱଧଜଳ ପତାକା ଅମ୍ବର । ଓଢ଼ାଇ କରନ୍ତି ଅନୁକ୍ଷଣ ନିତମ୍ବର ।୩୩। ବାଜି ଯେ ପୁର ଅଟ୍ଟାଳୀ ଚେଳବଲ୍ଲୀବାଧ । ହୋଏ ଦେବାଙ୍ଗନାଙ୍କ ରଥଶ୍ରମ ହତ । ଯାହା ମହାରଜତ କୁଟ୍ଟିମ ଉଚ୍ଚରୁ । ଋଜୁପଥେ ରଥରଥ ନ ଚଳେ ଭିତରୁ ।୩୪। ଦକ୍ଷିଣ ଉତ୍ତର ଫେରିବାକୁ ଛ ଛ ମାସ । ଅସୁର ବୋଲାଇ ଯୁଗେ ହୋଇନ୍ତି ଦାସ । ଯାହା ପତାକାଦଣ୍ଡ ଚୁମ୍ବନ୍ତେ ଚନ୍ଦ୍ରମା । ନିନ୍ଦି ହୁଏ ସେ ଦଣ୍ଡକୁ ଶ୍ୱେତଚ୍ଛଦରମା ।୩୫। ବ୍ୟୋମଭଙ୍ଗୀ କଳରବ ଶୁଣି କୁତୁହଳେ । ଅଦୃଶ୍ୟ ହେବାକୁ ଗୃହୁଁ ଗୃହୁଁ ନଶାଜଳେ । ଜନେ ସେ ନଗରକୁଳ ଚେଳବଲ୍ଲୀ ଦେଖି । ପାରାବତ ମଣି ମନେ ହେଉଛନ୍ତି ସୁଖୀ ।୩୬। ଯହିଁ ସ୍ମୃତମପତାକାକା ନୀଳମଣି ଦଣ୍ଡ । ବାଜି ଭାଜି ରହିବାରୁ ଯହିଁ ତୁଲ୍ୟ ଖଣ୍ଡ । ସୁଧାକରେ କଳଙ୍କ ବୋଲନ୍ତି ଅଜ୍ଞ ଜନେ । ସେ ପୁରୀ ଉପାତ କାହିଁ ଇତର ଭୁବନେ ।୩୭। ଯହିଁ ନିଳୟ ଧାରଣା ପାଞ୍ଚାଳିକାଗଣେ । ଅନିମିଷାଦ୍ଧ ଅନେକ ଲାବଣ୍ୟ ଲକ୍ଷଣେ । ପ୍ରତିନିଶା ଅଭିସାର ରସବଶ ସୁରେ । ଭ୍ରାନ୍ତ ବାମାଭ୍ରମରେ ଚୁମ୍ବନ୍ତି ଚବୁକରେ ।୩୮। ସୁରମଣୀକଦମ୍ବ କାମିତ ପୂର୍ତ୍ତିକାରୀ । କୃଷ୍ଣଚନ୍ଦ୍ରଙ୍କ ଇନ୍ଦ୍ରଙ୍କୁ ନମସ୍କାର କରି । ରାମଚନ୍ଦ୍ର ଶ୍ରେଷ୍ଠରାଯୁ ଦେବ କ୍ଷମାପତ । କଲେ ମହା ଗଜଘୋଷ ସ୍ତବ ସମାପତ ।୩୯। ଉତ୍ତର

---

ସ୍ୱକୀୟ ପଦ୍ମନେତ୍ରା ସ୍ତ୍ରୀ ଭ୍ରମରେ । ୩୨ । ଜୀବ—ବୃହସ୍ପତି । ୩୩ । ବିବାସ—ନଗ୍ନ, ଅମରୀ ଏ—ଦେବୀମାନେ, ଅପତ୍ରପା—ଲଜ୍ଜା, ବିବଶ—ବ୍ୟାକୁଳ, ଅମ୍ବର—ଲୁଗା । ୩୪ । ମହାରଜତ କୁଟ୍ଟିମ ଉଚ୍ଚରୁ—ସୁବର୍ଣ୍ଣନିର୍ମିତ ଅଟ୍ଟାଳିକାମାନଙ୍କର ଅତି ଉଚ୍ଚତା ହେତୁରୁ । ଋଜୁପଥ—ସରଳମାର୍ଗ । ୩୫ । ପତାକାଦଣ୍ଡ—ପତାକାଯୁକ୍ତଦଣ୍ଡ; ଶ୍ୱେତଚ୍ଛଦରମା—ଶୁକ୍ଳ ବର୍ଣ୍ଣଚ୍ଛଦର ସୌନ୍ଦର୍ଯ୍ୟ । ୩୬ । ବ୍ୟୋମ ଭଙ୍ଗ ଆକାଶରେ ଯେ ଲେଉଟି ଲେଉଟି ଗତକରେ, କଳରବ—ପାରା, ନଶାଜଳ—ହଳଦୀପାଣି । ୩୭ । ନିଳୟ ଧାରଣା ପାଞ୍ଚାଳିକାଗଣେ—କୋଠାଘରରେ ଧାରଣ ହୋଇଥିବା ପୁତ୍ତଳିକାସମୂହ, ଅଭିସାରରସବଶ ସୁରେ—ସଙ୍କେତ ସ୍ଥାନକୁ ରସବଶ ହୋଇ ଯାଉଥିବା ଦେବତାମାନେ । ୩୮ । ସୁରମଣୀ-କଦମ୍ବ—ସୁନ୍ଦରୀ ଗୋପିକାସମୂହ, ସୁନ୍ଦରୀ ଦେବାଙ୍ଗନା; କାମିତ—କାମନା,

ଛାନ୍ଦରେ ନୃପପୁତ୍ର ଜନ୍ମୋତ୍ସବ । ରସିକ ଶ୍ରବଣାନନ୍ଦ ଆରମ୍ଭ ହୋଇବ । ଏ ଛାନ୍ଦ ଗୀତ ଚରଣ ପଦ ଚତ୍ୱାରିଂଶ । ସଂଖ୍ୟା ବୋଲି ଜାଣ ସଂଖ୍ୟାବାନ ଅବତଂସ । ୪୦ ।

---

## ଚତୁର୍ଥ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

( ଅନଙ୍ଗସୁନ୍ଦରର ଜନ୍ମ )

ପ୍ରମୁଦିତ ହୃଦେ ଶୁଣ ବିଶାରଦେ ସେ ମହୀମଣ୍ଡଳୀ ଧବ । ପରତାପନର କରତା ସେ ବୀର ପରତାପକଣ୍ଠୀରବ । ୧ । ସୁନ୍ଦରପଣରେ କନ୍ଦରପ ତୁଲ୍ୟ ଚନ୍ଦ୍ରରଠାରୁ ଶୀତଳ । ଶରଣାପନ୍ନ ରକ୍ଷଣ ବିଚକ୍ଷଣ ଲକ୍ଷଣ ଖେଳନ-ସ୍ଥଳ । ୨ । ଆଚରଣଗୁଣେ ଇତରଭୂନାଥମଣ୍ଡଳେ ନାହିଁ ତା ତୁଲ । ସିତରଶ୍ମି ତୁଲ୍ୟ ଯଶେ ଯେ ଜଗତୀ ଭିତର କରେ ଧବଳ । ୩ । ହିତରକ୍ଷକ ସଙ୍ଗୀତ ରସିକତା ଜିତରମ୍ଭା ଗୁରୁଜନ । ଉତ୍ତର ଗମ୍ଭୀରଗୁଣେ ପାରାବାର ଅମିତ ରସ ବଚନ । ୪ । ଦଣ୍ଡିତ ନୁହଇ ଭଣ୍ଡିତ ନ ଜାଣେ ମଣ୍ଡିତ ଗୁଣ ମଣ୍ଡଳେ । ଖଣ୍ଡିତ ନୋହିବା ପଣ୍ଡିତପଣେ ସେ ଚଣ୍ଡୀତନୟତୁ ବଳେ । ୫ । ଅମରଙ୍କ ତୁଲେ ସମର କରିବା ସମରଥପଣ ତାର । ନ ମରନ୍ତି ଶିଶୁତରୁଣ ସେ ଦେଶେ ଯମର ଏପରି ଡର । ୬ । ଦ୍ୱିଜାତି ମୁକ୍ତାଜିତଶସ୍ତ୍ରପରାୟଣ

---

କ୍ଷମାପତି—ପୃଥ୍ୱୀପତି, ରାଜା । ୪୦ । ସଂଖ୍ୟାବାନ ଅବତଂସ—ଗଣନାକାରୀଙ୍କ ମଧ୍ୟରେ ଶ୍ରେଷ୍ଠ ।

---

ଚତୁର୍ଥ ଛାନ୍ଦ

୧ । ପରତାପନ—ଶତ୍ରୁଙ୍କୁ ଦଣ୍ଡ ଦେବା, ପରତାପକଣ୍ଠୀରବ—କଣ୍ଠୀରବ ବା ସିଂହପରି ପ୍ରତାପୀ । ୨ । ଲକ୍ଷଣ ଖେଳନସ୍ଥଳ—ସୁଲକ୍ଷଣମାନଙ୍କ କ୍ରୀଡ଼ାଭୂମି ବା ଆଧାର । ୩ । ସିତରଶ୍ମି—ସିତାଂଶୁ—ଚନ୍ଦ୍ର । ୪ । ହିତରକ୍ଷକ—ଉପକାରୀମାନଙ୍କର ରକ୍ଷାକର୍ତ୍ତା, ସଙ୍ଗୀତ···ଗୁରୁଜନ—ସଙ୍ଗୀତ ରସିକତା ବିଷୟରେ ସଙ୍ଗୀତନିପୁଣା ରମ୍ଭା ବେଶ୍ୟାର ଗୁରୁଙ୍କୁ ଯେ ଜୟ କରିଅଛନ୍ତି, ଅମିତରସବଚନ—ଯାହାଙ୍କର କଥା ନାନାବିଧ ରସରେ ପୂର୍ଣ୍ଣ । ୫ । ଦଣ୍ଡିତ ନୁହଇ—ଦଣ୍ଡ ଦେବାରେ ଅଭ୍ୟସ୍ତ

ଗୁରୁଦେବ ପାଦସେବୀ । ପଞ୍ଚବଂଶ ବୟୁ ଚଞ୍ଚଳ ଅଶ୍ୱସୁ ପରିତ୍ୟାଗୀ ମହା-କବି ।୭। ରସାମୃତଘଟପୟୋଧର ପଟ୍ଟମହାଷୀ ହେମମଞ୍ଜରୀ । ସେ ଭୂପତି ଅକ୍ଷି ମନବ୍ୟାଳପକ୍ଷିନିବୟ ବନ୍ଧ ପଞ୍ଜରୀ ।୮। ମାରମହାଲାରୁ ଅଧିକ ଲାବଣ୍ୟ ସାରମୟୁ ହେବା ଘେନ । ହାରମଧ୍ୟମଣି ତାର ଚିତ୍ତେ ମଣି ତା ରମଣ ଥାଏ ଘେନ ।୯। ଶରୀର ଭାଗ୍ୟ ଭୁଞ୍ଜଇ କାନ୍ତ ସଙ୍ଗେ ରତି ରତିରସ କେଳି । ଅଚିରବୟସୀ ପତିସ୍ନେହୁଁ କେବେ ନ ଚରଇ ମହାସ୍ଥଳୀ ।୧୦। ଏଡ଼େ ଭାଗ୍ୟବତୀ ହେଲେହେଁ ସେ ସତୀଶିଖା ମଣି ପ୍ରତିଦିନେ । ସନ୍ତାନ ଅଭାବ ଚିନ୍ତାରୁ ଲାଘବ ଲଭି ବସୁରଇ ମନେ ।୧୧। ଅଖଣ୍ଡମଣ୍ଡଳ ଅଚଳା-ଖଣ୍ଡଳ କରପଲ୍ଲବ ଧଇଲା । ଲକ୍ଷ ସାମନ୍ତାଣୀ ଶିରଭୂଷାମଣିକିରଣେ ପଦ ଧୋଇଲା ।୧୨। ରତିରଙ୍ଗରେ ବିଶାରଦା ହୋଇଲା ସତର ହେଲା ବୟସ । ମୁଁ ତ ରଖି ନ ପାରିଲି ଆଖିପାଖେ ସୁତର ମୁଖ-ରାକେଶ ।୧୩। ମୋର ସଙ୍ଗେ ଧୂଳିଗୃହ ରଚି କେଳି କରୁଥିଲେ ଯେତେ ସହୀ । ସୁତ ରଖି ତଳେ କୁହାଇବା ବେଳେ ଲାଜେ ନ ପାରିଲି ଗୃହୀ ।୧୪। ଏମନ୍ତ ସନ୍ତତି ଅଭାବ ଚିନ୍ତନେ ସେ ମନ୍ଦୁରତିରତି । ଉଭା ହେଲା ଦିନେ ବିଷର୍ଣ୍ଣ ବଦନେ ହେଲାପରି ମାନବତୀ ।୧୫। ଗୃହୀ ତା ନରେଶ ନାହିଁ ତ ମୋ ଦୋଷ କାହିଁକି ରେ ରୋଷ ବୋଲି । ହେବାରୁ କାତର ଜଣାଇଲା ତାର ପ୍ରିୟସଖୀ ରସବଲ୍ଲୀ ।୧୬। ଦେବ ମୋ ସଜନୀ ପୂର୍ଣ୍ଣିମା ରଜନୀ ତୁମ୍ଭେ ବିଭାବରୀଧବ । ଘେନ ମାନବେଶ ସେ କି ମାନବେଶ ନ କହ ଲାଜେ ବହିବ ।୧୭। ନ ଛୁଇଁଲା ଶିଶୁ ଅଞ୍ଜନ ଅଞ୍ଚଳ ବଦନ ରଦନାଂଶୁକ । କେବଳ ଏ ବଳ-

---

ନୁହେ । ଭଣ୍ଡିତ ନ ଜାଣେ—ଠକବା କଥା ଜାଣେ ନାହିଁ । ଖଣ୍ଡିତ ନୋହିବା ପଣ୍ଡିତ ପଣରେ—ଅଖଣ୍ଡ ପାଣ୍ଡିତ୍ୟରେ, ଚଣ୍ଡୀତନୟ—ଗଣେଶ ।୮। ରସାମୃତ …ପୟୋଧରା—ରସମୟ ଅମୃତ ମାଠିଆପରି କୁଚ ଯାହାର, ଅକ୍ଷି—ଦୁଇ ଆଖିକୁ ଓ ମନକୁ ବନ୍ଦୀ କରିବା ବିଷୟରେ ପଞ୍ଜରାପରି ।୯। ମାରମହଲା ରତି, ହାର …ତା ରମଣ (ରାଜା) ତାକୁ ତାର (ହୃଦ୍ପ୍ରିୟସ୍ଥ) ହାର ମଧ୍ୟ ମଣି ମଣି ( ମନେ କରି ) ଚିତ୍ତରେ ଘେନିଥାଏ ।୧୦। ଅଚିରବୟସୀ—ଅଳ୍ପ ବୟସ୍କା, ନ ଚରଇ ମହାସ୍ଥଳୀ —ମାନବତୀ ବା ଦୁଃଖିତା ହୁଏ ନାହିଁ ।୧୨। ଲକ୍ଷ…ଧୋଇଲା—ମୁଣ୍ଡରେ ମଣି ପିନ୍ଧିଥିବା ଅଗଣିତ ସାମନ୍ତ ରାଜାଙ୍କ ରାଣୀମାନେ ମୋ ଗୋଡ଼ତଳେ ମୁଣ୍ଡିଆ ମାରୁଅଛନ୍ତି, ଅଖଣ୍ଡ…ଆଖଣ୍ଡଳ—ସମଗ୍ର ପୃଥିବୀର ଇନ୍ଦ୍ର ।୧୩। ମୁଖ-ରାକେଶ—ମୁଖରୂପ ପୂର୍ଣ୍ଣଚନ୍ଦ୍ର ।୧୭। ମାନବେଶ—ମନୁଷ୍ୟଶ୍ରେଷ୍ଠ ବା ରାଜା ଓ ମାନବତୀର

ଦଳନ ସମ୍ପତ୍ତି ବୃଥା ଯେମନ କରେ ଶୋକ ।୧୮। ଧସ୍ରଧ୍ୱସ ଶୁଣି ସୂନବେଦ-ଶୃଣିପରାଧୀନ-ମନହାତୀ । ଅଙ୍କେ ବସାଇ ମନ୍ଦେଙ୍କୁହନେବାକୁ ଜଣାଇଲେ ଏ ଭାରତୀ ।୧୯। ଧନରେ ମନରେ କମ୍ପିବା କଥା ଦଇବ ନ କରେ ପୁଷ୍ଟ । କେଶ ଜାତ ହୁଏ କେବେ ସେ ନ ଜାଣେ ଯେ ସଜାଡ଼ିପାରେ ଝର । ୨୦ । ତଥାପି ସୁଭଗା ମଥାଭୂଷା ତୁ ଏମା କଥା ମୁଁ କହ କହିବ । ନ ଥାଇ ସୁକୃତ କରିଣ୍ଟ କ ଲେତେ ଯଥାହାରଣୀ ବାନ୍ଧବୀ । ୨୧ । ପ୍ରତି ମାସେ ପୂର୍ଣ୍ଣ ସିଦ୍ଧି-ଦାନାତ୍ମକ ପ୍ରତିମା ସେବା କରିବା । ଯତିମାନଙ୍କ ଗୋମତୀମାତାଙ୍କର ତଟରେ ଅନୁସରିବା । ୨୨ । ଜପନୀୟ ଭୂମିଦେବଙ୍କ ଚରଣରଜ ସେବି ପ୍ରତିଦିନ । ଗୋପନୀୟ କରି ତପନୀୟମୟ ଗୋପାଳଙ୍କୁ ଦେବା ଦାନ ।୨୩। ଯିବା ଶିବାଶ୍ରମ ନିବାସୀଙ୍କି ନମସ୍କାରଣଗଣେ ତୋଷିବା । ଶିବ ଶିବା ଦୁହେଁ ଥିବା ସୀମା ଖୋଜି ସୁବାସିତ ଫୁଲ ଦେବା ।୨୪। ନିକଟେ ପ୍ରକଟ ହୋଇବ ପୁରଟଘଟିତ ଲତାରେ ଫଳ । ଏପରି ପ୍ରବୋଧ କରି ଅବରୋଧ ତ୍ୟଜନ୍ତେ ଧରାଖଣ୍ଡଳ । ୨୫ । ଅତି ବେଗେ ବେତ୍ରବଲ୍ଲୀଧାରଣୀ କେ ପ୍ରତିହାରଣୀ ଜଣେ । ଜଣାଇଲା ଏତେ ବିନୟ ସହିତେ ବନ୍ଦି ନରେନ୍ଦ୍ର ଚରଣେ । ୨୬ । ଦେବ ସିଂହଦ୍ୱାରରକ୍ଷକ ଲକ୍ଷକ ସରଦାର ଶୂରବର । ପେଷିଛି ସନ୍ଦେଶ ଚରଣ ସାରସ ତଳେ ହେବାକୁ ଗୋଚର ।୨୭। ନୈମିଷାରଣ୍ୟ ଉଟଜରୁ ପୁଣ୍ୟ-ପୁଞ୍ଜ ନାମା ଜଣେ ଯତି । ଗୁଣିଗୃହମଣ୍ଡପବେଢ଼ା ଉପବନ ବକୁଳତଳେ ଅଛନ୍ତି । ୨୮ । କରମାଳିବ୍ରଜ ସର ପୁଣି ତେଜ କରମାଳାରେ ମଣ୍ଡିତ । ପରମାନନ୍ଦର ବିଳାସମନ୍ଦିର ଧରମାକାର ପଣ୍ଡିତ । ୨୯ । ସଞ୍ଚାରେ ଚରଣ ସଂସ୍ଥା ଚିହ୍ନ ନାହିଁ ପୁଣି ଧୂଳିମୟେ ପଥ । ଅଳପ ବୟସ ପର ଦଶୁଚନ୍ତି କଳମଜୀବଙ୍କ ମାଥ । ୩୦ । ଅନୁରୂକନପିଙ୍ଗଳ ଝଟକେଶ

---

ବେଶ । ୧୮ । ନ ଛୁଇଁଲା - ସୁନ୍ଦର କନ୍ଦଳକପ୍ର ମୁଖ ଓ ଅଧର ସ୍ପର୍ଶ କଲା ନାହିଁ । ବଳଦଳନସମ୍ପତ୍ତି—ଇନ୍ଦ୍ର ସମ୍ପତ୍ତି । ୧୯ । ଶୃଣି—ଅଙ୍କୁଶ, ସୂନବେଦଶୃଣି—ଅତି ଦୁଃଖରୂପ ଅଙ୍କୁଶଦ୍ୱାରା ଯାହାଙ୍କର ମନରୂପ ହାତୀ ପରାଧୀନ ହେଲା । ୨୦ । ଝର—କେଶଭୂଷଣ ଫୁଲତୋଡ଼ା, ଯେଉଁ ଲୋକ କେଶକୁ ଭୂଷିତ କରିବାକୁ ଝର ତିଆରି କରିପାରେ ସେ ଲୋକ କେଶ କେବେ ଜାତ ହୁଏ ତାହା ଜାଣେ ନାହିଁ । ୨୨ । ଗୋମତୀମାତା—ଗଙ୍ଗା । ୨୩ । ଜପନୀୟ—ଧ୍ୟାନଯୋଗ୍ୟ, ଭୂମିଦେବ—ବ୍ରାହ୍ମଣ. ତପନୀୟ ଗୋପାଳ---ସୁବର୍ଣ୍ଣନିର୍ମିତ ଗୋପାଳ ପ୍ରତିମା, ପୁରଟଘଟିତ ଲତାରେ—ସୁବର୍ଣ୍ଣନିର୍ମିତ ଲତାରେ, ଅବରୋଧ—ଅନ୍ତଃପୁର, ଧରାଖଣ୍ଡଳ—ପୃଥିବୀର ରାଜା । ୨୮ । ଉଟଜ—କୁଡ଼ିଆ । ୨୯ । କରମାଳିବ୍ରଜ—ସୂର୍ଯ୍ୟସମୂହ, ସଞ୍ଚାରେ—ଯିବାବେଳେ, ଚରଣସଂସ୍ଥା- ପଦଚିହ୍ନ, କଲମଜୀବ—

ଚନ୍ଦ୍ରରୁହଶ୍ରେଣୀ ଠାଣି । କଳିତ ନିଦଣ୍ଡ କରକ ଅଖଣ୍ଡ ବଭୂତିଭୂଷିତ ପୃଣି । ୩୧ । କାହାର ନୟନ ଗୋଚର ନୋହଇ ନାହିଁ ଆହାର ଅଙ୍ଗୀକାରଣ । ତଳକଳିତକରର ସର୍ବସିଦ୍ଧି ବଳକଳ ଆଭରଣ । ୩୨ । ଏ ଭାରଣ ଭୂମଣ୍ଡିତରନ୍ଧ୍ରକୂପ ସୁଧାପୂରରୁ ବଳିଲା । ଧରାଧୂରନ୍ଧର ସନ୍ତାପତ୍ରଜର ଦ୍ଵିଗୁଣ ହୋଇ ଭାଳିଲା । ୩୩ । ଏ ସମୟେ ରବି ବାରୁଣୀକି ସେବା ଅମ୍ବରକୁ ଦେଲେ ତେଜି । ଅମ୍ବୁଜନୀ ଗୃହି ଅପନମା ବହି ରହିଲା ନୟନ ବୁଜି । ୩୪ । ଲଜ୍ଜାଭର ଘେନି କୋକବିଳାସିନୀ କାନ୍ତପାଶୁ ହେଲା ଦୂର । କୁମୁଦନୀ ବାମ ମୁଖେ ରହି ହାସ ପ୍ରକାଶିଲା ଦରଦର । ୩୫ । ପିତୃଜନପ୍ରିୟାବଧି ସାର ମନ୍ତ୍ରୀପୁଙ୍ଗବଙ୍କୁ ସଙ୍ଗେ ଘେନି । ଗୁପତେ ନୃପତ୍ତ ଗଲେ ଅର୍ଦ୍ଧରଜନୀକାଳେ ଯହିଁ ଥିଲେ ମୁନି । ୩୬ । ଦେଖିଲେ ନାସିକାଅଗ୍ର ଜାଗରୂକ ହୋଇଛି ନୟନତାରା । ବୀରାସନେ ବସି ଦଶୁଛନ୍ତି ଋଷି ଏକମୁଖ ବ୍ରହ୍ମା ପରା । ୩୭ । ପରାଗମୟ ଭୂତଳେ ଭୂମିନାଥ ପଡ଼ି ହେଲେ ଦଣ୍ଡବତ । ଦଣ୍ଡିକୁ ସେ ଦଣ୍ଡିବର ବରଷିଲେ ସୁକଲ୍ୟାଣ ଖଣ୍ଡବତ । ୩୮ । ଅହଙ୍କାରମଦମର୍ଦ୍ଦନ ହୋଇ ତୁଅ ମହୀତଳ-ପୁରନ୍ଦର । ଗୁଣମଣି ବ୍ରଜମୟ ତୋ ତନୁଜ ହେଉ ଅନଙ୍ଗସୁନ୍ଦର । ୩୯ । ଋତୁଁ ମହାନନ୍ଦ ଜନମି ଅମନ୍ଦ ଉଲ୍ଲାସ ବିନୟେ ନୃପ । କହିଲେ ହେ ବ୍ରହ୍ମ୍ୟୋମକାରକାରଣ ପରମଧର୍ମ ସ୍ଵରୂପ । ୪୦ । ଦେଇଅଛ ସର୍ବ କେବଳ ଅପୂର୍ବ ତୃତୀୟ ଆଶୀର୍ବଚନ । ସିଦ୍ଧି ଅଭାବରୁ ଦୁଃଖୀ ହୋଇଛନ୍ତି ନିବାସ ମନ ଲୋଚନ । ୪୧ । ଏ କଣାଣ ଶଶୀ ଦ୍ରବାଇଲା ଋଷି ହୃଦନ୍ତର-

---

ଅତରୁଦ୍ଧ, ଅନୁରୁକ ପିଙ୍ଗଳ -- ଅରୁଣକରଣ ପର ନୀଳପୀତାଭବର୍ଣ୍ଣ. ଚନ୍ଦ୍ରରୁହଶ୍ରେଣୀ —ରୋମସମୂହ, କଳିତନିଦଣ୍ଡକରକ- ଦଣ୍ଡକମଣ୍ଡଳୁଧାରୀ । ୩୨ । ତଳକଳିତ-କରର ସର୍ବସିଦ୍ଧି ସର୍ବପ୍ରକାର ସିଦ୍ଧି ଯାହାଙ୍କ କରତଳ ସ୍ଥିତ । ବଳକଳ— ବଲ୍‌କଲ । ୩୩ । ଶ୍ରୁତରନ୍ଧ୍ରକୂପ କାନରୂପ କୂଅ, ସୁଧାପୂର ଅମୃତପ୍ରବାହ । ୩୪ । ବାରୁଣୀ—ପଶ୍ଚିମ ଦିଗ, ଅମ୍ବୁଜନୀ -- ପଦ୍ମିନୀ, ଅପନମା— ଲଜ୍ଜା ୩୫ । କୋକବିଳାସିନୀ—ଚକ୍ରବାକୀ । ୩୬ । ପିତୃଜନପ୍ରିୟାବଧି ସନ୍ଧ୍ୟାବଧି । ୩୮ । ପରାଗମୟ—ଧୂଳିପୂର୍ଣ୍ଣ, ଦଣ୍ଡିକୁ—ଏକଦଣ୍ଡବ୍ୟାପି, ଦଣ୍ଡିବର— ଯତିଶ୍ରେଷ୍ଠ, ଖଣ୍ଡବତ -ସାକର ପରି । ୩୯ । ଅହଙ୍କାରମଦମର୍ଦ୍ଦନ— ଶତ୍ରୁଗର୍ବଖର୍ବନାଶକ, ଗୁଣମଣି-ବ୍ରଜମୟ—ନାନାଗୁଣ ପରିପୂର୍ଣ୍ଣ, ତନୁଜ—ପୁତ୍ର, ଅନଙ୍ଗ ସୁନ୍ଦର-- କନ୍ଦର୍ପପରିରୂପବାନ୍ ୪୦ । ଅମନ୍ଦ—ପ୍ରଚୁର । ୪୧ । ତୃତୀୟ ଆଶୀର୍ବଚନ ( ପୁତ୍ରଲାଭରୂପ ) ତୃତୀୟ ଆଶିଷ

ଶଶିମଣି । ନେତ୍ରମୁକୁଳିତ କରି କଲେ ଚିତ୍ତ ସମାଧିରେ ଧୀରେ ପୁଣି । ୪୨। ସ୍ୱକୀୟ ଆଶ୍ରମସିଦ୍ଧ ଚୂତଦ୍ରୁମ ପରେଲିମ ଫଳ ଅସି । ହେଲା କରଗତ ଦେଇ ଉଦ୍ରେହିତ ହୋଇଲେ ସିଦ୍ଧ ସନ୍ନ୍ୟାସୀ । ୪୩ । ସାଣି ଦେଲା ପାଣିବତ ପୀତ ମଣି ପରି ପରିଣତ ଚୂତ । ଅଣି ରାଣୀ ମୃଦୁକଞ୍ଜପାଣିପୁଟେ କଲେ ତାହା ସମର୍ପିତ । ୪୪ । ଦେବୀ ସେବି ସେ ବଣୁଙ୍କ ସିଦ୍ଧ ଫଳ ସଉରଭ ମହାସୁଖେ । ପୁରି ସେ ନ୍ତଶୀଥ କୃତମନୋରଥ ପହୁଞ୍ଚିଲା ପ୍ରିୟପାଖେ । ୪୫ । ଅମ୍ବର ହୋଇଲା ତୋଳି ଦେଖାଗଲା କୁସୁମବନିକା ପରି । ଝଡ଼ିଗଲା ବାସି ପ୍ରସୂନସଦୃଶୀ କେତେ ତାରକାମାଧୁରୀ । ୪୬ । କୁମୁଦୁଁ ବଳେ କବାଟି ଫେଡ଼ି ଯହୁଁ ପଳାଇଲେ ଅଳିଯାକ । କେ କେ ରେ କେ ବୋଲି ତାମ୍ରଚୂଡ଼ଚୟ ଡାକିଲେ ଯାମିକ ଡାକ । ୪୭ । ପୁର୍ବାଶା ଅରୁଣ କରଣ କୁଙ୍କୁମପଙ୍କ ରାଗବେଶେ ରସି । ରବିଙ୍କି ଯା ବିଭାକର ବୋଲାଇଲା ପଦ୍ମିନୀଏ ଦେଲେ ହସି । ୪୮ । ସେହି ଦିନୁ କ୍ରମକ୍ରମରେ ସେ ହେମ-ମଞ୍ଜରୀ ଖଞ୍ଜନଦୃଶା । ବିଜାତୀୟ ଶୋଭା ବହି ହେଲା ଗର୍ଭାଧାନ ବିଧାନ-ସାଲସା । ୪୯ । ପାରିଜାତୁଁ ହରିହୟବନୀ ପରି ଜଳଭରୁଁ ଘନମାଳା । କଉସ୍ତୁଭସଙ୍ଗୀ ହେବାରୁ ରଥାଙ୍ଗୀ ଉରସ୍ଥଳୀକି ସେ ବାଳା । ୫୦ । ରସ-ଗର୍ଭବତୀ କି କବିଭାରତୀ କି ଧର୍ମବତୀ ମତି ସେ । ନୀଳପୟୋଧର-ମୁଖୀ ହୋଇବାରୁ ପ୍ରାବୃଟ ପରି ଅଭାସେ । ୫୧ । କୁମ୍ଭାଦିକୁମ୍ଭଣ ଖର-

---

୪୨ । ଶଶିମଣି—ଚନ୍ଦ୍ରକାନ୍ତମଣି, ମୁକୁଳିତ—ମୁଦ୍ରିତ । ୪୩ । ପରେଲିମ—ପାଚିଲା ୪୪ । ସାଣି······ସାଣ ଦେଇ—ଉଜ୍ଜ୍ୱଳ କରି ପାଣି ଦେଇଥିବା ହଳଦିଅ ବର୍ଣ୍ଣର ମଣିଭଳି, ପରିଣତଚୂତ—ପାଚିଲା ଆମ୍ବ । ୪୫ । (ପ୍ରଭାତବର୍ଣ୍ଣନା) ଫୁଲତୋଳା ନେଲେ ଫୁଲ ବଗିଚା ଯେପରି ହୁଏ, ସକାଳେ ତାରାମାନେ ମ୍ଳାନ ହେବାରୁ ଆକାଶ ସେପରି ଦେଖାଗଲା । ୪୬ । ପ୍ରସୂନ—ଫୁଲ । ୪୭ । ତାମ୍ରଚୂଡ଼—କୁକୁଡ଼ା, ଯାମିକଡାକ—ପ୍ରହରୀଙ୍କ ଡାକ । ୪୮ । ପୂର୍ବଦିଗରୂପନାୟିକା ରକ୍ତବର୍ଣ୍ଣ ଅରୁଣକରଣରେ ଭୂଷିତ ହୋଇ ସୂର୍ଯ୍ୟଙ୍କୁ ମୋତେ ବିଭାକର ବୋଲି ଯାହା କହିଲା ତା ଶୁଣି ପଦ୍ମିନୀମାନେ (ସୂର୍ଯ୍ୟଙ୍କ ପତ୍ନୀରୂପିଣୀ) ହସି ଦେଲେ, ଅର୍ଥାତ୍ ସୂର୍ଯ୍ୟ ଉଦୟ ହେବାରୁ ପଦ୍ମ ଫୁଟିଲେ । ବିଭାକର—ବିବାହକର ଓ ସୂର୍ଯ୍ୟ । ୪୯ । ସାଲସା—ଅଳସଯୁକ୍ତ । ୫୦ । ରଥାଙ୍ଗୀ—ଚକ୍ରଧର, ବିଷ୍ଣୁ, ପାରିଜାତ ଫୁଲ ହେତୁରୁ ନନ୍ଦନବନ ଯେପରି ଦିଶେ, ଜଳଭର ହେତୁରୁ ମେଘମାଳା ଯେପରି ଦିଶେ, କୌସ୍ତୁଭମଣି ଧରି ବିଷ୍ଣୁ ଯେପରି ଦିଶନ୍ତି, ଗର୍ଭଧାରଣ କରି ସେ ରାଣୀ ସେହିପରି ଦିଶିଲେ । ୫୧ । ପ୍ରାବୃଟ

ଶ୍ୱାସଗଣ ବେଶଭୂଷାରେ ଅରୁଚ । ବଟଦଳ ପରି ଛଟକେ ଦର୍ଶିଲା ଅଦୃଶ୍ୟ ଉଦରରୁଚ । ୫୨ । ବାରବାନସୁନାଦେହା ସେ ହୋଇଲା ବାରଣଦନ୍ତପ୍ରତିମା । ଦ୍ୱିରଦରଦନପଲଙ୍କ ବରଜି ତଳ୍ପ କଲା ଖାଲି କ୍ଷମା । ୫୩ । ବରଜି ଅମୃତସଦୃଶ ଅଶନ ରସିଲା ମୃଦ ଭକ୍ଷଣେ । ଶିଥିଳାଇ ବାସ ପିନ୍ଧିବା ଅଳସ ଖେଳିଲା ଲୋଳଈକ୍ଷଣେ । ୫୪ । ପ୍ରଭିଦିନ ଗୋଗ୍ରି ବ୍ରତଦିନ ପରି ହେଲା ସୁରତବିରତ । ତାମସ ସୁଷମାନ୍ନାଧିର ଏପରି ଦଶ ମାସ ସମାପତ । ୫୫ । ରସବସମନା ସିନ୍ଧୁକୁ ମନ୍ଦର ପ୍ରସବ ସମୟ ହେଲା । ପାରିଜାତ ତରୁପରି ଜାତରୂପଦେହା ସୁତ ଜାତ କଲା । ୫୬ । ନାକ୍ଷତ୍ରିକଗୋଷ୍ଠୀ ସିଦ୍ଧ ହେଲା କୋଷ୍ଠୀ ଚକ୍ରବର୍ତ୍ତୀଯୋଗଯୁତ । କରାଇଲେ ରାଜା ମହୋତ୍ସବ ବାଜାଧ୍ୱନି ତୁନ୍ଦିଲ ଜଗତ । ୫୭ । ସୁବର୍ଣ୍ଣ ବରଷାପୂର୍ଣ୍ଣ ହେଲା ରସା ଧନଦ ହେଲେ ଯାଚକ । କି ନିଶା କି ଦିନ ନ ଜାଣିଲେ ଜନ ଉନ ସାତ ଦିନ ଯାକ । ୫୮ । ଜାତ କଲେ ନାହିଁ ସୁଖର ବୋଲିବା ଜାତକ ନାମ ପ୍ରଥମେ । ସିଦ୍ଧଗିର ସ୍ମର ସମସ୍ତେ ଡାକିଲେ ଅନଙ୍ଗସୁନ୍ଦର ନାମେ । ୫୯ । ଦିନୁ ଦିନୁ ଶଶୀପରି ଅଙ୍କମସୀ ବିନା ବଢ଼େ ଭୂପସୁତ । କ୍ରେ ବନମାଳୀ ପରି ବାଲ୍ୟକେଳି ରଚଇ ଅପରିମିତ । ୬୦ । ଶ୍ରୁତିବେଧ ହେଲା ପଦୁ ବିଦ୍ୟାଶାଳା ପରବେଶ କରାଇଲେ । ଗୁରୁପ୍ରଭାବଜ ମନ୍ତ୍ରୀସୁତ ରାଜବଲ୍ଲଭାଖ୍ୟ ସଖା ତୁଲେ । ୬୧ । ଅମରକେଶରୀ ଫଣୀଶ୍ୱର ପରିପାଳିତ କାବ୍ୟପଠଳୀ । ନାଟକ ଅଳଙ୍କାର ତର୍କ ବେଦାନ୍ତ ସ୍ମୃତି ଇତିହାସ ପାଳୀ । ୬୨ । ଅଷ୍ଟାଦଶମିତ ପୁରାଣ ଚରିତ ଗଣକ ଚକ୍ରସ୍ତୋମତ ।

---

—ବର୍ଷାକାଳ । ୫୨ । ଜୃମ୍ଭାବିଜୃମ୍ଭଣ—ହାଇ ମାରିବା । ୫୩ । ବାରବାନସୁନା ଦେହା—ଉଜ୍ଜ୍ୱଳ ସ୍ୱର୍ଣ୍ଣବର୍ଣ୍ଣାଙ୍ଗୀ, ବାରଣଦନ୍ତପ୍ରତିମା—ହାତୀଦାନ୍ତ ପିତୁଳା ପରି ଧଳା, ଦ୍ୱିରଦରଦନପଲଙ୍କ—ହାତୀଦାନ୍ତ ପଲଙ୍କ, ତଳ୍ପ—ଶଯ୍ୟା, କ୍ଷମା— ପୃଥିବୀ, ମାଟି । ୫୪ । ଅଶନ—ଭୋଜନ, ମୃଦ—ମାଟି, ଲୋଳଈକ୍ଷଣେ—ଚଞ୍ଚଳ ନେତ୍ରରେ । ୫୬ । ଜାତରୂପଦେହା—ସ୍ୱର୍ଣ୍ଣାଙ୍ଗୀ । ୫୭ । ନାକ୍ଷତ୍ରିକଗୋଷ୍ଠୀ—ଗଣକ ବା ଜ୍ୟୋତିଷଗଣ ( ଦ୍ୱାରା ) । ତୁନ୍ଦିଲ—ପରିପୂର୍ଣ୍ଣ । ୫୮ । ଧନଦ—କୁବେର, ଧନୀ; ଯାଚକ—ମାଗିବା ଲୋକ, ରସା—ପୃଥିବୀ, ଉନ ସାତ ଦିନ—୧୯ ଦିନ । ୬୦ । ଅଙ୍କମସୀ—କଳଙ୍କକାଳିମା । ୬୧ । ଶ୍ରୁତିବେଧ—କାନଫୋଡ଼ା, ଗୁରୁପ୍ରଭାବଜ —ବୃହସ୍ପତିଙ୍କ ଔରସଜାତ । ୬୨ । ଅମରକେଶରୀ—(କୋଷକାର) ଅମର ସିଂହ,

ରତ୍ନାଶ୍ୱବାରଣ ଶସ୍ତ୍ରପରୀକ୍ଷଣ ଅନଳ୍ପ ଶିଳ୍ପ ସଙ୍ଗୀତ । ୬୩ । ସ୍ତମ୍ଭନ ମୋହନ ବଶ ଉଚ୍ଚାଟନ ହଠ ଚମତ୍କ ଶାବର । ସବୁଦେଶ ଗିର କାଳୀତାଳଦଳ ଲେଖା ବିବିଧ ଅକ୍ଷର । ୬୪ । ଶତଅବଧାନ ସରସ କବନ ମହାରାଜ ନୀତଯାକ । ଅସାଧ୍ୟତର ତୁରଙ୍ଗଦମନ ଧୃତିବିନୟି ବିବେକ । ୬୫ । ନୋହିଲା ସେ ଦୁହିଙ୍କର ସେହି ବିଦ୍ୟା ଯହିଁ ସେ ନ କଲେ ଇଚ୍ଛା । ଲୋଡ଼ିଲେ ମିଳିଲା ନାହିଁ କି ଭାରତୀଭଣ୍ଡାର ହେବାରୁ ତୁଚ୍ଛା । ୬୬ । ତନ୍ତୁମାନ ଭିନ୍ନ ଜୀବନେ ଜୀବନ ମନରେ ମନ ମିଶିଲା । ଏପରି ସମୟୁ ହରୁଁ ସଖାଦ୍ୱୟୁ କିଶୋର ତା ପ୍ରକାଶିଲା । ୬୭ । ଅତି ସୁକୁମାର ଏ ଦୁଇ କୁମାର ବୋଲି ନ ଆଚରି ଦୟା । ଦନୁ ଦନୁ ମନ ବନରେ ମଦନ-ମୃଗୟୁ କଲା ମୃଗୟା । ୬୮ । ଲଜ୍ଜାଗଉରବ ଯୋଗୁଁ ଏକ ଭାବ ଆରକେ ନୁହଇ ଜଣା । କରୁଥାନ୍ତି ନିତି ସରସ ଭାରତୀ ସୁଧାରେ ମନ ମାଜଣା । ୬୯ । ଲେଖାରେ ତୁରୀୟୁ ସୁଚରିତମୟି ଏକସ୍ତ୍ରରୀ ମୟି ପଦ । ଶେଷ ଶ୍ଳେଷଯୁତ ହେଲା ସମାପତ କୁମାରୋତ୍ସବ ଏ ଛନ୍ଦ । ୭୦ । ଗୋବରଧନ-ବିହାରୀ ହରି ହର ବୃଷ ପାଦ ବାରିରୁହ । ରାମଚନ୍ଦ୍ର ଦେବ ମନମିଳିନ୍ଦକୁ ଦେବ ମରନ୍ଦପ୍ରବାହ । ୭୧ ।

---

ଫଣୀଶ୍ୱର—ପ୍ରସିଦ୍ଧ ଭାଷ୍ୟକାର, ପରିପାଳିତ—ସଙ୍କଳିତ, ପ୍ରଣୀତ କାବ୍ୟପଟଳୀ—କାବ୍ୟସମୂହ, ପାଳି—ଶ୍ରେଣି, ସମୂହ । ୬୩ । ଅଷ୍ଟାଦଶମିତ—୧୮ ସଂଖ୍ୟକ ରତ୍ନ, ଅଶ୍ୱ, ବାରଣ (ହାତୀ) , ଶସ୍ତ୍ର (ଖଡ଼୍‌ଗାଦି) ପରୀକ୍ଷା କରିବା ଶାସ୍ତ୍ର । ଅନଳ୍ପ-ପ୍ରଚୁର । ୬୪ । ଶାବର—ଗୁଣିବିଦ୍ୟା । କାଳୀତାଳଦଳଲେଖା—କାଗଜଲେଖା ଓ ତାଳପତ୍ରଲେଖା । ୬୫ । ଶତଅବଧାନ—ଏକ ସମୟରେ ଶହେ ଲୋକଙ୍କ ପ୍ରଶ୍ନର ଉତ୍ତର ଦେବା ରୂପ ବିଦ୍ୟା, କବନ—କବିତା, ଧୀର, ବିନୟୀ, ବିବେକୀ ହେବା ଶିକ୍ଷା । ୬୮ । ମଦନମୃଗୟୁ—କାମରୂପ ଶିକାରୀ । ୬୯ । ଲଜ୍ଜାର ଆଧିକ୍ୟରୁ ନିଜ ନିଜ ହୃଦୟର କାମବିକାର କେହି କାହାକୁ ଜଣାଉ ନ ଥାନ୍ତି: ମାତ୍ର ରସ-ଗର୍ଭକ କଥାମୃତ ଦ୍ୱାରା ପରସ୍ପର ମନୋମୋହନ କରୁଥାନ୍ତି । ୭୦ । ତୁରୀୟ—ଚତୁର୍ଥ । ୭୧ । ଗୋବର୍ଦ୍ଧନ ପର୍ବତରେ ବିହାରକାରୀ ହରିଙ୍କର ଏବଂ ଗୋବର୍ଦ୍ଧନ (ବୃଷଭ)-ବିହାରୀ ହରଙ୍କ ବୃଷ ପାଦ ବାରିରୁହ (ପଦ୍ମ) ରାମଚନ୍ଦ୍ର ଦେବ ମନରୂପ ମିଳିନ୍ଦକୁ (ଭ୍ରମରକୁ) ମରନ୍ଦ (ମକରନ୍ଦ) ପ୍ରବାହ ଦେବେ ।

---

## ପଞ୍ଚମ ଛାନ୍ଦ

### ରାଗ—ଚକୀଶିକ

( ମଣିମଞ୍ଜୁଳା ରାଜଧାନୀ ବର୍ଣ୍ଣନା ଓ ଚନ୍ଦ୍ରକଳା ଜନ୍ମ )

ଅଥ ମନମଥରସକଥାପଥ ପଥିକେ ଶୁଣ ହୃଷ୍ଟଚିତ୍ତେ । ମହାଗଜ-ଘୋଷ ପୂର୍ବକୁ କ୍ରୋଶ ଶତ ପଞ୍ଚକ ପରିମିତେ । ଅଛି ଅଶେଷ । ବିଭବନାମେ ରାଜ୍ୟରାଜ । ମଣିମଞ୍ଜୁଳା ରାଜଧାନୀ ସେ ଦେଶ ତାରାଳି ମଧ୍ୟ ଦ୍ୱିଜରାଜ । ୧ । ଅହା ଜଗତୀରେ ତାହା ପରି ଲବ କାହା ଜନ୍ମକେ ଲୁହାଭଳି । ଯାହା ଜଳଜଳେ ରାହାଜଗୁଆଲେ ଜାହାଜ ଲକ୍ଷ ଲକ୍ଷ ଗୁଳି । ହେଉ ଅଛନ୍ତି । ସାହା ଜଗତଜନଙ୍କର । ବହାଜନ୍ୟ ପଣେ ମିଶିଛି ବିଶେଷେ ମହାଜନପଣ ତାଙ୍କର । ୨ । ଦୁର୍ଗଗୁର ବାହ ଉତ୍ସର୍ଗରୁ ଯହିଁ ଅଶକ୍ତ ହୋଇ ଅନୁମାନେ । ଉଦୟାସ୍ତ ଉମାଗୁରୁ ବିନ୍ଧ୍ୟନାମାଚଳ ଚିହ୍ନନ୍ତି ନାହିଁ ଜନେ । ପ୍ରତି ପ୍ରଭାତେ । ପ୍ରାଚୀର ପ୍ରାଚୀର ଶିଖରେ । ଚିରକାଳୁ ଥିବା ଅଭିନବ ଜବାସ୍ତବକ ଭ୍ରମ ହୋଏ ସୂରେ । ୩ । ପଙ୍କେରୁହବଂଶ-ଭବ ଅବତଂସ ହେବାରୁ ସେ ଧରାଧିନାଥ । ତପନୀୟମୟ ବୃତ୍ତିସମୂଦୟ ହେବାର ହୋଇଲା ଯଥାର୍ଥ । ବସୁନ୍ଧରାରୁ । ସ୍ୱର୍ଗକୁ ମାର୍ଗ ବୋଲି ଏତେ । ସହର ବାହାର ମଣ୍ଡା ମଣିଝଣ୍ଡାଦଣ୍ଡରୁ ହେଉଛି ପରତେ । ୪ । ଜନ୍ମୁ ତହିଁ ରହି ଯଉବନ ବହି ଲଭି ତହିଁରେ ପରିଣତି । ସେହି ମହାରାଜଧାନୀ ସୀମା ଅଜଯାଏ ଜନେ କଳି ନାହାନ୍ତି । ଅନ ଦେଶରୁ । ଅସିବା

---

**ପଞ୍ଚମ ଛାନ୍ଦ**

୧ । ମନ୍ମଥରସ—ଶୃଙ୍ଗାରରସ, ସେ କଥାପଥରେ ଯେଉଁମାନେ ପଥିକ । ରାଜ୍ୟରାଜ—ରାଜ୍ୟଶ୍ରେଷ୍ଠ, ତାରାଳି—ନକ୍ଷତ୍ରସମୂହ, ଦ୍ୱିଜରାଜ—ଚନ୍ଦ୍ର । ୨ । ଯେଉଁ ନଗରର ପରର ଲବମାତ୍ର ସଂସାରରେ କୌଣସି ଲୋକ ଜୀବନରେ କହିପାରିବ ନାହିଁ । ଜଳଜଳେ—ପରିଖାର ପାଣିରେ, ରାହାଜନୁଆଲେ—ବାଟ ଜଗିଥିବା ଲୋକମାନେ, ବାହାଜନ୍ୟ ପଣେ—କ୍ଷତ୍ରିୟ ପଣ ସଙ୍ଗରେ ସେହି ମହାଜନଙ୍କ ପରୋପକାର ପଣ ମିଶିଛି । ୩ । ଉଦୟାସ୍ତ—ଉଦୟ ଓ ଅସ୍ତ ପର୍ବତ, ଉମାଗୁରୁ—ହିମାଳୟ ପର୍ବତ; ପ୍ରାଚୀର—ପୂର୍ବଦିଗର, ପ୍ରାଚୀର—ପାଚେରି, ଜବାସ୍ତବକ-ମନ୍ଦାରଫୁଲର ପେଣ୍ଡା; ସୂରେ—ସୂର୍ଯ୍ୟଙ୍କଠାରେ । ୪ । ପଙ୍କେରୁହବଂଶ········ ପଦ୍ମବଂଶଜାତ ରାଜାମାନଙ୍କ ଭୂଷଣସ୍ୱରୂପ, ତପନୀୟମୟବୃତ୍ତି—କେବଳ ସୁନାର କାରବାର ଯାହାଙ୍କର ( ରାଜ ପକ୍ଷରେ ); ସୂର୍ଯ୍ୟସମ୍ବନ୍ଧୀୟ

ଜନ କି କଳିବ । ଧ୍ୱଜରଜ ଗଣି ପାରିବ କେ ପୁଣି ମଣିସାନୁସୁନା ତୁଳିବ । ୫ । ସେ କି ଦାମୋଦର ଦେବଙ୍କ ଉଦର ତହିଁ ଯା ନାହିଁ କାହିଁ ନାହିଁ । ଦେବଙ୍କ ଅଭ୍ୟାସ ହେଲା ଅନିମିଷ ଯାହା ସମସ୍ତ ଗୃହିଁ ଗୃହିଁ । ଯହିଁ ଆପଣେ । ବସେ ପଣ ପଣ କୁଞ୍ଜର । ଗଣନା କେ ପୁଣି କରିବ ସାଜେଣି ଉଷ୍ଣ ତୁରଙ୍ଗମପୁଞ୍ଜର । ୬ । ପରିବାର ହାଟ ବାଟକୁ ନିଅନ୍ତି ପରିବାରେ ଯହିଁ ହାଟକ । ଯହିଁ ଜନ ପଙ୍କେରୁହକରମ୍ବ ଅଙ୍କେ ଏକା ଜାଣନ୍ତି ବରାଟକ । ଯହିଁ ଦୁଆରେ । ଶାକ ଗୋ ବୋଲି ଡାକ ଶୁଣି । ସୁରୁପାଳୀ ନେଇ ସ୍ୱରୂପେ କୁଢ଼ାଇ ଦିଅନ୍ତି ଦ୍ରବ୍ୟ ମୋତି ମଣି । ୭ । ହେବା କ୍ଷଣେ ଜଣା ବଜାର ବିଛଣା ଉଠିଯିବା କାଳ ନିକଟ । ପୁଳିନ୍ଦସୁନ୍ଦରୀ ପଡ଼ିବା କସ୍ତୁରୀ ପଗଡ଼ କରି କୁଟ କୁଟ । ହେଲେ ରଖନ୍ତି । ମିଶାଇ ଅବଳର ତୁଲେ । ତାହାର ବସନ୍ତ ଦୁଆରେ ଦିଅନ୍ତି ଗୋମୟ ଅଣ ଗୋ ଯେ ବୋଲେ । ୮ । ସୁନାଗରୀଆରେ ଜୀବନ ଦେ ବୋଲି ଦାସୀଙ୍କ ବୋଲେଁ ଗୃହପତି । ଯହିଁ କୁଟୁମ୍ବିନୀ ଆନ ଭାବ ଘେନି ହୁଅନ୍ତେ ଦୃଢ଼ ମାନବତୀ । ଜାଣି ଭୟରେ । ଅବରୋଧକୁ ଧବ ଯାଏ । ବସାଇ କୋଳରେ ସୁରୁପା ତାଳ ରେ ଦୃଷ୍ଟି କି ବୋଲି ସମଜାଏ । ୯ । ବରଣମଣ୍ଡଳ ବିଷ୍ଣୁପଦୁଁ ବଳି ବ୍ୟାପିଥିବାରୁ ଗୃହପାଖେ । ବହୁଳ ପକ୍ଷରେ ବହଳ ଋକ୍ଷଙ୍କ ପଟଳୀ ଚୁମ୍ବିବାରୁ ଶିଖେ । ଯେଉଁ ନଗରୀ । ଜନ ବିଗୃହରେ ତାହା ଦେଖି । ଏ କି ଚମତ୍କାର ଅକାଳେ ଚତୁର ଦେଖ ଅଟଳେ ଦରଶିଖୀ । ୧୦ । କେଉଁ ପୁରେ କ୍ଷିତି ମାର୍ଜନା କରନ୍ତି ସୁନାଖଡ଼ିକା ଝାଡ଼ୁଧରି । କସ୍ତୁରୀ ରୋଚନା ଗନ୍ଧସାର ସିନା କୁଙ୍କୁମ ତୁଲେ ପଡ଼େ ଛରି । ଚନ୍ଦ୍ର କମ୍ବଳ । ବିଛଣା

---

(ପଦ୍ମ ପକ୍ଷରେ); ମଣିବିଭୂଷିତ ପତାକାଦଣ୍ଡ । ୫ । ମଣିସାନୁସୁନା—ମଣିମୟ ପର୍ବତ ଶୃଙ୍ଗରେ ଥିବା ସୁନା । ୬ । ଆପଣେ—ବଜାରରେ, କୁଞ୍ଜର—ହାତୀ, ସାଜେଣି—ସଜ୍ଜିତ, ତୁରଙ୍ଗମପୁଞ୍ଜ—ଅଶ୍ୱସମୂହ । ୭ । ହାଟକ—ସୁନା, ବରାଟକ—କଉଡ଼ି ଓ ପଦ୍ମବୀଜକୋଷ; ସୁରୂପାଳୀ—ସୁନ୍ଦରୀସ୍ତ୍ରୀମାନେ, ସ୍ୱରୂପେ—ପ୍ରତ୍ୟକ୍ଷରେ । ୮ । ପୁଳିନ୍ଦସୁନ୍ଦରୀ—ନୀଚଜାତିସ୍ତ୍ରୀ ସୁନ୍ଦରୀମାନେ, କସ୍ତୁରୀପଗଡ଼—କସ୍ତୁରୀର ଖଣ୍ଡ ବା କଣା; କୂଟ—କୁଢ଼, ଅବକରତୁଲ—ଅଳିଆ ସାଙ୍ଗରେ । ୯ । ସୁନା ଗରୀଆରେ—ସୁନାରେ ତିଆରି ଗରାରେ, (ଅନ୍ୟ ପକ୍ଷରେ)—ହେ ସୁନ୍ଦରୀକି ଆ, ଜୀବନ—ପାଣି ଓ ପ୍ରାଣ; କୁଟୁମ୍ବିନୀ—ନିଜ ସ୍ତ୍ରୀ, ଅବରୋଧ—ଅନ୍ତଃପୁର, ଧବ—ସ୍ୱାମୀ । ୧୦ । ବରଣମଣ୍ଡଳ—ପ୍ରାଚୀରର ଅଗ୍ରଭାଗ, ବିଷ୍ଣୁପଦ—ଆକାଶ, ବହୁଳପକ୍ଷରେ—କୃଷ୍ଣପକ୍ଷରେ, ବହଳଋକ୍ଷଙ୍କ ପଟଳୀ—

ଭ୍ରମେ ପଡ଼ିବାରେ । କରରୁହ ଛୁଡ଼ା ପୀଡ଼ାକୁ ଲଭନ୍ତି ଖାଲି ଧରିକୁ ଝିଙ୍କିବାରେ ।୧୧। ସଲାବଣ୍ୟରସ ପୂରିଛି ବିଶେଷ ନାହିଁ ତା ବୀଚିଜାତଦର । ରତନ ମକରକୁଣ୍ଡଳୀ ପ୍ରକର ସନ୍ତାନଜନ୍ମ ସୁଖାକର । ପ୍ରତି ପ୍ରାଙ୍ଗଣ । ମଣ୍ଡନେ କୀଲାଳ ଦିଶଇ । ଚନ୍ଦ୍ର ତୁରଙ୍ଗମ ଗଜ ଲକ୍ଷ୍ମୀଜନ୍ମସ୍ଥଳୀ ସେ ସିନ୍ଧୁକୁ ହସଇ ।୧୨। ନିଜ ଦାନବାରି ଗଜଦାନବାରି ବହେ ଦାନବାରି ଗୃହକୁ । ଅର୍ଭକେ ତାହାର ଗର୍ଭକୁ ଚଳାଇ ତରିମଣ୍ଡପ ସମ୍ମୁହକୁ । ଖେଳି ମଣନ୍ତି । ମାଧବ ପ୍ରତି ମାସଯାକ । ମାଧବପ୍ରମଦା ରୂପକେଳିରମା ଭାବି ଟହଳିବାରୁ ସମୁତ୍ସୁକ ।୧୩। ପ୍ରତିମାସେ ରାକାପ୍ରଦୋଷେ ରସିକାଜନଙ୍କ ଭ୍ରମ କି କହିବା । କେ ଥାଏ ତଳରେ କେ ଊର୍ଦ୍ଧ୍ୱସ୍ଥଳରେ ଅଟ୍ଟାଳିକାରେ ଥାଏ ଅବା । ଯେତି ଉପରେ । ଥାଏ ସେ ଚନ୍ଦ୍ରକୁ ବନ୍ଦାଏ । ତଳେ ଥିବା ବାମା ଊର୍ଦ୍ଧ୍ୱଗତା ରାମାଲପନକୁ ଅର୍ଘ୍ୟ ବନ୍ଦାଏ । ୧୪ । ଯହିଁ ଗୃହଚୂଳ ହିରଣ୍ୟମଞ୍ଜୁଳ କଳଶୀ ଉପର ଦଣ୍ଡକୁ । ଚୁମ୍ବିବା ଦଣ୍ଡକ କାଳେ ଗୃହିଁ ଲୋକ କଳା ବଳାହକଖଣ୍ଡକୁ । ମନେ ବିଚାରେ । ବଡ଼ଭି ନୀଳଚେଳ ବଲ୍ଲୀ । ଯେଉଁ ବର୍ଣ୍ଣେ ଘନ ଚୁମ୍ବେ ତାକୁ ଜନ ଘେନେ ସେ ବର୍ଣ୍ଣବାନା ବୋଲି ।୧୫। ଯେବେ ସଙ୍ଘୋଟ ପ୍ରକାରେ ପ୍ରାବୃଟକାଳୀନ ଘନ ବ୍ୟୋମେ ଘୋଟେ । ଦେଖି ବାତଲୋଳ ସୁପୀତ ଦୁକୂଳ ଲତା ବଡ଼ଭି ଗିରିକୂଟେ । କେଉଁ ପ୍ରାସାଦେ । ଗୃହିଁ ଅବଦାତପତାକା । ଜନ ଘେନେ ପୀତ କେତୁକୁ ତଡ଼ିତ ଧବଳକେତୁକୁ ବଳାକା ।୧୬। ନିସର୍ଗ ଚପଳା ବଲ୍ଲରୀକଖେଳା

---

ବହୁ ତାରକାସମୂହ । ଦବଶିଖୀ—ଦାବାନଳ, ବନାଗ୍ନି ।୧୧। କସ୍ତୁରୀ, ଗୋରୋଚନା, ଚନ୍ଦନ, କୁଙ୍କୁମ ପ୍ରଭୃତି ବିଭିନ୍ନ ରଙ୍ଗର ଛିଟ ( ଛିଟିକା ) ପଡ଼ିବାରୁ ପରିବାର ଲୋକମାନେ ସେ ସବୁକୁ ଚମ୍ପକମୂଳ ମନେ କରି ବୃଥା ଝିଙ୍କିବାକୁ ଚେଷ୍ଟା କରି ନଖ ଛୁଡ଼ିବାରୁ କଷ୍ଟ ପାଆନ୍ତି ।୧୨। ସଲାବଣ୍ୟରସ—ଲାବଣ୍ୟପୂର୍ଣ୍ଣଶୃଙ୍ଗାର ରସ ଓ ସୁନ୍ଦର ଜଳ, ବୀଚିଜାତଦର—ଲହରି ହେତୁରୁ ଭୟ, ସନ୍ତାନ—ପୁତ୍ରାଦି, କଳ୍ପବୃକ୍ଷ; କୀଲାଳ—ଜଳ ଓ କପର ରକ୍ତବର୍ଣ୍ଣ; ପ୍ରତି ଅଗଣାରେ ଥିବା ସୁନ୍ଦର ଜଳାଶୟମାନଙ୍କୁ ସମୁଦ୍ର ସଙ୍ଗେ ତୁଳନା କରାଯାଇଅଛି । ୧୩। ନିଜ ଦାନବାରି—ନିଜେ ଦାନ କରିବା ବେଳେ ଦେଉଥିବା ଜଳ; ଗଜ-ଦାନବାରି—ହସ୍ତୀମାନଙ୍କର ମଦଜଳ, ଦାନବାରିଗୃହକୁ—ସମୁଦ୍ରକୁ, ଅର୍ଭକେ—ପିଲାମାନେ, ତରିମଣ୍ଡପ—ଖେଳିବା ପାଇଁ କରିଥିବା ମଣ୍ଡପାକୃତି ନୌକା; ମାଧବ—ବୈଶାଖମାସ, ବୈଶାଖରେ ମାଧବ ପ୍ରମଦା ( ବିଷ୍ଣୁପ୍ରମଦା ) ଙ୍କର ରୂପକ୍ରୀଡ଼ାର ରମା ( ସୌନ୍ଦର୍ଯ୍ୟ ) ଭାବି ସମୁତ୍ସୁକ (ଆନନ୍ଦିତ) ହୁଅନ୍ତି ।୧୪। ରାକାପ୍ରଦୋଷ—ପୂର୍ଣ୍ଣିମାର ସନ୍ଧ୍ୟା, ରାମାଲପନ—ସ୍ତ୍ରୀର ମୁଖ ( ଚନ୍ଦ୍ର ) ।୧୫। କଳାବଳାହକ—କଳାମେଘ, ବଡ଼ଭି—ଚନ୍ଦ୍ରଶାଳା; ନୀଳଚେଳବଲ୍ଲୀ—ନୀଳବର୍ଣ୍ଣର ବସ୍ତ୍ରଖଣ୍ଡ ।

ଆକାଶ ମଧ୍ୟରେ ଅନାଇଁ । କେ ବୋଲେ ହେ ମିତ ବଡ଼ଭିାର ପୀତ ପତାକା ଦେଖିଲ କି ନାହିଁ । ରବି ମୟୂଖ । ଛନ୍ନ ହେବାରୁ ଘନେ ସିନା । ଜଣାଗଲା ଏତେ ଦିନକେ ନିକେତମଉଳିଶିଖେ ପୀତ ବାନା । ୧୭ । ଭୁଜଙ୍ଗମ ନର ଦୁଇ ପୁରସାର ବାଜପ୍ୟେ ଆଦର ନ କର । କେଉଁ ମଣିମୟ ପ୍ରାସାଦ ନିଳୟ ଅସିତ ଅଂଶୁକ ମଞ୍ଜରୀ । ଜମିଯାଏ ଯା । ଆକାଶ ଊର୍ଦ୍ଧ୍ୱେ ଖେଳି ଖେଳି । ହୁଅଇ ପ୍ରତୀତ ଜାଣି ସ୍ୱର୍ଗଦ୍ୟୁତ ତା ମୁଖେ ଲଗାଏ କି କାଳୀ । ୧୮ । ଋକ୍ଷ ପ୍ରତିବିମ୍ବ ଉମ୍ବରାବଲମ୍ବ ନୀଳାଶ ଜଗତୀରେ ନିଶି । ଲଉଲ୍ଲୀ ବୟସୀ ଗୃହ ପାଞ୍ଚ ମିଶି କୁସୁମ ଗୁନ୍ଥୁ ଗୁନ୍ଥୁ ବସି । ଚୂତ କୁସୁମ । ବୋଲି କେ ପ୍ରତିବିମ୍ବ ଧରେ । ସମୀରଣ ଉଡ଼ା ଫୁଲ ଭ୍ରମେ ଛୁଡ଼ା ହୋଇ କେ ତାହାକୁ ଓଟାରେ । ୧୯ । ଯହିଁ କେଉଁ ରସଲମ୍ପଟ ପୁରୁଷ ଗବାକ୍ଷ ପାଶେ ବସିଥିଲା । ଅବିଦୂର ଶଶିବିମ୍ବକୁ ପ୍ରେୟସୀବଦନ ଭ୍ରମେ ଚୁମ୍ବି ଦେଲା । ଉଣା ହେବାରୁ । ମାଧୁର୍ଯ୍ୟ ବୋଇଲା ଯା ଛି ଛି । ସେହି ଦିନୁ ଲାଜ ଭଜି ଦ୍ୱିଜରାଜ କାଳିମା ଲଭିଅଛି କି ଛି । ୨୦ । ରଞ୍ଜିବାକୁ ନେତ୍ରଖଞ୍ଜି କାଂସ୍ୟପାତ୍ର ଦୀପଶିଖେ କେ ଗଲା ଭୁଲି । ତହିଁ ପୁଣି ଆସି ପୁରେ ଦେଖି ଶଶୀ ମସି ପଡ଼ିଲା ପାତ୍ରେ ବୋଲି । ଭ୍ରମେ ଅଙ୍ଗୁଳି । ଅଗ୍ର ତା କଳଙ୍କେ ଘଷିଲା । କହୁଁ କହୁଁ ଶଶୀଜାଲମାର୍ଗେ ଖସି ଗଲା ଜାଣି ମନେ ହସିଲା । ୨୧ । ଯହିଁ ପ୍ରାଭାତିକ ବାଜା ବନ୍ଦୀତାଙ୍କ ହୟହ୍ରେଷା ଗଜବୃଂହିତ । କରଟରଟନ ତାମ୍ରଚୂଡ଼ସ୍ୱନ ନୋହେ ପ୍ରାସାଦ ଊର୍ଦ୍ଧ୍ୱଗତ । ଶୋଣ ରତନ । କରେ ସୁରସୁତ ସୁଷମା । ହେବାରୁ ଅଚ୍ଛନ୍ନ ନ ଜାଣନ୍ତି ଜନ ସମାପ୍ତ ହେବାର

---

୧୬ । ସର୍ବଯୋଗ ପ୍ରକାରେ—ସ୍ୱରଆଡ଼କୁ ଏକାଠିମିଳି, ପ୍ରାବୃଟକାଳୀନ—ବର୍ଷାକାଳରେ, ବାତଲୋଳ—ପବନରେ ଚଞ୍ଚଳ, ସୁପୀତଦୁକୂଳ—ହଳଦିଆ ପାଟବସ୍ତ୍ରଖଣ୍ଡ, ବଡ଼ଭିଗିରିକୂଟେ—ଚନ୍ଦ୍ରଶାଳାରୂପ ପର୍ବତ ଶିଖରରେ, ପ୍ରାସାଦେ—କୋଠାରେ; ଅବଦାତ—ଧଳା, ପୀତକେତୁ—ହଳଦିଆ ପତାକା, ବଳାକା—ବକପଂକ୍ତି । ୧୭ । ନିସର୍ଗ—ପ୍ରାକୃତିକ ବିଦ୍ୟୁତ୍‌ଲତାରଙ୍ଗୀଡ଼ା, ଛନ୍ନ—ଆଚ୍ଛନ୍ନ, ଆବୃତ; ନିକେତମୌଳିଶିଖେ—ଗୃହର ଅଗ୍ରଭାଗରେ । ୧୮ । ଭୁଜଙ୍ଗମ···ପୁର—ପାତାଳ ଓ ମର୍ତ୍ତ୍ୟ ଦୁଇ ଲୋକର ସାରାଂଶକୁ ଜୟ କରିବାକୁ ଇଚ୍ଛା ନ କର; ଅସିତଅଂଶୁକ ମଞ୍ଜରୀ—କଳାରଙ୍ଗର ବସ୍ତ୍ରଖଣ୍ଡ, ସ୍ୱର୍ଗଦ୍ୟୁତ—ସ୍ୱର୍ଗଶୋଭା । ୧୯ । ଋକ୍ଷପ୍ରତିବିମ୍ବ··· ନିଶି—ନକ୍ଷତ୍ରମାନଙ୍କର ପ୍ରତିବିମ୍ବ ଶୋଭାର ଗୃହସ୍ଥ ଇନ୍ଦ୍ରନୀଳମଣି କୋଠା ଉପରେ ପଡ଼େ; ଲଉଲ୍ଲୀବୟସୀ—ଅଳ୍ପବୟସ୍କା । ୨୦ । ଗବାକ୍ଷ—ଝରକା, ଅବିଦୂର—ନିକଟବର୍ତ୍ତୀ, ଦ୍ୱିଜରାଜ—ଚନ୍ଦ୍ର । ୨୧ । କଂସା ଥାଳିଆକୁ ଦୀପଶିଖା ଉପରେ ରଖିଲେ ତହିଁରେ ଚକ୍ଷୁର କଜ୍ଜଳ ଜାତ ହୁଏ, ଜାଲମାର୍ଗେ—ଝରକାବାଟେ ।

ତ୍ରିଯାମା । ୨୨ । ମରକତମୟ ସବୁର ନୀଳୟ ପ୍ରାଙ୍ଗଣ ତଳ ଉଲ୍ଲସଇ । କାଚ୍ଛ କାଚ୍ଛ ନୀଳୀ ମିଶିବାର କେଳିସରସୀ ପର ଆଭାସଇ । ଯେବେ ନ ଥାନ୍ତା । ହଂସ ପଙ୍କଜ ଦ୍ୱୀପଦଣ୍ଡୀ । ସ୍ନାନ ଅବସରେ ସେ ନଗରେ ନରେ ଦୁହିଙ୍କି ନ ପାରନ୍ତେ ଭଣ୍ଡି । ୨୩ । ଯେଉଁ ପୁର ଅଟ୍ଟକୁଟ୍ଟିମନିକଟ ବୃନ୍ଦାରକଙ୍କ ମନ୍ଦାକିନୀ । ତହୁଁ ଆ ମନ୍ଦବାତ ଅରବିନ୍ଦ ମରନ୍ଦବୃନ୍ଦବୃନ୍ଦ ଘେନି । ଜଗି ବସନ୍ତ । ନିଦାଘ ଏ ଦୁଇ କାଳକୁ । ଜଳାକବାଟୀଧାଟୀ ପାଖେ ରଚଇ ଜଳଯନ୍ତ୍ର କୁତୂହଳକୁ । ୨୪ । ଯହିଁ କଳାବତୀକୁଳ କଳଗୀତ ଶିଖିବାକୁ ଛପି ନ ଟଳି । ରହିବାରୁ ଅଟ୍ଟଗୃହାଚଳକୂଟ ଘେର ସୁରଙ୍ଗନା ପଟଳୀ । ଦେବେ ଜାଣନ୍ତି । ନାହିଁ କେ ସତ କେ କୃତ୍ରିମ । ଭେଦ ଜାଣିବାକୁ ମେରୁଠାରୁ ଯହିଁ ଚୁଳେ କଳସମୟ କମ । ୨୫ । ପ୍ରତି ଗୃହବାଟୀ ଉପବନିକାଠିମାନଙ୍କୁ ବରନିବା କିସ । ଇନ୍ଦ୍ରଆନନ୍ଦନ ହେବାରୁ ନନ୍ଦନବନେ ନାହିଁ ଯା ଶୋଭା ଲେଶ । ଶଶୀଉପଳ । ଅବାଳ ସବୁ ଲତା ମୂଳେ । ସୁଧାଂଶୁ ସ୍ପର୍ଶରେ ବଳକ୍ଷ ପକ୍ଷରେ ପୁରଇ ନିଜ ଦ୍ରବ ଜଳେ । ୨୬ । ମହୀ ମାରକତ ପ୍ରଣାଳୀ ଅମିତ ମହିମା ରକ୍ଷକବରତନ । ଝଡ଼ିଯିବା ଦଳ ଫଳ ଫୁଲଜାଳ ଯହିଁ ରକ୍ଷକବରତନ । ଏଳା ଲବଙ୍ଗ । ପ୍ରିୟଙ୍ଗୁ ଦ୍ରାକ୍ଷା ଜାତିଫଳ । କ୍ରମୁକ ଲାଙ୍ଗଲୀ କର୍ପୂର କଦଳୀ ରୁଚକ ପନସ ରସାଳ ।୨୭। ଡାଳମ୍ବ ଜମ୍ବୀର ଲେମ୍ବୁ ଜମ୍ବୁ ବରକୋଳି କମଳା ନାଗରଙ୍ଗ । ଏବଂବିଧ ମହୀରୁହବ୍ୟୂହେ ଯହିଁ ନାନା କୁସୁମ ଲତାସଙ୍ଗ । ଚମ୍ପା କେଶର ।

---

୨୨ । କରଟରଟନ—କୁଆରଡ଼ି, ଶୋଣରତନ……ରକ୍ତବର୍ଣ୍ଣ ରତ୍ନମାନଙ୍କ କିରଣରେ ସୂରସୂତ (ଅରୁଣ)ର ସୁଷମା (ଶୋଭା), ତ୍ରିଯାମା—ରାତି । ୨୪ । ଅଟ୍ଟକୁଟ୍ଟିମ—ଉନ୍ନତ କୋଠା, ବୃନ୍ଦାରକ—ଦେବତା, ଅରବିନ୍ଦ……ପଦ୍ମ ମକରନ୍ଦବୃନ୍ଦ-ସମୂହ, ଧାଟୀ—ସମୂହ, ଧାଡ଼ି । ୨୫ । କଳାବତୀକୁଳ—ସ୍ତ୍ରୀ ସମୂହ, ଛପି—ଲୁଚି, ନ ଟଳି—ସ୍ଥିର ହୋଇ, ମେରୁର ଶୃଙ୍ଗାବଳୀ ସୁବର୍ଣ୍ଣମୟ ଏବଂ ଏ ନଗରର କୋଠା ଉପର ସୁବର୍ଣ୍ଣମୟ, ତେଣୁ ଭେଦ ଜାଣି ହୁଏ ନାହିଁ । କୋଠା-ମାନଙ୍କରେ ସୁନାର କଳସସବୁ ଥିବାରୁ ପ୍ରଭେଦ ଜଣାଯାଏ । ୨୬ । ଉପବନିକା—ବଗିଚା, ଆନନ୍ଦନ—ଆନନ୍ଦଜନକ, ପ୍ରୀତିପ୍ରଦ; ନନ୍ଦନବନ—ଇନ୍ଦ୍ରଙ୍କବଗିଚା, ଶଶୀଉପଳ—ଚନ୍ଦ୍ରକାନ୍ତମଣି ( ଚନ୍ଦ୍ରକିରଣରେ ଯହିଁରୁ ପାଣି ବାହାରେ), ଆବାଳ—ଆଳବାଳ ବା ମନ୍ଦା, ବଳକ୍ଷପକ୍ଷ—ଶୁକ୍ଳପକ୍ଷ । ୨୭ । ମାରକତ ପ୍ରଣାଳୀ—ମରକତମଣି ନିର୍ମିତ ପାଣିନାଳ, ରକ୍ଷକବରତନ—ରକ୍ଷକମାନଙ୍କର ବେତନ ବା ଦରମା । ଏଳା—ଅଳାଇଚ, ଜାତିଫଳ—ଜାଇଫଳ, କ୍ରମୁକ—ଗୁଆ, ଲାଙ୍ଗଲୀ—

ପୁନ୍ନାଗ ମଲ୍ଲୀ ରୁଚକଅନା । ପମ୍ପାର ଅଶୋକ ଜାତ କୁରୁଣ୍ଟକ କଣ୍ଟକ ସେବତୀ ସୁମନା । ୨୮ । ଯୂଥିକା ନାଅଲୀ ମାଧବୀ ପାଟଳୀ ଅସିତ ଇଟଲା ପଲାସ । ସ୍ଥଳୋତ୍ପଳ ଦୁଲୁଦୁଲାଙ୍ଗ ରଙ୍ଗଣୀ କୁନ୍ଦ ଗୁଲାବ ଗୁଲୁବାସ । ବାସ ତଗର । ତଗ୍ରାଟ ରଙ୍ଗ କର୍ଣ୍ଣାପୁର । କରବୀର ନାଭ ମଲ୍ଲିକା ସେବତୀ ବଧୂଲୀ ଅଲାର ମନ୍ଦାର । ୨୯ । ଦମୃଣା ମରୁଆ ପଗୃପର୍ଣ୍ଣୀ ଚୂଆ ଚୂନ୍ନା ନାଗିଣୀ କୁରୁବେଲୀ । ତହିଁ ଅନୁଲକ୍ଷି ପୋଷା ପଶୁପକ୍ଷୀ କ୍ରୀଡ଼ନ୍ତି ମତଲ୍ଲୀ ମତଲ୍ଲୀ । ପୁଣି ବିରୋଧ । ନାହିଁ କାହା ତୁଲେ କାହାର । କେ ପଲ୍ଲବ-ଭଣି କେ ତମାଲ ତୃଣ କେ ଫୁଲ ମରନ୍ଦ ଆହାର । ୩୦ । ପଞ୍ଚଜାତ ମୃଗ ଗବୟ ଖଡ଼୍‌ଗ ଚମରୀ କସ୍ତୁରୀ କୁରଙ୍ଗ । ଶାଳିଆପତନୀ ମହାଦାର ଧେନୁ କରୁଅଛନ୍ତି ନାନାରଙ୍ଗ । ନାନା ନିଗମ । ପଢ଼ା ଶାରୀ ଶୁକ ସହିତ । ମରାଳ ମୟୂର ରଥାଙ୍ଗ ଚକୋର ଦୁଇ କେନାଟୀ ପରଭୃତ ।୩୧। ଶରାସ୍ୟଟଙ୍କାର ଶଙ୍କାର ନିଦାନ ଝଙ୍କାର ପଣ୍ଡିତ ରୋଲମ୍ବ । ପ୍ରସବ କଦମ୍ବ ମକରନ୍ଦଚୁମ୍ବକେଳିକି କରେ ଅବଲମ୍ବ । ତହିଁ ଖେଳନ୍ତି । ଚମ୍ପକ ବନା ମଧେ ରସି । ଅଖିଳ ବ୍ରତତୀ ଫୁଟନ୍ତି ଫଳନ୍ତି ଯେଉଁ ଆରାମେ ବାରମାସୀ । ୩୨ । ସେ ପୁରଧୁରୀଣ ବୀରଧର୍ମଧ୍ୱଜ ଗୁଣଗଣମଣିମଣ୍ଡିତ । ନିର୍ଜିତାରି-ଜାତ ଅର୍ଥିପାରିଜାତ ଆଶ୍ରିତଭରଣପଣ୍ଡିତ । କେଳି କଲ୍ଲୋଳା । ତାର ପ୍ରିୟପାଟ ଅଙ୍ଗନା । ମାରତୁଲ୍ୟ ତନୁ କୁମାରଜନନୀ ନନ୍ଦନା ବିନା ମ୍ଳାନ ମନା । ୩୩ । ପ୍ରଭାବନ ବାମା ଗଜଗ୍ରୀପ୍ରଭମା ନିଷ୍କଶତ ସ୍ୱର୍ଣ୍ଣେ ଗଢ଼ାଇ । ଚେଳ ଅଳଙ୍କାର ତୁଲେ ଦ୍ୱିଜଙ୍କର ମହିଳାକୁ ଦେଇ ବଢ଼ାଇ । ବନ୍ଦି ଚରଣେ । ବୋଲେ ଏ ବିନୟ ବଚନେ । ଦ୍ୱିତୀୟ ସାବିତ୍ରୀ ସମ ଲଭ ପୁତ୍ରୀ ବୋଲ ଗୋ ଗୁରୁପତ୍ନୀମାନେ । ୩୪ । ଅଷ୍ଟମୀ ନବମୀ ଅମା ପଉର୍ଣ୍ଣମୀ ଚତୁର୍ଦ୍ଦଶୀ କୃଜବାସରେ । ଗଜଗ୍ରୀଙ୍କ ଓଷା ପୂଜୁଥା ଏ ଯୋଷା-ରାଜ୍ଞ ଧେନୁ ଉପବାସରେ । ଗଙ୍ଗା ଯମୁନା । ଆଦ ପୁଣ୍ୟ ନଦୀ ସ୍ନାନକୁ ।

---

ନଡ଼ିଆ, ରୁଚକ—ଟଗ, ରସାଳ—ଆମ୍ବ । ୨୯ । ସ୍ଥଳୋତ୍ପଳ—ସ୍ଥଳପଦ୍ମ, ଦୁଲୁ-ଦୁଲାଙ୍ଗ—ଦୋହଲୁଥିବା, ଯୂଥିକା—ଯୂଇ, ଅସିତ—କଳା, ମତଲ୍ଲୀ ମତଲ୍ଲୀ—ଉତ୍କୃଷ୍ଟ ବା ପ୍ରଶସ୍ତଜାତୀୟ ( ପୋଷା ପଶୁପକ୍ଷୀମାନେ ) । ୩୧ । ମହାଦାର—ବରାହ, ନାନା ନିଗମ—ନାନାଶାସ୍ତ୍ର । ପରଭୃତ—କୋଇଲି । ୩୨ । ଶରାସ୍ୟ —ଧନୁ, ରୋଲମ୍ବ—ଭ୍ରମର, ବ୍ରତତୀ—ଲତା । ୩୩ । ନିର୍ଜିତାରିଜାତ—ପରାଜିତ ହୋଇଅଛନ୍ତି ଶତ୍ରୁସମୂହ ଯାହାଦ୍ୱାରା, ଅର୍ଥିପାରିଜାତ—ଯାଚକଙ୍କ ପକ୍ଷରେ କଳ୍ପଦ୍ରୁମ ପରି, ନନ୍ଦନା—କନ୍ୟା । ୩୪ । ନିଷ୍କଶତସ୍ୱର୍ଣ୍ଣେ—ଏକଶତ ମୋହର ସୁନାରେ

କରାଇ ବରଣ ପେଷୁଥାଏ । ଗୁଣବନ୍ତ ଭୂଗୀର୍ବାଣମାନଙ୍କୁ । ୩୫ । ଏପର ବୟସ ହେଲା ଉନବଂଶ ପହୁଞ୍ଚିଥିଲା ନାଥ କୋଳେ । ସେ ବାଳାରତନ ଲଭିଲା ସ୍ୱପନ ତ୍ରିଯାମା ଅବସାନକାଳେ । ପୂର୍ଣ୍ଣ କନକ । କୁମ୍ଭ ଧରନ୍ତୁ କନ୍ୟା କେହି । ବିଭୂଷିତା ବାଳୀ ଜଣେ କେ ମରାଳୀ ନୀଜପୁରତେ ଅଛୁ ବହି । ୩୬ । ଶୁଣୁଥିଲା ବୀଣାଯନ୍ତ୍ର କେ ପ୍ରବୀଣା ଆଳାପି ଆଳାପି ରଙ୍ଗରେ । ପରବେଶ ହେଲା ପର ଜଣାଗଲା ପୁଣି ରଜତାଦ୍ରି ଶୃଙ୍ଗରେ । ମୋଦେ ବନ୍ଦିଲା । ଅଚଳେନ୍ଦ୍ରଜେମା ଚରଣ । ଜଣାଇଲା ମୃତା ଅଭାବ ଦୁଃଖିତାଶୟ ହୋଇବା ଅଚରଣ । ୩୭ । ଶୁଣି ପୁଣି ଦେବୀ ନରେଶ-ବାନ୍ଧବୀଠାରେ କରୁଣାଦୃଷ୍ଟି ଚାଳି । ସୁପୁଷ୍ଟଗୋସ୍ତନୀଲତିକାରୁ ଘେନି ଗୋଟିଏ ପରିପକ୍ୱ କୋଳି । ରାଣୀପାଣିରେ । ଦେଲାକ୍ଷଣେ ପୁଣି ଗିଳିଲା । ଦେବୀଙ୍କ ପୁରତେ ଥିବାର ପରତେ ହେଉଅଛୁ ନିଶା ଠେଲିଲା । ୩୮ । ସେହିଦିନୁ ଗର୍ଭବତୀ ସେ ବିଦର୍ଭମହୀମହେନ୍ଦ୍ର ଜେମା ହେଲା । ଦିନୁ ଦିନ ତାର ଅଳସ ମନ୍ଥରଗତି ମଣ୍ଡିତ କ୍ଷମା ହେଲା । ନିତ ହଟିଲା । ଧରଣୀତଳ ଶୟନକୁ । କଞ୍ଜ ପର କଲା ଖଞ୍ଜରୀଟଖେଳାମଞ୍ଜୁଳତର ନୟନକୁ । ୩୯ । ଅଣାଇ ବଲ୍ମୀକ ପକାଇ ଉଦକ ତା ବାସ ଆଘ୍ରାଣେ ରସଇ । ଭୂମିସୁନ ପିତା ଜାଣି ମୋଦେ ସୁତା ହେବ ବୋଲି ମନେ ହସଇ । ଖଡ଼ି ଖେଳରେ । ରହିବା ଦେଖି ଦୁଇ ଅଙ୍କ । ବିଚାରଇ ରାମା ଜାତ ହୋଇ ଜେମା ଅବଶ୍ୟ ମଣ୍ଡିବ ମୋ ଅଙ୍କ । ୪୦ । ଭଜିଲା ଗଭୀର ଆବର୍ତ୍ତ ନାଭିର ତଳସ୍ଥଳକୁ ଲଗିବାସ । ବାସି ବନ୍ଧୁଜୀବ ସୁଷମାବିଭବ ଆସି ବହିଲା ଦନ୍ତବାସ । ରାମା ପଦହେଣ୍ଡେ । ସଞ୍ଚରିଲେ ଦଣ୍ଡେ ଫୁଟିଲା ଆହାର । ନାହାର ଉତ୍ତୁଙ୍ଗ-ବିହାର ଗାହାରୁ ଶରଧା ତୁଟିଲା । ୪୧ । ଗ୍ରହପଞ୍ଚକର ଉଚ୍ଚସ୍ଥାନ ପରବେଶରେ ରହିଥିଲେ ମେଷେ । ଅସମ ଲାବଣ୍ୟନିଧିର ଗର୍ଭକୁ ଦଶମମାସ ପରବେଶେ । ଶୁଭ ଲଗ୍ନରେ । ପ୍ରକାଶି ରାମାଜନ୍ମୋତ୍ସବ । ଜୟଧ୍ୱନି ବରଜ ଧରାତଳ ଭଜି କଲା କୋକିଲ କଳରବ । ୪୨ । କୁମାର କୁମାର ବୋଲି ପରିଚାରକଜନେ ଭିତରେ କଲେ ଖ୍ୟାତ । ଜେମାର ଯେ ମା ରଙ୍କନିଧି ଦେଖିଲା ପରି ଦେଖିଲା ତାହା ପ୍ରୀତ । କିସ କହିବା । ସେ କି କୁହାଯାଏ ବଚନେ । ବ୍ରହ୍ମ ଅବଲୋକ ଉତ୍ସବ କା ଲୋକ ଲଭେ ସପୁଲକ ଲୋଚନେ । ୪୩ । ନାଭିଜଳ ତୁଟି ନାଡ଼ୀନାଳ କାଟି କରାଇ ଅଭିଷଧିସ୍ନାନ ।

---

୩୫ । କୁଜବାସର—ମଙ୍ଗଳବାର, ଭୂଗୀର୍ବାଣ—ବ୍ରାହ୍ମଣ । ୩୭ । ଅଚଳେନ୍ଦ୍ରଜେମା—ପାର୍ବତୀ । ୩୮ । ଗୋସ୍ତନୀଲତିକା—ଦ୍ରାକ୍ଷାଲତା । ୪୦ । ବଲ୍ମୀକ—ଉଇହୁଙ୍କା

ଧାଈ ଗୀତ ଗାଇ ତଳପେ ଶୁଆଇ କଲେ ଅରିଷ୍ଟବିଧିମାନ । ଅମୃତ୍ଛାଳିଲ । ମଙ୍ଗଳ ହୁଳହୁଳି ବାଜା । ଦେଖି ରତ୍ନାଞ୍ଜଳି ନୟନଯୁଗଳି ପବିତ୍ର କଲେ ମହାରାଜା । ୪୪ । ତାହା ଜନ୍ମ ଶୁଣି ଯା ହାଟକଶ୍ରେଣୀ ବୃଷ୍ଟିରେ ପୂର୍ଣ୍ଣ କଲେ କ୍ଷମା । କବି ଭାବି କହେ ସେ କି ଶିଶୁ ନୋହେ କଳଙ୍କଦରିଦ୍ର ଚନ୍ଦ୍ରମା । ରାଣୀ ଉଦର । ଆକାଶୁଁ ହେବାରୁ ଉଦିତ । କଳଙ୍କୀ ଶଶୀକି ବରଜି ଆସି କି ତାରକା ହେଲେ ଭୂମିଗତ । ୪୫ । ଲୁଟିଲେ ପ୍ରଜାଏ ସାତଦିନ ଯାଏ ହଜାର ସଂଖ୍ୟକ ବଜାର । ସହସ୍ରାଂଶୁଁ ଅଂଶ ନ ଲଭିଲେ ଶେଷ ଲୁଟିବାରେ ହେଲେ ବେଜାର । ଲକ୍ଷ ରଜକେ । ସଜ କରିବା ତେଲକୁଟ । ବରଜି ବିଦୂରେ ଡାକିଲେ ମୋଦରେ ଆସ ହେ ଜନେ ଲୁଟ ଲୁଟ । ୪୬ । ଏକବିଂଶ ଦିନ ସକଳ ଭୁବନ ସେ ପୁରେ ପରି ଅଭ୍ରସିଲେ । ଗଡ଼ରବ ମୂଳ ହୋଇ ନୃପକୁଳଗୁରୁ ମହୀସୁରେ ଆସିଲେ । ଯେମାମଣିକି । ରଖନ୍ତେ ମହାରାଜ କୋଳେ । ଅଷ୍ଟକଞ୍ଜମାଳାଭୂଷିତ ଚପଳା ଘନାଙ୍କେ ଖେଳିଲା କି ଲୋଳେ ॥ ସେ ନରେନ୍ଦ୍ରବାଳୀ ରାଶି ଋକ୍ଷ ଭାଳି ମୀନ ରେବତୀ ମୂଳ କଲେ । ଚମ୍ପା-ମାଳା କୋଷ୍ଠୀ ଲେଖିଲେ ବିମ୍ବୋଷ୍ଠୀ ଚନ୍ଦ୍ରକଳା ବୋଲି ବୋଇଲେ । କୋଳ ତଳପ । ଖଟଦୋଳି ପୂର୍ବବୟସ । ଜନଙ୍କ ନୟନ ହୃଦୟ ବଚନ ସେ ଦନ୍ତ ହୋଇଗଲେ ଶିବ । ୪୮ । ନଗରୀ ଭୂପାଳରାଜବଧୂ ନୀଳ କମଳ-ନୟନା ଜନମ । ପଞ୍ଚାଶତପଦ ଘଟିତ ଏ ଛାନ୍ଦ ବାଳାବତାର ଏହା ନାମ । ଏହା ଉତ୍ତର । ଛାନ୍ଦେ ପ୍ରଥମୁଁ ଯେମା ଛବି । ବାଳଲୀଳା ଧରି ହେବାର କିଶୋରୀ ସଂକ୍ଷେପେ ବର୍ଣ୍ଣିବ କବି । ୪୯। କମଳାଙ୍କ ଶିଶୁ କର୍କଶପରଶୁକର-ବନ୍ଦ୍ୟ କଞ୍ଜନୟନ । କମଳାଙ୍କ ସ୍ତନ କର୍ପୂର ଚନ୍ଦନ କମଳଧିମଧ୍ୟଶୟନ । କମ୍ବୁକଟକ । କମଳ ସିଂହାସନେ ସ୍ଥିତ । କର ରାମଚନ୍ଦ୍ର ଦେବ ଧରାଇନ୍ଦ୍ର-ଠାରେ କରୁଣା ଦୃଷ୍ଟିପାତ ।

---

ମାଟି । ଉର୍ମ୍ବି ସୂନ—ଲଉଫଳ; ଗର୍ଭିଣୀ ସ୍ତ୍ରୀକୁ ଲଉଫଳ ପିତା ଲଗିଲେ ଝିଅ ଜାତ ହୁଏ । ନାଭି···ନାଭିରୁ ପାଣି ଶୁଖିଯିବା ପରେ । ଅରିଷ୍ଟ—ଅନ୍ତୁଡ଼ିଶାଳ । ୪୫ । ଯା ହାଟକ···ସୁବର୍ଣ୍ଣ ବୃଷ୍ଟିରେ ଯାହା ପୃଥିବୀକୁ ପୂର୍ଣ୍ଣ କଲେ; କଳଙ୍କଦରିଦ୍ର—କଳଙ୍କହୀନ, ତାରକା—ନକ୍ଷତ୍ରଗଣ । ୪୬ । ସହସ୍ରାଂଶୁ ଅଂଶ—ହଜାର ଭାଗରୁ ଭାଗେ ମଧ୍ୟ ସରିଲା ନାହିଁ । ତେଲକୁଟ—ଲୁଗାଗଦା । ୪୭ । ଗୁରୁମହୀସୁରେ—ଗୁରୁସ୍ଥାନୀୟ ବ୍ରାହ୍ମଣମାନେ, ଅଷ୍ଟକଞ୍ଜମାଳା—ଆଠଗୋଟି ପଦ୍ମମାଳ, ଘନାଙ୍କେ—ମେଘକୋଳରେ । ୫୦ । କମଳାଙ୍କ ଶିଶୁ—ବ୍ରହ୍ମା; କର୍କଶପରଶୁକର—ଶିବ; କଞ୍ଜନୟନ—ପଦ୍ମନେତ୍ର ( ଜଗନ୍ନାଥ ), କମଳଧି—ସମୁଦ୍ର, କମ୍ବୁକଟକ—ଶଙ୍ଖକ୍ଷେତ୍ର, ପୁରୀ ।

## ଷଷ୍ଠ ଛାନ୍ଦ

### ରାଗ—ଘଣ୍ଟାରବ

( ଚନ୍ଦ୍ରକଳାର ବାଲ୍ୟାବସ୍ଥା ବର୍ଣ୍ଣନା )

ତଦନ୍ତେ ରସିକେ ଶୁଣ । ବୃଦ୍ଧି ବୃଦ୍ଧି ଭଲ ଷଣ । ଯେଉଁ ପର ଜନେ ଦେଖନ୍ତି ନୟନେ ଜେମାର ଶୁଭ ଲକ୍ଷଣ । ୧ । ଭାବିବା ଲାବଣ୍ୟ ରମା । କେ କହେ ନୁହେ ଏ ଜେମା । ଧରି ଶିଶୁଲୀଳା କନନ ଚପଳାବଲ୍ଲରୀ ମଣ୍ଡିଲ ଷମା । ୨ । ସୁଧାମୟ ଧାମସାର । ତା ଶଶମିଷ ମସାର । କଲା ମୁଖ କେଶ ଅବଶ ଲୋକେଶ ଏ ବସୁନ୍ଧରାଭୂଷାର । ୩ । ଲଲାଟପଟ୍ଟ କପଟ । ଅଷ୍ଟମୀ ବିଧୁ ପ୍ରକଟ । ଝଲରେ ଝଟକ ରଖୁଛି ଅଟକ ଲୋକନେତ୍ରକୁ ନିପଟ । ୪ । ଭୂରୁ ଅନା ପ୍ରାଣସଙ୍ଗୀ । ଭୂରୁ ଅସିତ ଭୁଜଙ୍ଗୀ । ଅଜଠାରୁ ବଢେ ଗଣନାରେ ଶଢେ ଅହେତୁକ ଖେଳାଭଙ୍ଗୀ । ୫ । ଲସିକା ଶୋଭା ମନ୍ଦର । ନାସିକାକୁ ବେଦବର । ସାର ତିଳଫୁଲେ ସଜାଡ଼ିଛି ମାର ଭାରତ ହେବ ଅଖର । ୬ । ଅଧରଶୋଭାକୁ ଭାବ । ମନ୍ଦାର କି ବନ୍ଧୁଜୀବ । ନ ଚଳଇ ଅରି ଚରଣ ଏ ଶିରୀ ଦେଖି କେଉଁ ବନ୍ଧୁ ଯିବ । ୭ । ନେତ୍ର ବିଚିତ୍ର ସାରଙ୍ଗ । ତାରା ଇନ୍ଦ୍ର ନୀଳ ଭୃଙ୍ଗ । କୋଟି ଶୁଭଲକ୍ଷ୍ମ ଜଳଧିର ପକ୍ଷ୍ମପାଳୀ ରଖିଅଛି ସଙ୍ଗ । ୮ । ଗଣ୍ଡ ଦରପଣ ବିମ୍ବେ । ଭିତ୍ତିଚିତ୍ର

---

ଷଷ୍ଠ ଛାନ୍ଦ

୩ । ସୁଧାମୟ ଧାମସାର—ଚନ୍ଦ୍ରଲୋକର ସାରଭାଗ, ତା ଶଶମିଷ ମସାର—ଚନ୍ଦ୍ରର ଶଶରୂପୀ କଳଙ୍କ କପଟ ଇନ୍ଦ୍ରନୀଳମଣି ପରି, କଲାମୁଖ···ବ୍ରହ୍ମା ଚନ୍ଦ୍ରଲୋକର ସାରାଂଶ ଓ ଚନ୍ଦ୍ରମଧ୍ୟସ୍ଥ—ଇନ୍ଦ୍ର ନୀଳମଣି (କଳଙ୍କ) ଆଣି ଅବଶ ହୋଇ ଯଥାକ୍ରମେ ଏ ସୁନ୍ଦରୀର ମୁଖ ଓ କେଶକୁ ନିର୍ମାଣ କରିଛି । ୪ । ଝଲ—କାନ୍ତି । ନିପଟ—ଏକାନ୍ତ ଭାବରେ । ୫ । ଭୂରୁ—ଭ୍ରୂ; ଅସିତଭୁଜଙ୍ଗୀ—କୃଷ୍ଣସର୍ପୀ । ୬ । ଲସିକା—ନିତମ୍ବସ୍ଥଳ, ଆଖରକୁ ( ଶେଷରେ ) କନ୍ଦର୍ପର ଶରମୁଣା ହେବ ବୋଲି ବ୍ରହ୍ମା ନାସିକାକୁ ରାଶିଫୁଲର ସାରବସ୍ତୁରେ ସଜାଡ଼ି ରଖିଛି । ୮ । ସାରଙ୍ଗ—ପଦ୍ମ । ତାରା—ଆଖିର ପୁଅ, କନୀନିକା; କୋଟିଶୁଭଲକ୍ଷ୍ମଜଳଧିର—ଶୁଭଲକ୍ଷଣ ସମୂହ ଯାହାଠାରେ ଏକତ୍ର ମିଳିତ ହୋଇଅଛି । ପକ୍ଷ୍ମପାଳୀ—ଚକ୍ଷୁର ଲୋମ ପଙ୍କ୍ତି । ୯ । ଭିତ୍ତିଚିତ୍ର—କାନ୍ଥର ଚିତ୍ର

ପ୍ରତିବିମ୍ବେ । କେଉଁ ଭାଗ୍ୟବତୀ ନରେନ୍ଦ୍ରଯୁବତୀ ଗଣ୍ଡେ ଯା ଏହାକୁ ଚୁମ୍ବେ । ୯ । ଯୋଗବଶୁଁ ଆଦରଶେ । ପ୍ରତିଫଳ ଯେବେ ଦିଶେ । ଯଥା ଶଙ୍କେ ରଙ୍ଗ ପକ୍ୱନାଗରଙ୍ଗ ତଥା ଚିବୁକ ଉଲ୍ଲସେ । ୧୦ । ଅନାଇ ଏହାର ଶ୍ରୁତି । ଏପରି ହୁଏ ପ୍ରତୀତି । ନେତ୍ରମୃଗ ଖସି ନ ଯିବାକୁ ପାଶି ରଖିଛି କେଳିତପତି । ୧୧ । କନକ କପୋତ ପୋତ । ତୁଲା ନୁହେ କଣ୍ଠରୁତ । ଅକାରଣଭବ ସନ୍ତରୁଣୀରବ ଜଣେ କଳକଣ୍ଠରୁତ । ୧୨ । ଆଜୁ ହେଲଣି ସଞ୍ଚିତ । କେମାର କଲକିଞ୍ଚିତ । ହାସହାସ କାନ୍ଦ ସମକ୍ରୋଧ ମନ୍ଦସ୍ମିତ ମିଶ୍ରିତ କିଞ୍ଚିତ । ୧୩ । ସ୍ୱର୍ଣ୍ଣମୟ ସୁକୁମାର । ସ୍ୱର୍ଣ୍ଣଦାମ୍ଭଶାଳ ସାର । ବିରଚିଲା ଅଣି ଯତ୍ନେ କୁଶପାଣି ବାହୁଯୁଗ ସୁଦୃଶାର । ୧୪। କନକ କଳିତ ମହୀ । ବକ୍ଷକୁ ବିରଚିବ ବିଧି । ମେରୁ ମଞ୍ଜି ପୋତିଥିଲା ପରି ଦୃଶ୍ୟତ ସ୍ତନସ୍ଥାନ ଅଛି ବିହି । ୧୫ । ଶୋଣମଣି ମଧ୍ୟ ସୁନା । କଞ୍ଜପାଣିପାଦ ସିନା । ତ୍ରିଜଗତୀଯୋଷା ମଣ୍ଡନକୁ ଭୂଷା ହେବ ଏ କୁନ୍ଦଦଶନା । ୧୬ । ନିଜର ଦିଅ ଉଦରେ । ମଜ୍ଜା ଏ କି ପ୍ରମୋଦରେ । ସ୍ୱଲବଣ୍ୟ ଜଳପୂରର କମଳ ନବଦଳଶୋଭା ଧରେ । ୧୭ । ନାଭିବଳ ଆବରତ । ଛବିକି ଅନବରତ । ଦେଖି ସୁଖୀ ହେଲା ଅମ୍ଭ ନେତ୍ର ଭଲ ଅଚରିଥିଲା ବରତ । ୧୮ । କି ସୁନ୍ଦର ଉରୁଦ୍ୱୟ ହେଲେ ଯଉବନୋଦୟ । ବିପରୀତ ସୁନା କଦଳୀର ଦଳ ଦେବ ଏ ଶୋଭା ନିଶ୍ଚୟ । ୧୯ । ଅନା ଜାନୁତଳଶିରି । କରେ ମନ ଧନ ଚୋରି । ଅଟେ ସ୍ମରରାଣୀ ପଦ୍ମଜିବା ମଣିଖଚିସୁନାଘୁରାପରି । ୨୦ । ଇତ୍ଥମ ସୁଷମାସୀମା । ସେ ମହୀମହେନ୍ଦ୍ର ଜେମା । କ୍ରମେ ବିବର୍ଦ୍ଧିତ

---

କେମାଙ୍କ ଗଣ୍ଡଦେଶରୂପ ଦର୍ପଣଖଣ୍ଡରେ ପ୍ରତିବିମ୍ବିତ ହେଉଅଛି । ୧୦ । ଆଦରଶେ —ଦର୍ପଣରେ, ପ୍ରତିଫଳ—ପ୍ରତିବିମ୍ବ, ଯୋଗବଶୁଁ—ଦୈବାତ୍ । ୧୧ । କେଳିତ-ପତି—କନ୍ଦର୍ପ, ପାଶି—ପାଶଯନ୍ତ୍ର, ଫାଶ ( କାନକୁ ଫାସ ସଙ୍ଗେ ତୁଳନା କରାଯାଏ) । ୧୨ । କଳକଣ୍ଠରୁତ—କୋକିଳଧ୍ୱନି । ୧୩ । କଲକିଞ୍ଚିତ—ନାୟକ ସମୀପରେ ହର୍ଷ ହେତୁରୁ ନାୟିକା ହାସହାସ ପ୍ରଭୃତି ଯେଉଁସବୁ ଭାବ ଏକ ସମୟରେ ପ୍ରକାଶ କରେ । ବିଧାତା ବକ୍ଷସ୍ଥଳକୁ ସ୍ୱର୍ଣ୍ଣଘଟିତ ପୃଥିବୀ ମନେ କରି ତହିଁରେ ମେରୁପର୍ବତର ବୀଜରି ନ୍ୟୋତିପରି ସ୍ତନସ୍ଥାନକୁ ନିର୍ମାଣ କରିଅଛି । ୧୬ । ଶୋଣମଣି ମଧ୍ୟସୁନା—ସୁନାଭିତରେ ରକ୍ତବର୍ଣ୍ଣ ମଣିପରି । କଞ୍ଜପାଣିପାଦ —ପଦ୍ମହସ୍ତ ଓ ପଦ୍ମପାଦ । ୧୭ । ନିଜ ଲାବଣ୍ୟରୂପ ଜଳରେ ପୂରିଚକମଳ (ସ୍ୱର୍ଣ୍ଣପଦ୍ମ) ନୂତନପତ୍ରର ଶୋଭାକୁ ଧରିଅଛି । ୧୮ । ନାଭିବଳଆବରତ—ନାଭିଗର୍ତ୍ତରୂପ ଆବର୍ତ୍ତ

ହେଲା ଅବଦାତ ପକ୍ଷରେ ଯଥା ଚନ୍ଦ୍ରମା । ୨୧ । ଜଗତ୍ତ ଲୋଚନ ବେଢ଼ି ।
ଉତ୍ତାନ ଶୟନ ଛାଡ଼ି । କେତେଦିନେ ପୁଣି ପ୍ରକାଶିଲା ଠାଣି ଉଦରମାଡ଼ି
ପହୁଡ଼ି । ୨୨ । ଦନ୍ତୁଁଦନ ସୁକୁମାରୀ । ବହିଲା ଅଦ୍ଭୁତ ଶିରୀ । ଅଣି
ହେବା ଶୋଭା ଭଣିବାକୁ ପ୍ରଭୁ ଫଣୀଶ୍ୱର ଗଲେ ହାରି । ୨୩ ।
ଅବରୋଧତମ ଦୁଃଖ । ହରିଲା ଛବି ମୟୂଖ । ବିଶ୍ୱମନବାଣୋଲାଖ ସେ ମଣ୍ଡିଲା
ପାଖ ଦାସୀଙ୍କର କାଖ । ୨୪ । ଦେବଙ୍କ ପ୍ରସାଦ ଧରି । ମଇତ୍ରୀ ଯଥା
ଆଚରି । ଏକ କରତଳୁ ଆରେକ ନିଅନ୍ତି ଭିତରଭୂଷା ସୁନ୍ଦରୀ । ୨୫ ।
ସମ୍ମୁଦନ୍ତେ କୁତୂହଳ । ଗୋଳେ ବରଜିଲା କୋଳ । ଦେଖି ପୁର ମରକତ
ବସୁଧାର ପୃଷ୍ଠେ ନିଜ ପ୍ରତିଫଳ । ୨୬ । ଭିତ୍ତିଧରି ତହୁଁ ମୁଣି ।
କେତେବେଳେ ଧାଈପାଣି । ଧରି ମନ୍ଦ ମନ୍ଦ ଚରଣାରବିନ୍ଦ ଯୁଗେଁ
ମଣ୍ଡିଇ ଧରଣୀ । ସମ୍ଭାଳି ନ ପାରି ଭରା । ଖସିପଡ଼େ ହେମପ୍ରଭା ।
ଖସିଗଲା କି ଆଭାସିଯାଏ ବିଶ୍ୱମଉଳି ଚମ୍ପକଗଭା । ୨୮ । ସେ ଧରାଧବ
ଦୁଲାଳୀ । ସଂସର୍ଗ କୁତୁକଭଳି । କୁନ୍ଦଲତା ନାମ ସମବୟା ବାଳୀ
ଜଣେ ହେଲା ପ୍ରିୟ ଆଳୀ । ୨୯ । ତାହା ବାହାରେ ବହୁତ । ଲଳିତା
ବନିତା ମିତ । ବନିତାତୁଲେ ତାମସୀଦିନ ସୁଖେ ନେବାରେ କଲେ
କାମିତ । ୩୦ । ସଖୀଙ୍କି ମୋଦେ ଫୁଲାଇ । ରଚିଲା କେଳି ଗେଲାଇ ।
ଘେନି ଚାମୀକର ସିକତାନିକର ଭରିତ ସୁନା କୁଲାଇ । ୩୧ । ଖେଳେ
ବଳିବାକୁ ମତି । କରିବା ତ ପ୍ରଜାପତି । ଜନମରୁ ପ୍ରତି ବାଳିକା ମୂରତି-
ମାନଙ୍କ ସ୍ୱରୂପବତୀ । ୩୨ । ଘେନି ସହଚରୀ ରାଜି । ପରମ ହରଷ ଭଜି ।
ବାଳିକା ଦିଏ ପାଞ୍ଚାଳିକା ବିବାହ ମହୋତ୍ସବେ ମହାଭୋଜି । ୩୩ ।

---

ବା ଭଉଁରୀ, ବରତ—ବ୍ରତ । ୨୧ । ଅବଦାତପକ୍ଷ—ଶୁକ୍ଳପକ୍ଷ । ୨୨ । ଜଗତ୍ତଲୋଚନ ବେଢ଼ି—ଲୋକଚକ୍ଷୁର ବନ୍ଧନସ୍ୱରୂପା, ଉତ୍ତାନ ଶୟନ—ଚିତ୍ ହୋଇ ଶୋଇବା ବା ଉପରକୁ ମୁହଁ କରି ଶୋଇବା । ୨୩ । ଫଣୀଶ୍ୱର—ଅନନ୍ତନାଗ । ୨୪ । ଅନ୍ତଃପୁରର ଅନ୍ଧକାରରୂପ ଦୁଃଖକୁ ତାହାର କାନ୍ତିର କିରଣ ଦୂର କଲା । ୨୫ । ମଇତ୍ରୀ—ମିତ୍ରତା, ବନ୍ଧୁତ୍ୱ । ୨୬ । ଦେଖି…ଅନ୍ତଃପୁରର ମରକତମଣିରେ ନିର୍ମିତ ଭୂପୃଷ୍ଠରେ ନିଜ ପ୍ରତିବିମ୍ବ ଦେଖି । ୨୮ । ହେମପ୍ରଭା—ସ୍ୱର୍ଣ୍ଣାଙ୍ଗୀ ଚନ୍ଦ୍ରକଳା, ବିଶ୍ୱମଉଳିଚମ୍ପକଗଭା—ସଂସାର ମସ୍ତକର ଚମ୍ପାଫୁଲର ଝରାପରି । ୩୦ । ତାମସୀଦିନ—ରାତି ଓ ଦିନ । କାମିତ—କାମନା । ୩୧ । ଚାମୀକର ସିକତାନିକର—ସୁନାର ଧୂଳିସମୂହ । ୩୩ । ପାଞ୍ଚାଳିକା—ପିତୁଳା, କଣ୍ଢେଇ ।

ବଢ଼ାଇ କାନନାଉଳୀ । ପିନ୍ଧାଇ ଦେଲେ ବାଉଳୀ । ଦୁରବୋଧ ଗଲା ବୋଧ ବହ୍ନିଶିଖା ହାଉଳ ବାଳ୍ୟ ଝାଉଁଳ । ୩୪ । ଶୁଦ୍ଧାନ୍ତ ଦୁଃଖେ କାଉଳ । ହୋଇ ହୋଇଲା ବାଉଳ । ବିସ୍ମରିଲା ଏହା ଉଦୟରୁ ଆହା ଗଲା ଆଉଳ ପାଉଳ । ୩୫ । ଯଥା କଞ୍ଜକୋଷେ ବାସ । କରଥାଏ ଅଗୁଁ ବାସ । ନିମିତ୍ତ କାରଣ ଅନ୍ତଃକରଣ ଛୁଇଁଲେ ଲଭେ ପ୍ରକାଶ । ୩୬ । ସେହି ରୂପେ ବିଦ୍ୟାଶାଳା । ବିଧିକ ମାନ ଦେଖିଲା । ସଜାଡ଼ିବା ବେଳୁ ଅଜାଡ଼ି ବିଧାତା ସକଳ ଗୁଣ ରଖିଲା । ୩୭ । ଅତିଶୟ ଲୋଳ ଛଟା । ଦୁରାପଦ୍ରବ୍ୟରୁ ହଠା । ଘୁଞ୍ଚିଲା ଜାଣିଲା ବାଣୀ ଲାଳିତ୍ୟରେ କରିବାର ସଠାବଠା । ୩୮ । କଥା ସମଜିଲା ହେଲା । ମଥା ସଙ୍କ ଭରଜିଲା । ଯଥା ବତାଇଲେ ଗୁରୁଜନେ ଭଲେ ତଥା ପଥକୁ ଭଜିଲା । ୩୯ । ବଢ଼ିଆ ମଣୋହି ରସେ । ବୁଡ଼ି ଯାମିନୀ ଦିବସେ । ତମ୍ବୂଳକରଙ୍କବାହିନୀଙ୍କି ରଙ୍କ ପରିଏ ରଖିଲା ପାଶେ । ୪୦ । ତନୁନର୍ଜିତ ରୋଚନା । ସେ ଶିଶୁ ମୃଗଲୋଚନା । ମଣ୍ଡିବା ଦଣ୍ଡିବା ଜାଣିଲା ମଣିଲା ଗୁଣ ଦୋଷ ବିବେଚନା । ୪୧ । ସଖୀମୁଖେ ଭଣାଇଲା । ଜନକକୁ ଜଣାଇଲା । ଦ୍ୱୀପାନ୍ତରୁ କୋଟିମୂଲ୍ୟ ଭୂଷାପେଟୀ ସଞ୍ଚୟକୁ ଅଣାଇଲା । ୪୨ । କଥାକର୍ଣ୍ଣନେ ରସିଲା । ତା ମନ୍ଦା ରୁଚି ହସିଲା । ମୁଖେ ଚେଳାଞ୍ଚଳ ଦେଇ ଅଚଞ୍ଚଳ ହୋଇ ଉତ୍ସଙ୍ଗେ ବସିଲା । ୪୩ । ଧନୀ ଶାବ୍ରତା ବର୍ଜିଲା । ଅନୀତ ଦେଖି ତର୍ଜିଲା । ସୁନୀତ ନିମନ୍ତେ ସୁବାସିତ ସୁନବନୀ ତଥିରେ ସର୍ଜିଲା । ୪୪ । ଅଭିଷେକରେ ନରେଶ ।

---

୩୪ । କାନନାଉଳୀ—କର୍ଣ୍ଣବେଧବିଧି, ବାଉଳ—ଫାଶିଆ, ହାଉଳ—ହାଉଆ, ଝାସ, କର୍ଣ୍ଣବେଧ ଅଗ୍ନିଶିଖା ବାଜିବାରୁ ବାଲ୍ୟକାଳର ଅଜ୍ଞତା ଝାଉଁଳ ପଡ଼ିଲା । ୩୫ । ଶୁଦ୍ଧାନ୍ତ—ଅନ୍ତଃପୁର, କାଉଳ—ଅସ୍ଥିର, କ୍ଷୁବ୍ଧ; ବାଉଳ—ବାତୁଳ, ଏହା ଉଦୟରୁ—ଚନ୍ଦ୍ରକଳାର ଜନ୍ମ ହେବାରୁ; ଆଉଳପାଉଳ—ଅତି ବ୍ୟାକୁଳ । ୩୬ । କଞ୍ଜକୋଷ—ପଦ୍ମକଢ଼ରେ, ବାସ—ସୁଗନ୍ଧ । ୩୮ । ଲୋଲଛଟା—ଚଞ୍ଚଳତା, ଦୁରାପଦ୍ରବ୍ୟରୁ ହଠା—ଦୁଷ୍ପ୍ରାପ୍ୟବସ୍ତୁ ପାଇବା ପାଇଁ ଅଳି କରିବା, ସଠାବଠା କରିବା—ଠକି ଦେବା । ୩୯ । ମଥାସଙ୍କ—ମୁଣ୍ଡ ଘୋଡ଼ାଇବା । ୪୦ । ତାମ୍ବୂଳକରଙ୍କବାହିନୀ—ପାନବଟା ଧରିଥିବା ସ୍ତ୍ରୀ । ୪୧ । ରୋଚନା—ଗୋରୋଚନା । ୪୨ । କୋଟିମୂଲ୍ୟ ଭୂଷାପେଟୀ ସଞ୍ଚୟ—ବହୁମୂଲ୍ୟ ବେଶ ହେବା ପେଡ଼ୀ ( toilet box ) ସମୂହ । ୪୩ । କଥାକର୍ଣ୍ଣନେ—କଥା ଶୁଣିବାରେ । ୪୪ । ଧନୀ—ସୌଭାଗ୍ୟବତୀ ( ଚନ୍ଦ୍ରକଳା ); ସୁନବନୀ—ଫୁଲବଗିଚା । ୪୬ । କୁରୁ-

କଲେ ଶରଧା ବିଶେଷ । ବିରାଜିଲା ରାମା ଲାଗିହୋଇ ଜାମା ପଗଡ଼ି ସିପାହିବେଶ । ୪୫ । ଭୁରୁ ଯନ୍ତ୍ରଣା ଶିଖିଲା । ମୁରୁଜ ଚିହ୍ନ ଲେଖିଲା । କୁରୁଜାତଦେହା ଗୁରୁଜାତ ଗିରେ ଉରୁ ଜାଗରୂକ ହେଲା । ୪୬ । ନାନାଜାତି ଫୁଲ ଭୂଷା । ବନାଇଲା ନୀଳକେଶା । ଖେଳିଲା ସେ ବେଳ ଜାଣି ନ୍ୟାୟବଳ ଶଙ୍କା ଗଞ୍ଜପା ପଣା । ୪୭ । ଜନନୀଙ୍କି ଜଣାଇଲା । ବୀଣାଯନ୍ତ୍ର ଅଣାଇଲା । ତହିଁ ବିଶ୍ୱଜଣା ହେବାକୁ ପ୍ରବୀଣା ଚଣ୍ଡୀସ୍ତବ ଗୁଣାଇଲା । ୪୮ । ପଢ଼ି ବିନୟ ଅରଜି । ତାରତମ ନ ବରଜି । ପ୍ରତିଲେଖ ଲେଖି ଜାଣିଲା ସୁମୁଖୀ ଶ୍ରିତମରଜି ଭରଜି । ୪୯ । ସମାନ ବୟସୀ ଆଳୀ । ଗୁଣମୂରେ କଲେହେଁ ଅଳି । ଭାବ ନ ଥିବାର ଜାଣି ବରଜିଲା ଧାବ ନ ଥିବାର କେଳି । ୫୦ । ଅତରସୁବାସୀ ଭଲା । ଅତର୍କିତେ ବିଜେ କଲା । ତାଜି ମନ ଦେଲେ ସଜନୀ ଇଙ୍ଗିତେ ଲଜିମ ତା ଜମା କଲା । ୫୧ । କାଳିକାକାନ୍ତ ଶ୍ରୀଧର । ପରଶୁମୁରଲୀଧର । ରାମଚନ୍ଦ୍ର ଚେଣ୍ଟରାୟ ଭୂନାଥର ଅମନ୍ଦ ହରଣ କର । ୫୨ । ନେସାଧିକ ପଞ୍ଚାଶତ । ପଦପୁଞ୍ଜରେ ନିର୍ମିତ । କୁମାରୀ ବିନୋଦରଞ୍ଜନ ଏ ଛାନ୍ଦ ଶୁଭେ ହେଲା ସମାପତ । ୫୩ ।

---

ଜାତଦେହା—ସ୍ୱର୍ଣ୍ଣମୁଦ୍ରା ( ଅଳଙ୍କାର ) ପୂର୍ଣ୍ଣ ଦେହ ଯାହାର । ଗୁରୁଜାତଗିରେ—ଗୁରୁଜନଙ୍କ ବଚନରେ । ଉରୁଜାଗରୂକ—ଅତ୍ୟନ୍ତ ଜାଗ୍ରତ୍ । ୪୯ । ବିନୟଅରଜି—ବିନୟପୂର୍ଣ୍ଣ ପ୍ରାର୍ଥନାପତ୍ର । ପ୍ରତିଲେଖ ଲେଖି—ପ୍ରତ୍ୟୁତ୍ତର ଲେଖି ଦେଇ । ଶ୍ରିତମରଜି—ଆଶ୍ରିତମାନଙ୍କର ହୃଦୟ । ୫୦ । ଭାବ ନ ଥିବାର ଜାଣି… … ପ୍ରକୃତ ଭାବ ନାହିଁ; ଅଥଚ ପ୍ରୟୋଜନସିଦ୍ଧି ନିମିତ୍ତ ଯେଉଁମାନେ ଦୌଡ଼ାଦୌଡ଼ି କରନ୍ତି ସେମାନଙ୍କୁ ତ୍ୟାଗ କଲା । ୫୧ । ତାଜି ମନ ଦେଲେ—ମନକୁ ଉତ୍ତେଜିତ କରିଦେଲେ । ଲଜିମ ତା ଜମା କଲା—ତାକୁ ଲଜ୍ଜା ଦେଲା ।

# ସପ୍ତମ ଛାନ୍ଦ

## ରାଗ—କଲ୍ୟାଣଅହାରୀ

( ଚନ୍ଦ୍ରକଳାର କୈଶୋର ଲୀଳା )

ଅଥ ବିଚକ୍ଷଣେ ଘେନ ତ ଈକ୍ଷଣେ ପିଇବା ପରି ଜେମାଣିରି । ସେ ମୃଦୁଳଲପମୋହନା ଅଳପ ହୋଇ ଅସିବାରୁ କିଶୋରୀ । ପ୍ରଥମା । ପ୍ରତିମୁହୂର୍ତ୍ତେ ଆନ ଆନ । ଯେଉଁ ରୂପେ ତପନୀୟ ଭଜେ ରୂପ ଦାହ-ଦାହକେ ବାନ ବାନ । ୧ । ବିରଞ୍ଚି ବିନ୍ଧାଣି ଦେଲା କି ରସାଣି ହାଟକ ହଟପିତୁଳାକୁ । ନ ଦେଖିଲେ ଜନେ ଜଗତେ ନୟନେ ତା ନଖାଗ୍ର କାନ୍ତି ତୁଲାକୁ । ମ୍ରଦିମା । ଘେନି ସେ ଉରୁବର୍ତ୍ତୁଳାକୁ । ଯୋଗ୍ୟ ନୋହେ ଘେନ ନ କଲେ ସଜନୀ ପାହାଡ଼ା ହଂସୁଲୀତୁଳାକୁ । ୨ । ଅମାନୀ ଗହନ ଗଜ ଅଭିମାନ ଛୁଇଁ ଅସିଲା ଗମନକୁ । ଶିଶୁ ସଖୀମାଳା ଆଚରିବା ଖେଳା ଯୋଗାଇଲା ନାହିଁ ମନକୁ । ଆନକୁ । ନିପଟ ନୋହିଲା ନଜର । ଅନାରତ ରସପ୍ରସଙ୍ଗେ ମାନସ ହୋଇ ଅସିଲା ଜରଜର । ୩ । ଦରସ୍ଫୁଟ ମଲ୍ଲୀହାସୀ ଭ୍ରୂବଲ୍ଲୀ ଖେଳିବା ଖୁରଳୀ ଶିଖିଲା । ଅସିତ ଭୁଜଙ୍ଗୀ ସୃଷ୍ଟି ଖେଳାଭଙ୍ଗୀ ଅହଙ୍କାର ସାର ଶୁଖିଲା । ଆଳାପ । ମଧ୍ୟ ମଧ୍ୟରେ ନାସାପୁଟ । ଫୁଲିଉଠିବାରୁ ବଢାଇଲା ଗୁରୁ ହୋଇ ସ୍ତମ୍ଭନକୁ ନାଟ । ୪ । ଜେମାକାନ୍ତି ଝଳ ରୁହିଁ ନ ସମ୍ଭାଳି ମନ୍ଥୁ ଜାତ ପ୍ରେମପ୍ରବାହ ।

---

ସପ୍ତମ ଛାନ୍ଦ

୧ । ମୃଦୁଳଲପମୋହନା—କୋମଳ ଭାଷଣ ଯୋଗୁଁ ମନୋହରା । ଯେଉଁରୂପେ···ସୁନା ଯେପରି ପ୍ରତି ପୋଡ଼ରେ ଭିନ୍ନ ଭିନ୍ନ ତେଜ ଧରେ । ୨ । ହାଟକହଟପିତୁଳାକୁ—କୌତୁକିଆ ସୁନାର ପ୍ରତିମୂର୍ତ୍ତିକୁ ( ଚନ୍ଦ୍ରକଳାକୁ ); ନ ଦେଖିଲେ······ଲୋକେ ତା ନଖ ଅଗର କାନ୍ତିର ଶୋଭାକୁ ତୁଳନା କରିବାପାଇଁ ସଂସାରର କୌଣସି ପଦାର୍ଥ ଦେଖିଲେ ନାହିଁ । ମ୍ରଦିମା—ମୃଦୁତା, କୋମଳତା; ଉରୁବର୍ତ୍ତୁଳା—ସୁଗୋଲଜଘନବିଶିଷ୍ଟା, ପାହାଡ଼ା-ହଂସୁଲୀତୁଳାକୁ···ସିବାପାଇଁ ବାଟରେ ପଡ଼ିବା ହଂସପରର ତୁଳାନିର୍ମିତ ଗଦିକୁ । ୩ । ଅମାନୀ ଗହନଗଜ—ଅମାନିଆ ବଣହାତୀ, ନଜର—ଦୃଷ୍ଟି, ଅମାନୀ ଗମନକୁ···ଚନ୍ଦ୍ରକଳାର ଗତି ବଣୁଆ ମତ୍ତଗଜ ଗତିପରି ହେଲା । ଅନାରତ—ଅବିରତ, ସର୍ବଦା; ଜରଜର—ଜର୍ଜର, ମର୍ଦ୍ଦିତ; ୪ । ଖୁରଳୀ—ଅଭ୍ୟାସ, ଅସୀତଭୁଜଙ୍ଗୀ···କଳାସର୍ପର ଖେଳିବା ଭଙ୍ଗୀର ସୌନ୍ଦର୍ଯ୍ୟ

ସଜନୀ କେବଳ ସଜ ନୀଳୋତ୍ପଳ ମଣ୍ଡିବାରେ କଲା ଉତ୍ସାହ । କପୋଳ । ଚୁମ୍ବି ନୀଳୋତ୍ପଳ ଖୋସିଲା । ମୁକୁରେ କଦମ୍ବ କଳି ପ୍ରତିବିମ୍ବପରି ଦନ୍ତୁରିତ ଦର୍ଶିଲା । ୫ । କହିବା ମାଧୁରୀ ବିଶେଷରୁ ଗୋରୀ ମୁଖସୁଧାକର କର୍ମିଲା । ଝଲକା ମୁକୁତା ଝୁଲନ୍ତମକୁ ତା ନୟନଖଞ୍ଜନ ଝାମ୍ପିଲା । ନିରେଖି । ପ୍ରବନ୍ଧ ପଟ୍ଟପଟ୍ଟଳୀକି । ଅନାଇଲା ହସି ସମାନବୟସୀ ମନ ଅନୁରୂପ ଆଳୀକି । ୬ । ସେ କାଳେ କେ ଗୁରୁଜନ ଯେବେ ଦୂରୁ ଲୋଚନ-ଗୋଚର ହୋଇଲା । ଉଦାସୀନ ଲୀଳା ପ୍ରବାହରେ ବାଳା ତା ଶଙ୍କାପଙ୍କକୁ ଧୋଇଲା । ନିକଟେ । ହେବ କି କୁସୁମଉତ୍ସବ । ଅଗୁଁ ରତିବର ଦେଲା ଅତି ବର୍ତ୍ତୁଳ କରି ହୃଦେ ଉଦ୍‌ବେଗ । ୭ । ଚୁମ୍ବିଲା ଡମରୁ ଡମ୍ବରକୁ ସରୁଶିରୀ ଧରି ମଧ୍ୟପ୍ରଦେଶ । ହେଲା ନିତମ୍ବରୁ ନିଧୁବନେ ଗୁରୁ ବିଜୟୀ ଉଣ୍ଡିମ ଅଭ୍ୟାସ । ତାଦୃଶ । ସ୍ପୃଷ୍ଟ ନୋହିଲେହେଁ ନିବିଳ । ଭାବଗର୍ଭ ଦରହାସୀର ଉଦରଶୋଭା ସଂସାରୁ ଗଲା ବଳି । ୮ । ଦ୍ରବ୍ୟ ବିନା ଛାୟା ବିଳସିବା ମାୟା କେମା ଉଦରେ ଉଲ୍ଲସିଲା । ରୋମରାଜି ବ୍ୟାଜ କଳା ନାଗ ରାଜ ଶିଶୁପରି ଦଶୁ ଦର୍ଶିଲା । ଗୁଳିବା ବେଳ ଛାଇକି ଅନାଇଲା । ବେଶେ ହେବା ମନ ନ ପ୍ରକାଶିଧନକୁସୁମଭୂଷା ବନାଇଲା । ୯ । ବାଳାବର ଉରସ୍ଥଳ ପଞ୍ଚଶର ସାଧନ ଅଖେଟ ମହୀକି । ଦ୍ରୋଣତୁଲ୍ୟ ଗୁରୁ କରିବା ବିଗୁରୁ ଅତି ଯତ୍ନେ ଅଣି ତହିଁକି । ଥାପିଲା । ଦ୍ରୋଣ ଭଇରବ ଦୁହିଙ୍କି । ଆଗୁଁ ପଡ଼ିଥିବା ମେରୁବୀଜ ଅବା ଅଙ୍କୁରିତ ହେଲା ନାହିଁକି । ୧୦ । ଫିଟିଲେ

---

ଗର୍ବ ନଷ୍ଟ ହୋଇଗଲା । ୬ । ଝଲକା—ଏକପ୍ରକାର କାନଫୁଲ, ଝୁଲନ୍ତମ—ଝୁଲିବା ଭଙ୍ଗୀ, ପ୍ରବନ୍ଧପଟ୍ଟପଟ୍ଟଳୀକି—ପରସ୍ପର ସନ୍ଧିବିଷ୍ଟ ରତି ଚନ୍ଦସମ୍ବନ୍ଧକୁ, ଆଳି—ସଖୀ । ୭ । ସେକାଳରେ—ଚନ୍ଦ୍ରଦର୍ଶନସମୟରେ, ଉଦାସୀନଲୀଳାପ୍ରବାହରେ—ନ ଜାଣିବାପରି ହୋଇ, ନିକଟେ—ନିକଟରେ, କୁସୁମଉତ୍ସବ—ପ୍ରଥମ ରଜୋଦର୍ଶନ, ହୃଦୟରେ—ଗ୍ରୁତରେ, ଅତି ବର୍ତ୍ତୁଳ ଉଦ୍‌ବେଗ—ଗୋଲାକାର କୁଚରୂପ ଉତ୍‌କଣ୍ଠା । ୮ । ମଧ୍ୟପ୍ରଦେଶ—କଟିଦେଶ, ଡମରୁ ଡମ୍ବର—ଡମରୁର ଆଡମ୍ବର ବା ଶୋଭା, ସରୁଶିରୀ—କ୍ଷୀଣଶୋଭା, ନିତମ୍ବ—ପିଚ୍ଛ, ନିଧୁବନେ ଗୁରୁ—ରତି ବିଦ୍ୟାରେ ଶିକ୍ଷକ । ୯ । ଦ୍ରବ୍ୟବିନା···ପଦାର୍ଥ ନ ଥିଲେ ଛାଇ ଯେପରି ଦେଖା-ଯାଏ ନାହିଁ, ସେହିପରି କେମାର ଉଦର ନ ଥିଲା ପରି ଜଣାଗଲା, ଅର୍ଥାତ୍ କେମା କ୍ଷୀଣୋଦରୀ ( ସ୍ତ୍ରୀ ଉଦର କ୍ଷୀଣ ହେବା ସୌନ୍ଦର୍ଯ୍ୟର ପରିଚାୟକ ) । ରୋମରାଜି ବ୍ୟାଜ କଳା ନାଗରାଜଶିଶୁ ପରି ଦଶୁ ଦର୍ଶିଲା···କେମାର ନାଭିତଳକୁ ଯାଇଥିବା ରୋମରେଖା ନକଲିକଳାନାଗଛୁଆପରି ଅଳ୍ପକେ ଦର୍ଶିଲା ।୧୦। ଉରସ୍ଥଳ

ପ୍ରଳମ୍ବ କୁନ୍ତଳ ନିତମ୍ବ ଲଙ୍ଘି ଦିଶିଲା କି ବହଳ । ତା ଅଙ୍ଗ ଅମରଲତାର କି ମରକତମଣିମୟ ଓହଳ । ଲବଣ୍ୟ । ରମାରକେତକୀ ପ୍ରଭାସେ । ଧୂଳି ବିନା ଦେଖି ସୁଖୀ ହୋଇ ଲାଗିଅଛନ୍ତି ଭୃଙ୍ଗାଳି ଏ ଅଭାସେ ।୧୧। କିଧାଙ୍କି କଙ୍କିଣୀ ବଦାବଦ ମଣି କଠାଉ ଲାଗି ଗୃଳ ଗୃଳ । ମାନିଲ ଜାଣିଲ ସ୍ନେହରେ ଦେହରେ ଜମାଇ ବୟସ୍ୟାଙ୍କୁ ଯାକ । ସୁନ୍ଦର । ଶିଶୁଙ୍କ ଗଣ୍ଡରେ ଚୁମ୍ବିଲା । ଗୃହିଁଲ ସର୍ବଗେ ଯେଉଁ ଅଙ୍ଗ ଲାଗେ ନିଜ ମୁଖ ପ୍ରତିବିମ୍ବିଲା । ୧୨ । ସୀତା ସୀତାଧବ ମାଳତୀମାଧବ ଭୀମଜା ତା ଧବ ଚରିତ । ରତି ପଞ୍ଚବାଣ ଘଟଣା ପୁରାଣ ଶ୍ରବଣେ ବଳାଇଲା ଚିତ୍ତ । ପୁଲକ । ଉଠିଲା ଶୁଣି ପରିରମ୍ଭ । ବିପ୍ରଯୋଗ ଶୁଣି ନେତ୍ରଯୁଗେ ପୁଣି କଲା ବିକଳେ ଅଶ୍ରୁଅମ୍ବୁ । ୧୩ । ରହ-ସଉଧର ମଧ୍ୟେ ପୟୋଧର ଅଙ୍କୁର ଗୃହେଁ ହୃଷ୍ଟମନେ । ଶାଢ଼ୀ ପାଲଟିବା ଛଳେ ନବ ଜବାଧର ଦୃଷ୍ଟି ଦିଏ ଜଘନେ । ବିପୁଳ । ଉରୁଯୁଗଳ ନେତ୍ର ଚୁମ୍ବେ । ଫେରାଇ ବଦନ ପୁଣି ଦୁଃଖିଧନ ନଜର ଦିଅଇ ନିତମ୍ବେ । ୧୪ । ତରୁଣୀଙ୍କ କାନ୍ତକରକୋରକ୍ଷତ କି ମାନେ ଏହା ଭାବ ବାଳା । ଲେଖି କକ୍ଷାନ୍ତର ସ୍ଥଳରେ ସିନ୍ଦୂରଦ୍ରବରେ ଶିଶୁ ଶଶିକଳା । ପ୍ରମୋଦେ । ଗୃହେଁ କାଞ୍ଚୁଲା ତଟ ଟେକି । ତହୁଁ କି ଅଭାସି ଯାଏ ଇଷି ଭାସି ଉରୁଯୁଗଳ

—ଗ୍ରୀବା, ପଞ୍ଚଶରସାଧନଆଖେଟମଞ୍ଚ—ମଦନର ବ୍ୟାୟାମ ସାଧନର ଆଖଡ଼ାଭୂମି, ଦ୍ରୋଣ—କୌରବମାନଙ୍କ ଅସ୍ତ୍ରଗୁରୁ, ଦ୍ରୋଣ, ଭଇରବ ଦୁହିଙ୍କି—ମାପଅଡ଼ା ଓ ଶିବମୂର୍ତ୍ତି (କୁଚଦ୍ୱୟ) । ମେରୁବୀଜ—ମେରୁପର୍ବତର ମଞ୍ଜି । ୧୧ । ତା ଅଙ୍ଗ ଅମରଲତାର—ତାହାର ଶରୀରରୂପ କଳ୍ପଲତାର, ମରକତମଣି—ଶାଗୁଆ ବର୍ଣ୍ଣର ମଣିବିଶେଷ । ଲବଣ୍ୟ ଆଭାସେ—ଚନ୍ଦ୍ରକଳାର ଶରୀର ଲବଣ୍ୟ ଲକ୍ଷ୍ମୀଙ୍କର କେତକୀପୁଷ୍ପ ବର୍ଣ୍ଣର କାନ୍ତି କି ? କେତକୀ ଫୁଲରେ ଧୂଳି ଥିବାରୁ ଭ୍ରମର ତା ପାଖକୁ ଯାଏ ନାହିଁ, ମାତ୍ର ଏଥିରେ ଧୂଳି ନ ଥିବାରୁ କେଶଗୁଚ୍ଛ ଛଳରେ ଭ୍ରମରମାନେ ଆସି ତହିଁରେ ଲାଗିଅଛନ୍ତି—ଏହିପରି ଆଭାସୁଛି । ୧୨ । କିଧାଙ୍କି...ଗୃଳ—ବାରଂବାର ବାଜୁଥିବା ଘନ ଧାଡ଼ି ମଣିଲଗା କଠାଉ ମାଡ଼ି ଚାଲିବାର ଭଙ୍ଗୀ, ବୟସ୍ୟା...ସଙ୍ଗିନୀଙ୍କୁ ଦେହରେ ସ୍ନେହରେ ଜମାଇ ଯାକି ଜାଣିଲା ଅର୍ଥାତ୍ ସଜନୀମାନଙ୍କୁ ସ୍ନେହରେ ଗାଢ଼ ଆଲିଙ୍ଗନ କରି ଶିଖିଲା । ୧୩ । ମାଳତୀମାଧବ—ମହାକବି ଭବଭୂତିଙ୍କ ପ୍ରଣୀତ ସଂସ୍କୃତ ନାଟକ । ଭୀମଜା—ଦମୟନ୍ତୀ, ପରିରମ୍ଭ—ଆଲିଙ୍ଗନ, ମିଳନ; ବିପ୍ରଯୋଗ—ବିରହ, ବିଚ୍ଛେଦ; ବିକଳେ...ବିକଳରେ କାନ୍ଦିପକାଇଲା । ୧୪ । ରହସଉଧର ମଧ୍ୟେ—ନିର୍ଜନ ପକ୍‌କାଘର ଭିତରେ । ପୟୋଧରଅଙ୍କୁର—ଗଜରୁ ଥିବା କୁଚ । ଜଘନ—କଟି-

ଦିଏ ଯାଇ । ୧୫ । ପଛୁଁ କେ ସଜନୀ ଅସିଲା କି ଘେନି ଚମକି ସଂପତ ହୋଇଲା । ଦକ୍ଷିଣ ଅଙ୍ଗ ଢୋଲି ହେଉଅଛୁ ରେ ଅଳି ବୋଲି ନବେଲେ ବୋଇଲା । ବାଲିଶ । ତେଜି ଆଉଜିଲା ସହାକି । ଜୃମ୍ଭାରମ୍ୟମୁଖୀ ତାଳେ ଲଘୁ ରଖି ଅଙ୍ଗୁଳି ଠୁକିଲା ମହୀକି । ୧୬ । ନିରକ୍ଷର ସଖୀ ଗିରେ ଚନ୍ଦ୍ରମୁଖୀ ନ ରଖିଲା ଲଭେ ଖାତର । ସ୍ୱସମ ଅମଳତର ଗୁଣବୃନ୍ଦ କୁନ୍ଦଲତା ମୁଖେ ମାତର । ଅକୂତ । ତୁନ୍ଦଲ ଦୃଷ୍ଟି ଖେଳାଇଲା । ଇତରଙ୍କ ଛଳେ ଇତରଙ୍କୁ ଗେଲେ ଲଗାଇ ରସେ ଚଳାଇଲା । ୧୭ । ଅରୁଣ ଉଦୟ ସମୟୁ ସଦୟହୃଦୟା ପଦ୍ମଡ଼ ଭାଜିଲା । ଶାଠୀକି ପାଲଟି ଝଁଳ ଦନ୍ତପାଟି ହୀରାଙ୍କୁରରାଜି ମାଜିଲା । ବାଜିଲା । କ୍ଷଣେ ପ୍ରଥମ ନାଡ଼ୀ ଖୁରି । ସାଜିଲା ମାଜଣାକୁ ସେ ବିଚକ୍ଷଣା ମାଜିଲା ମୁକୁରାସ୍ୟ ଶିରି । ୧୮ । ବହଳ ବିଚିନ୍ନ ସୁପବିତ୍ର ଚିକ୍ନ ଅସନେ ରାଜିଲା ଗେଲାଇ । ଗୃହିଁ ଅଦରଶେ ଶୁଭପାଣି ପାଶେ କଲମା କୁନ୍ତଳ ବୁଲାଇ । ଅଳିକେ । ମଣ୍ଡନ ତିଳକ ଘେନିଲା । କଞ୍ଜମଞ୍ଜିମାଳା ଜପ ସେ କମଳାସନାକୁ ଅହା କି ମାନିଲା । ୧୯ । କ୍ଷିତିଭୂଷାଟିକି କ୍ଷୀରୋଦ ଶାଠୀ କି ମାନିଲା ମାଜଣା ଶେଷରେ । କ୍ଷୀରୋଦ-ସମ୍ଭବା ପ୍ରତିବିମ୍ବ ଅବା ବିରାଜିଲା ଜୀବନ୍ୟାସରେ । କଣୋରି । ଦଶିଗଲା ସେ ବିପରୀତ । ରସି ସମ୍ମୋଦରେ କି ଜମ୍ବୁନଦରେ ମିଶିଗଲା ସୁରସରିତ । ୨୦ । ଜୟଦେବ କୃତ ଗଜେନ୍ଦ୍ର ବିପତ୍ତି ମୋକ୍ଷଣ ଗୋପାଙ୍ଗନା ଗୀତା । ପାଠକଲା ଅନୁମନ୍ଦାର ସେ ଗୃରୁଚମରୀନୟନା ବନିତା । ତୁଳସୀ । ଗୁରୁ

---

ଦେଶର ସମ୍ମୁଖଭାଗର ନିମ୍ନଦେଶ । ୧୫ । କରଜାଗ୍ରକ୍ଷତ—ନଖକ୍ଷତ; କି ମାନେ—କପରି ଶୋଭପାଏ । କକ୍ଷାନ୍ତରସ୍ଥଳରେ—କାଖ ନିକଟରେ । ଶିଶୁଶଶିକଳା—ଦ୍ୱିତୀୟାଚନ୍ଦ୍ରପରି ନଖକ୍ଷତସୂଚକ କ୍ଷୀଣରେଖା, କାଞ୍ଚୁଳିତଟ—ନିଜର ପିନ୍ଧିଥିବା କାଞ୍ଚୁଳିର ଧଡ଼ି । ୧୬ । ବାଲିଶ—ବାଲିଶ୍ ତକିଆ, ଜୃମ୍ଭାରମ୍ୟମୁଖୀ—ହାଇ ମାରିବା ଯୋଗୁଁ ସୁନ୍ଦର ଦେଖାଯିବା ମୁଖଯୁକ୍ତା । ୧୭ । ନିରକ୍ଷର—ମୂର୍ଖା ସଖୀମାନଙ୍କ କଥାରେ, ସ୍ୱସମଅମଳତର—ନିଜଭଳି ଅତି ଉତ୍କୃଷ୍ଟ ଗୁଣସମୂହ ଲାଭ କରିଥିବା କୁନ୍ଦଲତା ନାମକ ସଖୀ ଆଡ଼କୁ ଆକୂତତୁନ୍ଦଲଦୃଷ୍ଟି ଅର୍ଥାତ୍ ଅଭିପ୍ରାୟଯୁକ୍ତ ସ୍ଥୂଳଚକ୍ଷୁରେ ଚାହିଁଲା । ୧୮ । ହୀରାଙ୍କୁରରାଜି—କ୍ଷୁଦ୍ର ହୀରାଖଣ୍ଡ ପରି ଉଜ୍ଜ୍ୱଳ ଦାନ୍ତମାନଙ୍କୁ, ନାଡ଼ୀଖୁରି—ଦଣ୍ଡଜ୍ଞାପକ ଘଣ୍ଟା, ମାଜଣା—ସ୍ନାନ, ମୁକୁରାସ୍ୟ-ଶିରି—ଦର୍ପଣତୁଲ୍ୟ ମୁଖର ଶୋଭା । ୧୯ । କଲମାକୁନ୍ତଳ—କାନପାଖରେ ବାହାରିଥିବା କ୍ଷୁଦ୍ର କ୍ଷୁଦ୍ର କେଶ, ଅଳିକେ—ଲଲାଟରେ, କଞ୍ଜମଞ୍ଜିମାଳା—ପଦ୍ମବୀଜର ମାଳି । ୨୦ । କ୍ଷୀରୋଦଶାଠୀ—କ୍ଷୀରୋଦ୍ରି ପାଟଶାଢ଼ୀ, କ୍ଷୀରୋଦ-

କପିଳାଧେନୁ ପୂଜା । ପ୍ଲକ୍ଷ ପ୍ରଦକ୍ଷିଣ ସାରି ସଦକ୍ଷିଣ ଦାନ ଦଅଇ ନାଗରାଜା । ୨୧ । ବଢ଼ିଲେ ଅଶିଷଗ୍ରହଣ କାଶୀଶସମାଧିଖଣ୍ଡନା ନିଇଛି । ଆଢ଼ଣୀ ଭ୍ରମର ଯୁଗଳୀ ମୟୂର ଚୁଲି ନିଯୋଗୀ ଜନ ଖଟେ । ଶ୍ରୀଭୁଜ । ପଇଠ ଧରି ପ୍ରିୟସହୀ । ଇଷ୍ଟଦେବ ଦରସନକୁ ସୁନ୍ଦର ଚରଣକଞ୍ଜେ ମଣ୍ଡେ ମହୀ । ୨୨ । ସାରି ଦରଶନବଧିକ ସେ ଜନ ନୟନମୃଗ-ବନ୍ଧପାଶୀ । ଲବଣ୍ୟଖନି କି ରଙ୍ଗେ ଜନନୀଙ୍କି ଜୁହାରେ ପ୍ରତଦନ ଅସି । ଅଶିଷ । ଛୁଲେ ଦେଲେ ଚୁମ୍ବଯୁଗଳୀ । ମଣୋହି କୋଠାକୁ ଅବଧାନ ତାକୁ ଦଅନ୍ତି ଅସି ବିପ୍ରଆଳୀ । ୨୩ । ମାଏ ବେଲେ ବେଲେ କବଲେ କବଲେ ସବଡେ ସବଡେ ରୋପଣେ । ପୀୟୂଷକଲପ କବଲ ଅଲପ ଅଶନ କରାନ୍ତେ ଆପଣେ । ରୁଚକ । ପ୍ରକଟ ନ କରି ଅତଶେ । ସୁରଭିତ ବନେଚର ଆଚମନେ ରସେ ମଦଗଜଗତି ସେ । ୨୪ । ଜନସ୍ମିରୀ ଲାଗି ଚେଲାଞ୍ଚଲେ ଯୋଗିମୋହନମୁଖୀ ମୁଖ ପୋଛେ । କର୍ପୂର ବିଡ଼ିଆ ବିଡ଼ିଆଲୀ ଅଳୀ ଘେନି ହାଜର ହୋଏ ପଛେ । ତାମ୍ବୂଲ । ଯୋଗଣ ଫରମାସୀ ମାଏ । ଅନ୍ତର ହୁଅନ୍ତେ ଘେରନ୍ତି ସନ୍ତତେ ଖଟିବା ଖଟଣୀ ବାମାଏ । ୨୫ । ଦରସ୍ଫୁଟରସ ପ୍ରସଙ୍ଗ ସରସ ସମ୍ଭାଷଣେ କ୍ଷଣେ ବସଇ । କ୍ଷଣେ ପ୍ରାତରିନ୍ଦୀବରଶୋଭି ବନ୍ଦବାସପରି ନେତ୍ର ଦିଶଇ । ଯହୁଁ ସେ । ଅପହ୍ନୁଡ଼ ହୁଏ କିଶୋରୀ । ଦ୍ୱିତୀୟ ମାଜଣା ଅବକାଶ ଜଣା ହୋଏ ଘେରନ୍ତି ପରିଚାରୀ । ୨୬ । ବ୍ୟୋମଲତାଫଳ ମାର୍ତ୍ତଣ୍ଡ ମଣ୍ଡଳ

---

ସମ୍ଭବା—ଲକ୍ଷ୍ମୀ, ସମ୍ଭୋଦରେ—ନଦୀସଙ୍ଗମ ସ୍ଥଳରେ, ଜମ୍ବୁନଦ—ଯେଉଁ ନଦୀର ତୀରରୁ ସୁନା ଉତ୍ପନ୍ନ ହୁଏ ( ହରଦ୍ୱାର ) । ସୁରସରିତ—ସ୍ୱର୍ଗଙ୍ଗା ( ଶୁକ୍ଲାଭ ) । ୨୧ । ଜୟଦେବକୃତ—ଗୀତଗୋବିନ୍ଦ, ଗଜେନ୍ଦ୍ର ବିପତ୍ତିମୋକ୍ଷଣ—ଗଜୋଦ୍ଧାରଣ ସ୍ତବ, ଗୋପାଙ୍ଗନାଗୀତା—ଭାଗବତ ରାସପଞ୍ଚାଧ୍ୟାୟୀର ପ୍ରସିଦ୍ଧ ଗୋପୀଗୀତା, ଆରୁମନ୍ଦାର—ଆରୁଆ ( ତାମିଲ ଭାଷା ) ରେ ଲେଖା ହୋଇଥିବା ସ୍ତୋତ୍ର ? କପିଳା ଧେନୁ—ହଳଦିଆ କଳାମିଶା ବର୍ଣ୍ଣର ଗାଈ; କୋଇଲା ଗାଈ, ପ୍ଲକ୍ଷ ଅଶ୍ୱତ୍ଥ ବା ଓସ୍ତଗଛ । ବଢିଲେ—ସମାପ୍ତ ହେଲେ । ୨୨ । ଆଶିଷଗ୍ରହଣ—ବ୍ରାହ୍ମଣମାନଙ୍କଠାରୁ ଆଶୀର୍ବାଦ ଗ୍ରହଣବିଧି । କାଶୀଶସମାଧିଖଣ୍ଡନା—ଶିବଙ୍କ ଯୋଗ ଭାଙ୍ଗିବାରେ କ୍ଷମା । ଶ୍ରୀଭୁଜପଇଠ—ଚନ୍ଦ୍ରକଳାର କରତଳର ଭରା; ଭାର । ୨୩ । ଜନନୟନମୃଗବନ୍ଧୀପାଶୀ—ମନୁଷ୍ୟମାନଙ୍କର ନୟନରୂପ ମୃଗକୁ ବାନ୍ଧିବା ଫାସସ୍ୱରୂପା ( ଚନ୍ଦ୍ରକଳା ) । ୨୪ । କବଲେ କବଲେ—ଗୁଣ୍ଡାଏ ଗୁଣ୍ଡାଏ । ସବଡେ ସବଡେ—ଗ୍ରାସ ପକାଇ । ରୋପଣ—ଅର୍ପଣ, ପୀୟୂଷକଳ୍ପ—

ବାସରବିବସାନ କ୍ରମରେ । ପାଚ ପ୍ରତୀଚୀସମୁଦ୍ରେ ଝଡ଼ିପଡୁଁ କୁମୁଦେ ମାତନ୍ତେ ଭ୍ରମରେ । କଣୋଗ୍ର । ବଢ଼ାଇ ସନ୍ଧ୍ୟା ଦରଶନ। ସଙ୍ଗୀତ-ସଭାକୁ ପୁଅଏ ଶୋଭାକୁ ଏହୁ ତା ମୀତ ନିତ ଦିନ । ୨୭ । ଯାହା ପାପଲ୍ଲବ ମହାପାପ ଲବ ନ ରଖେ ସ୍ମରଣକ୍ଷଣରେ । ଯାହା ଦର-ଚକ୍ର ଜନଦରଚକ୍ର ଚୂର୍ଣ୍ଣ କରନ୍ତି ବୀକ୍ଷଣରେ । ସେ ପ୍ରଭୁ । ଚରଣ ପଙ୍କଜ ଯୁଗଳେ । ଜଳନ୍ତରଭୂପ ମାନସମଧୁପ ମରନ୍ଦପାନଲୋଭେ ମିଳେ । ୨୮ । ଊନତିଂଶ ପଦ କଳିତ ଏ ଛନ୍ଦ ନାମ କୁମାରୀ କଉତୁକ । କୁମାର ବଳୟ ହୃଦକୁବଳୟ ଅଖଣ୍ଡମଣ୍ଡଳ ମୃଗାଙ୍କ । ନୃପତି । ଭବତି ନିତ ଆଦରଶ । ମୂରୁଖ ତରୁଣୀଗଣ ହେବେ ଗୁଣି ମନେ କଲେ ଏହା ସ୍ମରଣ । ୨୯ ।

## ଅଷ୍ଟମଛାନ୍ଦ

ରାଗ—କେଦାର ଚକ୍ରକେଳି ବାଣୀ

( ଚନ୍ଦ୍ରକଳାର ଯୌବନୋଦ୍‌ଗମ )

ଏଥୁ ଅନନ୍ତରେ ଶୁଣ ସରସେ । ବଇଶାଖ ମାସ ବିଧୁଦିବସେ । ଶୁକ୍ଳପଞ୍ଚମୀ ଧନିଷ୍ଠାଖ୍ୟ ଋକ୍ଷ । ଶୁଭଚନ୍ଦ୍ର କରଣ ଗଣ ମୁଖ୍ୟ । ୧ । ଯୋଗ ସମୂହ ରାଜ ଶୁଭଯୋଗ । କରିଥିଲା ସେ ଦିନନାୟକ ଭୋଗ । ସାର ମନୋହର ତାମ୍ବୁଲ ଭୋଜନ । ଘେନି ସଙ୍ଗତେ ପ୍ରିୟସଖୀଗଣ । ୨ । ଫୁଲ

---

ଅମୃତରୁଳ୍ୟ । ଅଧରେ—ଅଧରସ୍ଥରେ । ସୁରଭିତବନେ—ସୁବାସିତ ଜଳରେ । ୨୬ । ପ୍ରାତରନ୍ଦୀବରଶୋଭାବନ୍ଦୀବାସ ପର—ସକାଳ ଅର୍ଦ୍ଧମୁଦ୍ରିତ ନୀଳକଇଁ ପର ଆଖି ଦିଶେ, ଅପନ୍ହୁତ—ନିଦରୁ ଉଠିବା । ୨୭ । ବ୍ୟୋମଲତା···ଝଡ଼ିପଡ଼—ସୂର୍ଯ୍ୟମଣ୍ଡଳ ଆକାଶରୂପ ଲତାର ଫଳସ୍ୱରୂପ, ସେ ଫଳ ଶେଷବେଳକୁ ପାଚି ଅର୍ଥାତ୍ ଲାଲବର୍ଣ୍ଣ ଧରି ପରିପକ୍ୱ ହୋଇ ପ୍ରତୀଚୀ ସମୁଦ୍ରରେ ( ପଶ୍ଚିମ ଦିଗର ସମୁଦ୍ରରେ ) ଝଡ଼ି ପଡ଼ନ୍ତେ ଅର୍ଥାତ୍ ସନ୍ଧ୍ୟା ହୁଅନ୍ତେ । ସଙ୍ଗୀତ···ସଙ୍ଗୀତସଭାକୁ ଶୋଭିତ କରେ । ୨୮ । ପାପଲ୍ଲବ—ପାଦକଶଳୟ, ଲବ—କ୍ଷୁଦ୍ରାଂଶ, ଦରଚକ୍ର—ଶଙ୍ଖ ଓ ଚକ୍ର ଏବଂ ଭୟସମୂହ । ୨୯ । କୁମାରବଳୟ···ଯୁବକମଣ୍ଡଳଙ୍କ ହୃଦସ୍ଥ କୁମୁଦ ପକ୍ଷରେ ପରିପୂର୍ଣ୍ଣମଣ୍ଡଳ ମୃଗାଙ୍କ ( ଚନ୍ଦ୍ରମା ) ପରି; ନିତ ଆଦରଣ—ଦୈନିକ ଆଦର୍ଶ ।

---

ଅଷ୍ଟମ ଛାନ୍ଦ

୧ । ବିଧୁଦିବସ—ସୋମବାର । ୪ । କୃତ୍ୟାକୃତ୍ରିତ—ହାଇଦ୍ରାବପ୍ରକାଶିତ,

ମଣ୍ଡପେ ଜେମା ଚନ୍ଦ୍ରକଳା । ନ୍ୟାୟିବାଲ କୋଳରେ ବାଜେ କଲା । ଖେଳୁ ଖେଳୁ ତା ମୃଦୁ ଅଙ୍ଗଦେଶେ । ବଳସିଲା ଅଳସଭାବ ଲେଶେ । ୩ । ଜୃମ୍ଭା-ଜୃମ୍ଭିତ ସୁଖକଳାନିଧି । ଘେନି ଦେଲା ବାହୁପାଶ ପରିଧି । ସାୟନ୍ତନ ଶ୍ୟାମଳ କଞ୍ଜଶିରୀ । ଛୁଇଁ ଅସିଲା ନୟନଶଫରୀ । ୪ । ଜାଣି ସଖୀ ହୃଦେ ଭାବ ପାଇଲେ । ଦନ୍ତଚ୍ଛଦ ପଲ୍ୟଙ୍କ ବିଛାଇଲେ । ତହିଁ କେଶରୀ ଫୁଲକ ସଜାଇ । ଚନ୍ଦ୍ରଚୂର୍ଣ୍ଣେ ମିଶାଇ ଦଳଜାଇ । ୫ । ସଜ ବକୁଳ ଗର୍ଭଗତ କଥା । ଫୁଲ ବାଲିଶ ଆଦି ସବୁ ନୂଆ । ମୁଖ୍ୟ ମଖମଲ ସନ୍ଧି ମୁଚୁଳି । ସ୍ଥାନ ଜାଣି ରଖିଲେ ପ୍ରିୟ ଆଳୀ । ୬ । ଗାଢ଼ା ଗୁଲାବ ଦ୍ରବ୍ୟ ସିଞ୍ଚା ଝୁନା । କଲେ ଆସ୍ତରଣ କେହୁ ନବୀନା । ଛୁରିଅନା ଫୁଲ ଜାଲି ପରଦା । ଠେକ ଧଇଲା କେଉଁ ବିଶାରଦା । ୭ । କୁନ୍ଦଲତା ଉପରେ ଭ୍ରୂଜଭର । ଦେଇ ଉଭା ହୁଅନ୍ତେ ବାଳାବର । ଦାସୀମାନେ ରଖି ସେକାଳେ ଠାକ । ଦେଲେ ପହଣ୍ଡ ସାବଧାନ ଡାକ । ୮ । ନୀଳ-ପାହାଡ଼ାରେ ପାଦଯୁଗଳୀ । ନ୍ୟାସ କରନ୍ତେ ସେ ବିଶ୍ୱସଙ୍ଗୀଳି । ସୁର-ନନ୍ଦନା ସଲିଳପ୍ରବାହ । ମଣ୍ଡି ଦେଲା କି ଶୋଣ-ଜଳରୁହ । ୯ । ହରକଣ୍ଠଙ୍ଗେ ଗିରିଜେମା ପରି । ଦନ୍ତପର୍ଯ୍ୟଙ୍କେ ପହୁଡ଼ିଲା ଗୋରୀ । ସିତ ଅସିତ ଚାମରଯୁଗଳୀ । ଧରି ଖଟିଲେ ନୀଳା ମୋତିମାଳୀ । ୧୦ । ଚମ୍ପା ମାଳୀ ଘେନି ଫୁଲ ଅଢ଼େଣୀ । ମନ୍ଦ ମନ୍ଦ ଚାଳିଲା ମନ ଜାଣି । ବସି ଅଶ୍ୱାସି କୁନ୍ଦନ ରତନ । କଲେ ପାଦ ସମ୍ବାହନ ଯତନ । ୧୧ । କେହୁ ଠାକ ଅପହୁଡ଼ ସମୟ । ଜାଗରୂକ ଅଛନ୍ତି ସଖୀଚୟ । ବାସପାଣି ଭରି ହେମମଞ୍ଜୁଷୀ । ଜଗି ରହିଛି ଧରି ହେମଟଙ୍କି । ୧୨ । କରେ ଧରି

---

ବାହୁପାଶ ପରିଧି—ବାହୁପାଶ ବେଷ୍ଟନ । ସାୟନ୍ତନ—ସନ୍ଧ୍ୟାକାଳୀନ, କଞ୍ଜଶିରୀ—ପଦ୍ମଶୋଭା ( ଆଖି ବୁଜି ହୋଇ ଆସିଲା ) । ନୟନଶଫରୀ—ନେତ୍ରରୂପ ମୀନ । ୫ । ଦନ୍ତଚ୍ଛଦ—ହାତୀଦାନ୍ତଦ୍ୱାରା ଆଚ୍ଛାଦିତ । କେଶରୀଫୁଲ—ନାଗେଶ୍ୱର ଧୂଳିପୂର୍ଣ୍ଣ ଫୁଲାଶେଯ । ଚନ୍ଦ୍ରଚୁର୍ଣ୍ଣେ—କର୍ପୂର ଚୂନାରେ, ଦଲଜାଇ—ଜାଇଫୁଲ ଦଳ ବା ପାଖୁଡ଼ା । ୭ । ଗୁଲାବଦ୍ରବ—ଗୋଲାପ ଅତର, ଝୁନା—ଏକପ୍ରକାର ସରୁ ସୁନ୍ଦର । ଆସ୍ତରଣ—ଶଯ୍ୟା । ୮ । ଠାକ—ଅପେକ୍ଷା । ୯ । ସୁରନନ୍ଦନା—ସୂର୍ଯ୍ୟକନ୍ୟା ଯମୁନା, ଶୋଣଜଳରୁହ—ରକ୍ତପଦ୍ମ । ୧୦ । ନୀଳା ମୋତିମାଳୀ—ଦୁଇଜଣ ସଖୀଙ୍କ ନାମ । ୧୧ । ଚମ୍ପାମାଳୀ କୁନ୍ଦନରତନ—ସଖୀଙ୍କ ନାମ । ଫୁଲଆଢ଼େଣୀ—ଫୁଲରେ ତିଆରି ବିଞ୍ଚଣା, ପାଦସମ୍ବାହନ—ଗୋଡ଼ ମୋଡ଼ିବା । ୧୨ । ହେମ ମଞ୍ଜୁଷୀ—ପେଟୀ, ହେମଟଙ୍କି—ସୁନାର ସୁରେଇ । ୧୩ । ଝୁନାକଷ ଗୁଦର—ପାତଳ

ଝୁନାଙ୍କଷ ଗୃଦର । ହେଲ ଲବଙ୍ଗଙ୍କଳାକା ହାଜର । ହେମ ହଂସେ ବାଡ଼ିଅ ବାଡ଼ା ଭରି । ଗୁଣ ଜଳଧି ଅଛୁ ଅନୁସର । ୧୩ । ଶଶିଲେଖା କନକ ପିକଦାନୀ । ଅତ ପ୍ରମୋଦେ ଅଛୁ କରେ ଘେନି । ଧରି କଙ୍କିଣୀ ଝୁମୁକା କଠାଉ । ରସକଳା ଝଟକେ ଦାଉ ଦାଉ । ୧୪ । ଶୋଭାଲହରୀ ଘେନି ଗନ୍ଧସାର । ଚୂର୍ଣ୍ଣ ମିଶାଇଅଛୁ ଘନସାର । ମୃଗମଦୁଁ ଭିନ୍ନ କରି ରୋଚନା । ଅତ ଯତ୍ନେ ଦଳୁଛୁ ସୁଲୋଚନା । ୧୫ । ନବ କୁଙ୍କୁମ କୁଙ୍କୁମ ଦଳୁଛୁ । ନବନୀତେ କ ସିନ୍ଦୂର ଗୋଳୁଛୁ । କଅ କରଜେ କସୁଛୁ ପାନଅ । ଝରମଣି ବନାଉଛୁ ମାନଅଁ । ୧୬ । ଜାଇଗଭା ନବାଉଛୁ ସେବତୀ । ଝରି ସଜାଡ଼ୁଅଛୁ ଲୀଳାବତୀ । ପ୍ରେମମଞ୍ଜୁଳା ମଣ୍ଡନ ଗୁଙ୍ଗଡ଼ା । ରଖି ଧରି ବରାହକେଶ ବାଡ଼ା । ୧୭ । କରୁଅଛୁ ମାଜିବାକୁ ଆରମ୍ଭ । କେହି ହାଟକ ବାସବାରିକୁମ୍ଭ । ପୁଞ୍ଜି ପୁଞ୍ଜି କରି ରଖୁଅଛନ୍ତି । କେହି ଖାଡ଼ିକୁଞ୍ଚା ଶାଢ଼ୀ ବାଛନ୍ତି । ୧୮ । ମଲ୍ଲୀ ନାଅଳୀ କେତକୀ ସୁମନା । ଗୃହ ପରଗୃହୀଏ ଏକମନା । ଭୟ ପ୍ରମୋଦେ ଜଳେ ଅବଗାହି । ମରକତ ଚଉକ ନେଇ ବହି । ୧୯ । ମଣିମକର ଗୃଦନୀ ମଣ୍ଡପେ । ଧୀରେ ଥୋଇ ଜଗିଲେ ତା ସମୀପେ । ହେଲ ତୁରୀୟ ଯାମ ସମାଗମ । ଶୁଭ କୁଳୀରଲଗ୍ନ ଭୋଗ କ୍ଷମ । ୨୦ । ବାଳା ପୁଲକେ ଦଶିଲ ସୁନ୍ଦର । ଚମକିଲ ଫୁଲଧନୁମନ୍ଦର । ମଧ୍ୟ ହୋଇଲ ବୁକୁ ଦମ ଦମ । ହୃଦେ ଚୁଳିଲ କଛୁ କମ୍ପକ୍ରମ । ୨୧ । ଅପହ୍ନୁଡ଼ ସମୟ ହେଲ ଅସି । ରତ୍ତୁ ଲଭିଲ ଲଜ୍ଜାଳି ବୟସୀ । ଗୃହଶର ରଖି ରଚନାୟକ । ଏକା ବାନ୍ଧିଲ କଙ୍କେଲୀ ସାୟକ । ୨୨ । ଜେମା ମନ ଲକ୍ଷ୍ୟ ଫୁଟି ଫିଟିଲ ।

---

ରଞ୍ଜିତ ଗୃଦର । ହେମହଂସେ—ସୁନାରେ ତିଆରି ହଂସ ଆକୃତବିଶିଷ୍ଟ ଜବା । ୧୫ । ଗନ୍ଧସାର—ଚନ୍ଦନ, ଘନସାର—କର୍ପୂର, ମୃଗମଦୁଁ—କସ୍ତୁରୀରୁ, ରୋଚନା—ଗୋରୋଚନା । ୧୬ । କୁଙ୍କୁମ—ସଖୀର ନାମ, ନବନୀତ—ଲହୁଣୀ, କଅ—ସଖୀର ନାମ, କରଜ—ନଖ, କସୁଛୁ—ପରୀକ୍ଷା କରୁଛୁ, ଝରମଣି—ସଖୀ, ମାନଅ—ଫୁଲଗଭା । ୧୭ । ଝରି—ଫୁଲତୋଡ଼ା, ବାରହାବାଲବଡ଼ାରେ ଅଲଙ୍କାର ପ୍ରଭୃତ ସଫା ହୁଏ । ୧୮ । ଖାଡ଼ିକୁଞ୍ଚା ଶାଢ଼ୀ—ସୁକ୍ଷ୍ମଭାବରେ କୁଞ୍ଚା ହୋଇଥିବା ଶାଢ଼ୀ । ୨୦ । ତୁରୀୟଯାମ—ଚତୁର୍ଥ ପ୍ରହର । କୁଳୀରଲଗ୍ନ—କକଡ଼ାଲଗ୍ନ । ଭୋଗକ୍ଷମ ହେଲ—ଭୋଗ କରିବାକୁ ପ୍ରବେଶ କଲ । ୨୧ । ପୁଲକେ—ରୋମାଞ୍ଚିତ ହୋଇ । ୨୨ । କଙ୍କେଲୀଶାୟକ—ଅଶୋକ ଫୁଲର ବାଣ

ନିଜ ସିଂହଦୁଆରେ କି ଛୁଟିଲା । ଜାଣିପାରି ସେ କିଶୋରୀ ଈଶ୍ୱରୀ । ଅବିଲମ୍ବେ ମନ୍ତ୍ରୀଙ୍କ ଅବତରି । ୨୩ । ସଖୀ ସମୂହେ ନ ଦେଇ ଦୃଷ୍ଟିକି । କଲା ସ୍ଥଳଜଳରୁହ ବୃଷ୍ଟିକି । ମଣିପାଦୁକାରେ ନାହିଁ ନଜର । ଅତି ବେଗେନେ ହୋଇଲା ହାଜର । ୨୪ । ବାସବତୀ କି ସଙ୍କେତ ପାଇଲା । ଏକା ଗହଣେ ସେହୁ ଗୋଡ଼ାଇଲା । ବାତବକ୍ରନାଳ ନୂଆ କମଳ । ପରି ନୁଆଇଁ ଶ୍ରୀମୁଖମଣ୍ଡଳ । ୨୫ । ଓ୍ରସନ୍ଧିବାସେ ନୂଆ ଛଇଲା । ଯହୁଁ ନେତ୍ରଖଞ୍ଜନ ଖେଳାଇଲା । ନବଗବୟ ଶୃଙ୍ଗଡାବ ଅନ୍ତେ । ହେଲା ପଦ୍ମରାଗ ପରି ପରତେ । ୨୬ । କାଚଭିତ୍ତରେ କିବା ଆଡ଼ମ୍ବର । ଦଶେ ବନ୍ଧୁଜୀବ ପ୍ରଭବମ୍ବର । ନିଜ ଗୋପୁର ଚନ୍ଦ୍ର ଅର୍ଥେ ଅବା । ରୂପାଥାଳୀରେ ପ୍ରସୂନଧନବା । ୨୭ । ଗଇରିକ ଗୋଳାଇ ଅଛୁ ରଖି । ଦେଖି ମଣିଲା ପୂର୍ଣ୍ଣଚନ୍ଦ୍ରମୁଖୀ । ରତି ଭାଲକରି ବିନ୍ଦୁ ସୁନ୍ଦର । ସେହୁ ବାସେ ପୋଛୁଲା କି ସିନ୍ଦୁର । ୨୮ । ତହୁଁ ତଳକୁ ପୁଣି ଦେଉଁ ଦୃଷ୍ଟି । ତହିଁ ଦେଖିଲା ସେହୁ ଶୋଭା ବୃଷ୍ଟି । ହେମ ପ୍ରାସାଦରେ ବସି ଦର୍ପକ । ଦ୍ୱାରେ ଫିଙ୍ଗିଦେଲା କି ପାନପିକ । ୨୯ । ତାକୁ କୁସୁମପ୍ରିୟ ବୋଲି ଜାଣି । ଦ୍ରବମୟ କୁସୁମେ କୁଶପାଣି । ସଂତର୍ପଣି ବାଧିରେ ମନକରି । ସ୍ୱର୍ଣ୍ଣପାତ୍ରରେ ତହୁଁ କିଛୁ ଭରି । ୩୦ । ରଖିଅଛୁ କି ସବୁ କରି ଠୁଳ । ସିଞ୍ଚି ପୁଲକ ଇନ୍ଦ୍ରନୀଳ ଛଳ । ଜାଣି ଯନ୍ତ୍ରବନ ରାଜା ବିଜୟ । ମନେ ହେବାରୁ ସଂଭ୍ରମ ଉଦୟ । ୩୧ । ସେ

---

୨୩ । କେମାମନଲକ୍ଷଫୁଟି ଫିଟିଲା...ସେ ଶର ଚନ୍ଦ୍ରକଳା ମନରୂପ ଲକ୍ଷ୍ୟକୁ ଫୁଟାଇ ବା ଭେଦକରି ନିଜ ସିଂହଦ୍ୱାରକୁ ଗ୍ଭଲିଗଲା କି ? ୨୪ । କଲାସ୍ଥଳ...ସ୍ଥଳପଦ୍ମକୁ ବର୍ଷିଲା ଅର୍ଥାତ୍ ତଳଆଡ଼କୁ ଆଖି ପକାଇଲା । ୨୫ । ବାତବକ୍ରନାଳ—ପବନରେ ଯାହାର ନାଡ଼ ବଙ୍କା ହୋଇଅଛୁ । ୨୬ । ନବଗବୟ...ଗବୟ ( ଗୋଜାତୀୟ ଜୀବ ) ର ନୂଆ ଶିଙ୍ଗରେ ନିର୍ମିତ ପେଢ଼ୀଭିତରେ ପଦ୍ମରାଗମଣି ଥିଲା ପରି ଜଣାଗଲା । ୨୭ । କାଚ-ଭିତ୍ତିରେ—କାଚକାନ୍ଥରେ । ବନ୍ଧୁଜୀବ ପ୍ରଭବମ୍ବ—ବଧୂଲିଫୁଲର ଗ୍ଭୟା । ଗୋପୁର —ବହିର୍ଦ୍ୱାର । ପ୍ରସୂନଧନବା—ପୁଷ୍ପଧନ୍ୱା କନ୍ଦର୍ପ । ୨୮ । ଗୈରିକ—ଗେରୁ । ରତି...ରତିଦେବୀ ନିଜ ଲଲାଟରେ ସୁନ୍ଦର ବିନ୍ଦୁଟିଏ ରଚନା କରିସାରି ଚନ୍ଦ୍ରକଳାର ସେହି ଲୁଗାରେ ସିନ୍ଦୂରକୁ ପୋଛୁ ଦେଲା କି ? ୨୯ । ହେମପ୍ରାସାଦ—ସୁନାର କୋଠା ( ଚନ୍ଦ୍ରକଳାର ଶରୀର ) । ଦର୍ପକ—କନ୍ଦର୍ପ । ୩୦ । ତାକୁ—ଚନ୍ଦ୍ରକଳାକୁ । ଦ୍ରବ୍ୟମୟକୁସୁମେ—ତରଳ ରକ୍ତବର୍ଣ୍ଣ ଫୁଲରସରେ । କୁଶପାଣି—ବ୍ରହ୍ମା, ସ୍ରଷ୍ଟା

ସମୟେ ସୁଷମା କଳାବତୀ । ହୋଇଁ ଅତି ତରଳତରମତି । ଅଳକତ ସଂଭବଦ୍ରବଛବି । ହେମପ୍ରାଙ୍ଗଣେ ପକାଇଲା ପବି ।୩୨। ଜଗଜ୍ଜୟୀ ସଂକଳେ କାମରାଜା । କଲା ନିକୋଣ ହେମଯନ୍ତ୍ର ପୂଜା । ଉପହାର ନାମନ୍ତେ କରି ଅବା । ସମରପିଛୁ ଅଭିନବ ଜବା ।୩୩। ନାଗ ମନ୍ଦିର ଦେହଳୀର ପାଶେ । ରତି ବସିଛୁ ପ୍ରିୟ ଅଙ୍କଦେଶେ । ତାହା ଲାଗି କୁସୁମ୍ବା ଚେଲାଞ୍ଚଳ । ପଡ଼ି ଦେହଳୀ କରିଛୁ ମଞ୍ଜୁଳ ।୩୪। କିବା ନବୀନ ଯଉବନରମା । ମଣ୍ଡିବାକୁ ଶବ୍ଦରେ ଭାଲସୀମା । ରଖି ପରିଣତତର ତାମ୍ବୁଲ । ତହିଁ ଦଳଅଛୁ କଛୁ ହିଙ୍ଗୁଳ ।୩୫। ଚଳଦଳଛବି ପତ୍ରପନ୍ତିକା । ଦେଇ ମନ୍ମଥମନ୍ଦିର ମନ୍ତିକ । ତାହା ଲୋହିତରେ ଚିତା ଘେନାଲା । ସେହିପରି ସେ ସମୟ ମାନାଲା । ୩୬। ରସ ବରଷା ସମୟ ପ୍ରବେଶେ । ସ୍ୱର୍ଣ୍ଣ ଭୂମିରେ ଇନ୍ଦ୍ରଗୋପ କି ସେ । ଭାଜ ସନ୍ଦେହ ହୁଅନ୍ତେ ନିଷ୍ଚୟ । କରି ହୃଦୟ ରସାନନ୍ଦମୟ ।୩୭। ଉଭା ହୁଅନ୍ତେ ହସି ମଥା ପୋତି । ପାଟ ବଢ଼ାଇ ଦେଲା ବାସବତୀ । ଲାଜମୋହମିଶ୍ରିତ କରି ମନ । କରି ମଣିଭିତ୍ତି ଦିଗେ ଗମନ ।୩୮। ପ୍ରତିବମ୍ବିତ ବାଳାଶୋଭା ଗୃହିଁ । ଲଭି ଦ୍ୱିଗୁଣ ସୁଖ ଗୃହମୁହାଁ । କୁସୁମିତ ଦୁକୂଳକୁ ପାଲଟି । ଲାଗି ହୁଅନ୍ତେ ଲାଲ ପାଟ-ଶାଢୀ ।୩୯। ହେମଲତା ପଲ୍ଲବମୟ ହେଲା । ପରି ଦିଶିଲା ସେ ବର-ମହିଳା । ତେଣେ ଆଳୀଏ ମଣି ଚମତ୍କାର । କଲେ ପରସ୍ପରରେ ଏହି ବିଚାର ।୪୦। କାଳ ବେଳ କେ ନ ଥିବାର ନାତି । ଦେଖାଗଲା ଏ କି ବଚନ ରୀତି । କିଛୁ ଊଣା ଏକାଦଶ ବରଷ । ଜେମାମଣିକି ହୋଇଲା ବୟସ ।୪୧। ଆମ୍ଭେମାନେ ତା ଲାଗି ଲୁଗାପରି । ଶିଶୁକାଳରୁ ଥାଇ ଅନୁସରି । ନ ଥିବାରେ ଅମ୍ଭେ ତାହା ସାଥିରେ । ସ୍ୱପ୍ନେ ଏକାନ୍ତ କରି ନାହିଁ

---

୩୨ । ସୁଷମାକଳାବତୀ—ଶୋଭା ଓ ସୂକ୍ଷ୍ମକଳାର ନିଧାନ ( ଚନ୍ଦ୍ରକଳା ) । ଅଳକତଦ୍ରବସମ୍ଭବଛବି—ଅଳତାରସର ଛୁଆ ବିନ୍ଦୁ । ହେମପ୍ରାଙ୍ଗଣ—ସୁନା ଅଗଣା । ୩୩ । ନବଜବା—ନୂଆ ମନ୍ଦାର ଫୁଲ । ୩୪ । ଦେହଳୀ—ଏରୁଣ୍ଡିବନ୍ଧ; ତାହା ଲାଗି କୁସୁମ୍ବାଚେଲାଞ୍ଚଳ – ରତିର ପିନ୍ଧା ରଙ୍ଗଶାଢ଼ୀର ପଣନ୍ତ । ୩୫ । ପରିଣତତରତାମ୍ବୁଳ—ଅତି ପାଚିଲା ପାନ । ୩୬ । ମନ୍ମଥମନ୍ଦିର ( କଣ୍ଠି ) ଚଳଦଳଛବି ( ଅଶ୍ୱତ୍ଥପତ୍ର ) ରୂପ ପତ୍ରପନ୍ତିକ (ଶବ୍ଦକୁ ) ମନ୍ତି ଦେଇ ତା ରକ୍ତରେ ଚିତା ଘେନାଲା କି ? ୩୭ । ରସବରଷା ସମୟ—ଜଳବୃଷ୍ଟି କାଳ, ଇନ୍ଦ୍ରଗୋପ-ସାଧବ ବୋହୂ ପୋକ । ୪୦ । ହେମଲତା...ସୁବର୍ଣ୍ଣର ଲତାରେ ପତ୍ର ଧଇଲା କି ?

ଥରେ । ୪୨ । ଲଭେ ନ ବିରହ ଅନୁରୋଧକୁ । ବିଜେ କଲାବେଳେ ଅବରୋଧକୁ । ବାସବଦତ୍ତାଙ୍କ ନେଲେ ଠାରି ଦେଲି । ଆଜ ବିଜନରେ କି ବିରହିଲି ।୪୩। ଆଜ୍ଞା ଅଣ୍ଡିତେ କି କାଳ ହରିବି । ବୁଦ୍ଧି ଯେ ଯାହା ଉପାୟ କରିବି । ଶୁଣି ଜଣେ ଉହିଲି ଏ ବାଣୀକି । ଏହାପରି ସିନା ହେବ ଏଣିକି । ୪୪ । କହୁଥିଲେ ବୋଲୁଥିବା ମଣିମା । ମନକଥାଟି କେହି ନ ଜାଣିମା । ନିରନ୍ତରେ ଏଥର ଫୁଲବାଣ । କେମାଠାରେ କରିବ ମନ୍ତ୍ରୀପଣ । ୪୫ । ଜାଣି ତାର ଏ ସମୟ ମରଜି । କେତେ ଗଲେଣି ସ୍ୱସ୍ଥାନ ବରଜି । ଗତଜବ ଚରଣରୁ ନିରାଶ । ହୋଇ କଲାଣି ନୟନେ ନିବାସ । ୪୬ । ଅବିବେକ ପୃଥୁଭାବ ପଳାଇ । ସ୍ଥାନ କଲା ନିତମ୍ବବିମ୍ବେ ଯାଇଁ । ରସ କୃଶତା ହୃଦୟରୁ ଖସି । ହୋଇଲାଣି ମଧ୍ୟଦେଶ-ନିବାସୀ ।୪୭। ତେଜି କାର୍କଶ ମନ ନଗରିକି । କଲା ଅବଲମ୍ବ ବକ୍ଷସରିକି । ଦେଖୁନାହାଁନ୍ତି ଏବେ ସେ ଦୁ୍ୟତିକି । ଜଗତ୍ରୟ ନୟନସମ୍ପତ୍ତିକି । ୪୮ । ଏହି ସମୟେ ଚେଟୀ ବିନିଚୁଡ଼ି । ଦୃଶ୍ୟ ହୋଇଲା ଘେନି ଲଟଶାଢ଼ୀ । ସେ କି ସଂଚରିବା ହେମମଞ୍ଜରି । ଅଛି ସିତ କୁସୁମଗୁଚ୍ଛ ଧରି । ୪୯ । ସଜରିଭ ଲୋଭରେ ଭୃଙ୍ଗରାଜି । ଗୁରିପାଶେ ଘେରୁଅଛି ଗରଜି । ଅବା ଅଳୀଙ୍କ ସନ୍ଦେହ ଛୁଡ଼ିଲା । ଅଳିଶ୍ରେଣୀ ଦମ୍ଭେ ବ୍ୟୋମେ ଉଡ଼ିଲା । ୫୦ । ଖେଳା ଚପଳ କଳହଂସୀ ପରି । ଅତି ହରଷେ ଧାଇଁ ସହଚରୀ । ଲଜ୍ଜାନମ୍ରମୁଖୀଙ୍କ ପରିହାସେ । ଘେରି ରହି ଜଣାଇଲେ ଏ ରସେ । ୫୧ । ସଖୀ ଏଡ଼େ ନିର୍ମଳ ହୃଦପଟ । ଅଙ୍କେ ଅଙ୍ଗେ ବହିଲା ତ କପଟ । କରିଥାଇ ଯେ ତେଡ଼େ ଅନୁରାଗ । ଆଜ କେଉଁ ଭାଗ୍ୟରୁ ଦେବୁ ଭାଗ । ୫୨ । ଲୁଚିଲେ କି

---

୪୬ । ଗତଜବ···ସେ ବର୍ତ୍ତମାନ ଚଞ୍ଚଳଗତି ଛାଡ଼ି ଚଞ୍ଚଳନେତ୍ରୀ ହେଲାଣି । ୪୭ । ଅବିବେକ···ବିବେକଶୂନ୍ୟତାରୂପ ସ୍ଥୂଳତା ପଳାଇ ନିତମ୍ବରେ ରହିଲା ଅର୍ଥାତ୍ ବିବେକ ବୃଦ୍ଧି ହେଲା ଓ ନିତମ୍ବ ସ୍ଥୂଳ ହେଲା । ରସକୃଶତା···କ୍ଷୀଣରସଭାବ ହୃଦୟରୁ ଯାଇ ମଧ୍ୟଦେଶନିବାସୀ ହେଲାଣି (କଟୀଦେଶରେ ବାସ କଲାଣି) ଅର୍ଥାତ୍ ହୃଦୟ ରସପୂର୍ଣ୍ଣ ଓ କଟୀ କ୍ଷୀଣ ହେଲାଣି । ୪୮ । କର୍କଶତା ମନରୂପ ନଗରକୁ ଛାଡ଼ି ଏବେ ଏହାର ବକ୍ଷ ଦେଶରେ ବାସ କରୁଛି (ଏହାର କୁଚଦ୍ୱୟ ଏବେ କର୍କଶ ହେଲାଣି) । ୪୯ । ଚେଟୀ—ଦାସୀ, ଲଟଶାଢ଼ୀ—ପୁରୁଣା ପିନ୍ଧାଶାଢ଼ୀ, ସଞ୍ଚରିବା ହେମମଞ୍ଜରୀ—ଗୁଲୁଥିବା ସ୍ୱର୍ଣ୍ଣବୃନ୍ତ କି ? ସିତ-କୁସୁମଗୁଚ୍ଛ—ଧଳା ଫୁଲପେଣ୍ଡା । ୫୦ । ଅଳିଶ୍ରେଣୀଦମ୍ଭରେ—ଭ୍ରମର ପଂକ୍ତି

ଲୁଚେ ଏହି ମାନ । ଫୁଲବାସନା ମାନଙ୍କି କି ଅନ ।• ଘନ ଅଚ୍ଛନ୍ନ କଲେ ଲୋକନେତ୍ର । ଘନେ ଅଚ୍ଛନ୍ନ ହୁଅଇ କି ମିତ୍ର । ୫୩ । ଦେଇ ଶିଖରେ କରକ୍କେଶଳୟୁ । ଜେମା ଲୁଗୁଛନ୍ତୁ କି ସୁରାଳୟୁ । କର କୋଡ଼େ କି ସମୁଦ୍ର ଲୁଚିବ । ସତ୍ୟ ହେଲେ ଏ କାହାକୁ ରୁଚିବ । ୫୪। ଘୁଞ୍ଚଇପର କର ତୋର ଭଜନ । ଏତେ ମାନକୁ ନୋହିଲୁ ଭାଜନ । ଯେତେବେଳେ କୁରଙ୍ଗଶିଶୁଦୃଶା । ନେବୁ ରମଣଅଙ୍କେ ବସି କାଶା । ୫୫ । ମଞ୍ଜୁ ମଞ୍ଜୀର ବାଗୁଳ ରସନା । କଚ୍ଛି କହିବେ ଏହି ଦୁହେଁ ସିନା । ତୁ ତ କହିବା ପର ଦିଶୁ ନାହିଁ । ପଗୁରିବାକୁ ଅମ୍ଭ ବଳ କାହିଁ । ୫୬ । ଶୁଣି ଲବଙ୍ଗକଳିକା ହସିଲା । ଛଳି ସଖୀଙ୍କି ଏ ବାଣୀ ଭାଷିଲା । ମନ ଧର କହୁଅଛୁ ସହିକ । କାଳଯାକ ସେବାଫଳ ଏହି କି । ୫୭ । ନେତ୍ରସମିତ୍ତି କିଛି ନ ଦେଖିବ । ଭତ୍ତିତଟରେ କେ ପୁଣି ଲଖିବ । ଦନେ ହେଲେ କି ମରଦନ ବେଳେ । ସ୍ତନତଟକୁ ନ ଦେଖିବା ତୋଳେ । ୫୮ । ଶିଶୁଶଶୀ ତ ସବୁ ଦେବ କହି । ଅଜ ବଡ ବଡ଼ଙ୍କ ଯାଏ କାହିଁ । ବାଲା ବୋଲିବ ଅବା ଛହିଁ ବାସ । ଥିବ ନିବଢ଼େ କାହିଁ ଅବକାଶ । ୫୯ । ବାସ ସିନା ସମସ୍ତ ପ୍ରକାଶିବ । ପୁଣି ରଦବାସ ତୁଲେ ମିଶିବ । ଦୁହେଁ ମିଶି କହିବେ ସବୁ ଜଣା । ଅହୋ କି କରିବଟି ସୁଲକ୍ଷଣା । ୬୦ । ଏବଂବିଧ ପରିହାସ ନ ସରୁ । ସରୁମଧ୍ୟା ଯାଇଁ ଜେମା ପାଶରୁ । ଜଣାଇଲା ଶ୍ରୀ ମହାଦେଇ ପାଶେ । ସେ ତ ଜେମା ଜନନୀ ଅତି ତୋଷେ । ୬୧ । ନିଜ କରରୋପିତ ସୂନାଲତା । ସତେ ହୋଇଲା ମଣି କୁସୁମିତା । ମୋଦ ଆଖେଟେ ଚିତ୍ତକୁ ସଧାଇ । ଦେଲେ ନିଜ ଅଙ୍ଗଭୂଷା ବଧାଇ । ୬୨ । ଏ ସମୟେ

---

ବ୍ୟାଜରେ । ୫୩ । ଘନ—ମେଘ, ମିତ୍ର—ସୂର୍ଯ୍ୟ । ୫୪ । ଦେଇ ଶିଖରେ··· ଅଗ୍ରଭାଗରେ କରରୂପ ନୂଆ ପଲ୍ଲବଟିଏ ଘୋଡ଼ାଇ ଜେମା ( ଚନ୍ଦ୍ରକଳା ) ସୁରାଳୟୁ ( ମେରୁପର୍ବତ ) କୁ ଲୁଗୁଇଅଛୁ କି ? । ୫୫ । କୁରଙ୍ଗଶିଶୁଦୃଶା— ବାଳମୃଗାକ୍ଷୀ । ୫୬ । ମଞ୍ଜୁ ମଞ୍ଜୀର—ମନୋହର ନୂପୁର ( ଚରଣ ଅଳଙ୍କାର ), ରସନା—ଚନ୍ଦ୍ରହାର ( ଅଣ୍ଟାର ଅଳଙ୍କାର ) । ୫୮ । ଭତ୍ତିତଟରେ—କାନ୍ଥ ପାଖରେ । ୫୯ । ଶିଶୁ ଶଶୀ—ବାଳଚନ୍ଦ୍ର ( ନଖକ୍ଷତ ), ବାସ— ବସ୍ତ୍ର, ଅବକାଶ—ସ୍ଥାନ । ୬୦ । ରଦବାସ —ଅଧର । ୬୧ । ସରୁମଧ୍ୟା—ଜଣେ ସଖୀ, ମହାଦେଈ—ଚନ୍ଦ୍ରକଳାର ମା । ୬୨ । ମୋଦଆଖେଟେ···ଆନନ୍ଦରୂପ ମୃଗୟାରେ ମନକୁ ସାଧନ କରି ଅର୍ଥାତ୍ ମନରେ ପ୍ରକୃତ ଆନନ୍ଦ ଅନୁଭବ କରି । ବଧାଇ—ପାରିତୋଷିକ, ଉପହାର ।

ଭେଟି ଅନ୍ୟ ବନିତା । ପାଠକଠିମାକରରନୃସୁତା । ଜେମା କୁସୁମୋତ୍ସବ ଯୋଗ ଧାଷ୍ଠୀ । ଲେଖି ବଢ଼ାଇଦେଲା ପଞ୍ଜିକାଚି । ୬୩ । ମହାଦେବୀ ତ ପରମ ବିଦୁଷୀ । ତହିଁ ଗୃହଁ ସୁଭାଗ୍ୟ ଯୋଗରାଶି । ଗଦ ଗଦ ସ୍ୱରେ ହୋଇ ସହାସ । କଲେ ଶରମନ୍ଦର ଫରମାସ । ୬୪ । ଆଜ୍ଞା ପ୍ରମାଣେ ବାଲା ସହଚରୀ । ଘେନି ସଙ୍ଗତେ ସର୍ବପରଗୃହୀ । ରାମ ବିବାହ-ଗୀତ ହୁଳହୁଳି । ନାଦେ ଭରିଲେ କଲେ ମହୀସ୍ଥଳୀ । ୬୫ । ବୀଣା ରବା ପଖାଉଜ ମର୍ଦ୍ଦଳ । ଭେରୀ ଅରବୀ ତେଲିଙ୍ଗୀ କଂସାଳ । ଅଦ୍ୟ ବାଦ୍ୟ ନାଦେ ସେ ଭୂମଣ୍ଡଳୀ । ସିନ୍ଧୁ ଭୁଲେ କି ଆରମ୍ଭିଲା କଳି । ୬୬ । ଅତିପ୍ରବଳ ହୋଇ ବାଜୁଁ ବାଜା । ଉଠିଆସି ସଭାରୁ ମହାରାଜା । ଦେବୀ ପ୍ରମୋଦ ଭେଟରୁ ଜାଣିଲେ । ଯନୃକର ବୋଲି ମୋଦେ ଭଣିଲେ ।୬୭। ତହୁଁ ବାଲା ସଖୀ ସର୍ବ ବିମ୍ବୋଷ୍ଠୀ । ମାଷ ତଣ୍ଡୁଲେ ବନାଇଲେ କୋଷ୍ଠୀ । ଗୃହକୋଣେ-ପଞ୍ଚବର୍ଣ୍ଣ କୋଠୀର । ସ୍ଥିରତର ପୋତିଲେ ଗୃହ ତୀର ।୬୮। ଗୃହ ପ୍ରହର କରିବାକୁ ରକ୍ଷା । ଗୃହ ପ୍ରହାର ପୋତିଲେ କି ଦକ୍ଷା । ରସକଳା ହସି ବୋଲେ ତହିଁ କି । ବାଲା ସମ୍ଭାଳି ପାରିବ ନାହିଁ କି ।୬୯। ଏକ ଅତନୁ ମାରର ଏ ଗୁଣ । ଏବେ ସତନୁ ଗୃହ ମାରଗଣ । ଜଗିରହିଲେ ରଜନୀ ଦିବସ । ସୁକୁମାରୀ ନୋହିବ କି ବିବଶ । ୭୦ । ପୁଣି ଦେଲେ ଗୃହୁ ଚେଲ ବେଢ଼ାଇ । ଦେଲା ଏହି ଊହକୁ ସେ ବଢ଼ାଇ । ହରି ଆଣି ତ୍ରୈଲୋକ ସମ୍ପତ୍ତିକି । ତହିଁ ଲୁଚାଇବ ପ୍ରଜାପତିକି ।୭୧ ଗୃହପାର୍ଶ୍ୱେ ଶିଶୁରମ୍ଭାସ୍ତମ୍ଭ । ପାଖେ ରଖିଲେ ସୁନା ପୂର୍ଣ୍ଣକୁମ୍ଭ । ପିକ-ବଲ୍ଲଭପଲ୍ଲବ ମାଳିକା । କଲେ ତୋରଣ ତରୁଣ ବାଳିକା ।୭୨।

---

୬୩ । ପାଠକଠିମାକରରନୃସୁତା—ପ୍ରଧାନ ଜ୍ୟୋତଷୀ ଖଡ୍ଗୀରାଜଙ୍କ ଝିଅ । କୁସୁମୋତ୍ସବଯୋଗଧାଷ୍ଠୀ—ଋତୁମତୀ ହେବା ଯୋଗନକ୍ଷତ୍ରାଦିର ଜ୍ୟୋତଷ ଗଣନା । ୬୪ । ଶରମନ୍ଦର—କ୍ଷତ୍ରିୟ କନ୍ୟାର ପ୍ରଥମ ଋତୁସ୍ନାନରେ କରାଯିବା ଉତ୍ସବ । ( ପରେ ଏହି ଉତ୍ସବର ବର୍ଣ୍ଣନା ହେଉଛି ) । ୬୮ । ମାଷ—ବିରି; ସ୍ଥିରତର — ଦୃଢ଼ଭାବରେ । ୭୦ । ଶରୀର ନ ଥିବା ଏକ ମାର ( କନ୍ଦର୍ପ )ର ତ ଏତେ ଗୁଣ, ବର୍ତ୍ତମାନ ଶରୀର ଥିବା ଗୃହଗୋଷ୍ଠ ମାର୍ଗଣ ( ଶର ) ଦିନରାତି ଜଗି ରହିଲେ ଏ ବାଳିକା ବିବଶ (ଅସ୍ଥିର) ହୋଇ ପଡ଼ିବ ନାହିଁ କି ? ୭୧ । ପୁଣି ଦେଲେ··· ···ତା ପରେ ସଖୀମାନେ ସେହି ଶରମନ୍ଦରକୁ ଗୃହୁଚେଲ ( ସୁନ୍ଦର ବସ୍ତ୍ର ) ଦ୍ୱାରା ଆବୃତ କରିଦେଲେ । ସେ ଆବରଣ ଏହି ଊହ ( ଅନୁମାନ )କୁ ବଢ଼ାଇଦେଲା ଅର୍ଥାତ୍ ତହିଁରୁ ଏପରି ଅନୁମାନ ହେଲା—ବ୍ରହ୍ମା ତ୍ରିଭୁବନର ସମ୍ପତ୍ତିକି ଚୋରାଇ ଆଣି ଏହିଠାରେ ଲୁଚାଇବ କି ? ୭୨ । ପିକବଲ୍ଲଭ—ଆମ୍ବଗଛର ନୂଆପତ୍ର ।

ଟାଣିଦେଲେ ବଶବ ଚନ୍ଦ୍ରାତପ । କୋଣେ ଲମ୍ବାଇ ନୂଆ କୁଞ୍ଚ ଥୋପ । ଜେମାରୁଚ ଜଣିଲ ସାତଦ୍ୱୀପ । ବୋଲ ସୂର୍ପେ ରଖିଲେ ସାତଦୀପ । ୭୩ । ତଦନନ୍ତର ତରୁଣୀବରକୁ । ବଜେ କରାଇ ଶରମନ୍ଦରକୁ । ଝିଲ୍ଲୀ ଖଜା ଖଇରଚୁର ନାଡ଼ୀ । ଲଡୁ ବସନ୍ତ ଆରଷା ପାପୁଡ଼ି । ୭୪ । ଜଗନ୍ନାଥବଲ୍ଲଭ ହଂସକେଳ । ମନୋହର ତାଳମ୍ବ ସରପୁଳୀ । ଖଜା ପେଡ଼ା ଦବ୍ୟପୁରୀ ଛିପୁରୀ । ଖଣ୍ଡମଣ୍ଡା କାନ୍ତି ପୁର ଇଣ୍ଡୁର । ୭୫ । ପାରଜାତ ସରଖଇ ଖୁରୁମା । ସର ସରପାପୁଡ଼ି ଅନୁପମା । କ୍ଷୀର ଝିଲ୍ଲୀସା ବାସ ଅଟକାଳ । ବଡ଼ା ସୁପୁରୀ କାକରା ଶୁଆଲୀ । ୭୬ । ଦେବା ନେବା ଖାଇବା ରଖାଇବା । ବାଣ୍ଟି ଗିର ସଦୃଶ ପକାଇବା । ଏହୁପର ସେ ରାଜଧାନୀ-ଯାକ । ପ୍ରତି ମନ୍ଦରେ ଉତ୍ସବ ଅସ୍ତୋକ । ୭୭ । ସେ ନଗରେ ତ ଦୁର୍ଲ୍ଲଭ ଅରାତ । ସେହୁ ସାତ ଦନ ହେଲା ଅ-ରାତ । ସାର ଶରପୁରବସା ବଧିକ । ତହୁଁ ଅବତାର ଶୋଭନାଧିକ । ୭୮ । ଶତହ୍ରଦା ଗୋଟିଏ ଏକ-ମେଳେ । ସାତ ଶାତକୁମ୍ଭ କୁମ୍ଭମଙ୍ଗଳେ । କାହିଁ କୁଙ୍କୁମ କାହିଁ ଗନ୍ଧସାର । କାହିଁ ଭର କୁରଙ୍ଗମଦସାର । ୭୯ । ଦଳ ଗୋଳ ସେ ସକଳ ଶୁଭାଙ୍ଗୀ । ପରସ୍ପରେ ହୋଇଲେ ଫିଙ୍ଗାଫିଙ୍ଗି । ଏକ ଉପରେ ପଡ଼ଲେ ଆରକେ । ଦେଖା ନାହିଁ ସେ ଉତ୍ସବ ତିଲୋକେ । ୮୦ । ନୀରେ ପନୀରେ ତଡ଼ ଉଚ୍ଛଳଲେ । ସ୍ନାନ କରାଇ ନାନା ତୀର୍ଥଜଳେ । ଦବ୍ୟ କଷାବାସରେ ଅଙ୍ଗ ପୋଛି । ଦେଲେ ପ୍ରଲମ୍ବ କେଶପାଶ ଉଞ୍ଛି । ୮୧ । ନୂଆବାସ ନବ ରତ୍ନାଭରଣ । କର ଜଗତୀଭୂଷାକୁ ଶରଣ । ଧନ୍ୟ ମଣିଲେ ନଜ ଜନମକୁ । ଘେନ ବାଳା ଅଙ୍ଗୀକାରକମକୁ । ୮୨ । ଦେଲେ ଅଣାଇ ମୁଖ୍ୟ

---

୭୩ । ଟାଣିଦେଲେ···"ସୁନ୍ଦର ଚନ୍ଦ୍ରୁଆ ଟାଣିଦେଇ ତା ଘରକୋଣରେ ନୂଆଲୁଗା କୁଞ୍ଚ ଥୋପ କର ଓହଳାଇ ଦେଲେ" । ସାତଦ୍ୱୀପ—ପ୍ରାଚୀନ ମତରେ ପୃଥିବୀ ସାତଗୋଟି ଦ୍ୱୀପର ସମଷ୍ଟି, ସୂର୍ପ—କୁଲା । ୭୭ । ଅସ୍ତୋକ ଉତ୍ସବ—ବଡ଼ ଉତ୍ସବ । ୭୮ । ଅରାତ—ଶତ୍ରୁ ଓ ରାତର ଅଭାବ (ଦବସ) । ଶରପୁରବସା ବଧି—ଶରମନ୍ଦରରେ ବସିବା ବଧାନ । ୭୯ । ଶତହ୍ରଦା ଗୋଟିଏ—ବଜୁଳି ପର ଗୌରାଙ୍ଗୀମାନେ; ସାତ ଶାତକୁମ୍ଭ କୁମ୍ଭମଣ୍ଡଳେ—ସାତଗୋଟି ସୁନା ମାଠିଆରେ । କୁରଙ୍ଗ ମଦସାର—ଉତ୍କୃଷ୍ଟ କସ୍ତୁରୀ । ୮୦ । ଶୁଭାଙ୍ଗୀ—ସୁନ୍ଦରୀ ସ୍ତ୍ରୀ । ୮୧ । ପନୀର—ସୁବାସିତ ଜଳ, ତଡ଼—ପ୍ରାନ୍ତ ( ସେହୁ ମନ୍ଦରର ) ଉଚ୍ଛଳଲେ—

ଦ୍ୱିଜକୁଳ । ଧେନୁ ଧରା ହିରଣ୍ୟ ଅନ୍ନ ଚେଳ । ଦାନାନନ୍ତରେ କୁଶେ ତୀର୍ଥୋଦକ । ଘେନି ପୁରୋଧା କଲେ ଅଭିଷେକ । ୮୩ । ଇଷ୍ଟ ଦେବତା ତ୍ରିପୁରସୁନ୍ଦରୀ । ଦରଶନବିଜୟ ବେଳ ଶିରୀ । ସ୍କନ୍ଦ ବିସ୍ତାର ହେବା ଭୟେ ଦବ । ଅତ ବର୍ଣ୍ଣନା କଲି ନାହିଁ କବ । ୮୪ । ଠାକୁରାଣୀଙ୍କ ଚଳନ୍ତ ପ୍ରତିମା । ପର ବିରାଜିଲି ସେ ରାଜଜେମା । ଜୀବ ଅବା ପ୍ରତିବିମ୍ବେ ଘଟିଲି । ସେ କି ଜଗଜ୍ଜନନୀଙ୍କି ଭେଟିଲି । ୮୫ । ଖଞ୍ଜି ପ୍ରସାଦ ଫୁଲମାଳା ଗଲେ । ତହୁଁ ବିଜେ କରାଇଲେ ସଲ୍ଲୀଳେ । ଭେଟାଇବାକୁ ନେଇଁ ଜନନୀଙ୍କି । ବରବାରଣରାଜଗମନୀଙ୍କି । ୮୬ । ଦ୍ୱାରେ ପ୍ରବେଶ ହେଲି କ୍ଷଣେ ବାଳା । ଦେଖି ନାଦେଶୁଁ ଆସି ବାଳାମାଳା । ହୁଳହୁଳିମିଶା ଗୀତ ଗାଇଲେ । ଅନ୍ନ ଗୋମୟରେ ନିଉଁଛାଇଲେ । ୮୭ । ଚନ୍ଦ୍ରାନନାର ବନ୍ଦାପନା ବିଧି । ସାରି ସକଳ କାମକଳାନିଧି । ମୃଦୁ ସୁନ୍ଦର ଶ୍ରୀହସ୍ତେ ଜେମାର । ଧାଆଇଲେ ଅର୍ଘ୍ୟକୁ ଅର୍ଯ୍ୟମାର । ୮୮ । ଭଣ୍ଡାକଲେ ମାତାଙ୍କ ଆଗେ ନେଇ । ଦେଲେ ଯୋଡ଼ା ପାଟଶାଢ଼ୀ ବଢ଼ାଇ । ଗୁରୁତରମନ୍ଦାକ୍ଷେ ମନ୍ଦେ ହସି । ନିଉଁଛାଳି କରି ଶୋଭାସରସୀ । ୮୯ । ମହୀ ମଥାରେ ଛୁଇଁ ଜୁହାରିଲି । ରାମା ଉପମା ମଣ୍ଡଳୀ ସାରିଲି । ତୋଳି ଜନନୀ ସ୍ନେହସ୍ରୋତେ ପଡ଼ି । ମୁଖଚନ୍ଦ୍ରରେ ଚୁମ୍ବି ଗାଢ଼େ ଭିଡ଼ି । ୯୦ । ଶିଶୁ ସମୟୁଁ ବଳିଆଇ ଗେଲେ । ଧରି ଚିବୁକ ଏ ଆଶିଷ ଦେଲେ । ଜେମା ହାତୀ ମୋ ନୟନସମ୍ପତ୍ତି । ବାବୁ ହୁଅ ପରମ ଭାଗ୍ୟବତୀ । ୯୧ । ଅନୁରୂପ ଚକ୍ରବର୍ତ୍ତୀ କୁମାର । କର ଗ୍ରହଣ କରୁ ଧନ ମୋର । କାଳଯାକ ତୋ ପଦ ଅଳକ୍ତ । ନାଥ ମୁକୁଟକରୁ ଆରକ୍ତ ।୯୨। ଯାଇ ଶରୀର ପରି ଚିରକାଳ । ଗୁଣମଣ୍ଡଳେ ମଣ୍ଡି ଦୁଇ କୂଳ । କର

---

ଉଚ୍ଛୁଳାଇଦେଲା । କଷାବାସ—ରଞ୍ଜିତ ବସ୍ତ୍ର । ୮୩ । ଧେନୁ—ଗାଈ, ଧରା—ଭୂମି, ହିରଣ୍ୟ—ସୁନା, ଚେଳ—ବସ୍ତ୍ର, ପୁରୋଧା—ପୁରୋହିତ । ୮୫ । ପ୍ରତିବିମ୍ବ—ପ୍ରତିମା, ଜୀବ···ପ୍ରତିମା ସଜୀବ ହୋଇ ଜଗଜ୍ଜନନୀ (ଦୁର୍ଗାଙ୍କୁ) ଭେଟିଲି କି ? ୮୬ । ସଲ୍ଲୀଳେ —କୌତୁକରେ । ୮୭ । ବାଳାମାଳା—ବାଳିକାସମୂହ । ନିଉଁଛାଇଲେ—ବନ୍ଦାଇଲେ । ୮୮ । ଅର୍ଯ୍ୟମା—ସୂର୍ଯ୍ୟ । ୮୯ । ଗୁରୁତର ମନ୍ଦାକ୍ଷେ—ଅତି ଲଜ୍ଜାରେ । ନିଉଁଛାଳି – ବନ୍ଦନାକରି, ଶୋଭାସରସୀ—ସୌନ୍ଦର୍ଯ୍ୟନିଧାନ (ଚନ୍ଦ୍ରକଳା) ୯୨ । କାଳଯାକ········ସବୁଦିନ ତୋ ପାଦ ଅଳକ୍ତ ( ଅଳତା ) ନାଥ ମୁକୁଟ ( ସ୍ୱାମୀର ମୁକୁଟ )କୁ ଆରକ୍ତ କରୁ ଅର୍ଥାତ୍ ସବୁଦିନେ ସ୍ୱାମୀ ତୋର ପଦାନତ

ଧସ୍ୱରେ ଧର୍ମକୁ ଅମନ୍ଦ । ହେଲ କୁସୁମୋଦ୍‌ଗମ ନାମ ସ୍କନ୍ଦ ।୯୩। ନାଗାନ୍ତକ ଯାହାଙ୍କର ବାହନ । ଅରଦରେ ଅରଦାର ଦହନ । ଦୁର୍ଗା ମାଧବ ପଦଯୁଗଦ୍ୱୟ । ଭଜେ ଶ୍ରୀରାମଚନ୍ଦ୍ର ଛୋଟରାୟ । ୯୪ ।

---

## ନବମ ଛାନ୍ଦ

### ରାଗ—ରସକୁଲ୍ୟା

### ( ବେଶ ବର୍ଣ୍ଣନା )

ତଦାନନ୍ତରେ ଶୁଣ ସହୃଦୟେ । ଦନେ କେମା ଯାମଦ୍ୱୟ ସମୟେ । ପ୍ରିୟ ବୟସ୍ୟାଙ୍କୁ ଘେନି ସମୀପେ । ବିରାଜ ମୁକୁରମୟ ମଣ୍ଡପେ ସେ । ଲେଖିଲ ବିଚିତ୍ର ପଟ ଯେ । ଶୋଭାମୃତକୂପ ଜନନୀଙ୍କ ରୂପ ସେ ପଟେ କଲ ପ୍ରକଟ ହେ । ୧ । ଊଣାମାତ୍ର ଗୂଢ଼ ଗିର ପଲକ । ବନାଇଲ ବାଲୀ- ପ୍ରତପ୍ରତୀକ । ସେହି ଶୋଭା ସେହି ମୃଦୁବୟସ । ଅକ୍ଷୀଣ ଦକ୍ଷିଣ ଦେଶର ବେଶ ସେ । ଲେଖିଲ ବାଳାରତନ ଯେ । ଦେଖି ଦେଖାଇବା ପ୍ରମୋଦ ଅମଳୁ ନୋହିଥିଲ ସାବଧାନ ଯେ । ୨ । ଏହି ସମୟ ସଉଭାଗ୍ୟବଶେ । ସେ ପୁର ମଣିପ୍ରାଙ୍ଗଣ ପ୍ରଦେଶେ । ରଟିଲ କଠାଉଯୁତ କଙ୍କିଣୀ । ଅତରଙ୍କିତେ ବିଜେ କଲେ ରାଣୀ ତା । ଜାଣି ସେ ଜଗତୀଶୋଭା ଯେ । ଭାଜି ପ୍ରତପଲ ସଖୀଙ୍କ ମଣ୍ଡଳ ଚୁଲେ ହେଲ ବେଗେ ଲଭା ଯେ ।୩। ଲଜ୍ଜା

---

ହୋଇ ରହୁ । ୯୩ । ସୁଣମଣ୍ଡଳେ—ସୁଣ ସମୂହଦ୍ୱାରା । ଅମନ୍ଦ—ଉନ୍ନତ, ବଡ଼ । ଅରଦରେ—ଚକ୍ର ଓ ଶଙ୍ଖଦ୍ୱାରା, ଅରଦର—ଶତ୍ରୁଭୟ ।

---

ନବମ ଛନ୍ଦ

୧ । ପଟ—ଚିତ୍ରପଟ, ଶୋଭାମୃତକୂପ—ସୌନ୍ଦର୍ଯ୍ୟରୂପ ଅମୃତର ଆଧାର (ଜନନୀ) । ୨ । ଊଣାମାତ୍ର—କେବଳ, ନ ଥିବା; ଗୂଢ଼—ଗଢ଼, ଗିର—କଥା, ପଲକ—ପକ୍ଷ୍ମପାତ, ପ୍ରତୀପ୍ରତୀକ—ପ୍ରତ୍ୟେକ ଅଙ୍ଗ । ଅକ୍ଷୀଣ—ଯାହା କେବେହେଁ ମ୍ଲାନ ହୁଏ ନାହିଁ, ପ୍ରମୋଦ ଅମଳୁ—ଆନନ୍ଦଜନିତ ଉଦ୍‌ବେଗ ହେତୁରୁ । ୩ । ଭାଜି ପ୍ରତପଲ···ମା'ଙ୍କ ଆଖିରେ ଯେପରି ନ ପଡ଼ିବ ସେଥିପାଇଁ

ଗଉରବ ମିଶ୍ରିତ ହାସ । ସୁଧାମୟ କରି ଦଶନବାସ । ବାସରେ କଲେ ହେଲେ ଅପ୍ରକଟ । ଫୁଟ ଫୁଟ ଦଶିବାରୁ ସେ ପଟ ଯେ । ଛନ୍ନ କରି ନ ପାରିଲା ଯେ । ମେନାଙ୍କୁ ମୀନାଙ୍କପରନାରୀ ପରି ଜନନୀଙ୍କି ଜୁହାରିଲା ଯେ । ୪ । ଆଶିଷପୂର୍ବକ ଅଶେଷ ଚୁମ୍ବେ । ଉଲ୍ଲସି ଘଞ୍ଚ ରୋମାଞ୍ଚକଦମ୍ବେ । ତନୁଜାଙ୍କୁ ବିଜେ କରାଇ କୋଳେ । ତନୁ ଜାକୁ ଜାକୁ ପ୍ରଣୟିବଳେ ସେ । ସେ ଚନ୍ଦ୍ରେ ପଡ଼ିଲା ଦୃଷ୍ଟି ଯେ । ଚିନ୍ତିଲେ ପ୍ରପଞ୍ଚ ଜୟୀକୁ ବିରଞ୍ଚି କଲା କି ଏ ଚନ୍ଦ୍ର ସୃଷ୍ଟି ଯେ । ୫ । ପଟେ ପଟୁତର ଚନ୍ଦ୍ରରମାଙ୍କୁ । ଉତ୍ସଙ୍ଗରେ ଚନ୍ଦ୍ରକଳା ଜେମାଙ୍କୁ । ଭକ୍ତି ପ୍ରତିଫଳ ସୁପ୍ରତିମାଙ୍କୁ । ଚୁହିଁ ନ କଳି ଲବଣ୍ୟ-ସୀମାଙ୍କୁ ଯେ । ଗୁଣଗଣ ଅନବଦ୍ୟା ଯେ । ବାଳିକା ଆଳୀଙ୍କି ଚୁହିଁ ପଚାରିଲେ କାହାର ଏ ଶିଳ୍ପବିଦ୍ୟା ଯେ । ୬ । ଏ ଗିରେ କର କରି କୋରକିତ । ଜଣାଇଲେ ଜଣେ ଯେମା ସଙ୍ଗାତ । ଜନ୍ମୁ ତ ତୁମ୍ଭର ଉତ୍ସଙ୍ଗ ଖେଳ । ଅଭ୍ୟସ୍ତ କରି ହରିଅଛୁ କାଳ ଯେ । ଏବେ ତ ଏ ଚନ୍ଦ୍ରମୁହୀଁ ଯେ । ତାରୁଣ୍ୟ ଜାତ ଲଜ୍ଜରୁ ଶ୍ରୀଙ୍ଗମୁରେ ଉଭା ହୋଇ ପାରୁ ନାହିଁ ଯେ । ୭ । ମୋ ସହି ନ ସହେ ବିଶ୍ଳେଷ କ୍ଳେଶ । କରି ତୁମ୍ଭ ପ୍ରତିକୃତିବିନ୍ୟାସ । ପଛୁଡ଼ିବାକାଳେ ଛନ୍ଦ ପଲ୍ୟଙ୍କେ । ଥିବା ପରି ଘେନି ତୁମ୍ଭର ଅଙ୍କେ ସେ । ସୁଖେ ନେବ କାଳ ପୁଣି ଯେ । ବାତ୍ସଲ୍ୟ ପ୍ରମୋଦ ରସଗଦଗଦ ଏହା ଶୁଣି ହେଲେ ରାଣୀ ଯେ । ୮ । ଚନ୍ଦ୍ରାନନ ଚୁରୁ ଚିବୁକେ ପାଣି । ଦେଇ କହିଲେ ଏ ସପ୍ରେମବାଣୀ । ଆହା ମୁଁ ମରଇ ତ ପ୍ରାଣବନ୍ଧୁ । ମୋ ଦୁଃଖସଙ୍ଗାଳି ଲାବଣ୍ୟସିନ୍ଧୁ ତୁ । କାଲି ଖେଳୁଥିଲୁ ଧୂଳି ରେ । ଏବେ ଗୁଣବତୀପଣେ ତୋହ ତୁଲେ ନୋହେ ଭାରତୀକ ତୁଲ ରେ ।୯।

---

କାନ୍ଥରେ ଥିବା ଚନ୍ଦ୍ର ଆଗରେ ସଖୀମାନଙ୍କ ସହିତ ଠିଆ ହୋଇଗଲା । ୪ । ଦଶନ-ବାସ—ଅଧର, ବାସରେ—ବସ୍ତ୍ରଦ୍ୱାରା । ଛନ୍ନ—ଆବୃତ, ଗୋପନ; ମେନା—ପାର୍ବତୀଙ୍କ ଜନନୀ, ମୀନାଙ୍କପରନାରୀ—କାମଶତ୍ରୁ ଶିବଙ୍କ ସ୍ତ୍ରୀ, ପାର୍ବତୀ । ୫ । ତନୁଜା—କନ୍ୟା, ତନୁ ଜାକୁ ଜାକୁ—ଦେହକୁ କୁଣ୍ଢାଇ କୁଣ୍ଢାଇ, ପ୍ରପଞ୍ଚ—ସଂସାର, ବିରଞ୍ଚି—ବିଧାତା । ୬ । ଚନ୍ଦ୍ରରମା—ଚନ୍ଦ୍ରର ସୌନ୍ଦର୍ଯ୍ୟ, ଗୁଣଗଣ ଅନବଦ୍ୟା—ଅନିନ୍ଦନୀୟ ଗୁଣଗଣଯୁକ୍ତା । ୭ । କର କୋରକିତ କରି—ହାତ ଯୋଡ଼ି । ୮ । ବିଶ୍ଳେଷ କ୍ଳେଶ—ବିଚ୍ଛେଦ ଦୁଃଖ, ପ୍ରତିକୃତି—ଚନ୍ଦ୍ର । ଛନ୍ଦପଲଙ୍କେ—ହାତୀ ଦାନ୍ତରେ ଆଚ୍ଛାଦିତ ପଲ୍ୟଙ୍କରେ ବା ଉପରେ ଚନ୍ଦୁଆ ଥିବା ପଲଙ୍କରେ । ଭାରତୀ—

କାହୁଁ ଶିଖିଲୁ ରେ ଶିଖଣ୍ଡକେଶା । ମୋ କୁଳନାଲଯ୍ୟ ନଯ୍ୟନଭୂଷା । ଏଡ଼େ ମୃଦୁଳ ବୟସେ ଏମାନ । ଯହିଁ ରହୁ ନାହିଁ ମୋ ଅନୁମାନ ରୁ । ସ୍ନେହ ଢେତେ କାଣୁ ପୁଣି ରେ । ମୋ ଭଗ୍ନୀଙ୍କସଙ୍ଗ ବିଚ୍ଛେଦ ଭୟୁଁ କଏ ଚନ୍ଦ୍ର ଅଛୁ ନିର୍ମାଣିରେ । ୧୦ । ତହୁଁ ଗୃହିଁ ବାଳ ପ୍ରିୟ ଅଳୀଙ୍କ । ବୋଇଲେ ଆଜ ମୋ ଗଳାମାଳୀକ । ଏହା ଦାକ୍ଷିଣାତ୍ୟ ବେଶରେ ସାଣି । ବିଜେ କରାଇ ମୋ ସ୍ମମୁରେ ଆଣି ଯେ । ନେବ ଯେ ଯାହା ବଧାଇ ଲୋ । ଫରମାସି ଏହା ବିଜେକଲେ ମହାଦେଇ ଦୁଇ ଚୁମ୍ବ ଦେଇ ଯେ । ୧୧ । ତହୁଁ ପ୍ରମୋଦେ ବାଳା ସହଚରୀ । କେହି କାହାକୁ କହୁ ନ ପାରି । ଅଭିନବ ଗଙ୍ଗା-ସନରେ ମଣ୍ଡି । ହଂସୁଳୀ ତୂଳ ଗର୍ବ ଚଉଖଣ୍ଡି ଯେ । ଜଣାଇଲେ ସହଚରୀ ଯେ । ଚତୁର୍ଦ୍ଦଶ ଲୋକ ମୋହମନ୍ତ୍ରଧାତ୍ରୀ ବିଜେହେଉ ସୁକୁମାରୀ ରେ ।୧୨। ଜଣାଉ ଥାଉଁ ନିତ ଶତବାର । ନ କରୁ ଶିରୀଷାଙ୍ଗି ଅଙ୍ଗୀକାର । ଦିଅଇବୁ ବୋଲି ଅଳୀଙ୍କି ଜାଳ । ବାଳକାରତନ ଥିଲୁ କି ଭଲ ରୁ । କ୍ଷମାକର ଆମ୍ଭ ଦୋଷ ଗୋ । ତଇଲଙ୍ଗ ବେଶଭଙ୍ଗି ଅଙ୍ଗୀକାରେ ମଣ୍ଡନାବଳୀକ ତୋଷ ଗୋ । ୧୩ । ଏତେ କହି ଧରୁଁ ଭୁଜ ପଇଠ । ହସିକରି ମୁଖଚନ୍ଦ୍ରକୁ ହେଠ । କରିବାକୁ ଚନ୍ଦ୍ର ଗର୍ବ କର୍ମନ । ତା ଉଦୟ ଦଶେ କରି ଲପନ ସେ । ସେ ଆସନେ ବିରାଜିଲ ଯେ । ବେଶମାନଙ୍କର ଅକୃତାର୍ଥ ଶଙ୍କା ସେଦନଠାରୁ ଭାଜିଲ ଯେ । ୧୪ । ବାଳା ପ୍ରତିବିମ୍ବ ସୁନ୍ଦରପଣ । ସଙ୍ଗରୁ ହେବାକୁ ଅଦରପଣ । ସ୍ମମୁରେ ଧରି କେ ସୁନ୍ଦରପଣ । ଜଣାଇଲା ଏଣେ ନଜରପଣ । ନର୍ମଲୋଳ ଭର୍ମଲତା ରେ । କର୍ମବଳ ଦେଇ ବଢାଅ ଏହାର ଅତିଶୟ ନିର୍ମଳତା ରେ । ୧୫ । ଏ ଗିରେ ଅଷ୍ଟ ତ୍ରିମହାହରଷେ । ଭଲସାଇ ଗଣ୍ଡ ସବ୍ରୀଡ଼ ହାସେ । ଅଧ ଗୃହାଣି କରି ଅବଲମ୍ବ । ଦେଖି ମୋହିନୀ ନିଜ ପ୍ରତିବିମ୍ବ ସେ । ମନେ କଲା ଏହି ଚନ୍ତା ରେ । ଏହାଠାରେ ଜୀବ ନିବେଶି ପୁଂଭାବ ନ ଦେଲା ମୋତେ ବିଧାତା ଯେ ।୧୬।

---

ସରସ୍ୱତୀ, ତୁଳରେ—ମୁଁ ତୁଳନା କରେଁ । ୧୦ । ଶିଖଣ୍ଡକେଶା—ମୟୂରପୁଚ୍ଛ ପରି କେଶ ଯାହାର; ମୋ କୁଳ......ମୋ ବଂଶ, ଗୃହ ଓ ଆଖିର ଭୂଷଣ-ସ୍ୱରୂପା । ୧୧ । ସାଣି—ମାର୍ଜିତ ସ୍ତବରେ ସଜାଇ । ୧୨ । ଅଭିନବ... ହଂସପର ତୂଳାଗଦି ପଡ଼ିଥିବା ଚୌକିରେ ନୂଆ ଚହିତ ଆସନ ପକାଇ; ଚତୁର୍ଦ୍ଦଶ ଲୋକ...ଚୌଦଭୁବନ ମୋହ କରିବାର ମନ୍ତ୍ର ଧାତ୍ରୀପରି । ୧୪ । ହେଠ—ନତ, ନମ୍ର; ତା ଉଦୟ ଦଶେ—ଚନ୍ଦ୍ରୋଦୟର ଢଗ ପୂର୍ବକୁ । ୧୫ । ଅଦରପଣ—ନିର୍ଭୟତା । ବାଳା ପ୍ରତିବିମ୍ବ......ଚନ୍ଦ୍ରକଳାର ପ୍ରତିବିମ୍ବର ସୌନ୍ଦର୍ଯ୍ୟ ସଙ୍ଗରୁ ନିର୍ଭୟ ହେବାକୁ । ନଜରପଣ—ଦୃଷ୍ଟି ଦିଅ । ନର୍ମଲୋଳ ଭର୍ମଲତା—ହେ କ୍ରୀଡ଼ାଚଞ୍ଚଳ

ଶିଥିଳାଇ ନିଜ କେଶବଲ୍ଲରୀ । ଅଣ୍ଟାଇ କଣ୍ଟା ସେବତୀ ଫୁଲସୀ । ନ ଜାଣିଲି ପର ଅତି ଆଦରେ । ପୋତୁ ଅମଲାନ ଛିନାଗ୍ରୁଦରେ ସେ । କରେ କସି କଙ୍କତିକା ରେ । ଚିକ୍କଣ ଚାମର ଚଳି ମରୁ ବୋଲି ଚାଳିଲି କୁନ୍ଦଳତିକା ଯେ । ୧୭ । ସରଙ୍ଗ ପଞ୍ଚସୁନ ଜରି ଡୋରେ । ଅଠକା ରଖି ଭିଡ଼ି ନିବଡ଼ରେ । ଚାମୀକର କିଆଦଳ ତଳକୁ । ରଖି ରୁଚିର ଚଉରିଶ ଠୁଳକୁ ସେ । ପୁଞ୍ଜି ସୁନାଜରି ଫୁଲ ଯେ । ଜଗତୀଧୃତିକି ଝୁଲି ଶିଖାଇଲି ଆପଣେ କି ଝୁଲି ଝୁଲି ଯେ । ୧୮ । ବାମ ଦକ୍ଷିଣେ ସେ ଠୁଳ ମୂଳରେ । ନ ରଖି ଭେଦ ସୁଷମା ତୁଳରେ । ଖିଞ୍ଜି କୁନ୍ଦନସୁନା ଦୂବବାଡ । ଅବଶେଷେ ଡୋରେ ନିବଡ଼େ ଭିଡ଼ି ସେ । ଆରମ୍ଭିଲେ ଯହୁଁ ବେଣୀ ଯେ । ତର୍ଜିତ ହେଲି ପଞ୍ଚବାଣ କମାଣ ଗୁଣୀଭୂତ ଅଳିଶ୍ରେଣୀ ଯେ । ୧୯ । ବେଣୀ ନୁହଇ ସେ କି ଶିଶୁଶେଷ । କରି ସୁରାଳୟୁ ଧରା ପ୍ରବେଶ । ସେ ଘେନି ନ ଥିଲି ବିବେକ ଲେଶ । କଳା ପଡ଼ିଗଲି ନିଜ ଅଯଶ ସେ । ହେଲା ଏପରି ପ୍ରତୀତ ଯେ । କେଳିଲୋଳ କଳା କୁଣ୍ଡଳୀ ଥାଟ କି ଜୟେ ଯାହା କଲେ ମତ ଯେ । ୨୦ । କ୍ରମରେ ସତାରସୁଧାଂଶୁରେଖା । ଖିଞ୍ଜିଲେ ଯା ନାହିଁ ନିର୍ଲେଖେ

---

ସ୍ୱର୍ଣ୍ଣଲତିକା । ୧୬ । ଏହୁଠାରେ···ଏହି ପ୍ରତିବିମ୍ବରେ ଜୀବନ ଦେଇ ( ସ୍ତ୍ରୀ ଭାବରେ ) ମୋତେ କାହିଁକି ବିଧାତା ପୁରୁଷତ୍ୱ ନ ଦେଲା ? ୧୭ । କେଶବଲ୍ଲରୀ—କେଶଗୁଚ୍ଛ । ଅଣ୍ଟାଇ କଣ୍ଟା···କଣ୍ଟା ସେବତୀ ଫୁଲର ଫୁଲସୀତେଲ ଯଥେଷ୍ଟ ଦେଇ । ଛିନାଗ୍ରୁଦରେ—ସୂକ୍ଷ୍ମଗ୍ରୁଦ୍ଦରରେ । ଅମଲାନ—ଅମ୍ଲାନ, ପରିଷ୍କୃତ; କଙ୍କତିକା—ପାନିଆଁ, ଚାମର—ଚଅଁର ( କେଶସଙ୍ଗେ ତୁଳିତ ) । ଚଳି ମରୁ—(କେଶଗୁଚ୍ଛଠାରୁ ଊଣା ବୋଲି ) ବିରକ୍ତ ହୋଇ ନଷ୍ଟ ହେଉ । ୧୮ । ସରଙ୍ଗ...ଜରି ଲାଗିଥିବା ଲାଲ ପାଟସୂତାରେ । ଚାମୀକର କିଆଦଳ—ସୁନାର କିଆପତ୍ରୀ ( ଅଳଙ୍କାର ବିଶେଷ ); ଜଗତୀ...ଚଉରିଶ ଜୁଡ଼ାତଳେ ସୁନା ଜରିଲଗା ଫୁଲପୁଞ୍ଜିକୁ ଝୁଲାଇବାରୁ ଉତ୍ପ୍ରେକ୍ଷା କରାଯାଉଛି, ସେ ନିଜେ ଝୁଲି ଝୁଲି ଲୋକଙ୍କ ଧୈର୍ଯ୍ୟକୁ କମ୍ପନ ଶିଖାଇଲା କି ? ୧୯ । ଠୁଳ ମୂଳରେ—ଚଉରିବନ୍ଧା ଜୁଡ଼ା ମୂଳରେ । ସୁଷମା ତୁଳରେ—ସୌନ୍ଦର୍ଯ୍ୟ ତୁଳନାରେ । ପଞ୍ଚବାଣ କମାଣ...କନ୍ଦର୍ପଧନୁରେ ଗୁଣ ହୋଇଥିବା ଭ୍ରମରମାନେ ତାକୁ ଦେଖି ଡରିଲେ ଅର୍ଥାତ୍ ତା ଅପେକ୍ଷା ସେ ବେଣୀ ଅଧିକ ସୁନ୍ଦର ହେଲା । ୨୦ । ଶିଶୁଶେଷ—ସର୍ପରାଜ ଶେଷଦେବଙ୍କ ସାନପିଲା । ସୁରାଳୟୁଧାରା...ମଦଖଟିରେ ପ୍ରବେଶ କରିବାରୁ ନିଜ ଅକୀର୍ତ୍ତି ହେତୁରୁ କଳା ପଡ଼ିଗଲା କି ? କେଳିଲୋଳ...କ୍ରୀଡ଼ାସକ୍ତ କଳା ସାପମାନେ ଯାହା ସେ ବେଣୀକୁ ଜୟ

ଦେଖା । ଦରଶ କ୍ଷୟ ଭୟ ମୟ ଗତେ । ବେଣୀ କୁହୁ ପ୍ରବାହୁକୁ ନାରତେ ସେ । ସେବଲେ କି ଶିଶୁ ଦନୁ ରେ । ପ୍ରାନ୍ତେ ବଡ଼ ଚୂନୀ ଗୁଣ୍ଡିଫୁଲ ଭଜନବଧ ସାଜିଲେ ସୁତନୁ ଯେ । ୨୧ । ଲଲାଟପଟ ନାକଠକୁ ବୋଲ । ରହିଲା ମୋତିପୁଞ୍ଜୀ ଛକ ଜାଲ । ମଣିସଗିଡ଼ ଚନ୍ଦ୍ରମା ଅର୍ଯମା । କେଶ ଅମାରେ ହେବା ପର ଜମା ସେ । ଗୃହିଁ ଚମତ୍କାର ଖଞ୍ଜା ଯେ । ଭଲ ମନ୍ଦ କବା ଅଛୁ ଏ ବସ୍ତୁରେ ତାସ୍ ହେଲେ ପୁଞ୍ଜା ପୁଞ୍ଜା ଯେ । ୨୨ । ବିନ୍ଦୁ ଫାଲରଥ ଅଳକେ ଗୁନ୍ଥି । ଖଞ୍ଜି ଦଅନ୍ତେ ମୁକୁତା ସୀମନ୍ତୀ । ବିଜଗତ ଧୂତ ଦେବାକୁ ମନ୍ତି । ଫିଟିଲା ହାତ ହରପରପନ୍ଥୀ ସେ । ମଙ୍ଗଳମଣି ଉଦ୍ଧରୁ ଯେ । ନବରନ୍ ଗତା ସପତ ମୁକୁତା ଝୁମ୍ପି ହେଇ କଲେ ଗୃହୁ ଯେ । ୨୩ । ସିତାଷ୍ଟମୀ କଶା ନାଥକୁ ହଟି । ଜିଣିଲା ତା ଭାଲପଟ ଯାହାଟି । ସପ୍ତ ମୁକୁତା ଛଳେ ସପ୍ତ ଋଷି । ସମାଧାନ ପାଇ ଅବଶ୍ୟ ଆସି ସେ । ଥରଲେ କି ଭୟ ବହି ଯେ । ଯୋଡ଼ା ଗନ୍ଧସାର ପାଟୀ ତରୁଆର ଟିଙ୍କା ହେବା ସ୍ଥଳ ଗୃହିଁ ଯେ । ୨୪ । ଶ୍ରିତ ବାଞ୍ଛିତ ଫଳ ନାନାଜାତ । ଦେବାରେ ତ ବାଳା ସୁରବ୍ରତତୀ । ମୋତି ସୀମନ୍ତୀ ତା କୁସୁମ କେଶ । ମୂଳେ ଅଳି ଭାଳି ଖଞ୍ଜିଲେ ପର ସେ । ଜାମ୍ବୁନଦ ଅମ୍ବକସି ଯେ । ପେଣ୍ଡି ପେଣ୍ଡି ହୋଇ ମଣ୍ଡିବାରୁ ସେ କି ବରଜାଲା ମଦାଳସୀ ଯେ । ୨୫ । ଗାଙ୍ଗେୟ

---

କରିବାକୁ ଇଚ୍ଛା କଲେ ତାହା କି ସ୍ଥିର ! କି ସାମାନ୍ୟ । ୨୧ । ସତାରସୁଧାଂଶୁ-ରେଖା—ତାରକା ସହିତ ଖଣ୍ଡଚନ୍ଦ୍ର, ଦରଶ—ଦର୍ଶ, ଅମାବାସ୍ୟା; କୁହୁ—ଅମାବାସ୍ୟା, ଅମାବାସ୍ୟା ତଥି କ୍ଷୟ ହେଉଥିବାରୁ ଚନ୍ଦ୍ରତାରମାନେ ଚନ୍ଦ୍ରକଳାର ବେଣୀରୂପ ଅମାବାସ୍ୟାର ବସ୍ତାରକୁ ତା ପିଲାଦିନୁ ଆଶ୍ରୟ କଲେ କି ? ପ୍ରାନ୍ତେ—ବେଣୀଶେଷରେ, ଭଜନବଧ—ଭଜନପ୍ରକାର । ୨୨ । ମଣିସଗିଡ଼—ରତ୍ନରେ ନିର୍ମିତ ମସ୍ତକର ଅଳଙ୍କାରବିଶେଷ [ ଚନ୍ଦ୍ର ଓ ଅର୍ଯମା ( ସୂର୍ଯ୍ୟ ) ରୂପ ] କେଶରୂପ ଅମାବାସ୍ୟାରେ ଏକତ୍ର ଅଛନ୍ତି ( ଅମାବାସ୍ୟାରେ ଚନ୍ଦ୍ର ସୂର୍ଯ୍ୟ ଏକ ରେଖାରେ ଅଛନ୍ତି ), ମୋତିପୁଞ୍ଜ ଏଠାରେ ନକ୍ଷତ୍ର ସ୍ଥାନୀୟ । ୨୩ । ହରପରପନ୍ଥୀ—କନ୍ଦର୍ପ; କନ୍ଦର୍ପ ହାତକୁ ମେଲିଲା କି ? ମଙ୍ଗଳମଣିଉଦ୍ଧରୁ—ମଥାମଣି ଆଗକୁ ରହିବାରୁ । ୨୪ । ସିତାଷ୍ଟମୀ କଶାନାଥ—ଶୁକ୍ଳପକ୍ଷର ଅଷ୍ଟମୀ ଚନ୍ଦ୍ର; ସମାଧାନ—ଆସ୍ଥାନ, ଯୋଡ଼ାଗନ୍ଧସାର···ଦୁଇ ଭ୍ରୂଲତା ଉପରେ ଦିଆଯାଇଥିବା ଚନ୍ଦନପଟିକୁ ଖଣ୍ଡା ବୋଲି ମନେ କରି ଭୟରେ ଥରଲେ କି ? ୨୫ । ଶ୍ରିତବାଞ୍ଛିତ—ଚନ୍ଦ୍ରକଳା

ସଙ୍ଗ ସକାଶରୁ ଗୃହୁ । ମଣିକର୍ଣ୍ଣିକା ସମ୍ପର୍କ ପ୍ରଗ୍ରହୁ । କବିମତକ ଏମନ୍ତ ଅଭ୍ୟାସେ । ବାଲାବଦନ ବାରାଣସୀ କ ସେ ଯେ । କାହିଁ ନାହିଁ ସେ ମାଧୁରୀ ଯେ । ଗଣ୍ଡଯୁଗ ଚୁମ୍ବି ଭଲ ମାନାଲ ସେ କଲମାଯୁଗଳୀ ଶିରୀ ଯେ । ୨୬ । ଗଣ୍ଡେ ତ ମକରୀଲୀଳା ନାଳସ୍ତ । ଶ୍ରୀମୁଖ ଲାବଣ୍ୟ କମଳାଶୟ । ମାଜଦେବା ମୃଦୁ ସମୀର ବାଜ । ଏକ ପ୍ରଦେଶେ କ ଗଲେ ଅଲକ ଯେ । ଚୂର୍ଣ୍ଣକେଶ-ଶୈବାଳ ଯେ । ମନ୍ଦାକ୍ଷ ପ୍ରମୋଦ ରୋଚନ ଲୋଚନଯୁଗ ଯହିଁ ନୀଳୋତ୍ପଳ ଯେ । ୨୭ । ସୁନା ଭୁଜଙ୍ଗ ମଲ୍ଲୀ ଅବତଂସ । ଆଚମ୍ବିଲ ଭଲ ବିବେକ ଧ୍ୱଂସ । ହେଲେ ଲୋଚନ ଦୁଃଖୀ ଶିଳାଟଙ୍କ । ବେଣ୍ଟୁଲଫୁଲ ଝଲକା ତାଟଙ୍କ ସେ । ଅଂସଲମ୍ବୀ ଗୃହୁ ଝୁମ୍ପା ଯେ । ଗହବ ସିନ୍ଧୁବାର ମୋତିମାଳିକା ଦୁହେଁ ହେଲେ ଦର କମ୍ପା ଯେ । ୨୮ । ହାଟକରୁଚ ଜିଣିବାକୁ ଯାହା । ହଠ କରୁଅଛୁ ସେ ଝକ ଦେହା । ସୁବର୍ଣ୍ଣାବଳୀ କୋଳାନିକେତନ । ସୁବର୍ଣ୍ଣ-ପ୍ରଭୁକା ତା ଅପଘନ ଯେ । ଏଣୁ ବିଗ୍ରହ ଶରଣ ଯେ । ସୁବର୍ଣ୍ଣାବଳୀ ଭୂଷଣ ଗଣ ଅସି କଲେ କ ଅନୁସରଣ ଯେ । ୨୯ । ଝୁଲ କପର ମାଳବ ଏ

---

ଆଶ୍ରିତମାନଙ୍କୁ ବାଞ୍ଛିତ ଫଳ ଦେବାରେ ସୁରବ୍ରତତି ( କଳ୍ପଲତା ) ତୁଲ୍ୟ, କାମ୍ବୁନଦ—ସୁବର । ମୋତିରେ ନିର୍ମିତ—ସିନ୍ଥି ( ଅଳଙ୍କାର ବିଶେଷ ) ସେ ଲତାର କୁସୁମଗୁଚ୍ଛ । ଜାମ୍ବୁନଦ ଆମ୍ବକସି—ସୁନା ଆମ୍ବକସି ( ଅଳଙ୍କାର ବିଶେଷ ) । ୨୬ । ଗାଙ୍ଗେୟ—ସୁନା ଓ ଗଙ୍ଗା ସମ୍ବନ୍ଧୀୟ, ମଣିକର୍ଣ୍ଣିକା—ମଣିରେ ନିର୍ମିତ କର୍ଣ୍ଣଭୂଷଣ ଓ କାଶୀର ପ୍ରଧାନ ତୀର୍ଥ, କଲମା ଯୁଗଳୀଶିରୀ—କର୍ଣ୍ଣ ନିକଟବର୍ତ୍ତୀ ବକ୍ରାକାର କ୍ଷୁଦ୍ର କେଶ ଭଙ୍ଗୀର ଶୋଭା । ୨୭ । ମକରୀ—ଗଣ୍ଡରେ ଚିତ୍ରିତ ମକରାକୃତ ଚନ୍ଦ ଓ ସ୍ତ୍ରୀମଗର, ଲାବଣ୍ୟ କମଳାଶୟ—ଲାବଣ୍ୟ ଲକ୍ଷ୍ମୀଙ୍କର ସ୍ଥାନ ଏବଂ ଲାବଣ୍ୟ ରୂପ ଜଳାଶୟ, ମାଜଦେବା—ଘଷିଦେବା, ଚୂର୍ଣ୍ଣକେଶରୂପ ଶୈବାଳ ( ଶିଉଳୀ ); ମନ୍ଦାକ୍ଷ—ଲଜ୍ଜା, ପ୍ରମୋଦ—ଆନନ୍ଦ, ରୋଚନ—ପ୍ରୀତି-ପ୍ରଦାନ ।୨୮। ସୁନାଭୁଜଙ୍ଗ (ସର୍ପ) ଲଗାମଲ୍ଲୀକାବତଂସ (ମଲ୍ଲିକଢ଼ୀନାମକ) କର୍ଣ୍ଣଭୂଷଣ, ହେଲେ···ତାହାର ଚକ୍ଷୁ ଦୁଃଖୀ ଅର୍ଥାତ୍ ବିରହ ପକ୍ଷରେ ଶିଳାଟଙ୍କ (ପଥରକଟା ଟାଙ୍ଗିଆ ଅସ୍ତ୍ର ) ସ୍ୱରୂପ ହେଲେ । ତାଟଙ୍କ—କାପ, ଅଂସଲମ୍ବୀ—କାନ୍ଧଯାଏ ଲମ୍ବି ଥିବା, ଗହବ—ଗହଳିଆ, ସିନ୍ଧୁବାରମୋତି—ସମୁଦ୍ରଜାତ ମୋତି । ୨୯ । ହାଟକ ରୁଚ—ସୁନାର କାନ୍ତ, ସୁବର୍ଣ୍ଣାବଳୀ—ସୁନ୍ଦର ଅକ୍ଷର ସମୂହ ବା ବିଦ୍ୟାସମୂହ, ସୁବର୍ଣ୍ଣପ୍ରଭୁକା···ଉତ୍କୃଷ୍ଟ ଜାତୀୟ ରାଜାଙ୍କଠାରୁ ଜନ୍ମ ଯାହାର, ସୁବର୍ଣ୍ଣାବଳୀ—

ଭାବେ । ଝୁଲାକୁ ଖଞ୍ଜି ଦେଲେ ଗଜରବେ । ବେଢ଼ ତ ପଦ୍ମକୁରୁବନ୍ଧ ଅନ୍ତେ । ଅନ୍ତ ମୁକୁତାରୁ ହୋଏ ପରତେ ସେ । ଚଞ୍ଚୁପୃଷ୍ଠେ ସୁନା କୀର ଯେ । ସ୍ଥୂଳ ଲବଳୀଫଳ ଦୋଳା କରୁଛନ୍ତି ବିମୋହକୁ ପିନାକୀର ଯେ । ୩୦ । ଅଥ ରଜନୀନାଥମୁଖୀ ନାମ୍ନୀ । ନଥର ଯୋଗେ ମଣ୍ଡିଲା କେ ଯୋଷା । ନ ଥର ବୋଲି ଦେଲେହେଁ ଖାତର । ପଥର ହେଲେ ସେ ସଚରାଚର ଯେ । ନଥର ଥରିଲା ହେଲା ଯେ । ପଥରମ୍ୟକାରୀ ବାଳା ପଦକଞ୍ଜ ବଶ ମୁଁ ବୋଲି ଚନ୍ଦ୍ରିଲା ଯେ । ୩୧ । ଉରୋଜସ୍ୱୟମ୍ଭୁ ଶମ୍ଭୁଯୁଗଳ । ସେବାରେ ହାଜର ହେବାକୁ ଭାଳି । ଖଞ୍ଜିଲେ ନାନାବିଧ ମାଳମାନ । କ୍ରମରେ ଜଗିଲେ ଯେ ଯାହା ସ୍ଥାନ ସେ । ବାଳାକଣ୍ଠକମ୍ବୁ ଘେନି ଯେ । ଯୋଡ଼ି ଯୋଡ଼ି କରଯୁଗ ନିରନ୍ତର କି ଭାବେ ରହିଲେ ମାନି ଯେ । ୩୨ । ନାୟିକାମଣି ବାହୁମୂଳ ସ୍ତନ । ରାଇକା ପାଇ କାନ୍ତିରେ ଶୋଭନ । ଜରି ବୁଟା କଞ୍ଚୁ କସିଦା ପଡ଼ । କୁସୁମ୍ଭାଦ୍ରବେ ଯାଇ ଅଛି ଜଡ଼ ସେ । ଦଶିଲା ଏମନ୍ତ ତୋରା ଯେ । ପ୍ରଳୟ କାଳ କୋଧାରୁଣ ଶମ୍ଭୁର ମସ୍ତକ ତଳିଆ ପରା ଯେ । ୩୩ । ସୁଗ୍ରୀବାଡ଼ମ୍ବର ସମୀପେ ଗୃହି । ଅଙ୍ଗଦ ଶରଣ ନ ଲଭି କାହିଁ । ବାଳୀର ବାହୁଯଷ୍ଟିକୁ ଭଜିଲା । ଭଜିଲା ନାହିଁ ତ ଭଲା ମଜିଲା ସେ । ମଣି ଥିବାରୁ ବହୁତ ଯେ । ତାରାସୁତର ସାନ୍ନିଧ୍ୟବଶୁଁ ତାର ଗୁଣ ତ ଅପରମିତ ଯେ । ୩୪ । କେମାମଣି ମଣିବନ୍ଧରେ ଅଳୀ । ଖଞ୍ଜିଲେ ତଗା ଖଞ୍ଜି କଡ଼ିଅଳୀ । ସମୀପେ ସିଆକାଠି ଦେଲେ ପାଞ୍ଚି । ନବରତନ ସେବତୀ ପହଞ୍ଚି ସେ ।

---

ସୁନ୍ଦର ରୂପସମ୍ପନ୍ନ ଥିବା । ୩୦ । ଝୁଲକ—ଏକପ୍ରକାର ଦଣ୍ଡି, ବେଢ଼—ଝୁରପାଖରେ ବେଷ୍ଟନ; ପଦ୍ମକୁରୁବନ୍ଧ—ଏକପ୍ରକାର ପଦ୍ମରାଗମଣି; ଚଞ୍ଚୁପୃଷ୍ଠ—ଥଣ୍ଟ, ସୁନାକୀର—ସୁନାଶୁଆ, ଲବଳୀଫଳ—ନରକୋଳି; ପିନାକ—ଶିବ । ୩୧ । ରଜନୀନାଥ-ମୁଖୀ—ଚନ୍ଦ୍ରମୁଖୀ, ନଥ—ନୋଥ ( ନାକର ଅଳଙ୍କାର ବିଶେଷ); ନ ଥର—କମ୍ପ-ନାହିଁ ଓ ୯ ଥର, ଖାତର ଦେଲେ—ଦମ୍ଭ ଦେଲେହେଁ; ପଥରମ୍ୟକାରୀ······ ବାଟକୁ ସୁନ୍ଦର କରୁଥିବା ତାହାର ପାଦପଦ୍ମର ମୁଁ ଅଧୀନ ଆର୍ଥାତ୍ ସେ ଚାଲିଲେ ମୁଁ ହାଲିବ । ୩୨ । ଉରୋଜ—କୁଚ, ସ୍ୱୟମ୍ଭୁ ଶମ୍ଭୁ—ସ୍ୱଭାବଜାତ ଶିବ, ମାଳ-ହାର ଓ ମାଳୀଜାତୀୟ ସେବକ, କଣ୍ଠକମ୍ବୁ—କଣ୍ଠରୂପ ଶଙ୍ଖ । ୩୩ । ରାଇକା—କାଞ୍ଚୁଲା, କୁସୁମାଦ୍ରବ—କୁସୁମ ଫୁଲ ବର୍ଣ୍ଣର ତରଳ ରଙ୍ଗ । ୩୪ । ସୁଗ୍ରୀବା-ଡମ୍ବର ସୁନ୍ଦର ଗ୍ରୀବାଦେଶର ଶୋଭା, କପିରାଜ ସୁଗ୍ରୀବର ଐଶ୍ୱର୍ଯ୍ୟ; ଅଙ୍ଗଦ—ବଳୟ ଓ ତାରାପୁତ୍ର, ବାଳୀ—ଚନ୍ଦ୍ରକଳା ଓ କପିରାଜ ବାଳୀ,

ହେଲା ଶୋଭା ·ଅଷ୍ଟକୋଟ ଯେ । ପଞ୍ଚସଂଖ୍ୟକରେ ଖଞ୍ଜିଲେ ସୁସଞ୍ଚ-ଇନ୍ଦ୍ରନୀଳମଣି କାଚ ଯେ ।୩୫। ଭବାନୀଭୁଜ ଭାର ହେବା ଡରୁ । ଭୂରିଭୂଷଣି ନ ଖଞ୍ଜିଲେ ଗୁରୁ । କୁଞ୍ଜରଗମନା କେବଳ ବଳେ । କଞ୍ଜ ମଞ୍ଜୁର ଗୁଞ୍ଜର ଯୁଗଳେ ସେ । ମଣ୍ଡିଲା କାଚ ଅନ୍ତକ ଯେ । କାଦମ୍ବିନୀକ ନୋହି ବନ୍ଦୀ ହେଲା ତହିଁ ସଜଦର୍ପସାରଯାକ ଯେ । ୩୬ । ଅଙ୍ଗୁଳି କଳିକା ନଖାଗ୍ର ଶିଖା । ସୁନ୍ଦର ଭାବ ଶୁଚିରସ ଝର । ଦଶଧାର ହୋଇ ପଡ଼ିବ ବହି । ଏହି ଶଙ୍କାରେ କେହି ପ୍ରିୟସହି ଯେ । ମୁଦ୍ରା ଦେଲା ଯତ୍ନ କରି ଯେ । ହେଲା କୁସୁମିତ ପଞ୍ଚଶାଖାଯୁତ ମନ୍ଦାରପଲ୍ଲବ ପରି ଯେ । ୩୭ । ଯା ନିକଟେ ହଂସ କରୁଛନ୍ତି ଲୀଳା । ସେ ଚରଣ ଶୋଣକଞ୍ଜେ କେ ବାଳା । ମଞ୍ଜୁରବ ଶୁଣି ହେବାକୁ ସୁଖୀ । ମଞ୍ଜୀରଯୋଗେ ପୂତ କରି ଅଖି ଯେ । ରଚିଲା ବଙ୍କିଆ ଲଗି ଯେ । ସୁରମହୀମଲୟଜ ଲତାମୂଳ ଭଜିଲା କି ରାଜଭୋଗୀ ଯେ । ୩୮ । ତ୍ରିଗୁଣ କଙ୍କିଣୀ ଖଞ୍ଜି ପଉଞ୍ଜୀ । ଦେଇ ସେ ଖଞ୍ଜରୀଠ-ନେତ୍ରା ଖଞ୍ଜି । ଝୁଣ୍ଟିଆ ପ୍ରମୁଖ ଅଙ୍ଗୁଳିଭୂଷା । ଖଞ୍ଜି ମନେ କଲେ ଏହି ପ୍ରଶଂସା ସେ । ଜଙ୍ଗମ ହେମ ନଳିନ ଯେ । ନିଜ ଜାତ ବ୍ରଜ ଜିଣିମାରୁ ଆଜ ଲଭିଲା କନକସ୍ନାନ ଯେ । ୩୯ । ପଙ୍କଜାକୃତ ହେମପାତ୍ରେ ଦଳି । ଯାବକ ରଖିଥିଲା ଯେଉଁ ଆଳୀ । ସ୍ୱକର ମଣ୍ଡି ବାମା ବାମ ପାଦେ । ଦକ୍ଷିଣ ଚରଣ ଗୃହେଁ ପ୍ରମୋଦେ ସେ । ଲଭି ସେ ଭାଜନ ଭ୍ରାନ୍ତି ଯେ । ଅଲେଖ୍ୟଶଳାକା ଗୃହନ୍ତେ ବାଳିକା ହସିଦେଲା ମଥା ପୋତି ଯେ । ୪୦ । ଆଳୀ ହସି କରତାଳିକ ଘେନି । ଜଣାଇଲେ ଅରେ

---

ତାରସୂତ—ଅଙ୍ଗଦ । ୩୫ । ମଣିବନ୍ଧ କଟଣୀ, ଢଗା, କଡ଼ୁଆଲି, ସିଆକାଠି, ନବରତ୍ନ ନିର୍ମିତ ସେବତୀ ଫୁଲ ପରି ପହୁଞ୍ଚି ( ପଇଞ୍ଚଖଡ଼ୁ )—ଏଗୁଡ଼ିକ ହସ୍ତାଲଙ୍କାର; ସୁସଞ୍ଚ—ସୁନ୍ଦର । ୩୬ । ଭାବନୀ—ଯୁବତୀ ( ଚନ୍ଦ୍ରକଳା ), ଭୂରି-ଭୂଷଣ—ବହୁ ଅଳଙ୍କାର, ବଳେ—ନିଜ ଇଚ୍ଛାରେ, କଞ୍ଜମଞ୍ଜୁଳ—ପଦ୍ମପରି ସୁନ୍ଦର, ଗୁଞ୍ଜର ଯୁଗଳ—ଗୁଞ୍ଜର ଖଡ଼ୁ ଦୁଇଟି, କାଦମ୍ବିନୀକ—ଭୟରେ ପଳାଯିବା ୩୮ । ହଂସ—ହଂସକ, ମଳ; ଚରଣଶୋଣକଞ୍ଜେ—ପାଦରୂପ ରକ୍ତପଦ୍ମରେ, ମଞ୍ଜୀର—ନୂପୁର, ବଙ୍କିଆ—ପାଦାଲଙ୍କାର ବିଶେଷ, ସୁରମହୀ—ସ୍ୱର୍ଗ, ମଳୟଜ-ଲତା—ଚନ୍ଦନଲତା, ରାଜଭୋଗୀ—ସର୍ପରାଜ ବାସୁକି । ୩୯ । ତ୍ରିଗୁଣକଙ୍କିଣୀ —ତିନିଗୁଣିଆଁ ଘାଗୁଡ଼ିଲଗା ଅଣ୍ଟାର ଅଳଙ୍କାର, ପଉଞ୍ଜୀ—ପଇଞ୍ଚ ନାମକ ଅଳଙ୍କାର, ଜଙ୍ଗମହେମନଳିନ—ଚଳନ୍ତା ସ୍ୱର୍ଣ୍ଣପଦ୍ମ ( ଚନ୍ଦ୍ରକଳାର ପାଦ ) । ୪୦ । ଯେଉଁ ସଖୀ ପଦ୍ମାକୃତି ସୁନା ପାତ୍ରରେ ଅଳତା ରସ କରିଥିଲା,

ବରବର୍ଣ୍ଣିନ । ସମ୍ପାଦନ୍ତୁ ଭଲ ଲାବଣ୍ୟଭୂତ । ଭରମି ନ ଯିବ କାହାର ମତ ଯେ । ଏହାର କି ଦୋଷ ହେଲା ଯେ । କାହାର କରବ କଞ୍ଜସୁତ ତତେ ଯାହାର ସୁକୃତ ଭଲ ରେ । ୪୧ । ଏ କଉତୁକ ରସ ବରଷାରେ । ପଡ଼ି କେ କାହା ଉପରେ ରସାରେ । ପଡ଼ି ସତ୍ୟ ଲକ୍ଷା ପାନୀ ରସରେ । ଚିତ୍ର ଚାତୁର୍ଯ୍ୟଭର ପ୍ରକାଶରେ । ସାଜିଲେ ପାଦଯୁଗଳୀ ଯେ । ସୁନାବଲ୍ଲରୀ ପଲ୍ଲବ ରଚିଲା କି ସୁରଭି ଶିରୀମଣ୍ଡଳୀ ଯେ । ୪୨ । ଶାଢ଼ୀଲାଗିକି ସଜାଡ଼ି ସମ୍ଭାର । ଉଭାକଲେ ଧରି ଶୁଭାଙ୍ଗୀଙ୍କର । ବ୍ରୀଡ଼ା ଲୋଲନେନ ନୀଡ଼ାରୁ ଜାଣି । ଦୂର ହେଲେ କେତେ କୁରଙ୍ଗେକ୍ଷଣୀ ସେ । ଲାଗି ହେଲା ମେଘାମ୍ବର ଯେ । ସୁମ ଲଢକାରେ ମିନା ଫୁଙ୍କିଲା କି କଉତୁକୀ ବେଦବର ଯେ । ୪୩ । ନୀରନ୍ଧ୍ର ଆନ୍ଧ୍ର ଉଡ଼ଲରେ ପିନ୍ଧି । ପୁରୁଷାୟିତ ବେଶ ନୀବୀ ବାନ୍ଧି । ପଦାଞ୍ଚଳଚୁମ୍ବୀ ଅଞ୍ଚଳ କୁଞ୍ଚି । ଚଞ୍ଚଳାକ୍ଷୀ କରେ ଭିଡ଼ି ସୁହଞ୍ଚି ସେ । ଖଞ୍ଜିଲେ କମରପଟା ଯେ । କମର ସୁଷମା ଅମରପୁଙ୍ଗବ ସ୍ତୋମର ଧୈର୍ଯ୍ୟପଟା ଯେ । ୪୪ । ବାର ଷୋଳସୋରି ଜାଲି ମଞ୍ଜୁଳ । ନିଗୁଣ ହେମକିଙ୍କିଣୀ ବାଗୁଲ । ରସନାଦାମ ତହୁଁ ଦେଲେ ବାନ୍ଧି । ଏହି ଉପମାନ ରହିଲା ରୁନ୍ଧି ସେ । କୁହାଇ ନିତମ୍ବବିମ୍ବ ଯେ । ମଦନ-ବିଜୟଡ଼ିଣ୍ଡିମଯୁଗଳୀ ହେଲା ମଣ୍ଡନାବଲମ୍ବ ଯେ । ୪୫ । ଯାହା ଲାବଣ୍ୟ ସ୍ୱାଦସୁଧା ଅଶେ । ଦଇବ ଖଞ୍ଜିଛି ରସନାପାଶେ । ସୂକ୍ଷ୍ମ ନେନେ ତହିଁ ଜଗି

---

ସେ ବାମ ପାଦରେ ଅଲତା ଦେଇସାରି ଦକ୍ଷିଣ ପାଦକୁ ଭ୍ରମରେ ସୁନା ଅଲତାପାନ ଭାବି ତହିଁରେ ଆଲେଖ୍ୟଶଳାକା ( ଚିତ୍ର କରୁଥିବା ବା ଅଲତା ଦେଉଥିବା କାଠି ବା ତୂଳୀ )କୁ ବୁଡ଼ାଇବାକୁ ଚେଷ୍ଟା କରିବାରୁ ଚନ୍ଦ୍ରକଳା ମୁଣ୍ଡପୋତି ହସିଦେଲା । ୪୧ । ଲାବଣ୍ୟଭୂତ—ସୌନ୍ଦର୍ଯ୍ୟସମ୍ପତ୍ତି, କଞ୍ଜସୁତ—ବ୍ରହ୍ମା, ପ୍ରଜାପତି । ୪୨ । ଏ କୌତୁକରୂପ ରସ ( ଜଳ ) ବର୍ଷାରେ, ରସା—ପୃଥିବୀ, ସୁନାବଲ୍ଲରୀ—ସ୍ୱର୍ଣ୍ଣଲତା ( ଚନ୍ଦ୍ରକଳାର ଦେହ ), ପଲ୍ଲବ—( ରକ୍ତବର୍ଣ୍ଣ ) ନୂଆପତ୍ର; ସୁରଭିଶିରୀ—ମଣ୍ଡଳୀ—ବସନ୍ତ ଶୋଭାରାଶି । ୪୩ । ସମ୍ଭାର—ଆୟୋଜନ, ଶୁଭାଙ୍ଗୀ—ସୁନ୍ଦରୀ, ବ୍ରୀଡ଼ା—ଲଜ୍ଜା, ମେଘାମ୍ବର—ଏକପ୍ରକାର ଶାଢ଼ୀ, ସୁମଲଢକା···କୌତୁକୀ ବିଧାତା ସୁନାଲତାର ମିନା ଫୁଙ୍କିଲା ଅର୍ଥାତ୍ ରତ୍ନ ବସାଇବା ରୂପ ଶିଳ୍ପଚାତୁରୀ ଦେଖାଇଲା କି ? ୪୪ । ନୀରନ୍ଧ୍ରଆନ୍ଧ୍ରଉଡ଼ଲରେ—ଠିକ ତେଲିଙ୍ଗ ଢଙ୍ଗରେ । ପୁରୁଷାୟିତ—ବିପରୀତରତି, ନୀବୀ—କଟିବସ୍ତ୍ରର ଗଣ୍ଠି, ସୁସଞ୍ଚି—ଯତ୍ନରେ, କମର—କଟି, ଅମର-ପୁଙ୍ଗବସ୍ତୋମର—ବଡ଼ ବଡ଼ ଦେବତାସମୂହର । ୪୫ । ବାଗୁଳ—ଶବ୍ଦାୟମାନ

ଥିବାର । ଘେନଲେ ହେଲା କେଉଁ ଚମତ୍କାର ସେ । ତହୁଁ ସେ ଅସନେ ନେଇ ଯେ । ବିକେ କରାଇଲେ ସେ ମୃଗଲୋଚନା ତିଳକ ରଚନା ପାଇଁ ଯେ । ୪୬ । ମଞ୍ଜୁଳନୟନ ଖଞ୍ଜନ ଯୁଗେ । ଲାଞ୍ଛି ମନୋହର ଅଞ୍ଜନ ଯୋଗେ । ତା ତୋଲାମସୀର ମୟୂଖରେଖା । କର୍ଣ୍ଣାକାଶ ତୁଲେ ହେଲା କି ସଖା ସେ । କିତା ନେତ୍ର ଦୀର୍ଘ ଭାବ ଯେ । ଲାଞ୍ଛିବ୍ୟାଜନୀଳ ଦଣ୍ଡରେ ମାପିଲା ସରସୀରୁହସମ୍ଭବ ଯେ । ୪୭ । ବଶିଷ୍ଟାଦ୍ୱୈତ ମତାନୁସାରୀ । ଚଳନ୍ତେ ସୁନ୍ଦର ସିନ୍ଦୂରଶିରୀ । ସ୍ୱର୍ଭାନୁରଦ ବ୍ରଣରେଖା ପାଇ । ଦରେ ପୂର୍ଣ୍ଣ ସୁଧାକର ପଳାଇ ସେ । କେଶ ଜଳଦ ଗହନେ ଯେ । ହେବାରୁ ପ୍ରବେଶ ଅର୍ଦ୍ଧଅଙ୍ଗ ଦେଶ ଦିଶେ କି ପ୍ରତୀତ ମନେ ଯେ । ୪୮ । ନିର୍ମିଲେ ବିନ୍ଦୁ କସ୍ତୁରୀ ବୋଳେ । ଚନ୍ଦନ ନାତ ମଲ୍ଲୀ ତାହା ତୁଲେ । ଲେଖିଲେ କୁରଙ୍ଗମଦ ଅଖିଆ । ଦେଖିବା ଜନ ବିବେକନାଶିଆ ସେ । ରଦବାସେ ମସୀମାଛି ଯେ । ଶରୁକେ ମକରୀ ରୂପକ ମକରୀ ଯୋଗାଇଲେ ଦ୍ୱାର ବାଛି ଯେ । ୪୯ । ସ୍ଥୂଳ ମୁକୁତା ଘନସାରମାଳୀ । ଗହବ ଗୁଣ୍ଠା ଛୁଟ ପୁଷ୍ପପାଳୀ । ଚନ୍ଦ୍ରହାର ତୁଲେ ରାଜନ୍ତେ ମିଶି । ତ୍ରିଗୁଣମୟୀ ଅବିଦ୍ୟା ସଦୃଶୀ ଯେ । ବିଦ୍ୟାନାଥ ଆଭ୍ରସିଲା ଯେ । ଅଂସ ଚୁମ୍ବିବାର ଇଚ୍ଛା ଗଭାର ମଧ୍ୟେ କେ ହୀରା ଖୋସିଲା ଯେ । ୫୦ । ଗଭା ନୋହେ କି ସେ ବାଳା

---

ରସନାଦାମ—ଚନ୍ଦ୍ରହାର, ବିଜସୂତ୍ରତନ୍ତ୍ରିମ—ଜସ୍ତ ଛକ୍‌କା । ୪୬ । ଯାହା ଲାବଣ୍ୟ... ଯେଉଁ ସୁପ୍ତଅଙ୍ଗର ସ୍ୱାଦରୂପ ଅମୃତ ଆଶାରେ ବଧାତା ରସନା ( ଚନ୍ଦ୍ରହାର ଓ ଜହ୍ୱା )କୁ ତା ନିକଟରେ ଖଞ୍ଜିଛି, ସୂକ୍ଷ୍ମନେନ୍ତ—ତୀକ୍ଷ୍ଣ ଚକ୍ଷୁ ଅଥଚ ସରୁ ବସ୍ତ୍ରଖଣ୍ଡ । ୪୭ । ତୋଳାସମୀର ମୟୂଖରେଖା—ଆଖିତୋଳାର କାଳମାର ଜ୍ୟୋତରେଖା; ଲାଞ୍ଛିବ୍ୟାଜନୀଳଦଣ୍ଡ—ଲାଞ୍ଛିରୂପ କପଟନୀଳଯଷ୍ଟି, ସରସୀରୁହସମ୍ଭବ—ବ୍ରହ୍ମା । ୪୮ । ବଶିଷ୍ଟାଦ୍ୱୈତମତାନୁସାରୀ—ବେଦାନ୍ତବାଦୀ ଶ୍ରୀ ବୈଷ୍ଣବଙ୍କପରି ( ଶ୍ରୀ ବୈଷ୍ଣବମାନେ ଭାଲଦେଶରେ ସିନ୍ଦୂର ତିଳକ କରନ୍ତି ) । ସ୍ୱର୍ଭାନୁରଦ···ରାହୁଦନ୍ତର ଆଘାତଜନିତ ରକ୍ତବର୍ଣ୍ଣ ଦାଗ ଦେଖି ପୂର୍ଣ୍ଣଚନ୍ଦ୍ର ପଳାଇ ଯାଇ କେଶରୂପ ମେଘଗହନରେ ପଶିଗଲା କି ? ମସ୍ତକରେ ଘେନିଥିବା ଅର୍ଦ୍ଧଚନ୍ଦ୍ରାକୃତି ସ୍ୱର୍ଣ୍ଣାଳଙ୍କାର ସେହି ଲୁଚିଥିବା ଚନ୍ଦ୍ରର ଅର୍ଦ୍ଧଅଙ୍ଗ ପରି । ୪୯ । କସ୍ତୁରୀବୋଳେ—କସ୍ତୁରୀରସରେ; ଚନ୍ଦନ...ତା ସଙ୍ଗରେ ଚନ୍ଦନବିନ୍ଦୁ ଓ ନିତ ମଲ୍ଲୀବିନ୍ଦୁ ଦେଲେ । କୁରଙ୍ଗମଦ—ମୃଗମଦ ବା କସ୍ତୁରୀ, ଆଖିଆ—ଅର୍ଦ୍ଧଚନ୍ଦ୍ରାକୃତିରେଖା, ରଦବାସ—ଅଧର, ମସୀମାଛି—କସ୍ତୁରୀରେ ମହୁମାଛି । ମକରୀ ରୂପକ ମକରୀ—ମାଈ ମଗର ପରି ମକରିକା ଚିହ୍ନ । ୫୦ । ଘନସାରମାଳୀ—କର୍ପୂରମାଳା, ଛୁଟପୁଷ୍ପପାଳୀ — ଖଚିତ

କଟାକ୍ଷ । ସ୍ଥୂଳ ମୃଦୁଲ ପ୍ରଥମ ଲକ୍ଷ । ତହିଁ ଖୁରଲୀ ଯେବେ ହେଉଥିବ । ସୂକ୍ଷ୍ମ କର୍କଶ ଲକ୍ଷ୍ୟ ନ ଭେଦିବ । ବଧିବ ଗୁରୁ କି ଏହା ଯେ । ତୁଳିତ ଶଙ୍କର ଯତୀଶ୍ୱରଙ୍କର ବତାଇଲ ରକ୍ଷା ଯାହା ଯେ । ୫୧ । ମୋହନବେଶ ନବଢ଼ିବା ଗୃହିଁ । ତାମ୍ବୂଲକରଙ୍କବାହାନୀ କେହି । କର୍ପୁର ବିଡ଼ିଆ ବଢ଼ି ଖଟିଲ । ଅନ୍ତର କାନ୍ତି ବାହ୍ୟକୁ ଫୁଟିଲ ଯେ । ଲଗିଲ ମସାଲ ଯୋଡ଼ି ଯେ । ଭ୍ରମର ମୟୂର ଫୁଲ ଅଦି ଜମା ହେଲ ନାନାଗ୍ରଜଛଡ଼ି ଯେ ।୫୨। ସାୟନ୍ତନ ଦୀପ କଳିକାଯାକ । ହୋଇଥିଲେ ଯେ ଭୂଲୋକେ ଅନେକ । ଅଦ୍ୱିତୀୟ ମୂର୍ତ୍ତି ହୋଇ କି ମିଶି । ଚଳିଷ୍ଣୁ ହେଲ ସଖୀରୂପେ ଧରି ସେ । ଜନନୀ ପୁରକୁ ଗଲ ମେ । ଘନ ନୀଳବେଣୀଠାରେ କା ନୟନ ମନ ନିମଗ୍ନ ନୋହିଲ ଯେ । ୫୩ । ନରକଚ୍ଛେଦୀ ଶିରୀ କଣ୍ଠଭୂଷ । ବିଭୂତ୍ୟବଲେପ ବିଭୋ ଧରେଶ । ପନ୍ନଗାଶନଲାଞ୍ଛନ ଶୋଭନ । ପନ୍ନଗ-ଶୟ୍ୟ ପନ୍ନଗମଣ୍ଡନ ହେ । ଦୁହିଙ୍କ ପଦାରବିନ୍ଦ ଯେ । ଭଜି ରାମଚନ୍ଦ୍ର ଦେବ ଗଣେ ଏହା ନେପଥ୍ୟପଥ୍ୟ ଏ ଛନ୍ଦ ଯେ । ୫୪ । କାଞ୍ଚନ-ଦେହାଙ୍କ ମନୋରଞ୍ଜନ । ବଞ୍ଚାଇବ ଯୁବ ନିବହ ଧନ । ସଞ୍ଚାର କରିବ ଏ ଯାହା ହୃଦେ । ପଞ୍ଚାଶପଞ୍ଚ ପରମିତ ପଦେ ଯେ । ଘୂଞ୍ଚାଇବ ତା ଙ୍କଦନ ଯେ । ମଞ୍ଚରେ ଭାରତୀ ଦେବୀ ଲଗିବାସ ଅଞ୍ଚଳ ବୋଲି ଏ ଧେନ ହେ । ୫୫ ।

---

ଫୁଲମାଳ, ତ୍ରିଗୁଣମୟୀ·········ସତ୍ତ୍ୱ, ରଜ ଓ ତମୋଗୁଣମୟୀ ଅବିଦ୍ୟା ( ମାୟା ) ପର । ଅଂସ—କାନ୍ଧ, ଇଟଲାଗଭ—ଅଁଳାଙ୍ଗଳ ସଦୃଶ କୂଡ଼ା ଯାହାର, ଝରା—ଫୁଲତୋଡ଼ା । ୫୧ । ଖୁରଲୀ—ଅସ୍ତ୍ରକ୍ଷେପଣ ଶିକ୍ଷାର ଅଭ୍ୟାସ । ୫୩ । ସାୟନ୍ତନଦୀପ·········ସନ୍ଧ୍ୟାବେଳେ ପୃଥିବୀରେ ଜାତ ହୋଇଥିବା କଳିକାକୃତ ଦୀପଶିଖାମାନେ ଏକରୂପରେ ମିଳିତ ହୋଇ ଚନ୍ଦ୍ରକଳାର ସଖୀରୂପ ଧରି ଚଳିଷ୍ଣୁ ( ଗତିଶୀଳ ) ହେଲେ କି ? ୫୪ । ନରକଚ୍ଛେଦୀ—ନରକାସୁରବିନାଶନ, ଶିରୀକଣ୍ଠଭୂଷ—ଲକ୍ଷ୍ମୀଦେବୀ ଯାହାଙ୍କର କଣ୍ଠର ଭୂଷଣସ୍ୱରୂପ, ( ବିଷ୍ଣୁ ), ବିଭୂତ୍ୟବଲେପ—ବିଭୂତିଭୂଷଣ, ଧରେଶ—ଗିରୀଶ ( ଶିବ ), ପନ୍ନଗାଶନଲାଞ୍ଛନ—ଗରୁଡ଼ଧ୍ୱଜ, ପନ୍ନଗଶୟ୍ୟ—ଶେଷଶଯ୍ୟାଶାୟୀ ( ବିଷ୍ଣୁ ), ପନ୍ନଗମଣ୍ଡନ—ସର୍ପଭୂଷଣ ( ଶିବ ), ନେପଥ୍ୟପଥ୍ୟ—ବେଶର ହିତକର ।

# ଦଶମ ଛାନ୍ଦ

## ରାଗ—ବସନ୍ତ

## ( ବସନ୍ତ ବନବିହାର )

ଅଥ ବିଚକ୍ଷଣେ କ୍ଷଣେ ସାବଧାନେ ଯେନ । କୁସୁମ ସମୟମୟ ହୋଇଲା ଭୁବନ । ହେଲା କ୍ଷଣପ୍ରଭାପ୍ରଭାପରି କ୍ଷଣେ କ୍ଷଣେ । ଶ୍ରୀଅଙ୍ଗ କେମାର ମାରମାର୍ଗଣଗଣେ ଯେ । ୧ । ତହୁଁ ସେ ପରମରମଣୀୟାଙ୍ଗୀ ରାମାଳି । ଏଥିକି ଯତନ ତ ନ କଲେ ନୋହେ ଭାଳି । କହିଲେ ରେ କର କର ବୀଜଦନ୍ତ କର । ଧ୍ୱନି ଶୁଣୁଛୁ ତ ଚୂତଶିଖେ ପିକଙ୍କର । ୨ । ଚନ୍ଦନ ପବନ ବନ କଲା ସଙ୍କମନ । ପରାଗଧୂସର ସରଣୀରେ ଚଳେ ଜନ । ଅଶେଷ ରୋଲମ୍ବ ଲମ୍ବ କରି ନିଜ ଶ୍ରେଣୀ । କଲେନି ଗର୍ଜନ ଜନଧୃତଦ୍ରୁତ ଜାଣି । ୩ । ବିକଚ ବକୁଳ କୁଳ ସଙ୍ଗେ ମନ ଝାଳି । ବାସ ପ୍ରସାରୁଚ ରୁଚିଦାୟିନୀ ନିଆଳୀ । ଏକାଳ ଭ୍ରମଣ ମଣି ଶ୍ରୀଅଙ୍ଗକୁ ପଥ୍ୟ । ଶୁଣି ବାଳାମଣି ମଣି ମନେ ମହାତଥ୍ୟ । ୪ । ରଖି ପ୍ରମୋଦରେ ଦରେ ରଦବାସେ ହାସ । ଲୋଚନ ଅଞ୍ଚଳ ଚଳେ କଲା ଫରମାସ । ଜାଣି ପରିବାରି ବାରିଜାକ୍ଷୀ ମନୋରଥ । କଲେ ପରିଷ୍କୃତ କୃତକୃତ୍ୟ ହୋଇ ପଥ । ୫ । ବିଜେ ବଡ଼ଭାରୁ ଭାରୁ କେଳିବନ ସରି । ସିଞ୍ଚିଲେ ପନୀର ନୀରତରେ ବିନ୍ଦୁ କରି । ବିଞ୍ଚିଗଲେ ଘନ ଘନସାର ସାରରଜ । ବିଛାଇଲେ ନବନବମାଳୀ ଦଳବ୍ରଜ । ୬ । ଆଦ୍ୟ ପ୍ରାନ୍ତ କରି କାରିଦାନ୍ତସ୍ତମ୍ଭ

---

ଦଶମ ଛାନ୍ଦ

୧ । କ୍ଷଣପ୍ରଭା—ବିଜୁଳିତେଜ, ମାରମାର୍ଗଣଗଣେ—କନ୍ଦର୍ପର ଶରସମୂହ ଦ୍ୱାରା । ୨ । ରାମାଳି—ସ୍ତ୍ରୀମାନେ, ଏଥିକି ଭାଳି···ଏହା ଚିନ୍ତା କରି ଯତ୍ନ ଯେ ନ କଲେ ତା ନୁହେଁ ଅର୍ଥାତ୍ ଯତ୍ନ କଲେ । କରକ—ଡାଳିମ୍ବ, କର—( କଲ, ଲଲୟୋରଭେଦଃ) ମଧୁରଧ୍ୱନି । ୩ । ରୋଲମ୍ବ—ଭ୍ରମର, ଜନଧୃତଦ୍ରୁତ ଜାଣି —ମନୁଷ୍ୟଙ୍କର ଧୈର୍ଯ୍ୟ ଦ୍ରବ ହୋଇଥିବା ଜାଣି । ୪ । ବିକଚ—ପ୍ରସ୍ଫୁଟିତ, ରୁଚିଦାୟିନୀ—ପ୍ରୀତିପ୍ରଦାୟିନୀ, ପଥ୍ୟ—ହିତକର । ୫ । ଲୋଚନଅଞ୍ଚଳ— କଟାକ୍ଷ, ଚଳେ—ଛଳନାରେ, କୃତକୃତ୍ୟ—କୃତାର୍ଥ । ୬ । ବିଜେବଡ଼ଭାରୁ —ଚନ୍ଦ୍ରକଳା ଥିବା କୋଠାରୁ, ସରି—ପର୍ଯ୍ୟନ୍ତ, ଘନ ଘନସାର ସାରରଜ— ବହଳ କର୍ପୂରସାରର ଧୂଳି, ନବ······ନୂଆ ନିଆଳୀ ଫୁଲର ପାଖୁଡ଼ାସବୁ ।

ପୋତ । ଝାଣି ଚନ୍ଦ୍ରାତପ ତପନରୁ ଘଞ୍ଚ ଭ୍ରିତ । ଅଡ଼ଣୀ ଗୁମର ମରକତ ପିକଦାନି । ମୁଠାରେ ଭରମେରମଣୀୟ ମୁଠା ଘେନି । ୭ । ଅମୂଲ୍ୟ ଶୁକସଙ୍କାଶ ମୁଖବାସ ଝଗ୍ରି । ପ୍ରମୋଦବଶରୁ ସବୁ ମର୍ଦ୍ଦିଳ ଖଞ୍ଜରି । ତାହାର ଶ୍ରୀକର କରବାଳ ଗଣ୍ଡାଢାଲ । ବିଭାବରୀକର କରମାଳିଆ ଚରଳ । ୮ । ରତ୍ନଅବିକଳ କଳଧୌତ ଛଡ଼ ଧରି । ଭେଟିଲେ କଙ୍କରି କରିଗମନାକୁ ଘେରି । ଗୃହିଁ ସଖୀ ଲେଖା ଲେଖାକନ୍ୟା ସ୍ୱରୂପାର । ସାଜିଲେ ଗୁଲାଲ ଲାଲ ରଜର ସମ୍ଭାର । ୯ । ଭିଡ଼ ଅବଲଗ୍ନ ଲଗ୍ନ ଗୃହୁ ଚେଲାଞ୍ଚଳେ । ବାନ୍ଧିଲେ ଅବୀର ବୀରବେଶୀ କୁତୂହଳେ । ଘଞ୍ଚ ଭୂଜଭର ଭରମାଙ୍ଗୀ ବୟୋମଦେ । ହସି ଉଭା ହେଲା ହେଲା ପ୍ରକାଶି ପ୍ରମୋଦେ ।୧୦। ମହୀ-ଦୁଃଖାପହ ପହଣ୍ତରେ ରଣି ଝାଙ୍କ । ଗଲା ଆହା ବଜେ ବଜେ ମଣିମା ଏ ଡାକ । ଶ୍ରୀହସ୍ତ ସିତାର ତାର ଧଇଲା କେ ସମ୍ଭା । ବିବାଦକୁ ଡାକି ଡାକି ବଜାଇଲେ କେହ୍ନ । ୧୧ । ଧଇଲା ଖଞ୍ଜରି ଜରି ତକିଅମଣ୍ଡିତା । ନରେନ୍ଦ୍ର-ତନୟା ନୟାଗମସୁପଣ୍ଡିତା । ଆନନ୍ଦଅମଳ ମଲ୍ଲବେଶାକୁ ଧାରିଲା । ମଦଦ୍ୱିରଦର ଦର ରଖି ବାହାରିଲା । ୧୨ । ଅଲଙ୍କୃତ ଝଣ ଝଣ ନାଦେ ପଥ ଭରି । ବଜେ କଲା ରଣରଣି ସମରକୁ ପରି । ସରସ ସାହସ ହସ ପ୍ରକାଶି ଜଗତ । କଲା ବିଶାରଦା ରଦାଂଶୁରେ ଧବଳିତ । ୧୩ । କରି ପରବେଶ ବେଶବତୀ ହୃଷ୍ଟ ମନେ । ଗୃହିଁ ମଧୁରମାର ମାଧୁର୍ଯ୍ୟ କେଳି

---

୭ । କରିଦନ୍ତସ୍ତମ୍ଭ—ହାତୀଦାନ୍ତର ଖୁମ୍ବ, ଭର୍ମ ରମଣୀୟ—ସୁନାଦ୍ୱାରା ସୁନ୍ଦର, ମୁଠା —ଏକପ୍ରକାର ଗୁମର । ୮ । ଶୁକସଙ୍କାଶ—ଶୁଆଆକୃତିବିଶିଷ୍ଟ, ଖଞ୍ଜରୀ—ଖଞ୍ଜଣୀ, ତାହାର ଶ୍ରୀକର...ତାହାର ନିଜ ବ୍ୟବହୃତ କରବାଳ (ଖଣ୍ଡା), ଗଣ୍ଡାଚମରେ ତିଆରି ଢାଲ, ବିଭାବରୀକରକରମାଳିଆ—ଚନ୍ଦ୍ରକିରଣ ପରି ଶୁକ୍ଳ, ଚରଳ—ପତାକା । ୯ । ରତ୍ନଅବିକଳ—ଅବିକୃତ ରତ୍ନରେ ଗଢ଼ା, କଳଧୌତଛଡ଼—ସୁନା ବାଡ଼, ଲେଖାକନ୍ୟାସ୍ୱରୂପାର ଲେଖା ଗୃହିଁ—ଦେବକନ୍ୟାରୂପିଣୀଙ୍କ ପଂକ୍ତିକୁ ଦେଖି, ଗୁଲାଲ—ଫଗୁ ।୧୦। ଅବଲଗ୍ନ—କଟିଦେଶ, ଅଣ୍ଟା; ଭିଡ଼—ଦୃଢ଼ଭାବରେ, ଚେଲାଞ୍ଚଳେ—ଲୁଗାପଣତକାନିରେ, ଭରମାଙ୍ଗୀ—ସ୍ୱର୍ଣ୍ଣବର୍ଣ୍ଣା, ବୟୋମଦେ—ଯୌବନଗର୍ବରେ । ୧୧ । ମହୀଦୁଃଖାପହ—ପୃଥିବୀର ଦୁଃଖ-ଦୂରକାରୀ ( ପହଣ୍ତ ), ତାର ( ଚନ୍ଦ୍ରକଳାର ) ଶ୍ରୀହସ୍ତ ସିତାରକୁ କେ ଧଇଲା । ୧୨ । ଜରିତକିଆ...ଜରିଲଗା ଗଦି ଥିବା ଖଞ୍ଜଣୀ, ନୟାଗମସୁପଣ୍ଡିତା—ନୀତି-ଶାସ୍ତ୍ରପଣ୍ଡିତା, ଆନନ୍ଦଅମଳ—ଆନନ୍ଦରୂପ ଜଣା, ମଦଦ୍ୱିରଦର ଦର ରଖି—ମତ୍ତହସ୍ତୀର ଭୟ ଜାତ କରାଇ । ୧୩ । ଅଲଙ୍କୃତ—ଅଲଙ୍କାର, ରଣରଣସମର—କନ୍ଦର୍ପସହ ଯୁଦ୍ଧ, ରଦାଂଶୁ—ଦନ୍ତର କିରଣ । ୧୪ । ମଧୁରମାର—ବସନ୍ତ

ବନେ । କୁସୁମଲବନେ ବନେ ବିହରିବା ଚିନ୍ତ । ବିହିଲେ ସାର ସାର ମଣ୍ଡଳ ବିଭୂତ । ୧୪ । ହୃଦୟ ଆକୂତକୁ ତରଳାକ୍ଷୀର ଜାଣି । ତୋଳିଲେ କୁସୁମ ସୁମଧୁରାଧରା ଶ୍ରେଣୀ । ଜେମାସଖୀବ୍ରଜ ବ୍ରଜଦେବୀଙ୍କ ଭଉଲେ । ପରିହାସ ରସର ସଞ୍ଚାର କରାଇଲେ । ୧୫ । ପୁନ୍ନାଗଭୂରୁହକୁ ହରିଣ-ନେନା ଜଣେ । ତୋଳନ୍ତେ ପ୍ରସୂନ ସୁନୟନା କେହି ଭଣେ । ପୁରୁଷ ଏ ତରୁ ତରୁଣୀ ରେ ତତେ ଜଣା । ଫୁଟିଛି ଏ ଦେଖି ଦେଖିଲୁ କି ମନେ ଘୃଣା । ୧୬ । ଯେତେ ଲଷ୍ଟ ସାର ସାର ହେଲେହେଁ ତାହାର । ପୁନ୍ନାଗେ ଭରସି ରସିବାର ଅସୁନ୍ଦର । ସେ ବୋଲେ ରେ ସହି ସହି ପାରବି ନାହିଁଟି । ପାଶେ ଛୁଇଅନା ଅନା କଣ୍ଠୀରବକଟୀ । ୧୭ । ତହୁଁ ସୁଧୀରା କେ ରାକେ-ଶ୍ୱରମୁଖୀ କହେ । ତୁ ଜଗତୀଭୂଷା ଭୂଷା ଚମତ୍କାର ନୋହେ । କେହି ପୁଣି କର କରବୀରକୁ ବଢ଼ାନ୍ତେ । କେ ବରାରୋହା ସହାସେ ରସି ବୋଲେ ଏନେତ । ୧୮ । କଳ୍ପ ତ ନିକର କରବୀରେ ଖେଳିବାର । ମଧ୍ୟରେ ଅବୀର ବୀରଟିବା କି ପ୍ରକାର । ତୋଳନ୍ତେ କଂକେଳି କେଳିରତା କେ ଛଇଳା । ତାର ସମୁକୁଳକୂଳଶାଖାକୁ ଧଇଲା । ୧୯ । ପଛରୁ କେ ଯାଇ ଜାଇମୃଦୁଦେହା ଗେଲେ । ଭଉଳା ତା କୁଚକୁ ଚତୁରା ଛଳ ତୁଲେ । ସେ ଭାଷିଲା ଅଳି ଅଲଗଂନୁ ଦାଅ ଛାଡ଼ି । ମୁକୁଳବତୀ ରତିରସରେ ଅଛୁ ବୁଡ଼ି । ୨୦ । ମୃଦୁବାତେ ମଧୁ ମଧୁ

---

ଲକ୍ଷ୍ମୀର, କୁସୁମଲବନ—ଫୁଲ ତୋଳିବା, ସାରମଣ୍ଡଳବିଭୂତ—ସମସ୍ତ ପୃଥିବୀର ଐଶ୍ୱର୍ଯ୍ୟ, ସାର ବିହିଲେ—ଶ୍ରେଷ୍ଠ କର୍ମ ବିଧାନ କଲେ । ୧୫ । ହୃଦୟଆକୂତ—ମନର ଭାବ । ସୁମଧୁରାଧରା—ମନୋହର ଅଧରଧାରିଣୀ, ବ୍ରଜଦେବୀଙ୍କ ଭଉଲେ—ଗୋପୀମାନଙ୍କ ପର । ୧୬ । ପୁନ୍ନାଗଭୂରୁହ—ପୋଲଙ୍ଗଗଛ ଓ ପୁରୁଷଶ୍ରେଷ୍ଠ, ପୁରୁଷ ...ପୁରୁଷରୂପ ପୋଲଙ୍ଗଗଛ ଫୁଟିଛି ଅର୍ଥାତ୍ 'ପୁଷ୍ପବତୀ' ହୋଇଛି, ଏହା ଦେଖି ତୋ ମନ ଘୃଣା ହେଲା କି ? ୧୭ । ଯେତେ ଲଷ୍ଟ···ତାହାର ପୁଷ୍ପ ଯେତେ ଉତ୍କୃଷ୍ଟ ହେଲେହେଁ, ପୁନ୍ନାଗ—ପୋଲଙ୍ଗ ଓ ପୁରୁଷ ହାତୀ । ୧୮ । ରାକେଶ୍ୱର ମୁଖୀ—ପୂର୍ଣ୍ଣଚନ୍ଦ୍ରବଦନା, କରବୀର—ଏକପ୍ରକାର ପେଚ୍ଛାଫୁଲ ( କଣିଅର ନୁହେଁ ) । ୧୯ । କଳ୍ପିତ—ବୀରସଙ୍ଗେ ଖେଳିବାକୁ ନିକର (ନଷ୍ଟସ୍ପୃ) କର କଳ୍ପ (ହାତଦେଲୁ), ଅବୀର—ଫଗୁ, ଯେ ବୀର ନୁହେ । କଂକେଳି—ଅଶୋକ, ସମୁକୁଳକୂଳଶାଖା—କଢ଼ ହୋଇଥିବା ନିକଟବର୍ତ୍ତୀ ଡାଳ । ୨୦ । ଜାଇ ମୃଦୁଦେହା—ଜାଇଫୁଲ ପରି କୋମଳ ଦେହ ଯାହାର । ମୁକୁଳବତୀ—କ୍ଷୁଦ୍ର କୁଚଯୁକ୍ତା, ତେଣୁ ପୁଷ୍ପବତୀ ହୋଇ ନ ଥିଲେହେଁ ରତିକିପୁଣା ଅଟେ, ଅଥଚ ଫୁଲ ନ ଧରି ଅଶୋକ ମୁକୁଳ ଧରି

ଅଙ୍ଗେ ପକାଇଲା । ଚମକି କେ ବଧୂ ବଧୂଲିକି ଚକାଇଲା । କେ ବାମା-
ବର ସେ ରସେ ବୋଇଲା ତହିଁକି । ମୋର ପ୍ରାଣବନ୍ଧୁ ବନ୍ଧୁକରେ
ପଡ଼ିଲୁ କି ।୨୧। ସୁମନ୍ଦାରବ୍ରଜ ଧ୍ୱଜ କରି କେ ନାଗରୀ । ଜଳପିଲା ମଦେ
ମଦେଭେନ୍ଦ୍ରଗତି କରି । ଦେଖ ଭୋଗ କରେଁ କରେ ସୁବରଜବାଳୀ ।
କୃଷ୍ଣତିଁ ମୁଁ ମାନ ମାନଧାଏ ଧର୍ମପାଳ ।୨୨। ଧରି ସିନ୍ଧୁବାରବାର କରୋ-
ଦରେ ଗେଲେ । ଜଣିଲି କୁମ୍ଭଜ ଭଜ ମୋତେ ଲୋକେ ବୋଲେ ।
ନାଗିଣୀ ପାଖରେ ଖରେ ଗୃହିଁ ବିଚକିଲ । ବିହ୍ୱଲ କେ ମଲ୍ଲୀ ମଲ୍ଲୀ ବୋଲି
କୋଲାହଳ । ୨୩ । ଘେନି ନାଗେଶ୍ୱର ସ୍ୱର ରଚି କେ ସେପରି ।
କାଳୀଦଳନର ନରତନକୁ ଅଚରି । ବୋଲେ ମତେ ବନ୍ଧୁ ବନ୍ଧୁମାନ କରି
ରଖ । ମୁଁ ଜାଙ୍ଗଳକିଟି କିନ୍ନୀ ଭଙ୍ଗି ନାଚେଁ ଦେଖ । ୨୪ । ଜାଣେ
ଅଶୀବିଷ ବିଷହର ନାମ ଗଦ । ରବିସୁତାସର ସରସିଜ ତୋଳା ପଦ ।
ତୋଳୁଁ କଢ଼ୀକୁନ୍ଦ କୁନ୍ଦନାଙ୍ଗୀ କେହୁ ସ୍ନେହେ । କେଉଁ କଳାବତୀ
ବଡଶାର୍ଙ୍ଗବୟା କହେ । କରେ ସଖି ଅଜ ଅଜନମ ସ୍ନେହତଳେ । ମାନସେ
ନ କଳ କଳି ଲୋଡ଼ୁ ତୁ ତ ବଳେ । ଧରୁ କେ ଶୁଭାଙ୍ଗୀ ଭଙ୍ଗି ସେବତୀରୁ
ତାଳେ । ହସି କେ ଅବଳା ବଳାହକକେଶୀ ଛଳେ । ୨୬ । ଏ ପାରିବା-

---

ଥିଲେହେଁ ଖେଳ ଜାଣେ । ୨୧ । ମଧୁ—ବସନ୍ତକାଳ, ମଧୂ—ପୁଷ୍ପରସ, ବଧୂଲି—
ବନ୍ଧୁକ ଫୁଲ, ସାତଘଡ଼ିଆ ଫୁଲ; ରସେ—କୌତୁକରେ, ପ୍ରାଣବନ୍ଧୁ—
( ସଂବୋଧନ ), ବନ୍ଧୁକରେ—ମୋ ସ୍ୱାମୀ ହାତରେ ଅଥଚ ବନ୍ଧୁକ ( ବଧୂଲି )
ଫୁଲରେ । ୨୨ । ସୁମନ୍ଦାରବ୍ରଜ—ସୁନ୍ଦର ମନ୍ଦାର ଫୁଲମାନଙ୍କୁ; ଧ୍ୱଜ କରି
—ତୋଳି, ମଦେଭେନ୍ଦ୍ର—ମତ୍ତହସ୍ତୀ, ସୁବରଜବାଳୀ—ସତ୍ୟଭାମା, କରେ—
ସୁଖରେ ( ସତ୍ୟଭାମାଙ୍କ ପାଇଁ କୃଷ୍ଣ ସ୍ୱର୍ଗରୁ ମନ୍ଦାରଫୁଲ ଆଣିଥିଲେ ) ।
୨୩ । ସିନ୍ଧୁବାର—ବେଙ୍ଗୁଜିଆ ଫୁଲ, ବାର—ସମୁଦ୍ର, କରୋଦରେ—ହାତମୁଠା
ଭିତରେ, କୁମ୍ଭଜ—[ଅଗସ୍ତ୍ୟ ଋଷି । ଅଗସ୍ତ୍ୟ ଗୋଟିଏ ସମୁଦ୍ରକୁ ଚଳୁ କରିଥିଲେ,
ମାତ୍ର ମୁଁ ବାର ବାର (ଦ୍ୱାଦଶସଂଖ୍ୟକ) ସିନ୍ଧୁକୁ ହାତମୁଠାରେ ଧରିଲି ]। ନାଗିଣୀ
—ଏକଜାତୀୟ ମଲ୍ଲୀଫୁଲ, ବିଚକିଲ—ଅନ୍ୟ ଜାତୀୟ ମଲ୍ଲୀଫୁଲ, ମଲ୍ଲୀମଲ୍ଲୀ—
ମଲ୍ଲୀଫୁଲ, ମଲ୍ଲୀଫୁଲ ଅଥଚ ମରଗଲି ମରଗଲି । ୨୪ । ନାଗେଶ୍ୱର—ନାଗେଶ୍ୱର
ଫୁଲ ଓ ସାପୁଆଙ୍କ ବାଜା, ନରତନ—ନର୍ତ୍ତନ, ନୃତ୍ୟ; ଜାଙ୍ଗଳକ—ସାପୁଆକେଳା ।
୨୫ । ଆଶୀବିଷ—ସର୍ପ, ବିଷହର ନାମକ ଗଦ । ରବିସୁତାସର—ଯମୁନା ନଦୀ,
ସରସିଜତୋଳାପଦ—ପଦ୍ମତୋଳା ପଦ, କଢ଼ୀକୁନ୍ଦ—କୁନ୍ଦଫୁଲର କଢ଼ିକୁ,
ବଡଶାର୍ଙ୍ଗବୟା—ଷୋଳବୟସୀ । ୨୬ । କଳ—କଳକା ବା କଢ଼ ଅଥଚ କଳହ,

ପଣି ପଣସଂଖ୍ୟ ଜନେ ଥିବ । ଅନ୍ତୁ କି ସନ୍ଧାନେ ଧାନେ ଉପାୟୁ ବିଭବ । ତୋଳନ୍ତେ ପାଟଳୀ ଟଳି ଭାଷେ କେ କୌତୁକେ । ତତେ କର୍ଣ୍ଣସମ ସମଜନ୍ତି ପରି ଲୋକେ । ୨୭ । ଅର୍ଥୀରେ ଉତ୍ତମତ ମହତ୍ତ୍ୱ ରଖାଇଲୁ । ସହଜ ନାମକ ମରଜି ଯା ଦେଖାଇଲୁ । ବୋଇଲା ରଙ୍ଗଣୀ ଗଣି ଗଣି କେଉଁ ବାମା ନାହିଁ ଧୀରିଗଣ ଗଣନାରେ ମୋ ଉପମା । ୨୮ । କଣୋରି ଏପରି ପରିହାସରସେ ହସି । ଅଙ୍ଗନାସାଧରି ଟେରକୀରେ ଯାଏ ଲୋଟି । ତଦନନ୍ତର ସେ ରସେଙ୍ଗିତଜ୍ଞାରଜାଙ୍କୁ । କାଞ୍ଚନଫରୁଆରୁଆ ପୀନ ଉରଜାଙ୍କୁ । ୨୯ । କୁଚଜିତାଚଳା ଚଳାପାଙ୍ଗୀ ସୁଷମାଙ୍କୁ । ସକଳ ଭୁବନ ବନ ସୁରଭିରମାଙ୍କୁ । ସଖୀଏ ବଗିଚ୍ଚ ଗୃହ ପାଞ୍ଚଗେଲେ ଗେଲେ । ମନୋହର ବାସ ବାସନ୍ତିକ ବେଶ କଲେ ।୩୦। କଲେ ଯେ ଯାହାର ହାର ଆଦି ଫୁଲ ଭୂଷା । ପ୍ରଫୁଲ୍ଲ ବ୍ରତତୀତତି ପରି ହେଲେ ଯୋଷା । ନବୀନ ପ୍ରବାଳ ବାଳ ଅରୁଣୋଷ୍ଠୀଗଣ । କଲେ ଶ୍ରୁତିପାଶ ପାଶ ପରି ବିଭୂଷଣ । ୩୧ । ହସି ବାଳା ବରଷିଲା ଫଗୁମୁଷ୍ଟି । ଅହା ରସାଳସା ଲସାଇଲା ଶୋଭାସୃଷ୍ଟି । ଯଥାଟି ମଧୁପୀ ଧୂପି ପିଅଇ ମରନ୍ଦ । ଫେରେ ଲଭି ତାପ ତା ପରିଗେହୋଇ

---

ବଳାହକକେଶା – ଘନକେଶା । ୨୭ । ପାଟଳୀ—ପାଟଳଫୁଲ, ଟଳି – ହଲି ହଲି, ହେ ପାଟଳି ! ତୋତେ ଲୋକେ କର୍ଣ୍ଣସମ ( କାନପରି, ପାଟଳୀ ଫୁଲ ସଙ୍ଗେ କାନର ତୁଳନା ହୁଏ ଅଥଚ ଦାତାକର୍ଣ୍ଣ ଭଳି ) ବୁଝନ୍ତି ପରି । ୨୮ । ଅର୍ଥୀରେ ଉତ୍ତମ କର୍ଣ୍ଣ—ଯାଚକମାନଙ୍କ ପ୍ରତି ଉତ୍ତମ ଥିଲେ । ୨୯ । ରସେଙ୍ଗିତଜ୍ଞାରଜାଙ୍କୁ — ଯେଉଁମାନେ ରସର ଇଙ୍ଗିତ ( ମନୋଗତ ଭାବ ) ବୁଝି ପାରନ୍ତି, ସେମାନଙ୍କ ମଧ୍ୟରେ ଶ୍ରେଷ୍ଠା । କାଞ୍ଚନଫରୁଆରୁଆ – ସୁନା ଫରୁଆ ପରି ଉଠିଥିବା, ପୀନ – ସ୍ଥୂଳ । ୩୦ । କୁଚଜିତାଚଳା—କୁଚଦ୍ୱାରା ପର୍ବତକୁ ଜୟକରିଛୁ । ସକଳ···ସମଗ୍ରବ୍ରହ୍ମାଣ୍ଡର ଅରଣ୍ୟର ବସନ୍ତଲକ୍ଷ୍ମୀଙ୍କୁ । ମନୋହର-ବାସ ବାସନ୍ତିକ —ମନୋହର ସୌରଭଯୁକ୍ତ ବାସନ୍ତିକ ପୁଷ୍ପରେ ବେଶ କଲେ । ୩୧ । ପ୍ରଫୁଲ୍ଲ-ବ୍ରତତୀତତି – ପ୍ରସ୍ଫୁଟିତ ଲତାସମୂହ । ପ୍ରବାଳ—ନୂଆପତ୍ର, ବାଳଅରୁଣୋଷ୍ଠୀ — ବାଳଅରୁଣ ( ସକାଳଅରୁଣ ) ପରି ( ରକ୍ତବର୍ଣ୍ଣ ) ଓଷ୍ଠ ଯାହାଙ୍କର । ଶ୍ରୁତିପାଶ— ସୁନ୍ଦର କର୍ଣ୍ଣଦ୍ୱୟକୁ ପାଶପରି ( କର୍ଣ୍ଣକୁ ଫାଶ ସଙ୍ଗେ ତୁଳନା କରାଯାଏ ) । ୩୨ । ବାଳାବର—ଏଠାରେ ଚନ୍ଦ୍ରକଳା, ଲସାଇଲା—ଦବାଇଲା, ପରାସ୍ତ କଲା, ମଧୁପୀ—ଭ୍ରମରୀ, ଧୂପି – ଧାଇଁ ଯାଇଁ, ମରନ୍ଦ—ମକରନ୍ଦ, ତାପ—ଦୁଃଖ ।

ଅଙ୍କ । ୩୨ । ମାଣିକ୍ୟଖଣିରୁ ନିରୂପମ ଶିଳ୍ପ କରି । କଲା କି ସେ ଜାତ ଯାତ ଗୃରମୁଖଧାରୀ । ହଂସଳଦ୍ୱୀପର ପର ଦେବତାମଣ୍ଡଳୀ । ଅସି ସେ ବନୀକି ନିକି ଅରମ୍ଭିଲେ କେଳି । ୩୩ । ଅନୁରାଗ ରସର ସଂକୋଚ ନ ଥିବାରୁ । ଅଛନ୍ତି କି ବାହ୍ୟ ବାହ୍ୟନ୍ତରେ ରମ୍ଭୋରୁ । ଗାଇବା ହେତୁରୁ ଋତୁରାଜ ହୋରୀଗୀତ । ତେଜିଲେ କୂଜିତ ଜାତ ହେଲେ ପରଭୃତ । ୩୪ । ଜେମା ହାତୀ ମାର ମାର ବୋଲି ଏହା ଉତରେ । ବୋଲି କେ କାହାର ହାର ଅଡ଼ୁଆ ଧଇଲେ । ଜଣେ ଚପଳା ପଳାଇବା ବେଳେ ବନ୍ଧ । ଆଣେ କେ ଅବଳା ବଳାଳାରେ ଧରି ବାନ୍ଧ । ୩୫ । ଦକ୍ଷିଣ ମରୁତରୁ ତ ଚେଲ ଉଡ଼େ ଦେଖି । ଫିଙ୍ଗେ ଲାଲରଜ ରଜନୀଶବିମ୍ବମୁଖୀ । ଉଡ଼ନ୍ତେ ଦୁକୂଳକୁ ଲଜ୍ୟାରେ ସେ ସୁନ୍ଦରୀ । ମାରଇ ମୁଖକୁ ଖକୁ ଉଡ଼ାଇଲା ପରି ।୩୬। ହୋଇ ସବିନୟ ନୟନରେ ଦେଇ ପାଣି । ଫିଙ୍ଗିଲା ତଳକୁ ଲକୁଚକୁଚରୁ ତରୁଣୀ । ସଖୀ ନୀବୀପାଶ ପାଶ ଗଲା ତାର ଦେଖି । ଅନଙ୍ଗନିକେତେ କେତେ ରଙ୍ଗ ଗଲା ମିଶି । ୩୭ । ବରଜ ବରଜ ରଜବର୍ତ୍ତୀଙ୍କୁ ବୋଲି । ଖେଳନ ସାହସୀ ହସି କରେ ଦାଏ ପେଲି । ଫଗୁଖେଳ ସରୁ ସରୁମଧ୍ୟମା ଛଇଲା । ଅତର ପନୀର ନୀର ଖେଳେ ମନ ଦେଲା । ୩୮ । ବିବିଧ ଅତର ଛ ରମଣୀମଣି ଢାଳେ । ସୁନାକଲଶୀରେ ଶିରେ ଦାସୀ ବାହ୍ୟ-

---

ତା ପରାଗରେ—ତା ରେଣୁରେ । ୩୩ । ନିରୂପମ—ଉପମାରହିତ । ମାଣିକ୍ୟଖଣି —ରକ୍ତବର୍ଣ୍ଣର ଖଣି, ସେ ଯାହାକୁ ଜାତ କଲା କି ? ଗୃରମୁଖଧାରୀ—ବଧାଡ଼ା । ହଂସଳଦ୍ୱୀପ—ହଂସପାଦ ନାମକ ଗାଢ଼ ରକ୍ତବର୍ଣ୍ଣବିଶିଷ୍ଟ ଦ୍ୱୀପ । ପରଦେବତା ମଣ୍ଡଳୀ—ଉତ୍କୃଷ୍ଟ ଦେବୀମାନେ, ବନୀ—ଉପବନ । ୩୪ । ଅନୁରାଗରସ— ସ୍ନେହରସ ( ସ୍ନେହ ରକ୍ତ ବର୍ଣ୍ଣ ବୋଲି କବିମାନେ ବର୍ଣ୍ଣନା କରନ୍ତି ) । ଅଛନ୍ତି କି···ରମ୍ଭୋରୁ ସଖୀମାନେ ଭିତରେ ଓ ବାହାରେ ରକ୍ତବର୍ଣ୍ଣ ହୋଇଅଛନ୍ତି କି ? କୂଜିତ—ପକ୍ଷୀଙ୍କର ମଧୁର ଶବ୍ଦ । ପରଭୃତ—କୋକିଳ । ୩୫ । ଆଡ଼ୁଆ—ହାତୀ ପ୍ରଭୃତି ବନ୍ୟଜନ୍ତୁଙ୍କ ନିବାରଣ ପାଇଁ କରାଯିବା ଯଷ୍ଟି ପ୍ରଭୃତିକୁ ଆଡ଼ୁଆ କହନ୍ତି । ( ଏଠାରେ ଚନ୍ଦ୍ରକଳା ରୂପ ହାତୁଣୀ ଫଗୁ ମାରୁଥିବାରୁ ତାକୁ ନିବାରଣ କରିବାପାଇଁ ହାରରୂପ ଆଡ଼ୁଆକୁ ଧଇଲେ ) । ଚପଳା—ବିଜୁଳି । ୩୬ । ମରୁତରୁ—ପବନ ହେତୁରୁ । ଲାଲରଜ—ଫଗୁ, ରଜନୀଶବିମ୍ବମୁଖୀ—ଚନ୍ଦ୍ରମୁଖୀ । ଖକୁ—ଆକାଶକୁ ୩୭ । ଲକୁଚ—ଜେଉଟ ଫଳ, ନୀବୀପାଶପାଶ—ପିନ୍ଧାଲୁଗାର ଅଣ୍ଟାପାଖ ଖୋସଣୀ ପାଖ । ଅନଙ୍ଗନିକେତ—ଗୁପ୍ତଅଙ୍ଗ । ୩୮ । ରଜବର୍ତ୍ତୀ—ପୁଷ୍ପବତୀ । ସରୁମଧ୍ୟମା—

ଥିଲେ । ମଣିମୟ କେମ କେମମୟ ବାହୁ ଦେଖି । କରେ ଦେଲା ନାଳ ନଳିନାକ୍ଷୀର କେ ସଖୀ । ୩୯ । ଖେଳିଲା ଅଖଞ୍ଜ ଖଞ୍ଜନାକ୍ଷୀ ନାଗ୍ର-ରାଜା । ମଣ୍ଡନଶିଞ୍ଜିତଜାତ ହେଲା ଘନ ବାଜା । ବହିଲା ଅତରତରଙ୍ଗିଣୀ ସ୍ରୋତ ପରି । ଘେନାଲେ ଭ୍ରମର ମରକତଗୋଲ ସରି । ୪୦ । ଉପବନ ତଳ ତ ଲସଇ ଚନ୍ଦ୍ରୋପଳ । କୁସୁମରଜରେ ଜରେ ଅତରକଲ୍ଲୋଳ । କାର ଏକପାଖ ପା ଖସିଲେ କେ ହସିଲା । ଦୁଇପଦ ତାର ତାରତମ୍ୟରେ ଖସିଲା । ୪୧ । ପରାଗଜମ୍ବାଳ ବାଳମୃଗାକ୍ଷୀ କେ ଧରି । ଅଳଙ୍ଗି କ୍ଷେପି ଲେପିଲେ ହସଇ କଶୋରୀ । କେ କାହା ଉପରେ ପରେ ଭର ଦେଇ ପଡ଼େ । ଧରି କରତାଳ ତାଳସ୍ତନା ହସି ପଡ଼େ । ୪୨ । ନିଜ ପ୍ରତିବିମ୍ବ ବିମ୍ବଅଧରୀ କେ ଲେଖି । କହେ ଭ୍ରମେ ଅନା ଅନାୟୃତ ହେଲା ସଖୀ । ତୋଳି ଧରିବା କି ବାକି ରହିଯିବ ସିନା । ନୋହେ ଅନ୍ୟ ସମ ସମରଥା ଏ ନୂତନା । ୪୩ । କାରୂପେ ଟେ ଗୋ ସହ ସହଚରୀ ଏ କି ପ୍ରୀତି । ଶୁଣି ଏ ଭାରତୀ ରତିତୁଲ୍ୟାଏ ହସନ୍ତି । ତନୟାମୁଁ ବଳି ବଳିଶୋଭନା ଖେଳିଲା । ଅତି ମୃଦୁତନୁ ତ ନୂତନା ଶ୍ରାନ୍ତି ହେଲା । ୪୪ । କୃଶ ମଧ୍ୟମ ତ ମତଗଜ-ଗମନାର । ଗୁମୀକରଘଟ ଘଟନୀୟ ପୟୋଧର । ଅଙ୍ଗକୁ ଶିରୀଷର ସମତା ନାହିଁ ଯାର । ସେ ହେଲେ ଆଶ୍ରମୀ ଶ୍ରମରତ ଚମତ୍କାର । ୪୫ । କଳ୍ପସୁମ୍ଫଯତ ଯତନରେ ଲାଗି ବାସ । ହୋଇଲା ଜବନ ବନରୁହବାସ ଶ୍ୱାସ । ନୟନ ଅଞ୍ଜନ ଜନମୋହନାର ଭଲା । ସ୍ୱେଦରେ ଗାଧୋଇ ଧୋଇ ହୋଇ କ ଛଇଲା । ୪୬ । କଞ୍ଜଜୟୁ ଦୟୁଦକ୍ଷକରକୁ ବୁଲାଇ । ଜେମାଦେଇ ଦେଇ

---

କ୍ଷୀଣକଟି । ୩୯ । ନଳ—ପିଚକାରୀ । ୪୦ । ଅଖଞ୍ଜଖଞ୍ଜନାକ୍ଷୀ—ନିର୍ଦୋଷଖଞ୍ଜନପକ୍ଷୀ ପରି ଚଞ୍ଚଳ ଆଖି ଯାହାର, ମଣ୍ଡନଶିଞ୍ଜିତ—ଅଳଙ୍କାରଧ୍ୱନି, ଘନବାଜା—ଉଚ୍ଚ ସ୍ୱରରେ ବାଜୁଥିବା ବାଦ୍ୟ, ଅତରତରଙ୍ଗିଣୀ—ଅତରର ନଦୀ, ମରକତଗୋଲ ସରି—ମରକତମଣିର ଗୋଲ ପରି । ୪୧ । ଉପବନ...ଚନ୍ଦ୍ରକାନ୍ତମଣିରେ ତିଆରି ହୋଇଥିବା ବଗିଚାର ତଳଦେଶ ଲସଇ ( ତଳକୁ ଦବିଗଲା )। ୪୨ । ପରାଗଜମ୍ବାଳ —ଫଗୁକାଦୁଅ, କ୍ଷେପି—ଫୋପାଡ଼ି, ପରେ—ଅନ୍ୟ ଉପରେ । ୪୩ । ନିଜ ପ୍ରତିବିମ୍ବ—ଚନ୍ଦ୍ରକଳାର ସ୍ୱପ୍ରତିକୃତି, ସଖି ( ଚନ୍ଦ୍ରକଳା ) ଅନାୟୃତ ( କ୍ଳାନ୍ତ ) ହେଲ । ୪୪ । ମଧ୍ୟମ—କଟିଦେଶ, ଗୁମୀକରଘଟଘଟନୀୟ—ସୁନା ମାଠିଆ ପରିସୁନ୍ଦର, ଶିରୀଷର ସମତା—କୋମଳ ଶିରୀଷ ଫୁଲର ସାମ୍ୟ, ଶ୍ରମରତ—ପରିଶ୍ରମକ୍ଳାନ୍ତ; ଆଶ୍ରମୀ ହେଲେ—ଆଶ୍ରମମଣ୍ଡପରେ ବସିଲେ । ୪୬ । ହୋଇଲା···ପଦ୍ମଗନ୍ଧବିଶିଷ୍ଟ ନିଶ୍ୱାସ ଶୀଘ୍ର ଶୀଘ୍ର ବହିଲା । କ ଛଇଲା—କି ସୁନ୍ଦର । ୪୭। କଞ୍ଜଜୟୁ—ପଦ୍ମ ଅପେକ୍ଷା ସୁନ୍ଦର

ଅଳି ଅଂସରେ ଗେଲାଇ । ମଧ୍ୟେ ଦେଇ ବାମ ବାମକର ହେଲା ଉଭା । କେ କରବ ଶେଷ ସେ ସମୟେ ତାର ଶୋଭା । ୪୭ । ମଣ୍ଡାଇ ଗୃହଦର ଦରକଣ୍ଠୀ କେ ପାଣିରେ । ପୋଛିଲା ସୁନ୍ଦର ଦରପଣମୁଖୀ ଧୀରେ । ଆତପ ସକଳ କଳକଣ୍ଠବାଣୀ ଦେହେ । ନ ବାଧିଲା ପର ପରପାଳିବାକୁ ସ୍ନେହେ । ୪୮ । ଧଇଲା କେ ବିଧୁ ବିଧୁନନହାସଦ୍ୟୁତ । ବିଶାଳ ପେଷଳ ସଲକ୍ଷଣ ଫୁଲଛତ । ମୃଦୁଲ ପବନେ ବନେ ଏପଥ ବିହରୁ । କଲ ସୁତରଙ୍ଗ ରଙ୍ଗରସେ ମନେ ଭୀରୁ । ୪୯ । ପଞ୍ଚାଶତ ଏକ ଏ କବୀଶ ପଦେ ଛାନ୍ଦ । ବନବିହାର ସରସ ଜାଣିବେ କୋବିଦ । ହେଲେ ରସବଶ ବସନ୍ତରେ ପାଠ ହେବ । ଉତ୍ତରେ ସଲିଲ ଲୀଳାରସ ବରଷିବ । ୫୦ । ପ୍ରପନ୍ନ ଜନର ନରକାଦ୍ୟ ମହାଦୁଃଖ । ଯେଉଁ ପ୍ରଭୁ ହରେ ହରେ ଉଛାରନ୍ତେ ମୁଖ । ତାଙ୍କ ସନ୍ନିଧିରେ ଧୀରେ ଜଳନ୍ତରପଥ । ସଗଉମାଦର ଦରଶନ କଲେ ନାଥ । ୫୧ ।

## ଏକାଦଶ ଛାନ୍ଦ

### ରାଗ—ସିନ୍ଧୁଡ଼ା

### ( ଜଳକେଳି )

ଶୁଣ ହେ ସୁଜନ ମଧୁ କାଳ ବନ-ବିହାର କୁସୁମ ତୋଳା । କୁତୁକ ଶେଷରେ ଶ୍ରୀଅଙ୍ଗ ଦେଶରେ ଅଳସ ଲଭିଲା ବାଳା ସେ । ମହାରାଜ-କୁମାରୀ । ନବ ଶିରୀଷରୁ ସୁକୁମାରୀ ସେ । ଶତେ ଶନ୍ତ୍ରଲ ସୁଶୀତ ବାର ସେ । ୧ । ମନ ଜାଣି ପ୍ରାଣ ସହଚରୀଗଣ କୁସୁମ ତଲ୍ପସ ଠେକ ।

---

ଦସ୍ତଦକ୍ଷକର—ଦସ୍ତାପୂର୍ଣ୍ଣ ଦକ୍ଷିଣ ହସ୍ତ; ଅଂସ—କାନ୍ଧ, ମଧ୍ୟ ଦେଇ···ଅଣ୍ଟାରେ ବାମ (ସୁନ୍ଦର) ବାମକର ଦେଇ । ୪୮ । ଦରକଣ୍ଠି—କମ୍ବୁକଣ୍ଠୀ, ଆତପ—ଖରା, କଳକଣ୍ଠବାଣୀ—କୋକିଳଭାଷିଣୀ । ୪୯ । ବିଧୁବିଧୁନନହାସଦ୍ୟୁତ—ଯାହାର ହାସ୍ୟର ଶୋଭା ଚନ୍ଦ୍ରକୁ କମ୍ପାଇ ଦିଏ, ପେଷଲ—ସୁନ୍ଦର, ସଲକ୍ଷଣ—ଶୁଭଚିହ୍ନ-ଯୁକ୍ତ, ସୁତରଙ୍ଗରଙ୍ଗରସେ—ସୁନ୍ଦର ଲହରୀ ଥିବା ପୁଷ୍କରଣୀ କ୍ରୀଡ଼ାରେ । ୫୦ । କବୀଶପଦେ—ବଡ଼ ବଡ଼ କବିଙ୍କଦ୍ୱାରା ପ୍ରଯୁକ୍ତ ପଦରେ । ୫୧ । ହରେ—ହେ ହରି ! ସଗଉମାଦର—ଗୌରବ ଓ ଆଦର ସହିତ ।

ଧୀରେ ଧୀରେ ଗେଲେ ବିଜେ କରାଇଲେ ସତରଙ୍ଗ ସରସୀକି ଯେ । ଧରା-
ଚମ୍ପକଗଉରା । ତିନି ଭୁବନ ଇନ୍ଦିରା ଶୋଭା ସେ । ସରତୀରେ ଯାଇ
ହେଲା ଉଭା ସେ । ୨ । ସଲୀଳ ଲହରୀ କଞ୍ଜ ମଧୁଝର ସଙ୍ଗ ଶୀତଳ
ମରୁତ । ମୃଦୁ ମୃଦୁତର ସ୍ପର୍ଶରୁ ତାର ତନୁ କଲା ଆପ୍ୟାୟିତ ସେ । ସେହି
ସମୟୁ ଠାକୁ । ରଖି ମର୍ଦ୍ଦନ ମଣିଚଉକି । ବିଜେ କରାଇ ନେଲେ ତହିଁକି
ଯେ । ୩ । ଷଟପଦ ରସନା ହୋଇ ସୁଦର୍ଶନାମଣ୍ଡଳୀ ବାଲାକୁ ଘେରି । ତା
ଶୋଭାସଦନ ଅଙ୍ଗେ ମରଦନ କଲେ କେତକୀ ଫୁଲରସ ଯେ । ଦିବ୍ୟ
ଝୁନା ଗୁଣ୍ଡରେ । ଅତି ଯତ୍ନେ ପୋଛିଲେ ଆଦରେ । ଅନୁରାଗରୁ
ଅବିବାଦରେ ଯେ । ୪ । ପଟୀର ସୁବାସ ଘଟୀକି ସେ କୃଶକଟୀ ଅଙ୍ଗ ଟିରେ
ବୋଳି । ଗନ୍ଧିଲ ନିଂଯାମା ପଙ୍କ ତୁଲେ ବାମା କୁଙ୍କୁମକୁ ଥିଲେ ଦଳି ଯେ ।
ବୋଳିଦେଇ ବହଳେ । ଉତାରିଲେ ହେମବଂଶଦଳେ ଯେ । ତନୁକାନ୍ତି
କୁନ୍ଦନକୁ ଛଳେ ସେ । ୫ । ବିଗୁରିଲ କବି ଜେମା ଅଙ୍ଗଚ୍ଛବି ସମାନ
ନୋହିବା ଘେନି । ରଜନୀ କାଶ୍ମୀର ଶ୍ରୀଙ୍ଗରେ ତାର ନ ରଖି ପ୍ରିୟସଜନୀ
ସେ । ଡରେ ବୋଇଲେ ଛି ଛି । ଅଙ୍ଗତୁଲ୍ୟ ନୋହିବାରୁ କାଛି ମେ ।
ସେହିକ୍ଷଣେ ପକାଇଲେ ପୋଛି ଯେ । ୬ । କି ଅବା ଅବଳାମଣିଦ୍ୟୁତିତୁଲା
ଲଭିବା ବାଞ୍ଛାରେ ବସି । ତା ଶଶୀର ସୁରତରଙ୍ଗିଣୀପୁର ମଧ୍ୟରେ ମୁହୂର୍ତ୍ତେ
ଝାସି ସେ । ହେଲେ ଯହୁଁ ତା ସଙ୍ଗୀ । ପାପ ପଙ୍କଯାକ ଦେଲେ ଫିଙ୍ଗିଯେ।

---

ଏକାଦଶ ଛାନ୍ଦ

୨ । ସତରଙ୍ଗ—ତରଙ୍ଗଯୁକ୍ତ । ତିନିଭୁବନରଇନ୍ଦିରା—(ଲକ୍ଷ୍ମୀ)ଙ୍କ ପରି
ସୁନ୍ଦରୀ । ୩ । ସଲୀଳଲହରୀ···ଖେଳୁଥିବା ତରଙ୍ଗ ଉପରେ ଥିବା ପଦ୍ମମାନଙ୍କର
ମଧୁ (ମକରନ୍ଦ) ଝର (ପ୍ରବାହ) ସଙ୍ଗ ହେତୁରୁ ଶୀତଳ; ଆପ୍ୟାୟିତ—ସନ୍ତୋଷିତ,
ମର୍ଦ୍ଦନମଣିଚଉକି—ରତ୍ନନିର୍ମିତ ଯେଉଁ ଚୌକିରେ ବସି ତୈଳ ମର୍ଦ୍ଦନ
କରାଯାଏ । ୪ । ଷଟପଦ ରସନା—ଆଠ ସରିଆ କାଞ୍ଚୀଦାମକୁ ଜାକ ଦେଇ,
କେତକୀଫୁଲରସ—କେତକୀଫୁଲର ଅତର, ଝୁନା—ପାଉଡର । ୫ । ପଟୀର-
ଚନ୍ଦନ, ପଟୀର···ବାସଚନ୍ଦନର ଅର୍କ ଥିବା ପାତ୍ରକୁ । ଗନ୍ଧିଲନିଂଯାମାପଙ୍କ
ତୁଲେ—ଗଣ୍ଡିହଳଦୀ ବଟା ସାଙ୍ଗରେ, ହେମବଂଶଦଳେ—ସୁନା ବାଉଁଶ ପତ୍ରରେ,
କୁନ୍ଦନ—ସୁନା । ୬ । ରଜନୀକାଶ୍ମୀର—ହଳଦୀ ଓ କୁଙ୍କୁମ । ୭ । ଦ୍ୟୁତିତୁଲ
—କାନ୍ତିର ତୁଳନା; ତା ଶଶୀର ସୁରତରଙ୍ଗିଣୀପୁରମଧ୍ୟରେ—ଚନ୍ଦ୍ରକଳାର ଶରୀର-

ଧନ୍ୟ କାମଦାୟିନୀ ଶୁଭାଙ୍ଗୀ ସେ । ୭ । କୁନ୍ଦନଖୋପୀ ନୀଳ ମୃଗ ଚଉଁରି
ଯତନେ ରଖି ଖସାଇ । କମ୍ବୁକଣ୍ଠୀର କଣ୍ଠୀରବମଧ୍ୟାଏ କବରୀକି ଲହସାଇ
ଯେ । ସେହି ସମ୍ପ୍ରୀ ତାହାର । କିଏ ଜାଣନ୍ତି ଶୋଭା ବାହାର ସେ । ଭୃଙ୍ଗ
ଉରଜକୁ ଯଥା ହାର ଯେ । ୮ । ପୁଣି ଲଗି ଶାଢ଼ୀ ଅଞ୍ଚଳ ନିବାଡ଼ ଭିଡ଼
ଛାଡ଼ିଦେଲେ ଫେର । ବାନା କି ସେ ଡାକ ମୃଗେନ୍ଦ୍ରକଟୀକି ଜେମା ମଧ୍ୟ
ଜିଣିବାର ଯେ । କାଞ୍ଚୀ ତାହା ତଳରେ । କହେ କିଙ୍କିଣୀ ଧ୍ୱନି ଛଳରେ
ସେ । ଧନ ସାବଧାନଟି ଜଳରେ । ୯ । ସ୍ତବକାବନତା ତପନୀୟଲତା
ସଞ୍ଚାରିଣୀ ହେଲା ପରି । ତମାଳ ତଳ କୁରୁବିନ୍ଦ ଗୃନ୍ଦନୀ ଉପରେ ଭ୍ରମୁ
କଶୋଭୀ ଯେ । ତାହା ଘୁମୁରେ ରହି । କେଉଁ ପରିଣତ ଚନ୍ଦ୍ରମୁହାଁ ମେ ।
ସରଶୋଭା ଘେନାଇଲା କହି ସେ । ୧୦ । ଶୃହାଁରେ ଚିତ୍ର ଦରଶନ ଚକିତ-
ଚମରୀଗୁରୁନୟନା । ତୋ ଅଙ୍ଗ ଆଲିଙ୍ଗନ ଲୋଭେ ତଡ଼ାଗ ବେଶେ
ହୋଇଛି ଅଙ୍ଗନା ସେ । ଚଳାଚଳ ଶଫରୀ । ଲୀଳାଲୋଳ ବାଳାନେତ୍ର ପରି
ସେ । ଅରବିନ୍ଦ ତ ବଦନ ସରି ସେ । ୧୧ । ଜଳଜସନ୍ତତିବୃନ୍ତ ଗ୍ରୀବା-
କାନ୍ତି ଗୈରକଲ୍ପ ପରି ଦିଶେ । ଆଲିଙ୍ଗିତ ଅଙ୍ଗ ସ୍ଥୂଳ ରଥାଙ୍ଗମିଥୁନ
ସ୍ତନ ସଦୃଶେ ଗୋ । ସତେ କେଡ଼େ ସୁଗମ । ଜଳନୀଳୀ ରୋମରାଜି ସମ
ଗୋ । ଜଳଭ୍ରମି ନାଭିହ୍ରଦୋପମ ଗୋ । ୧୨ । ହେମସୋପାନଆବଳି
ତ୍ରିବଳିରୁ ବଳିଛି କଳନା କର । ଏହା ଲହରୀକି ଭ୍ରୂରୁବଲ୍ଲରୀକି ତୁଳି-

---

ରୂପ ସ୍ୱର୍ଗଙ୍ଗାପ୍ରବାହରେ, କାମଦାୟିନୀ—ଅଭିଳାଷ ପୂରଣକାରିଣୀ । ଶୁଭାଙ୍ଗୀ—ସୁନ୍ଦରୀ ( ଚନ୍ଦ୍ରକଳା ) । ୮ । କୁନ୍ଦନଖୋପୀ—ସୁନା ଚଉଁରୀଭୁଣ୍ଡିରେ ଲଗିଥିବା, କବରୀ—ବେଣୀ ବା ଜୁଡ଼ା, ଲହସାଇଦେଲେ—ହୁଗୁଳା କରିଦେଲେ ବା ଫିଟାଇ ଦେଲେ । ୯ । ବାନା କି ସେ—ସେ ଫେର ଜେମାର କଟିଦେଶ ଡାକ (ଡମରୁ) ଓ ମୃଗେନ୍ଦ୍ରକଟୀ (ସିଂହକଟି) କୁ ଯେ ଜିଣିଅଛି ତାହାର ଜୟପତାକା କି ? କାଞ୍ଚୀ—କଟିମେଖଳା ।୧୦। ସ୍ତବକାବନତା—ଫୁଲପେଣ୍ଡା ହେତୁରୁ ନଇଁ ପଡ଼ିଥିବା, ତପନୀୟଲତା—ସ୍ୱର୍ଣ୍ଣଲତା, କୁରୁବିନ୍ଦ—ପଦ୍ମରାଗମଣି । ୧୧ । ଚିତ୍ରଦର୍ଶନ—ବିଚିତ୍ର ଶୋଭା, ପୋଖରୀ ସ୍ତ୍ରୀ ବେଶ ଧାରଣ କରିଅଛି । ଚଳାଚଳ ଶଫରୀ—ଚଞ୍ଚଳ କେରାଣ୍ଡି ମାଛ, ଅରବିନ୍ଦ—ପଦ୍ମ । ୧୨ । ଜଳଜସନ୍ତତିବୃନ୍ତ—ପଦ୍ମସମୂହର ଡେମ୍ଫ; ଆଲିଙ୍ଗିତ...ପରସ୍ପର ଜକାଜକି ହୋଇ ରହିଥିବା ସ୍ଥୂଳ ଚକ୍ରବାକ ଚକ୍ରବାକୀ; ଜଳନୀଳୀ—ଶୈବାଳ, ଶିଉଳି; ଜଳଭ୍ରମି—ପାଣିଭଉଁରୀ; ନାଭିହ୍ରଦୋପମ—ଗଭୀର ନାଭିସଦୃଶ । ୧୩ । ହେମସୋପାନଆବଳି—ସୁନାର ପାହାଚସବୁ । ଭ୍ରୂରୁବଲ୍ଲରୀ—ଭ୍ରୂଲତା ( ଲହରୀସଙ୍ଗେ ତୁଳିତ, ରସ ) ଜଳ ଓ ଶୃଙ୍ଗାରରସ, କୋକନଦ—ରକ୍ତପଦ୍ମ, କୁର୍ମିଜଘନା—ବଡ଼ କଇଁଛ ପରି

ଦେଲେ ବରାବର ଗୋ । ରସେ ରହିଛୁ ପୂରି । କୋକନଦ ପାଣି ପାଦେ ପରି ରେ । କୂର୍ମଜଘନା ଏ ବରନାରୀ ରେ । ୧୩ । କେ ବୋଲେ ରେ ଭୀରୁ ବଇଜୟନ୍ତୀରୁ ମୁକୁରଭଙ୍ଗଶକଳ । ଖସି ପଡ଼ି କେହି ସରଦମ୍ଭେ ରହି ମଣ୍ଡିଛୁ ମହୀମଣ୍ଡଳସେ । ଜବ ଅମରୀକୁଳ । ଗୃହିଁବାରୁ ମୁଖ ପ୍ରତିଫଳ ସେ । ପଦ୍ମବ୍ୟାଜେ ହୋଇ ଦିଶେ ଫୁଲ ସେ । ୧୪ । ରମଣୀର ମଣିରମଣୀୟ ମୁଖ ପୂରୁଷ ଚୁମ୍ବିଲା ପରି । ସାରସ ସାରସ ସାର ଷଟ୍‌ପଦମାନେ ନେଉ-ଛନ୍ତି ହରି ରେ । ବାତ ବାଜି ବାରିଜ । ଆନ୍ଦୋଳିତ ହୋଇବାର ବ୍ୟାଜ ଗୋ । ନାହିଁ ନାହିଁ ବୋଲି କରେ ଲାଜ ଗୋ । ୧୫ । ହୀରା ଇନ୍ଦ୍ରନୀଳ ଗୋମେଦ ପ୍ରବାଳ କପୋତକ ପାରାବତ । ବରୁଣ ବିମାନସମ ଦ୍ୱୀପଦଣ୍ଡି ମଣ୍ଡିଅଛନ୍ତି କେମନ୍ତ ଗୋ । ଦେଖ ଶିଖରଦନ୍ତି । ଏ କି କୃତ୍ରିମ ପରି ଦିଶନ୍ତି ଗୋ । ଜୀବ ଥିଲା ପରି ହେବ ଭ୍ରାନ୍ତି ଗୋ । ୧୬ । ସକୁଳଶକୁଳସଂକୁଳ ଏ ସର ନ କର ନକ୍ରର ଭୀତି । ରସରେ ରସରେ ରସରେ ଏହାର ବାରଣ ବାରଣଗତି ଗୋ । ପୁଷ୍ପାବଚୟ ଶ୍ରମ । ଜଳକେଳିରୁ ଲଭୁ ବିରାମ ଗୋ । ସୁଶୀଳା ଶୀତଳ ସରେ ରମ ଗୋ । ୧୭ । ଜଣାଣ ଶେଷର ସମୟେ ମେ

---

ଜଘନ ଯାହାର । ୧୪ । ବୈଜୟନ୍ତୀ—ଇନ୍ଦ୍ରପୁରୀ, ମୁକୁରଭଗ୍ନିଶକଳ—ଦର୍ପଣ କାଚଖଣ୍ଡ, ସରଦମ୍ଭେ—ପୋଖରୀ ବ୍ୟାଜରେ, ଦିବ—ସ୍ୱର୍ଗରେ । ୧୫ । ମଣି ରମଣୀୟମୁଖ—ମଣି ପରି ସୁନ୍ଦର ମୁଖ, ସାରସ—ସରରେ ଜାତ, ସାରସ—ପଦ୍ମ, ସାର—ମକରନ୍ଦାଦି ନିର୍ଯ୍ୟାସ, ଷଟ୍‌ପଦ—ଭ୍ରମର, ବାତବାଜି···ପବନ ବାଜି ପଦ୍ମ କମ୍ପି ନାହିଁ ଯେ, ଭ୍ରମର ( ପୁରୁଷ ) ପୁଷ୍କରିଣୀ ( ରମଣୀ ) ର ପଦ୍ମ ( ମୁଖ ) ଚୁମ୍ବିବାରୁ ସେ ଲାଜରେ ନାହିଁ କରି ମୁହଁ ହଲାଉ ଅଛି । ୧୬ । ହୀରା—ଶୁକ୍ଳବର୍ଣ୍ଣ ରତ୍ନ, ଗୋମେଦ—ପୀତବର୍ଣ୍ଣର ରତ୍ନ; ଶୁକ୍ଳାଦି ଚତୁର୍ବିଧ ବର୍ଣ୍ଣ ରତ୍ନରେ ନିର୍ମିତ କପୋତ ଓ ପାରାମାନେ ବରୁଣଙ୍କ ବିମାନ ପରି ଦିଶୁଥିବା ଦ୍ୱୀପଦଣ୍ଡିରେ କି ସୁନ୍ଦର ଦିଶୁଅଛନ୍ତି । ହେ ଶିଖରଦନ୍ତି—ହେ ସୂକ୍ଷ୍ମାଗ୍ରଦନ୍ତଧାରିଣି, ଏମାନେ ଆଉ ନିର୍ଜୀବ କୃତ୍ରିମ ପିତୁଳା ପରି ଦିଶୁନାହାନ୍ତି, ପ୍ରାଣ ଥିବାପରି ଭ୍ରମ ହେବ ।
୧୭ । ସକୁଳଶକୁଳସଂକୁଳ—ସ୍ୱଜାତୀୟ ଅନ୍ୟ ମାଛଙ୍କ ସହିତ ଶକୁଳ ( ଶେଉଳ ) ମାଛମାନଙ୍କରେ ଏ ସର ସଂକୁଳ ( ପୂର୍ଣ୍ଣ ) ହୋଇଅଛି, ନକ୍ର ( କୁମ୍ଭୀର ) ଏଥିରେ କୁମ୍ଭୀର ଅଛି ବୋଲି ଭୟ କରନା, ରେ ବାରଣ-ବାରଣଗତି-ରେ ଗଜଗତି ପରା-ଜୟକାରିଣି ! ଏହାର ରସରେ (ଜଳରେ) ରସରେ (ଆନନ୍ଦରେ) ରସ (କ୍ରୀଡ଼ାକର), ପୁଷ୍ପାବଚୟ—ଫୁଲତୋଳା, ସୁଶୀଳା—ହେ ସୁସ୍ୱଭାବା (ଚନ୍ଦ୍ରକଳା) । ୧୮ । ସେ ସର

ସର-ସରସିଜନେହାଞ୍ଚଳେ । ଅଧର କାମୋଡ଼ି ହେଲେ ଭିଡ଼ାଭିଡ଼ି ଅପଣା ଦୁକୂଳାଞ୍ଚଳେ ଯେ । ଗୃହିଁ ହସୁଛି ଜେମା । ଜମା ହେବାରୁ ସକଳ ବାମା ସେ । ରୂପେ ସମସ୍ତେ ଉର୍ବଶୀସମା ସେ । ୧୮ । ଚନ୍ଦ୍ରକଳାକର ଧେନା କୁମୁଦିନୀ ହେଲା ପରି ପ୍ରମୁଦିତ । ବାଳାକର ଧରି ଜଳେ ସେ ସୁନ୍ଦରୀ ପ୍ରବେଶିଲେ ସେହି ମତ ସେ । କିବା ନିର୍ମଳ ଘନେ । ଲେଲେ ଖେଳିଲେ ଚପଳାମାନେ ଯେ । ବାଳା ଖେଳିଲେ ଅତି ଶୋଭନେ ଯେ ।୧୯। ସହଚରୀ ପରି ଲହରୀରେଖାରେ ପହଁରିଲେ ହରିଣାକ୍ଷୀ । କଳହଂସକୁଳ ହୋଇଲେ ନିଶ୍ଚଳ ବାଳାବଳୀ ଖେଳ ଦେଖି ସେ । କେହି ନୟନ ବୁଜି । ସଖୀ ନ ଗୃହୁଁ ରହେ ନିମଜ୍ଜି ସେ । ଆଉ ସଖୀ ମଜ୍ଜିଯାଏ ଖୋଜି ଯେ । ୨୦ । କେ କାହାର ଜଳନିମଗ୍ନ ବିପୁଳ ଊରୁଯୁଗ ତଳେ ବୁଡ଼େ । ଚମକି ସେ ଡରେ ଭୁଜେ ନିବିଡ଼ରେ ସମୀପ ସଖୀକି ଭିଡ଼େ ଯେ । ଜାଣି ହସି ହରଷେ । ତାର ସୁନ୍ଦର ମୁଖସାରସେ ଯେ । କରାଞ୍ଜଳିରେ ଜଳ ବରଷେ ଯେ । ୨୧ । କେ ବାଳା କାହାର ଶିଥିଳାଇ ଫେର ନିତମ୍ବ ନିକଟ ହେଜି । ନଖ ଚଲାଇ ଚମକାଇ ପଳାଇ ସଲୀଳେ ସଲିଳେ ମଜ୍ଜି ଯେ । ଦୂରେ ଯାଇ ବାହାର । ଅଟ୍ଟହାସ କଲା ମନୋହାରୀ ଯେ । କେହି କାହାକୁ ଖେଳେ ନ ହାରି ଯେ । ୨୨ ।କେ ଗେଲେ ଗୁହାରି କହଇ ଜୁହାରି ଜେମା ସନ୍ନିଧିରେ ହସି । ଦେଖୁଅଛୁ ପରା ପ୍ରଭୁ ତୁ ତ ଧର୍ମମନ୍ତ୍ରିନୀ ତମାଳକେଶୀ ରେ । କାହିଁପାଇଁ ଏ ମୋର । ବକ୍ଷସ୍ଥଳ କଲା ଦିଗମ୍ବର ଗୋ । ଲଜ୍ଜା ରଖିଲା ସିନା ଶମ୍ବର ଗୋ । ୨୩ । ବାଳା ଶୁଣି କହେ ଅତଥ୍ୟ ଏ ନୋହେ ଏହାର ଏ ହାର ହେବ । ପୁରୁଷେ ପାଣିରେ ରହିବାରୁ ସିନା ବଞ୍ଚାଇଲୁ ଅବୟବ ରେ ।

---

ସରସିଜନେହାଞ୍ଚଳେ—ସେ ପୁଷ୍କରଣୀର ପଦ୍ମମାନଙ୍କ ପରି ନେତ୍ରପ୍ରଦେଶ ଯେଉଁମାନଙ୍କର ସେହି ସଖୀମାନେ । ୧୯ । ଚନ୍ଦ୍ରକଳାକର—ଚନ୍ଦ୍ରଲେଖାର କରଣ, ଲେଲେ—ଚଞ୍ଚଳ ହୋଇ, ଚପଳାମାନେ—ବିଜୁଳିସବୁ । ୨୦ । ଲହରୀରେଖାରେ ସହଚରୀପରି—ଲହରୀ ସମାନ ହୋଇ, ବାଳାବଳୀ—ଯୁବତୀସମୂହ । ୨୧ । ଜଳନିମଗ୍ନବିପୁଳ ଊରୁଯୁଗଳେ—ପାଣିରେ ବୁଡ଼ିଥିବା ବଡ଼ ଜଙ୍ଘଦ୍ୱୟ ତଳରେ, ମୁଖସାରସେ—ମୁଖପଦ୍ମରେ, କରାଞ୍ଜଳିରେ—ହାତ ଆଞ୍ଜୁଳାରେ । ୨୨ । ଫେର—ଜଙ୍ଘ ନିକଟରେ ଥିବା ଲୁଗା, ନିତମ୍ବନିକଟ ହେଜି—ପିଚ୍ଛପାଖ ଜାଣି ପାରି, ସଲୀଳେ—କୌତୁକରେ, ସଲିଳେ—ପାଣିରେ । ୨୩ । ତମାଳକେଶୀ—ତମାଳ ଗଛର ପତ୍ର ପରି କେଶ ଯାହାର, ଦିଗମ୍ବର—ବସ୍ତ୍ରଶୂନ୍ୟ, ଶମ୍ବର—ଜଳ । ୨୪ । ବାଳା—ଏଠାରେ ଚନ୍ଦ୍ରକଳା, ଅତଥ୍ୟ—ମିଥ୍ୟା, ଏହାର—

ଅନ ସହାୟ ବାଳେ । ବଞ୍ଚି ପାରନ୍ତୁ କି ଜଳଖେଳେ ରେ । ବୁଝାଯିବ ବେହରଣ ବେଳେ ରେ । ୨୪ । ଜେମାର ବିପୁଳ ଜଘନକୁ ଜଳ ଯହୁଁ କଲା ଆଲିଙ୍ଗନ । ଯୁବରାଜ ପାଣିଲାଗି ପର ମଣି ପୁଲକନ୍ତେ ଅପଘନ ଯେ । ହସି କେଉଁ ମହିଳା । ଛଳ ଅନକୁ ଗୃହି କହିଲା ଯେ । କାଲ କଳି ହେଲେ କି ନୋହିଲା ଗୋ । ୨୫ । ପରକୁ ଯେ ଯାହା କରିଥାଇ ତାହା ଅନୁଭବ କରେ ଆପେ । ସବୁ ପ୍ରାଣୀଙ୍କର ଘରବୁଡ଼ା ମାରଘର ବୁଡ଼ିଗଲା ଆପେ ଗୋ । ଶୁଣି ଲାଜେ କିଶୋରୀ । ନୈନ ଅନ୍ତରେ ମିଶାଇ ଙ୍କିର ଯେ । ଲୁଚାଇଲା ନୀଳକଞ୍ଚ ଧରି ସେ । ୨୬ । ଦେଖି ଅତି ବେଳ ହେଲା ଜଳ-ଖେଳ ଜେମାର ସଇରନ୍ଧ୍ରୀକା । ଅଳୀମାନଙ୍କରକୁ ତାଆରି ଗିରକୁ କହିଲା ଏ କି ଜୀବିକା ଗୋ । ଦେଖ ପ୍ରତୀଚୀ ଦିଗ । ବହିଲାଣି ଅଳକତରାଗ ଗୋ । ଶୁଣି ଲଭିବେ ଦେବୀ ଉଦ୍‌ବେଗ ଗୋ ।୨୭। ଶରମ ତାର ଶ୍ରୀଅଙ୍ଗ ଜନ୍ମାଇବ ଅତିଶୟ 'ସରମତା' । ବିପରୀତ ଶେଷ ବିଧିମୁଖ କରେ ଦିଅ ଧରୁ ଭୂପସୁତା ଗୋ । ଶୁଣି ଜେମା ସହାସେ । ସଇରନ୍ଧ୍ରୀଙ୍କି କହେ ହରଷେ । ସେ ଅଛୁ ବିଶେଷ ଲୋଡ଼ା ନାହିଁ ସେ ଗୋ । ୨୮ । ଅଲୋମ ବିଲୋମ ଆଦ୍ୟ ପ୍ରାନ୍ତ କ୍ରମ ଅନ୍ତ ଆଦ୍ୟ କରି ରୁଣ୍ଡ । ଉଭୟ ବହିର୍ଲାପିକାରେ ହୋଇବ ହିଶଙ୍କୁ ନୃପତି ଦଣ୍ଡ ଗୋ । ପ୍ରଶ୍ନ ବର୍ଣ୍ଣଯୁଗଳୀ । ରଙ୍ଗେ ତହୁଁ ପଡ଼ୁଥିବ ଗଳି ଗୋ । ତହିଁ ଥିବ ସେ ଉଭୟ କେଳି ଗୋ । ୨୯ । ଅର୍ଦ୍ଧ ଅଲୋମ

---

ଏ ସଖୀର, ଏ ହାର ହେବ—ଏଥିରେ ପରାଜୟ ହେବ, ପୁରୁଷେ ପାଣିରେ —ଏକପୁରୁଷ ପରିମିତ ପାଣି ଭିତରେ ଅଥଚ ପୁରୁଷର ପାଣି ବା ହାତରେ । ବେହରଣବେଳେ—ସଭା ବୈଠକ ସମୟରେ । ୨୫ । ଜେମାରବିପୁଳ……ଜେମା ଯେତେବେଳେ ଜଙ୍ଘେ ପାଣିରେ ପଶିଲା, ରାଜପୁତ୍ରର ହାତ ଲାଗିଲା ପରି ଅନୁଭବ କରି ଶରୀରରେ ରୋମ ଟାଙ୍କୁରି ଉଠିଲା, କଳକାଳ ହେବାରୁ କଅଣ ନ ହେଲା ? ୨୬ । ମାର (କନ୍ଦର୍ପ) ସମସ୍ତଙ୍କର ଘର ବୁଡ଼ାଏ ଅର୍ଥାତ୍ ସମସ୍ତଙ୍କୁ ଅସ୍ତବ୍ୟସ୍ତ କରେ, ଏବେ ମାରଘର ( ଜେମାର ଗୁପ୍ତଅଙ୍ଗ ) ନିଜେ ପାଣିରେ ବୁଡ଼ିଗଲା । ୨୬ । ସଇରନ୍ଧ୍ରୀକା – ବେଶକାରଣୀ ସ୍ତ୍ରୀ, ପ୍ରତୀଚୀଦିଗ……ପଶ୍ଚିମ ଦିଗରେ ଅଲତା ରାଗ ହେଲାଣି ଅର୍ଥାତ୍ ସନ୍ଧ୍ୟା ନିକଟବର୍ତ୍ତୀ, ତାଆରି – ଶାସନ କରି, ଗିର—କଥା, ଦେବୀ—ଜେମାଙ୍କ ମା ପାଟରାଣୀ । ୨୮ । ଶରମ—ପରିଶ୍ରମ ବା କ୍ଳାନ୍ତ, ଅତିଶୟ ସରମତା—ଅତ୍ୟନ୍ତ ସୁଖଭାବ, ଅତ୍ୟନ୍ତ ସୁକୁମାରୀ ହେତୁରୁ ବେଶି ଖେଳିଲେ ସେ କ୍ଳାନ୍ତ ହୋଇ ପଡ଼ିବ, ବିଧିମୁଖ—ସ୍ଥିର, 'ସରମତା' ଶବ୍ଦର……ବିପରୀତ, 'ତାମରସ' ହୁଏ, ଅତଏବ ତା ହାତରେ କ୍ଳାନ୍ତ ଦୂର କରିବା ପାଇଁ ତାମରସ

ବାଲ୍ୟେମରେ ହୋଇବ ସସିରସିହସି ରୁସି । କଳପ୍ରଥିଲେ ସେ ବର୍ଣ୍ଣ ଧାଡି ହେବ କଳପଲତା ସଦୃଶୀ ଗୋ । ମୋତେ ଦାଅ ସେ ଫୁଲ । ପୁଣି ନୃପ ଆଦେଶକୁ ବୋଲ ଗୋ । ତଦନନ୍ତର ପ୍ରଶ୍ନ ତ ଭଲ ଗୋ । ୩୦ । ନ ସହି କଳି ଆରମ୍ଭିଲ ଲୋକଙ୍କୁ କ ବୋଲନ୍ତି ବୁଧ ନରେ । ନିବାସ ମାଗିବା ଲୋକଙ୍କୁ ତା ଦେଇ କ ବୋଲନ୍ତି ବଚନରେ ସେ । ଅଦେୟ ବାନ୍ଧୁକୁ ପାଇ । କେଉଁ ଦ୍ୱିବର୍ଣ୍ଣେ ଗଜ ଦଳଇ ସେ । କୃଷାଣଙ୍କୁ ପ୍ରାବୃଷିକି କହି ସେ । ୩୧ । ଶୁଚିରସମିଶ୍ର କେ ସଖୀ ସଖୀଙ୍କ କି ଶିଖାଏ ପ୍ରିୟ ହୋଇ । ବିଦ୍ୟାର୍ଥୀଙ୍କ ନିରକ୍ଷରେ ସେ କି ବୋଲ ସରସ ହୃଦେ କ ଥାଇ ସେ । ଶୁଣି ସେ ତ ଚତୁରୀ । ବାଳା ଚତୁରଙ୍କୁ ସ୍ନେହେ ଧରି ସେ । ଗଲା ପ୍ରମୋଦ ପୁଲକେ ପୁରି ସେ । ୩୨ । ଜଣାଇଲା ଅରେ ପଣ୍ଡିତାମଣ୍ଡଳୀମଣ୍ଡଳୀରତନଭୂଷା । ପରିପାଳିଲୁ ତ ମୋହର ବଚନ ଆନ ହେଲା ସିନା ଭାଷା ଗୋ । ତୁ ତ ଈଶ୍ୱରୀ ମୋର । ତେଣୁ ବଳିଲା ଏକ ଅକ୍ଷର ଗୋ । ସେବ୍ୟ ସେବକେ କେତେ ଅନ୍ତର ଗୋ । ୩୩ । କ୍ଷିତିପତିକନ୍ୟା ଅଗେ କେ ମଣ୍ଡିଲା ଚଢ଼ି ପହଁରେ ଅମ୍ବୁ । ପାଶୀ ସ୍ୱର୍ଗକୁ ଯିବାକୁ ପଡ଼ିଲା କ କାଶୀଅରିଜଘଟ ତମ୍ବୁ ଯେ । ଅଭ୍ରସିଲା ସେପରି । ତାର ଉନ୍ନତ ଉରଜଶିଖ ଯେ । ମାର ହୃଦୟକୁ ଦାଏ ଘାରି ଯେ । ୩୪ । ଏକାବେଳେ ଜଳେ ବୁଡ଼ିଲେ ସକଳେ ଭାସିଲା ଊର୍ଦ୍ଧ୍ୱେ କେବଳ । ଇନ୍ଦ୍ରନୀଳ ଛାୟା ଗୁମର ନିଚୟୁ ପ୍ରଲମ୍ବ କୁନ୍ତଳକୁଳ ଯେ । ସରୁଁ ଏକ ପ୍ରଦେଶ । ଧଇଲା କ ସୁରସୁତା ବେଶ ଗୋ । ଅବା ତମାଳଛାୟା ପ୍ରବେଶ ଯେ । ୩୫ । ସ୍ଫୁରିବାରୁ କଚ ସୁବାସ ବିକଚ କୁସୁମ ବନ ଉପେକ୍ଷି । ଅଗଣିତ ଭୃଙ୍ଗରାଜ ତହିଁ ଅଙ୍ଗ ଜମାଇ ରହିଲେ ଲକ୍ଷି ସେ । କେ ସେ ଭ୍ରମରାବଳୀ । କେ ସେ କଶୋରୀଙ୍କ କେଶପାଳୀ । ହେଲା କେବଳ ଧ୍ୱନିରୁ କଳି ଯେ । ୩୬ ।

---

(ପଦ୍ମ) ଦାଅ । ୨୯-୩୩ । ସରସିରୁହ ଶବ୍ଦର ପ୍ରତ୍ୟେକ ଅକ୍ଷରକୁ ଓଲଟ ପାଲଟ କରିଦେଲେ ଏହି ପାଞ୍ଚପଦର ଅର୍ଥ ବାହାରିବ; କୃଷାଣ—କୃଷକ, ପ୍ରାବୃଷି—ବର୍ଷାକାଳରେ, ଶୁଚିରସ—ଶୃଙ୍ଗାର ରସ । ୩୪ । ପାଶୀ—ବରୁଣ, କାଶୀଆରିଜଘଟତମ୍ବୁ—ଜଘଲଗା ଦୁଇଗମ୍ବୁଜ ଥିବା ବନାରସୀ ତମ୍ବୁ । ୩୫ । ଇନ୍ଦ୍ରନୀଳ···ଇନ୍ଦ୍ରନୀଳମଣିର କାନ୍ତିଯୁକ୍ତ ନୀଳଭଅଁର ପରି ଲମ୍ବ କେଶଗୁଚ୍ଛ; ସରୁ···ସେ ପୋଖରୀରୁ ଏକ ଅଂଶ ସୁରସୁତା ( ଯମୁନା ) ନଦୀ ବେଶ ( ଯମୁନାର ଜଳ ନୀଳବର୍ଣ୍ଣ ) ଧଇଲା କ ? ଅବା ପୋଖରୀର ସେ ଅଂଶରେ ତମାଳ ବୃକ୍ଷର ଛାୟା ପ୍ରବେଶ କଲା କ ? ୩୬ । କଚ—କେଶ, କେଶର ସୁବାସ ବାହାରିବାରୁ ଅସଂଖ୍ୟ ଭ୍ରମର ବିକଚ ( ପ୍ରସ୍ଫୁଟିତ ) ପୁଷ୍ପବନ ଛାଡ଼ି ସେ ସବୁ କେଶରେ ଦେହକୁ ଲୀନ କରି ଲାଖିଗଲେ, କେଶପାଳୀ—କେଶସମୂହ । ୩୭ । ସେମାନଙ୍କ

ସେ କେଳିମନ୍ଦର ହୋଇବାରୁ କ୍ଷୀରସାଗର ଉଦରଗତ । ବାଳାବୃନ୍ଦ ତୁଲେ ସମ୍ଭବ ଲଭିଲେ ଦ୍ରବିଣ ଅପରିମିତ ଯେ । ଅଇରାବଣଗଢ । ମଣିସନ୍ତତ ମଣି ସନ୍ତତ ଯେ । ଗିରେ ହୋଇଲା ସୁଧା ପ୍ରତୀତ ଯେ । ୩୭ । ନାକ ଅଙ୍ଗ ହରିଚନ୍ଦନବଲ୍ଲରୀ କଟାକ୍ଷ କଳାଗରଳ । ବଦନ ନାଙ୍କର ପରିଣତତର ହରିଣଧରମଣ୍ଡଳ ଯେ । ପୁଣି ହେଲା ଉପମା । ପଦ୍ମସୁବାସିତ ଅଙ୍ଗୀ ବାମା ଯେ । ଲୀଳାପଦ୍ମ ଧରିବାରୁ ରମା ସେ ।୩୮। ମନ୍ଦହାସୀଚୟ ଯେ ଯାହା ସିଚୟ ଫେରାଇହୋଇ ହାକର । କେତକୀଦଳ ହ୍ନମଳୁପରିଛପିଦେଲେ ତା ଶ୍ରୀଅଙ୍ଗ ନୀର ଯେ । ଉରୁ ନିତମ୍ବ ସ୍ତନ । ଭେଦିଥିଲା ସୁଝିନ ବସନ ଯେ । ତାର ଶୋଭାଦୃଷ୍ଟି ନେଲା ଅନ ଯେ । ୩୯ । ଗୁଚ୍ଛ ନୀଳମଣି ଭ୍ରମର ନୀରଦ ସମ କରିବାର ଜାଣି । ଜଳବିନ୍ଦୁ ଛଳେ ଅଶ୍ରୁ ମୁଞ୍ଚୁଥିଲା ଜେମାର କୁନ୍ତଳଶ୍ରେଣୀ ଯେ । ତାକୁ ବୋଧିଲା ପରି । ମୃଦୁ ଆଶ୍ୱାସନେ ଯତ୍ନେ ଧରି ସେ । ଛପିଦେଲେ ପ୍ରିୟ ସହଚରୀ ଯେ । ୪୦ । ବୋଧିବା ବେଳେ ମୁଦବା ପରି ଦେଇ ବଦନରେ କରପୁଟୀ । କାନ୍ତାରତନର କୁନ୍ତଳ ପ୍ରାନ୍ତରେ ପକାଇଲେ କୁଶବେଣ୍ଟୀ ସେ । ପେଣ୍ଡାଯାଏ ମଣ୍ଡିଲା । ନେହ କଦନ ଧନ ତଣ୍ଡିଲା ସେ । ଶିଖିକଳାପମଦ ଖଣ୍ଡିଲା ସେ । ୪୧ । ଚଳଦଳ ହେମରମ୍ଭାସ୍ତମ୍ଭ କାମରଥ ଚକ୍ରତୁଲେ ବାଦେ । ବାଳାର କେହି ଗୁପତ

---

କେଳି ମନ୍ଦର ପର୍ବତ ପରି, ପୋଖରୀ କ୍ଷୀରସାଗର ପରି, ଦ୍ରବିଣ—ଧନ, ଐରାବଣ—ଐରାବତହାତୀ, ମଣିସନ୍ତତ-ମଣିସମୂହ ।୩୮। ସମୁଦ୍ରମନ୍ଥନରୁ ହରିଚନ୍ଦନ ଲତା ପ୍ରଭୃତ ଜାତ ହୋଇଥିଲେ, ଏଠାରେ ଚନ୍ଦ୍ରକଳା ପ୍ରଭୃତଙ୍କର ଅଙ୍ଗ ହରିଚନ୍ଦନଲତା ପରି, କଟାକ୍ଷ କଳାଗରଳ ( କାଳକୂଟ ) ପରି, ସୁଖସମୂହ ପରିଣତତର ( ପୂର୍ଣ୍ଣ ) ହରିଣଧରମଣ୍ଡଳ ( ଚନ୍ଦ୍ରମଣ୍ଡଳ ) ପରି ପଦ୍ମପରି ସୁଗନ୍ଧ ଶରୀରଧାରିଣୀ ଚନ୍ଦ୍ରକଳା ହସ୍ତରେ ଲୀଳାପଦ୍ମ ଧରିବାରୁ ରମା ( ଲକ୍ଷ୍ମୀ ) ଙ୍କ ସଙ୍ଗେ ତୁଳନୀୟ ହେଲା । ୩୯ । ସିଚୟ—ବସ୍ତ୍ର, ଫେରାଇ ହୋଇ—ବଦଳାଇ ହୋଇ, କେତକୀ ପାଖୁଡ଼ାରୁ ଜାକର ପୋଛି ଦେଲା ପରି । ୪୦ । ଗୁଚ୍ଛ—ତୁଚ୍ଛ, ନୀଳମଣି, ଭ୍ରମର ଓ ନୀରଦ ( ମେଘ ) ଏମାନେ ଜେମାର କେଶଗୁଚ୍ଛ ସଙ୍ଗେ ତୁଳିତ ହେବାରୁ ତାହା ଯେପରି ବିନ୍ଦୁ ବିନ୍ଦୁ ଜଳପାତ ଛଳରେ କାନ୍ଦୁଥିଲା । ୪୧ । କେହି କାନ୍ଦୁଥିଲେ ଯେପରି ତାକୁ ବୁଝାଇ ତା ମୁହଁରେ କରପୁଟୀ ( ହାତପାପୁଲି ) ଦିଅନ୍ତି, ସେହିପରି ସେ କେଶଗୁଚ୍ଛକୁ ଧୀରେ ଧୀରେ ପୋଛି ଦେଇ ତହିଁ ଅଗରେ କୁଶଗଣ୍ଠି ପକାଇ ଦେଲେ, ନେହକଦନ···ସେ କେଶଗୁଚ୍ଛ ନେହ କଦନ ଅର୍ଥାତ୍ କେଶରୂପ ଧନକୁ ତଣ୍ଡିଲା ଅର୍ଥାତ୍ କ୍ଲେଶ ଦୂର କଲା । ଶିଖିକଳାପ···ମୟୂର ପୁଚ୍ଛର ଗର୍ବ ଧ୍ୱଂସ କଲା । ୪୨ । ଚଳଦଳ ଅଶ୍ୱତ୍ଥପତ୍ର ( ଗୁପ୍ତଅଙ୍ଗ ସଙ୍ଗେ ତୁଳିତ ), ହେମରମ୍ଭାସ୍ତମ୍ଭ—

ଅଙ୍ଗମାନେ ଦିବ୍ୟବିଧି ଚାନ୍ଦ୍ର ହୃଦେ ଯେ । ଜଳେ ନିମଜ୍ଜି ଥିଲେ । ଜିଣି ବିଳମ୍ବେ ଯା ବାହାରିଲେ ଯେ । ପ୍ରଭୁପଣ ପ୍ରକାଶିଲ ଭଲେ ଯେ । ୪୨ । ହରଗଉରୀ ଜଘ୍ନ ଜାଲି କୁସୁମବୁଟା ଧଡ଼ି ପଡ଼ି ଶାଢ଼ୀ । ତିନେକ ମୁନିଙ୍କ ଧଇର୍ଯ ଧ୍ୱଂସିନୀ ବାନ୍ଧିଲି ଶାଢ଼ୀ ନିବାଡ଼ି ଯେ । ବହୁମାନର ଶେଷେ । ପ୍ରଶଂସିଲେ ସଜନୀ ବିଶେଷେ ଯେ । ତାର ସ୍ତବ ଘଟିବ ବା ଶେଷେ ଯେ । ୪୩ । ସ୍ତନଯୁଗ ପୁଣି ମୁଅଇଲା ଜିଣି ମଣିସାନୁ ମନେ ଦିକା । ସୁନା ଜଘ୍ନ ମଲ୍ଲୀକସିଦା ମତଲ୍ଲୀ କୁସୁମ୍ବା ରଙ୍ଗ ରାଇକା ଯେ । ଦେଲି ତାହାଙ୍କୁ ବାଲା । ତଦୁପରି ଦିବ୍ୟ ମୋତିମାଳା ଯେ । ମୃଦୁ ବୟସେ କେଡ଼େ ବସ୍ତ୍ରଲା ଯେ । ୪୪ । ତଦନନ୍ତରେ ଅନ୍ତରଙ୍ଗ ତରଙ୍ଗଚଳନେଣା ଜଣେ ଲେଳେ । ବିଜେବେଳ ଜାଣି ଖଞ୍ଜାଇଲା ମଣି କଠାଉ ଚରଣତଳେ ଯେ । ଧନ୍ୟ ସେ ରାଜଜେମା । ଜଗନ୍ନ୍ୟୂନ ଭାଗ୍ୟପ୍ରତିମା ସେ । ଅହା କି ମଣ୍ଡିଲି ମହୀସୀମା ଯେ । ୪୫ । ମୋ ନାଦ ଶୁଣିଲେ ମଦନ ଅମଳେ ଯୁବାଙ୍କ ହୃଦୟ ଝଁ ମୁ । ଜଗତୀ ଧୃତ ହରଣରେ ମୁଁ ଠକ ବୋଲି କହେ ଧ୍ୱନି କମ୍ମୁ ଯେ । ଭଲ ତା ଜନ୍ମ ଲୋକେ । ନାହିଁ ତା ଭାଗ୍ୟ ଶକ୍ରମସ୍ତକେ ଯେ । ଦୁଃଖ ପାସୋରିଏ ଅବଲୋକେ ଯେ । ୪୬ । ହରପ୍ରିୟପୂଜା ସରପଣା ସ୍ୱାଦୁତର ପଥ୍ୟ ଭାଷୀ ବାଲା । ନରପତିଜେମାବର ପଙ୍କେରୁହ କର ପଇଠ

—ସୁନା କଦଳୀଗଛ (ଊରୁ ସଙ୍ଗେ ତୁଳିତ); କାମରଥଚକ୍ର—କନ୍ଦର୍ପରଥର ଚକ (ନିତମ୍ବ ସଙ୍ଗେ ତୁଳିତ) । ଦିବ୍ୟ ବିଧି—ଶପଥ ବିଧି; ଜେମାର ସେହି ତନୁଅଙ୍ଗ ଉପମିତ ଅଶ୍ୱତ୍ଥ ପତ୍ର, ସୁନା କଦଳୀଗଛ ଓ କାମରଥ ଚକକୁ ଜିଣିବା ଇଚ୍ଛାରେ ଚନ୍ଦ୍ରହୃଦ ପାଣିରେ ବୁଡ଼ିରହି ସେମାନଙ୍କୁ ଜିଣିଲେ ( ଆଗେ ଅନ୍ୟକୁ ଜିଣିବାପାଇଁ ଏହିପରି ଜଳଦିବ୍ୟବିଧି ଚଳୁଥିଲା, ଯେ ଚନ୍ଦ୍ରହୃଦ ଜଳରେ ବୁଡ଼ିରହି ପାରୁଥିଲା ସେ ଜୟୀ ବୋଲି ବିବେଚିତ ହେଉଥିଲା ) । ୪୩ । ହରଗଉରୀଜଘ୍ନ ( ଧଳା ଓ ହଳଦିଆ ରଙ୍ଗର ଜଘ୍ନ) ରେ ଜାଲି ପଡ଼ିଥିବା ଓ କୁସୁମବୁଟାଧଡ଼ି (ଫୁଲବୁଟା ପଡ଼ିଥିବା ଧଡ଼ି) ଶାଢ଼ୀଦ୍ୱାରା ସେ ତିନଙ୍କୁ ମୁନିଧୈର୍ଯ୍ୟନାଶିନୀ ଚନ୍ଦ୍ରକଳା (ଦୃଢ଼ରୂପେ ବାନ୍ଧିଲା) । ୪୪ । ସେହି ସ୍ତନଦ୍ୱୟ ମଣିସାନୁ ( ମେରୁ ପର୍ବତକୁ ଜିଣି ) ପୁଣି ତା ମନରେ ଦିକା ପୁଆଇଲା ( ଭୟଦେଲା ) ଅର୍ଥାତ୍ ଅତି ଉନ୍ନତ ଦିଶିଲା, ତେଣୁ ଚନ୍ଦ୍ରକଳା ସେ ଦୁହିଙ୍କ ପ୍ରତି ଅତି ଦୟାର୍ଦ୍ର ହୋଇ ସୁନାଜଘ୍ନ ଲଗିଥିବା ମତଲ୍ଲୀ ( ଅତ୍ୟୁତ୍କୃଷ୍ଟ ) କୁସୁମ୍ବାରଙ୍ଗ (ଲାଲଦଣ୍ଡିରା) ରାଇକା (କାଞ୍ଚଲା) ତାଙ୍କୁ ଦେଲା ଅର୍ଥାତ୍ ସୁନାଜଘ୍ନଲଗା ମଲ୍ଲୀଫୁଲ ପଡ଼ିଥିବା ଗୋଟାଏ ନାଲି କାଞ୍ଚଲା ସ୍ତନ ଦ୍ୱୟ ଉପରେ ପିନ୍ଧିଲା ଇତ୍ୟାଦି । ୪୫ । ଅନ୍ତରଙ୍ଗ—ଆତ୍ମୀୟା; ତରଙ୍ଗନେଣା—ଚଞ୍ଚଳନୟନା । ୪୬ । ମଣିକଠାଉ ନାଦ ଛଳରେ କହିଲା··ମଦନ ଅମଳେ ( କାମନଶାରେ ) ଯୁବକମାନଙ୍କ ମନଝୁମୁ

ଧଇଲା ଯେ । ବିଜେ ମଣିମା ତାଙ୍କ । ଶୁଣି ବିଶ୍ୱରଲେ ସଖୀମାନଙ୍କ ଯେ । ଧିକ ବାକ୍ୟ ଚତୁର୍ଦ୍ଦଶଲୋକ ଯେ । ୪୭ । ଅର୍ଦ୍ଧପଦ୍ଧତରେ ଦୁଇ ଦାସୀ ଆସି ମିଶିଲେ ମସାଲ ଜାଳି । ଗୁଚ୍ଛଶୁଚ୍ଛପାଶେ ପୂର୍ଣ୍ଣ ବିଧୁ ପରି ବିଜେ କରିଗଲା ବାଳୀ ଯେ । ଇଷ୍ଟଦେବୀଙ୍କି ଦେଖି । ଘେନି ପ୍ରସାଦ ମାଲ୍ୟ ସୁମୁଖୀ ଯେ । ଭେଟି ଜନନୀଙ୍କି ହେଲା ସୁଖୀ ଯେ । ୪୮ । ସେଠାରୁ ନିଜ ମନ୍ଦିରକୁ ସୁନ୍ଦରୀବର କରିଗଲା ବିଜେ । କେଶକୁ ଅଙ୍ଗନା ଧୂପ ଦେଲେ ଜନାର୍ଦ୍ଦନ କୃଷ୍ଣାଗୁରୁ ରଜେ ଯେ । ହେଲା କବିମାନସେ । ଧୂମ ନୁହଇ ନବଘନ ସେ ଯେ । ହାରି ଶୋଭାକୁ ଶରଣ ପଶେ ଯେ ।୪୯ । ଭାଲ ଖାଲଥିବା ଭଲ ନୁହେ ବୋଲି ଦଳି ଦିବ୍ୟ ଗୋରଚନା । ଭ୍ରୂରୁ ମଧ୍ୟେ ଇନ୍ଦୁବର୍ତ୍ତୁଳ ବିନ୍ଦୁ ରଚିଲେ ମୃଗଲୋଚନା ଯେ । ହେଲା ଛନ୍ଦ ବିଚକ୍ଷଣା । ମାଳବର କାଳ ହେଲା ଜଣା ଯେ । ଫେରମାସିଲା ମର୍ଦ୍ଦଳ ବୀଣା ଯେ । ୫୦ । ଦୁଇ ପଞ୍ଚାଶତପଦ ପରମିତ ଲୋକେ ମୋଦ ମହୋଦୟ । ଅଳକସୁନ୍ଦରୀ ଚନ୍ଦ୍ରବଦନାର ଜଳକେଳି ରସମୟ ଯେ । କର୍ଣ୍ଣମନ ମୋହନ । ଯୁବା ମାନସ ମୃଗ ଗହନ ଯେ । ଦୁଃଖ ଇନ୍ଧନ ଦାହ-ଦହନ ଯେ । ୫୧ । ହରି ବନ୍ଦନୀୟ ସଭୋଗି-ବଳୟ ବିରାଜିତ ରାଜବଳ । ସଦାଶିବ ରାମ ରଙ୍ଗ ଧାମ ରାମଚନ୍ଦ୍ର ଦେବ ହୃଦସ୍ଥଳ ଯେ । ଶେଷ ହେଲା ଏ ଛାନ୍ଦ । ଜଳବିହାର ରସିକାନନ୍ଦ ଯେ । ମହୀ-ଶଶିକାନ୍ତକୁ ଏ ଗୃନ୍ଦ ଯେ । ୫୨ ।

---

ଘାରି ହେଉ । ୩୭ । ହରପର···କନ୍ଦର୍ପପୂଜାର ସରପଣା ଅପେକ୍ଷା ଅଧିକତର ସ୍ୱାଦୁ ଓ ହିତକର ବାଣୀ ଯାହାର ଏପରି ରାଜକନ୍ୟାର, ପଙ୍କେରୁହକରପଇଠ— ପଦ୍ମହସ୍ତର ଭାର । ବାକ ଚତୁର୍ଦ୍ଦଶଲୋକକୁ ଧିକ୍—ଚତୁର୍ଦ୍ଦଶ ଭୁବନ ମଧ୍ୟରୁ ଏ ମର୍ତ୍ତ୍ୟ ଲୋକକୁ ଛାଡ଼ି ( କାରଣ ଏଠାରେ ଚନ୍ଦ୍ରକଳାର ଜନ୍ମ ) ବାକ ୧୩ଟାକୁ ଧିକ୍ । ୪୮ । ଅର୍ଦ୍ଧପଦ୍ଧତ—ଅଧବାଟ । ୪୯ । ଜନାର୍ଦ୍ଦନକୃଷ୍ଣାଗୁରୁରଜ—ଏକପ୍ରକାର ସୁଗନ୍ଧ ଧୂପ ମସଲାଚୂର୍ଣ୍ଣ, ନବଘନ—ନୂଆ ମେଘ । ୫୦ । ଇନ୍ଦୁବର୍ତ୍ତୁଳବିନ୍ଦୁ— ଚନ୍ଦ୍ରପରି ଗୋଲ ଗୋରଚନା ଟୋପା, ମାଳବରକାଳ—ସଙ୍ଗୀତର ପ୍ରଥମ ରାଗର ସୁସମୟ । ୫୧ । ଏ ଛାନ୍ଦ ଯୁବକ ମନମୃଗପକ୍ଷରେ ଅରଣ୍ୟ ପରି, ଦୁଃଖରୂପଇନ୍ଧନ (ଜାଳେଣିକାଠ) କୁ ପୋଡ଼ିଦେବା ବିଷୟରେ ଦହନ (ଅଗ୍ନି) ପରି । ୫୨ । ହରି— ବିଷ୍ଣୁ ଓ କପିରାଜ ସୁଗ୍ରୀବ, ସଭୋଗିବଳୟ—ସର୍ପବଳୟଧାରୀ (ଶିବ), ରାଜମଣ୍ଡଳ ସହିତ (ରାମ) ବିରାଜିତରାଜବଳ—ଚନ୍ଦ୍ରଖଣ୍ଡଶୋଭିତ (ଶିବ) ଓ ଇନ୍ଦ୍ରଙ୍କ ସୈନ୍ୟ- ଦ୍ୱାରା ପରିବେଷ୍ଟିତ ( ଲଙ୍କା ଯୁଦ୍ଧରେ ); ରଙ୍ଗଧାମ—କ୍ରୀଡ଼ାସ୍ଥାନ, ମହୀଶଶିକାନ୍ତ —ପୃଥିବୀରୂପ ଚନ୍ଦ୍ରକାନ୍ତମଣି ପକ୍ଷରେ ।

## ଦ୍ୱାଦଶ ଛାନ୍ଦ

### ରାଗ—କନଡ଼ା

( ଚନ୍ଦ୍ରକଳା ନିକଟକୁ ଅନଙ୍ଗସୁନ୍ଦରର ଚଟାଉ )

କୁନ୍ଦଲତା ବିନା କେହି ସେ ନବୀନା ପାଶେ ନ ଥିବାର ବେଳେ । ଖେଳି ହଂସାବତଂସ ମୋଦ ଜଳେ । ଚନ୍ଦନ ମୁଦ୍ର ଚଟାଉ ଦୃଶ କରୁ ଧରି ଗୃହିଚଞ୍ଚୁ ଦଲେ ସେ । ମଞ୍ଜୁଳା ସ୍ତମ୍ଭ ସମ୍ଭବୁଁ ସାତ୍ତ୍ୱିକ ପ୍ରସରି । ଭ୍ରମେ ବରିହିଲି ନବକିଶୋରୀ । ମୂର୍ତ୍ତିମନ୍ତ ନବପଲ୍ଲବ ଶବଦ ପ୍ରାନ୍ତର ବିସର୍ଗ ପରି ସେ । ୧ । ରୁମ୍ମୀକରପୃଷ୍ଠ ପଦ୍ମରାଗ ପୀଠ କରି ଉପରେ କରି ସ୍ଥିତ । କଲି ବଲୟସ୍ୱନନାଦେ ସ୍ୱାଗତ । କରଜ ମୁଦ୍ରିକା ମଣିମୟୂଖରେ ପାଦ୍ୟ ଦେଲି ବିଧିମତ ସେ । ମଞ୍ଜୁଳା ପ୍ରମୋଦରେ ଦରେ ଯାହା ହସିଲି । ଦରେ ଅର୍ଘ୍ୟଦାନ କରି ତୋଷିଲି । ଅମନ୍ଦ ପ୍ରଶ୍ୱାସ ପ୍ରବାହ ଉଦୟ ଆଚମନ ପ୍ରକାଶିଲି ସେ । ୨ । ଢାଳି ନୟନଇନ୍ଦୀବରଯୁଗଳୀ ଆନନ୍ଦ ଅଶ୍ରୁବିନ୍ଦୁଛଳେ । ଘନ କୁସୁମ ବରଷାର ବେଳେ । ଭନ୍ତ୍ରିପିବା ମଳୟଜ ମୁଦ୍ରାଜାଲି ଶିଥିଳାଇ କୁତୁହଳେ ସେ । ମଞ୍ଜୁଳା । ସ୍ୱର ସାତ୍ତ୍ୱିକ ବିକାର ପାଇଲି । ଚମ୍ପାକଳୀ ଅଙ୍ଗୁଳୀ କମ୍ପାଇଲି । ତରୁଣ ସ୍ନେହ ସନ୍ଦେହ

---

ଦ୍ୱାଦଶ ଛାନ୍ଦ

୧ । ହଂସାବତଂସ—ଗୋଟିଏ ରାଜହଂସ, ମୋଦଜଳେ—ଆନନ୍ଦଜନକ ଜଳରେ, ଦୃଶ କରୁଁ—ଦେଖାଉଁ । ମୂର୍ତ୍ତିମନ୍ତ...ହଂସର ଚଞ୍ଚୁ ( ଥଣ୍ଟ ) ସାକ୍ଷାତ୍ ରକ୍ତବର୍ଣ୍ଣ ନୂଆପଲ୍ଲବ ପରି, ଚଟାଉ ( ପତ୍ର ) ଖଣ୍ଡ ସେହି ପଲ୍ଲବ ଶବ୍ଦର ଶେଷରେ ଲଗିଥିବା ବିସର୍ଗ (ଃ) ପରି ଆକୃତିବଶିଷ୍ଟ । ଏହା ଦେଖି ଚନ୍ଦ୍ରକଳା ପ୍ରଥମେ ସ୍ତବ୍ଧ ହୋଇଗଲେ, ପରେ ତାହାର ଅନ୍ୟ ସାତ୍ତ୍ୱିକଭାବ (ସତ୍ତ୍ୱଗୁଣାଶ୍ରିତସାଧୁଭାବସ୍ନେହ ରୋମାଞ୍ଚ ପ୍ରଭୃତି) ପ୍ରସାରିତ ହେଲା । ୨ । ରୁମ୍ମୀକର—ସୁବର୍ଣ୍ଣ, ପୃଷ୍ଠ—ପାପୁଲିର ପଛପଟ, ପାପୁଲି ପଦ୍ମରାଗମଣିର ପୀଠ ପରି, ବଲୟ ( ହାତର ବଳା ) ନିନାଦେ (ଶବ୍ଦରେ) ସେ (ସେ ଚଟାଉକୁ ) ସ୍ୱାଗତ କଲା, କରଜ ( ଆଙ୍ଗୁଠି ) ମୁଦିମାନଙ୍କ କିରଣରେ ପାଦ୍ୟ ( ପାଦ ଧୋଇବା ପାଣି ) ଦେଲା, ପ୍ରମୋଦରେ ଦରେ ( ଅଳ୍ପ କରି ) ଯାହା ହସିଲା, ତାହା ଦରେ ( ଶଙ୍ଖରେ ) ଅର୍ଘ୍ୟ ( ପୂଜାପାଣି) ଦେଲା ପରି ହେଲା; ପ୍ରଶ୍ୱାସପ୍ରବାହ ଏଠାରେ ଆଚମନ ପରି । ୩ । ମଳୟଜମୁଦ୍ରାଜାଲି —ଚନ୍ଦନରେ ଦିଆଯାଇଥିବା ମୋହରର ରୂପ ଆବରଣକୁ ଶିଥିଳାଇ ( ଢିଲା

ଗଣ୍ଡିତୁଳେ ଚିଠାଉଡ଼ି ଫିଙ୍ଗାଇଲା ସେ । ୩ । ଶିରେ ଲଗାଇବା ସମୟେ ଖସାଇ କରୁ ଅନାୟତ୍ତ ଦମ୍ଭରେ । ଭିଡ଼ି ଲଗାଇ ଉରଜକୁମ୍ଭରେ । ଓଷ୍ଠପୁଟତଟେ ଧଇଲା କପଟେ ସ୍ନେହଚୁମ୍ବ ଆରମ୍ଭରେ ସେ । ମଞ୍ଜୁଳା । ମନେ ସ୍ୱପୁଣ୍ୟକୁ ଧନ୍ୟ ବୋଇଲା । ମଧ୍ୟଦୃଷ୍ଟି କରି ପୁଣି ଧଇଲା । ଅନାଇଲା ଯତ୍ନେ ବନାଇବା ନବଲେଖ ପତ୍ରିକା ଛଇଳା ସେ । ୪ । ଯୁବରାଜ ଅଙ୍ଗ ଅଙ୍ଗରାଗ ସଙ୍ଗ କନକ ପାଠ ପରି ଦିଶେ । ମିନା ଲେଖା ଅବା ବର୍ଣ୍ଣାଧାଠୀ ସେ । ମଣିଲା ରାମଣୀୟକ ଜଳନିଧି ରମଣୀମଣି ସନ୍ତୋଷେ ସେ । ମଞ୍ଜୁଳା । ରେଖା ରେଖାକେ ଲେଖାଧିପଶିରି । ପଦତଳେ କରୁଛି ନଡ଼କରି । ବର୍ଣ୍ଣ ବର୍ଣ୍ଣକରୁ ବଳି ଅର୍ଣ୍ଣବରୁ ପିଇଲା ସୁଧାନିର୍ଝରି ସେ । ୫ । ଗୁଣ ରୀତି ରସ ଶ୍ଳେଷ ଅନୁପ୍ରାସ ଯମକ ତୁନ୍ଦିଲ ରଚନ । ଧୃତିଧ୍ୱଂସୀ ଏକ ଏକ ବଚନ । ଲୋଚନ ଅଦ୍ଭୁତ ନାଖିଲ ଇନ୍ଦ୍ରିୟରେ ମଣିଲା ସୁଧାସେଚନ ସେ । ମଞ୍ଜୁଳା । “ଅରେ ବାଳା ମହାରାଜକୁମାରି । ନବନୀତ ଶିରୀଷ ସୁକୁମାରି । ଧରାମଣ୍ଡଳ ଜଙ୍ଗମ ହେମଚମ୍ପୋଷ୍ଟରି ବିଶ୍ୱମନୋହରି ରେ । ୬ । ବିପ୍ରଯୋଗୀଙ୍କର ସହାୟ ଶଙ୍କର ଏହା ଜାଣିଲେ ହେଲେ ଭଲେ । ତାଙ୍କ ନାମ ନ ଲେଖିଲ ପଦ୍ମଲେ । ସରଯାନ୍ତ୍ର ଧ୍ୟାନ କରୁ କରୁ ଜ୍ଞାନ ଚନ୍ଦ୍ରଚୂଳ ଜାଳିଦେଲେ ରେ । ମଞ୍ଜୁଳା । ଧୃତି ନ ରଖେ ଯେ ଏକ କାରଣ । ପ୍ରାଣେତୁଲେ ନ କରେ ସେ କାରଣ । ଏ ଯେଣୁ ବିରହରେ ସମସ୍ତ

---

କରି ) ତରୁଣ ( ଅନଙ୍ଗ ସୁନ୍ଦର ) ର ସନ୍ଦେହଗଣ୍ଡି ତୁଲେ ( ସାଙ୍ଗରେ ) ଚିଠାଉକୁ ଫିଙ୍ଗାଇଲା ଅର୍ଥାତ୍ ଚିଠାଉ ଫିଙ୍ଗାଇବାରୁ ତରୁଣର ସନ୍ଦେହ ଦୂର ହେଲା । ୪ । କରୁ —କରରୁ, ଅନାୟତ୍ତଦମ୍ଭରେ—ଧୈର୍ଯ୍ୟ ସମ୍ଭାଳି ନ ପାରି । ୫ । ଯୁବରାଜ —ଅନଙ୍ଗସୁନ୍ଦର, ଅଙ୍ଗରାଗସଙ୍ଗ—ଜାଫ୍ରାନକେଶର ପ୍ରଭୃତି ଅଙ୍ଗରାଗ ଲାଗିଥିବାରୁ; କନକପାଠ—ହଳଦିଆ ପାଠ, ମିନାଲେଖା—ସୁନାରେ ମିନାକାମ ପରି ସେ ବର୍ଣ୍ଣଧାଠୀ ( ଅକ୍ଷର ଧାଡ଼ି ) ଦିଶୁଅଛି, ରାମଣୀୟକ—ଶୋଭା, ଜଳନିଧି—ସାଗର ରେଖା···ପ୍ରତିଗାର ଲେଖାଧିପ (ଇନ୍ଦ୍ର) ଐଶ୍ୱର୍ଯ୍ୟକୁ ତୁଚ୍ଛ କରୁଛି । ବର୍ଣ୍ଣବର୍ଣ୍ଣକରୁ— ଅକ୍ଷର ଚିତ୍ରରଙ୍ଗରୁ, ବଳି ଅର୍ଣ୍ଣବରୁ—ସମୁଦ୍ରଠାରୁ ଅଧିକ । ୬ । ତୁନ୍ଦିଲ— ପରିପୂର୍ଣ୍ଣ, ରଚନ—ରଚନା, ଧରାମଣ୍ଡଳ ଇତ୍ୟାଦି—ପୃଥିବୀ ମସ୍ତକର ଗତିଶୀଳ ସୁନା ଚମ୍ପା ପୁଷ୍ପଗୁଚ୍ଛସ୍ୱରୂପା । ୭ । ବିପ୍ରଯୋଗୀ—ବିରହୀ, ( ଶିବ କାମକୁ ଭସ୍ମ କରିଥିବାରୁ ) ସେ କାମକ୍ଲିଷ୍ଟ ବିରହୀଙ୍କ ସହାୟ । ଚନ୍ଦ୍ରଚୂଳ—ମସ୍ତକରେ ଥିବା ଚନ୍ଦ୍ରରେଖା, ଧୃତି ନ ରଖେ···ଯେଉଁ ଚନ୍ଦ୍ରର ଷୋଳକଳାରୁ ଏକ କଳାର କାରଣ ( ଶିବଙ୍କ ମୁଣ୍ଡରେ ଥିବା ) ଧୈର୍ଯ୍ୟ ନଷ୍ଟ କରି ଦିଏ, ତାହାର ସମଗ୍ର କାରଣ

ପ୍ରକାରେ ତୁହି ଏକା ମୋ ଶରଣ ରେ । ୭ । ମୋହନ କଳା ମୂର୍ତ୍ତିମନ୍ତ ମନ୍ତ୍ରର କାରିକା ତାରକେଶାନନା । ସୁଧାପୂର୍ଣ୍ଣ ସୁବର୍ଣ୍ଣଘଟସ୍ତନା । ପରିଜନ ପରିପାଳନେ ଯାହାର ଉଚ୍ଚେ ଦୟାଳୁତାବାନା ରେ । ମଞ୍ଜୁଳା । ତୋର ନିସର୍ଗ ଚଞ୍ଚଳ ନୟନ । କର୍ଣ୍ଣେ ଜପ ହେବାରୁ ପ୍ରଭଦନ । ବନ ଭିତରେ ଭୀତରେ ଅନାରତେ ମୀନଶ୍ରେଣୀ ହେଲ ଲୀନ ରେ । ୮ । ନିଖିଳ ଗୁଣଗଣବତୀ ଯୁବତୀ ସୀମନ୍ତମଣୀ ସାମନ୍ତାଣୀ । କଳକଣ୍ଠ କୂଜନଠାଣି ବାଣୀ । ତୋ ସଙ୍ଗୀତବିଦ୍ୟା ତେଡ଼େ ବିଶାରଦା ଶାରଦା ନ ଥିବେ ଜାଣି ରେ । ମଞ୍ଜୁଳା । ତୁ ଯେ ବିବେକୀଙ୍କ ଶିରୋଭୂଷା । ଶେଷଦେବ ହୋଇବେ ଲୋକହସା । ଏକ ସହସ୍ରବଦନେ ଆରମ୍ଭିବେ ଯେବେ ତୋହର ପ୍ରଶଂସା ରେ । ୯ । ମଣୁଅଛୁ ବ୍ରହ୍ମପଦ ତୋର ପଦତଳେ ପଶିଅଛୁ ଶରଣ । ହଂସଭୂଷଣ ହଂସସଞ୍ଚରଣ । ରଜୋଗୁଣବିଗ ଜାଗରୂକ ହୋଇ ଦିଶେ ଅତ୍ୟନ୍ତ ଅରୁଣ ରେ । ମଞ୍ଜୁଳା । ଜନ୍ମ ଆକର ଆକାର ଧରିଛୁ । ନଖକାନ୍ତି ମକରନ୍ଦ ଝରୁଛୁ । ଚୁମ୍ବନଲାଳସ ହୋଇ ମୋ ମାନସମିଳିନ୍ଦ ଅନୁସରୁଛି ରେ । ୧୦ । ଭଜୁଛି ତୋ ଊରୁଯୁଗକୁ ଅଖଣ୍ଡ ଲକ୍ଷ୍ମୀ ଆଖଣ୍ଡଳ ପଦବୀ । ରମ୍ଭାରୁଚି ଯହିଁରେ ଅଛି ସେବି । ପୁଲକେ ରୋମଜାଲମୂଳେ ଯାହାର ଭଜେ ଶତକୋଟି ଛବି ରେ । ମଞ୍ଜୁଳା । ନେତ୍ର ସହସ୍ର ଅର୍ଥେ

---

ଜୀବନ ନେବାକୁ ଯୁଦ୍ଧ କରେ ନାହିଁ କି ? ( ଚନ୍ଦ୍ରକିରଣ ବିରହୀଙ୍କ ପକ୍ଷରେ ଅସହ୍ୟ ) । ୮ । ମୋହନ···କାରିକା—ତୁ ବିମୋହନ ମନ୍ତ୍ରଧାତ୍ରୀ ପରି, ତାରକେଶାନନା—ଚନ୍ଦ୍ରବଦନା, ବନଭିତରେ—ପାଣି ମଧ୍ୟରେ, ଭୀତରେ—ଭୟରେ; ଅନାରତେ—ସର୍ବଦା । ୯ । ବିଶାରଦା—ପଣ୍ଡିତା, ଶାରଦା—ସରସ୍ୱତୀ, ଶେଷଦେବ—( ସହସ୍ରମୁଖ ) ଅନନ୍ତଦେବ । ୧୦ । ବ୍ରହ୍ମପଦ—ବ୍ରହ୍ମାଙ୍କ ଐଶ୍ୱର୍ଯ୍ୟ, ହଂସଭୂଷଣ—ହଂସ ( ପରମ ବ୍ରହ୍ମ ) ଭୂଷଣ ( ହୃଦୟସ୍ଥାରାଧ୍ୟ ) ଯାହାଙ୍କର, ହଂସ ( ନୂପୁର ) ଭୂଷଣ ( ଅଳଙ୍କାର ) ଯାହାର । ହଂସସଞ୍ଚରଣ—ହଂସବାହନ ଓ ହଂସ ପରି ଧୀରଗମନ; ରଜୋଗୁଣ···ବ୍ରହ୍ମା ରଜୋଗୁଣ ବଶବର୍ତ୍ତୀ ହୋଇ ସୃଷ୍ଟି କରନ୍ତି, ତୋ ଚରଣ କୁଙ୍କୁମକେଶରାଦିର ଧୂଳିଦ୍ୱାରା ରକ୍ତବର୍ଣ୍ଣ, ଜନ୍ମ-ଆକର···ବ୍ରହ୍ମାଙ୍କ ଜନ୍ମସ୍ଥାନ ପଦ୍ମ, ତୋ ଆକୃତି ପଦ୍ମ ପରି ହେବାରୁ ତହିଁରୁ ନଖଶୋଭାରୂପ ମକରନ୍ଦ ଝରୁଛି, ମାନସ ମିଳିନ୍ଦ—ମନରୂପ ଭ୍ରମର । ୧୧ । ତୋ ଜଙ୍ଘ ଦୁହିଙ୍କୁ ଅନନ୍ତ ଶୋଭାପୂର୍ଣ୍ଣ ଇନ୍ଦ୍ରପଦ ଆଶ୍ରୟ କରିଛି । ରମ୍ଭାରୁଚି—କଦଳୀ ଗଛପରି ମନୋହର ଓ ରମ୍ଭା ନାମକ ସ୍ୱର୍ବେଶ୍ୟାଦ୍ୱାରା ମନୋହର, ପୁଲକେ—ରୋମାଞ୍ଚବେଳେ, ରୋମଜାଲମୂଳେ—ରୋମମାନଙ୍କ ମୂଳରେ, ଶତକୋଟି—ବଜ୍ର ଓ ବହୁସଂଖ୍ୟକ, ଛବି—ଶୋଭା, ନେତ୍ରସହସ୍ର ଅର୍ଥେ—ସହସ୍ରନେତ୍ର ଇନ୍ଦ୍ରଙ୍କପାଇଁ

କଣା ଯାଉ । ଲୀଳା ଐରାବତ କର ସଞ୍ଚାର । ଲେଖାମାନଙ୍କେ ପ୍ରଶଂସା-ଯୋଗ୍ୟ ରୂପ ଯାହା ସମୀପ ଶଚୀର ରେ । ୧୧ । ପତିତ ନେବକୁ ଅଦୃଶ୍ୟ ହେବାରୁ ଉଦର ତୋର ବିଷ୍ଣୁପଦ । ପାଶେ ନାଭି ବିରଜାନାମ ହ୍ରଦ । ତାହା ମଧ୍ୟ ବିକଶିତ ସରୋଜରୁ ପ୍ରସରିବାରୁ ଆମୋଦ ରେ । ମଞ୍ଜୁଳା । ଧାଇଁଅଛି ରୋମାଳି ଭୃଙ୍ଗରାଜି । କୃଷ୍ଣ ଶ୍ରୀଅଙ୍ଗ କଳାକାନ୍ତି ବାଜି ଶେଷଦେବ ଅବା ଅଛନ୍ତି ମଘବାମଣି ନୀଳିମାକୁ ଭଜି ରେ । ୧୨ । ନବୋଦ୍ଭବସୁଧାମଧୁରାଧରି ତୋ କୁଚକୁମ୍ଭ ଶମ୍ଭୁଯୁଗଳ । ଶିବଲୋକ ଏଣୁ ତୋ ବକ୍ଷସ୍ଥଳ । ପଡ଼ିଛି ତହିଁକି ନିଃଶ୍ରେଣୀ ସୋପାନ ରୂପରେ ମାହେନ୍ଦ୍ରନୀଳ ରେ । ମଞ୍ଜୁଳା । ଚିରନ୍ତନ ପୁଣ୍ୟରୁ ନାହିଁ ଲେଶ । ତେବେ ଆରୋହୀ ତହିଁ ମୋ ମାନସ । ଶଙ୍କର ସାଯୁଜ୍ୟ ଲକ୍ଷ୍ମୀ ଲଭିପାଇଁ କରିଛି ମହା ସାହସ ରେ ।୧୩। ଯେବେ ମୋର ପୂର୍ବ ତପ ଅତି ଖର୍ବ ହେ ସୁକୁନ୍ଦ ବରଦନ୍ତି । ଏ କଣାଣଯୋଗ୍ୟ ଯେବେ ନୁହନ୍ତି । କର୍ମବଳ ତୁଲେ ସିନା ପରବଳେ ଶୁଭାଶୁଭେ ଲୋକ ମତି ରେ । ମଞ୍ଜୁଳା । ଯେବେ ମୋହର କର୍ମବଳ ନାହିଁ । କୃପାନିଧି ରେ ପୂର୍ଣ୍ଣଚନ୍ଦ୍ରମୁହିଁ । ସଞ୍ଚିବାକୁ ଧର୍ମ ମୋର ଶୁଭକର୍ମଦାୟିନୀ ହୋଇବୁ ତୁହି ରେ । ୧୪ । ଯେ ଧନୀ ତାକୁ ଧାତା ଧନୀ

---

ଏବଂ ଅସଂଖ୍ୟ ଚକ୍ଷୁରୂପ ଧନଦ୍ୱାରା, ଲୀଳା···ଇନ୍ଦ୍ରତ୍ୱରେ ଐରାବତ ହସ୍ତୀର ଶୁଣ୍ଡ ସଞ୍ଚାଳନ ଶୋଭାପାଏ, ତୋର ଊରୁ ଐରାବତର ଶୁଣ୍ଡାଦଣ୍ଡ ଭଳି, ଲେଖା—ଦେବତା ଓ ଚନ୍ଦ ଇନ୍ଦ୍ରତ୍ୱ ଶଚୀଙ୍କ ସମୀପରେ ଥାଏ ଓ ତୋ ଊରୁର ଚନ୍ଦ ଶଚୀଙ୍କ ପ୍ରଶଂସନୀୟ । ୧୨ । ପତିତ—ପାପୀ, ଅପୁଣ୍ୟବାନ୍; ବିଷ୍ଣୁପଦ—ବିଷ୍ଣୁଙ୍କ ପାଦ, ନାଭିବିରଜା—ତୀର୍ଥବିଶେଷ ଓ ବିରଜା ( ମଳିନତାଶୂନ୍ୟ ) ନାଭିଦେଶ, ରୋମାଳି ( ନାଭିନିମ୍ନସ୍ଥ ରୋମରେଖା ) ରୂପ ଭ୍ରମରସମୂହ ଧାଇଁଛି କି ? ଅଥବା ଶେଷଦେବ ( କୃଷ୍ଣଙ୍କ ଶଯ୍ୟା ) କୃଷ୍ଣଙ୍କ ଶରୀର କାଳିମା ଲାଗିବାରୁ କଳା ହୋଇ ରୋମ ରେଖାରୂପରେ ମଘବାମଣି—ନୀଳିମା ( ଇନ୍ଦ୍ରନୀଳମଣିର କୃଷ୍ଣତ୍ୱ ) କୁ ପାଇଲେ କି ? ୧୩ । ନବୋଦ୍ଭବ···ନୂତନ ଜାତ ହୋଇଥିବା ଅମୃତଦ୍ୱାରା ମଧୁର ହୋଇଅଛି ଅଧର ଯାହାର, ଶିବଲୋକକୁ ଯିବାପାଇଁ ସେହି ରୋମରେଖାରୂପରେ ଇନ୍ଦ୍ରନୀଳମଣିରେ ତିଆରି ନିଶୁଣି ପାହାଚ ପଡ଼ିଛି । ଶଙ୍କରସାଯୁଜ୍ୟଲକ୍ଷ୍ମୀ—ଶିବଙ୍କ ସଙ୍ଗେ ଏକ ହୋଇ ମିଳିଯିବା ସୌଭାଗ୍ୟ । ୧୪ । ଅତିଖର୍ବ—ଅତ୍ୟଳ୍ପ, ସୁକୁନ୍ଦବରଦନ୍ତି—ହେ ସୁନ୍ଦରକୁନ୍ଦପୁଷ୍ପଦର୍ଶନା, କର୍ମ-ବଳ ଥିଲେ ଲୋକର ଶୁଭ ବା ଅଶୁଭ କର୍ମରେ ମତି ପ୍ରବଳ ହୁଏ ସିନା !

କରନ୍ତୁ ପ୍ରଭୁ କରବ ଅଭ ଜାସ । ଯାର ପ୍ରଭାବବସେ ଜପବାସ । ତାହାକୁ ଧନୀ କଲେ ସିନା ପ୍ରସରେ ଭୁବନମଣ୍ଡଳେ ଯଶ ରେ । ମଞ୍ଜୁଳା । ଶସ୍ୟ-କେଦାର ଉପକାର ସରେ । ବୃଷ୍ଟିକଲେ ଘନ କୀର୍ତ୍ତିପ୍ରସରେ । ଜଳଧିରେ ବରଷିଲେ କାହିଁ ଭାଗ୍ୟ ତାହାର ଯେ ଯଶ ଲେଶରେ । ୧୫ । ତୁ ବିଶ୍ୱମ୍ଭର-ଚକ୍ରବର୍ତ୍ତିକୁମାରୀ ନ ଜାଣୁ ରବିଦରଶନ । ଦରଶନକୁ ତହିଁ ମୋର ମନ । ସୁରଶାଖିଶିଖାଶାଖାରୁ କୁସୁମ ତୋଳି ଲୋଡ଼ୁଛୁ ବାମନ ରେ । ମଞ୍ଜୁଳା । ପ୍ରତି ଜନ୍ମାନ୍ତରେ ହୋଇ ବିମୁଖ । ହର ଉଚ୍ଚାର ନାହିଁ ଯାହା ମୁଖ । ସେ ପୁଣି କାମନା କରେ ଲଭିବାକୁ ଗୀର୍ବାଣଗଣନା ସୁଖ ରେ । ୧୬ । ଜଗତୀ ଭିତରେ ମୋ ବିନା ଇତରେ ଏପରି ନ ଥିବ ଦୁର୍ବୋଧ । ଏଥି ହୁଅନ୍ତା ମହା ଅପରାଧ । ଜାଣୁ ଶିରୋମଣି ତୁ ତ ଜାଣି ଜାଣି ନ ଗଣିବୁ ଦାସ ବାଧ ରେ । ମଞ୍ଜୁଳା । ମୋରେ କରୁଣା ଥିବା ଘେନ ଏକା । ଚିତ୍ତେ ହେବାରୁ ମୋ ବିନାଶ ଦକା । ଠେକାଇଲୁ କ୍ଷମାଚକ୍ରବାଳେ କ୍ଷମାଜଳଧି ନାମେ ପତାକା ରେ । ୧୭ । ଏତେ ପ୍ରତ୍ୟୁପଣ ଦେଖାଇବା ଗୁଣ ଶୁଣିବା ଯୋଗ୍ୟ ଯେ ନୋହିଲ । ମୁଁ ତୋ ଗୁକର ବୋଲି ନ କହିଲ । ରାତିଏ ହେଲେ ମୋ ଗ୍ଲାନିକି ସୁପାଟି କରି ତତେ ନ ବହିଲି ରେ । ମଞ୍ଜୁଳା । ମାର ବୋଲାଉଛୁ ଯେ ବାହାଦୁର । ଦୂର କର ସେ ରତନାହାଦର । ହେଲି ନାହିଁ ଯେ ତୋ ଜଳଜଜାଙ୍ଘର ପାଦର ପୋଛୁ ଗୁଦର ରେ । ୧୮ । ଜଗତୀ ବାହୁଡ଼ା ସମୟେ ପାହାଡ଼ା ହୁଅନ୍ତ ତୋ ଚରଣତଳେ । ଅବା ଜମି ରହନ୍ତି ଲାକ୍ଷାବୋଳେ । ହୁଅନ୍ତି ଅବା ଅଙ୍କପଟେ ମୁଁ ପଟେ ମଣିକଠାଉ ଯୁଗଳ ରେ । ମଞ୍ଜୁଳା । ଦାସୀସମୂହେ ଜଣେ ହୋଇ ଅବା । କରୁଥାନ୍ତି ତୋ ଶ୍ରୀ ଗ୍ଲାମୁରେ ସେବା । ହେମ-

---

୧୫ । ପ୍ରଭୁ—ସ୍ୱାମୀ ବା ରାଜା, ଶସ୍ୟକେଦାରେ—ଧାନକିଆରୀରେ, ଉପକାର-ସରେ—ଉପକାର କରୁଥିବା ପୋଖରୀରେ । ୧୬ । ବିଶ୍ୱମ୍ଭର...ପୃଥିବୀର ଶ୍ରେଷ୍ଠ ରାଜାଙ୍କ କନ୍ୟା, ନ ଜାଣୁ ରବିଦରଶନ—ଅନ୍ତଃପୁରସ୍ଥା ରାଜଯୋଷାଙ୍କୁ ଅସୂର୍ଯ୍ୟମ୍ପଶ୍ୟା କୁହାଯାଏ ଅର୍ଥାତ୍ ସେମାନେ ସୂର୍ଯ୍ୟଙ୍କୁ ସୁଦ୍ଧା ଦେଖନ୍ତି ନାହିଁ । ସୁରଶାଖିଶିଖାଶାଖାରୁ—କଳ୍ପବୃକ୍ଷର ଅଗରେ ଥିବା ଡାଳରୁ, ଗୀର୍ବାଣଗଣନା-ସୁଖ—ଦେବତାଙ୍କର ପ୍ରାପ୍ୟ ସୁଖ । ୧୭ । ଦାସବାଧ—ଭୃତ୍ୟର ଅମଙ୍ଗଳ, କ୍ଷମାଚକ୍ରବାଳ—ପୃଥିବୀମଣ୍ଡଳ, କ୍ଷମାଜଳଧି—କ୍ଷମାସାଗର, କ୍ଷମାବତୀ । ୧୮ । ସୁପାଟି—ଶଯ୍ୟା, ବାହାଦୂର—ସାହସୀ ବୀର, ଜଳଜଜଙ୍ଘର ପାଦର—ଯେଉଁ ପାଦପଦ୍ମକୁ ଜିଣିଅଛୁ । ୧୯ । ଜଗତୀବାହୁଡ଼ା ସମୟେ ପାହାଡ଼ା—କୋଠାକୁ ଫେରିବାବେଳେ ବାଟରେ ପଡ଼ିଥିବା ବସ୍ତ୍ର, ଲାକ୍ଷାବୋଳେ—ଅଳତାରସରେ,

ପିକଦାନୀ ଦାନୀ ହୋଇ ମୋର କରେ କରନ୍ତୁ ମଘବା ରେ । ୧୯ । ହେବା କ୍ଷଣି ଜଣା ଶ୍ରୀଅଙ୍ଗ ମାଜଣା ସରିବା ସମୟ ପ୍ରବେଶ । ସିଥି ଅତର କୁଞ୍ଚା କୁଞ୍ଚାବାସ । ହାଜର ହୋଇବା ଗୃହିଁ ପ୍ରକାଶନ୍ତେ ଓଷ୍ଠ ଭିଡ଼ା ମନ୍ଦହାସ ରେ । ମଞ୍ଜୁଳା । ଲୀଳାଦର କମ୍ପ ଗଣ୍ଡମଣ୍ଡଳ । ମଣ୍ଡି ଝଲକା ମୋତି ପ୍ରତିଫଳ । ଚଳାଚଳ ଡୋଳା ଇନ୍ଦୀବରମାଳା ଦୋଳାପରି ହେଉ ଲୋଲରେ । ୨୦ । ଚତୁର୍ଦ୍ଦଶ ଲୋକ ସକଳଦର୍ଶ୍ୟାକ ସେକାଳେ ଶ୍ରୀମୁଖରେ ଦେଖି । କୃତକୃତ୍ୟ ହୁଅନ୍ତା ବେନି ଆଖି । ଆଉ ଅବା କେଉଁ ଭାଗ୍ୟ ନ ଦିଅନ୍ତା ତୋ ସେବା କଳପଶାଖୀ ରେ । ମଞ୍ଜୁଳା । ପୀଠ କରି କଞ୍ଜ-ଦଳ ତଳପ । ନିତି କରନ୍ତି ବାଳାମନ୍ତ୍ର ଜପ । ରସିକରାଜ୍ୟେ ଅଭିଷିକ୍ତ ହୋଇବା ପାଇଁ କରି ସଂକଳପ ରେ । ୨୧ । ଲାବଣ୍ୟସରସୀମଧ୍ୟବିଳସିତ ସରସୀରୁହମୁଖ ତୋର । ତହିଁ ଖେଳିବାର ନେତ୍ର ମନ୍ଦର । ହୋଇବ ସୁଯୋଗେ ନୟନ ଅୟନ ଅତିଥି ପୁଣି ମୋହର ରେ । ମଞ୍ଜୁଳା । ବେଣୀଫଣୀ ଝୁମ୍ପା ଫଣା ଶ୍ରୀହରି । ଟେକାଇଲେ ମୋ ଶିରେ ଛତ୍ର କରି । ସେହୁଦନ ମୋର ଅଂସ ଅବତଂସ ହେବ ଯୁବରାଜଶିରୀ ରେ । ୨୨ । ତୋ ଅଙ୍ଗଦେଶ ସହଜେ ଅଙ୍ଗଦେଶ କାଶ୍ମୀର ତୋ କୁଚଯୁଗଳେ । ଅଛୁ କୁନ୍ତଳ କୁଟିଳ କୁନ୍ତଳେ । କାମରୂପ ପ୍ରତି

---

ହେମପିକଦାନୀ···ମୋତେ—ସୁନା ପିକଦାନୀ ମୋ ହାତରେ ଦେଇ ଅବା ମୋତେ ମଘବା (ଇନ୍ଦ୍ର) କରନ୍ତୁ । ୨୦ । ମାଜଣା—ସ୍ନାନ, କୁଞ୍ଚାକୁଞ୍ଚାବାସ—ସମାନ ଭାବରେ କୁଞ୍ଚା ହୋଇଥିବା ଲୁଗା, ଲୀଳାଦର···ସକୌତୁକ ସ୍ନେହରେ କମ୍ପୁଥିବା ଗଣ୍ଡଦେଶକୁ ଝଲକା ( କାନର ଏକପ୍ରକାର ଭୂଷଣ ) ର ମୋତିର ପ୍ରତିବିମ୍ବଦ୍ୱାରା ମଣ୍ଡିତ କରି, ତୋର ଚଳାଚଳ ଡୋଳା ଇନ୍ଦୀବର ( ନୀଳପଦ୍ମ ) ମାଳାର ଦୋଳା ( ଆନ୍ଦୋଳନ ) ପରି ହୁଅନ୍ତେ । ୨୧ । ତୋ ସେବାରୂପ କଳ୍ପବୃକ୍ଷ, ପୀଠ—ଉଚ୍ଚାସନ, କଞ୍ଜଦଳତଳ୍ପ—ପଦ୍ମପତ୍ର ଆସନୀ । ୨୨ । ଲାବଣ୍ୟ ···ତୋର ପଦ୍ମରୂପ ମୁଖ ଲାବଣ୍ୟରୂପ ପୋଖରୀ ମଧ୍ୟରେ କ୍ରୀଡ଼ା କରୁଛୁ । ଚକ୍ଷୁ ଦୁଇଟି ତହିଁରେ ମନ୍ଦର ପରି । ମୋ ନୟନ ସେ ମନ୍ଦରରେ ପୁଣି କେବେ ସୁଯୋଗରେ ଅୟନଅତିଥି ( ବାଟୋଇ କୁଟୁଆଁ ) ହେବ, ଅର୍ଥାତ୍ ସତେ ସୁଯୋଗରେ ତୋର ମୋର ଚକ୍ଷୁ ମିଳିତ ହେବ ? ବେଣୀଫଣୀ···ଭଗବାନ ତୋ ବେଣୀରୂପ ସର୍ପୀର ଝୁମ୍ପା (ଫୁଲ) ରୂପ ଫଣାକୁ ମୋ ମୁଣ୍ଡରେ ଛତ୍ରପରି ଟେକାଇଲେ । ସେ ଦିନ ଯୁବରାଜଲକ୍ଷ୍ମୀ ମୋ ଅଂସ ଅବତଂସ ( କାନ୍ଧର ଅଲଙ୍କାର ) ହେବେ । ଅର୍ଥାତ୍ ମୁଁ ସେ ଦିନ ଯୁବରାଜଶ୍ରୀ ବାନ୍ଧରେ ବହିବି । ( ଭଗବାନ ମଧ୍ୟ ଫଣୀଫଣାକୁ ନିଜ ମୁଣ୍ଡ ଉପରେ ଛତ୍ର ପରି କରିଅଛନ୍ତି ) । ୨୩ । କାଶ୍ମୀର—ଦେଶବିଶେଷ ଓ ଜାଫ୍ରାନକେଶର, କୁନ୍ତଳ—ଦେଶବିଶେଷ ଓ

ଅଙ୍ଗରେ ବସନ୍ତ କରିଅଛୁ ସବୁକାଳେ ରେ । ମଞ୍ଜୁଳା । ଭୂପାଳରୁ ତୁ ଲଭିଛୁ ଜନମ । କଣ୍ଠେ ଅଛୁ ମାଳବର ସଙ୍ଗମ । ନଗ୍ରୈଳ ପ୍ରଚ୍ଛାଦନ ଲାଗି ହେଜୁଛୁ କାଞ୍ଚୀରେ ମଧ୍ୟ ସୁଷମ ରେ । ୨୩ । ତୋ ବିନା ଭୁବନ ବନ ଘେନି ମନ ଦେଶାଟନେ କଲେ ପ୍ରବେଶ । ଦୁଃଖପାସୋରି ଗୃହୁଛି ପ୍ରକାଶ । ହୋଏ ବୋଲି ବିଚାରିଲେ ତୋ ତନୁରେ ଅଛନ୍ତି ନିଖିଳ ଦେଶ ରେ । ମଞ୍ଜୁଳା । ତାହା ବିନା ଗଲେ ଆନ ଦେଶକୁ । ଅଜ ପାଇବି କି ସୁଖ ଲେଶକୁ । ସକଳ ଦେଶ ଚତୁର ଭାବ ହେବ ଭଜିଥିଲେ ତୋ ପାଶକୁ ରେ । ୨୪ । ଭାଗୀରଥୀଧାର ଉର ମୁକ୍ତାହାର ଯମୁନା ନୀଳ ରୋମରାଜି । କଣ୍ଠେ ସରସ୍ୱତୀ ଅଛୁ ବିରାଜି । ନର୍ମଦା ଲକ୍ଷଣପାକ ପ୍ରଚ୍ଛପଦେ ତତେ ସିନା ଅଛୁ ଭଜିରେ । ମଞ୍ଜୁଳା । ଓଷ୍ଠ ମାଣିକ୍ୟ ତାରି ଇନ୍ଦ୍ରନୀଳ । ନଖ ହୀରକ ଦନ୍ତ ମୋତିଫଳ । ରତ୍ନାକର ତୁହି ଏ ଘେନି ନିଖିଳ ତୀର୍ଥ ତୋ ତନୁରେ ଠୁଳ ରେ । ୨୫ । ମକରଧ୍ୱଜଚାପପାପନାଶିନୀ ଯୋଗ କେଉଁକାଳେ ଘଟିବ । ମୋର ମନ୍ଦନେ କଳୁଷ ତୁଟିବ । ଏପରି କରୁଣା କରିବେ କେବେ ତୋ ପୟୋଧରେଶ୍ୱର ଶିବ ରେ । ମଞ୍ଜୁଳା । ତାଙ୍କ ସମୀପେ ଗୋଦାନ କରିବି । କରଯୋଡ଼ି କି ସନ୍ତୋଷେ ଭରିବି । ସଂସାର ଗୁରୁ ଯାତନାଯାକ ବିନା ଆୟାସରେ ପାସୋରିବି ରେ । ୨୬ । ଗମନେ ତୋହର ଅଛୁ ନାଗେଶ୍ୱର ଅବଲୋକନରେ ଅଶୋକ । ଶ୍ରୀମୁଖରେ ଦାସୀ ଛନ୍ତି ଅନେକ । ମୁଖପଙ୍କେରୁହ ଶ୍ରବଣ ପାଟଳୀ ଅଧର ଜୀବ ସ୍ତବକ ରେ । ମଞ୍ଜୁଳା । ନବ ପଲ୍ଲବ ଗୃହୁ ପାଣିପାଦ । କଳପଞ୍ଚମାଳାପ କଣ୍ଠନାଦ । ଭୃଙ୍ଗଧ୍ୱନି କଛୁ ଅଗାଜ କରିବା ସମସ୍ତ ଜନ୍ତୁ ଶବଦ ରେ । ୨୭ କନ୍ଦୁକ କେଳି ଅବସାନେ ସୁମନ୍ଦ ନିଃଶ୍ୱାସ ଚନ୍ଦନ ପବନ । ଧନ ତୋ ତନୁ ବାସନ୍ତିକ ବନ । ତହିଁ ଯେ ବିହାର କରୁଅଛୁ ହରିବିରୋଧୀ ତୁଳେ

କେଶ, କାମରୂପ—ଦେଶବିଶେଷ ଓ କନ୍ଦର୍ପର ସୌନ୍ଦର୍ଯ୍ୟ, ଭୂପାଳ—ଦେଶବିଶେଷ ଓ ରାଜା, ମାଳବର—ରାଜ୍ୟବିଶେଷର ଓ ଶ୍ରେଷ୍ଠମାଳା, ନଗ୍ରୈଳ—ଗ୍ରୈଳରାଜ୍ୟ ଓ ଉତ୍ତରୀୟ ବସ୍ତ୍ର, କାଞ୍ଚୀ—ରାଜ୍ୟଖଣ୍ଡ ଓ କଟିଭୂଷଣ ମେଖଳା । ୨୫ । ନର୍ମଦା—ନଦୀ ଓ ସୁଖପ୍ରଦ, ରତ୍ନାକର—ସମୁଦ୍ର ଓ ନାନା ରତ୍ନର ଆଧାର, ମକରଧ୍ୱଜଚାପପାପ-ନାଶିନୀ ଯୋଗ—କନ୍ଦର୍ପ ଚାପରୂପ ପାପ ନାଶିନୀଯୋଗ ଓ ଚାପ ପାପନାଶିନୀ ସମୁଦ୍ର ସ୍ନାନଯୋଗ, ଗୋଦାନ—ଗୋରୁଦାନ ଓ ଚକ୍ଷୁଦାନ ଅର୍ଥାତ୍ ଆଖିରେ ଦେଖିବା । ୨୭ । ନାଗେଶ୍ୱର—ହସ୍ତିଶ୍ରେଷ୍ଠ ଓ ନାଗେଶ୍ୱର ଫୁଲ, ଅଶୋକ—ଦୁଃଖର ଅଭାବ ଓ ଅଶୋକ ଫୁଲ, ଦାସୀ—ଭୃତ୍ୟା ଓ ଦାସକେରଣ୍ଡା ଫୁଲ, ପଙ୍କେରୁହ—ପଦ୍ମ, ପାଟଳୀ—ପାଟଳୀ ଫୁଲ, ଜୀବସ୍ତବକ—ବନ୍ଧୁଲିଫୁଲପେଣ୍ଡା, ଅଗାଜ କରିବା—ଅନିଚ୍ଛା ପ୍ରକାଶ କରିବା । ୨୮ । କନ୍ଦୁକକେଳି—ପେଣ୍ଡୁଖେଳ, ବାସନ୍ତିକବନ—ନିଆଳିଫୁଲ

ମୋ ମନ ରେ । ମଞ୍ଜୁଳା । ସେ ତ ପ୍ରଧାନ ପାଟଚର କର—ଅପହାରକ ବିରହୀ ରଙ୍କର । ଧରିଛୁ ମୋ ମନ ତୋ ରୁଚି ରତନ ତହିଁକି ଉପାୟ କର ରେ । ୨୮ । ଦିବସ ରଜନୀ କରି ଇନ୍ଦ୍ରଜାଲ ମାୟାବୀ ଭେଟାଇବା ଦିନ । ଯେଉଁ ଶୋଭା ଦେଖିଅଛୁ ନୟନ । ଯେତେ ସୁଭାଗ୍ୟ ଦେଉଛୁ କେତେ ଜନ୍ମେ ପାସୋରି ପାରିବ ମନ ରେ । ମଞ୍ଜୁଳା । କଲୁ ମୋଠାରେ ଯେତେ ଅନୁଗ୍ରହ । ତହିଁ ପ୍ରମାଣ ଏକା ଅବିଗ୍ରହ । ସେ ପୁଣି ଅଦୃଶ୍ୟ ହୋଇଲା ରହିଲା କେଡ଼େ ନିଗ୍ରହ ମୋ ଦେହ ରେ । ୨୯ । ମୁନେ ଗରଳ ପୁଙ୍ଖରେ ସୁଧା ଦେଇ ବିନ୍ଧିଲୁ ନେତ୍ର କଳମ୍ବରେ । ମୋଡ଼ି ଦେଲୁ ଯା ଲଜ୍ଜା ଆଡ଼ମ୍ବରେ । ଗର୍ଭରେ ବୁଡ଼ି ପକ୍ଷୀ ଭଜି ରହିଲା ମୋର ମରମ ଶମ୍ବର ରେ । ମଞ୍ଜୁଳା । ଲାକ୍ଷା ଛାଡ଼ି ନ ଥିଲା ମୋ ମୁଣ୍ଡରୁ । ସ୍ନେହଚୁମ୍ବ ପାନବୋଳ ଗଣ୍ଡରୁ । ଅଧର ବିଧୁଲି ମଧୁର ମାଧୁର୍ଯ୍ୟ ଛାଡ଼ି ନ ଥିଲା ତୁଣ୍ଡରୁ ରେ । ୩୦ । କୁଚକଳଶୀ କୁଙ୍କୁମ ସଞ୍ଚରି ସମ୍ପତ୍ତି ଉରେ ଥିଲା ପୂରି । ଶ୍ରୁତିଯୁଗେ ବାଣୀ ସୁଧାନିର୍ଝରୀ । ହୃଦୟନନ୍ଦରେ ପ୍ରସରି ଗଲା ତୋ ପରମ ରସ-ଲହରୀ ରେ । ମଞ୍ଜୁଳା । ଏ କି କହିବାର କଥା ଇତରେ । କେ ବା ସତ୍ୟ କରିବ ଜଗତରେ । ବିଲୋକ ସମ୍ପଦ୍ୟାକ ଜମା ହୋଇଅଛୁ ନୟନ

---

ବଳିଗ୍ରି, ହରିବିଦ୍ବେଷୀ—କନ୍ଦର୍ପ, ପାଟଚର—ଚୋର, କରଅପହାରକ—ହାତରୁ ଯେ ଚୋରିକରି ନେଇଯାଏ, ରୁଚିରତନ—ସୌନ୍ଦର୍ଯ୍ୟରୂପ ରତ୍ନ । ହେ ଧନ, ତୋ ଶରୀର ରୂପ ନିଆଳୀବନରେ କନ୍ଦର୍ପସଙ୍ଗେ ମୋ ମନ ବୁଲୁଅଛି, ପେଣ୍ଡୁଖେଳ ଶେଷରେ ତୋର ଧୀର ନିଃଶ୍ୱାସରୂପ ଚନ୍ଦନ ପବନ; ହାତରୁ ଯେନ ପଳାଇଯିବା ଗୋଟାଏ ବଡ଼ ଚୋରପରି, ମୁଁ ରଙ୍କ (ଦରିଦ୍ର ବିରହୀ) ଅଟେ, ମନରେ ତୋର ଯେଉଁ ସୌନ୍ଦର୍ଯ୍ୟ ରୂପ ରତ୍ନକୁ ଧରିଛୁ ତାକୁ ସେ ଯେନ ପଳାଇ ଯିବନି, ସେଥିପାଇଁ ଉପାୟ କର । ୨୯ । ଇନ୍ଦ୍ରଜାଲମାୟାବୀ (ଐନ୍ଦ୍ରଜାଲିକ) ଦିନକୁ ରାତି କରି ଦେଇ ଯେଉଁଦିନ ତୋତେ ମୋତେ ଏକତ୍ର ମିଳାଇ ଦେଇଥିଲା ସେଦିନ ମୋ ଆଖି ଯେଉଁ ଶୋଭା ଦେଖିଛି, ସେ ଶୋଭା ମୋତେ ଯେତେ ସୌଭାଗ୍ୟ ଦେଉଛି; ଅଶେଷ ଜନ୍ମରେ ମୁ ତାହା ଭୁଲିଯିବି କି ? ଅବିଗ୍ରହ—ଅତନୁ, କନ୍ଦର୍ପ ( ଏଠାରେ ମନ ? ), ନିଗ୍ରହ—କଷ୍ଟ ର ୩୦ । ନେତ୍ରକଳମ୍ବ—ଚକ୍ଷୁରୂପ ଶର; ତାହାର ମୁନରେ ବିଷ ଓ ପୁଙ୍ଖ ଅର୍ଥାତ୍ (ବାଣର ପକ୍ଷ ଲାଗିଥିବା ) ମୂଳ ଅଂଶରେ ଅମୃତ ଦେଇ ମୋତେ ବିନ୍ଧିଲୁ । ଲଜ୍ଜାର ଆଡ଼ମ୍ବରରେ ( ଶୋଭାରେ ) ନେତ୍ର ମୋଡ଼ି ଦେଲୁ, ଅର୍ଥାତ୍ ବୁଲାଇ ନେଲୁ । ସେ ପକ୍ଷୀ ( ଶର ) ମୋ ମର୍ମରୂପ ସମ୍ବର ( ମୃଗର ) ଗର୍ଭରେ ପଶିଯାଇ ଭଜି ରହିଗଲା । ତୋ ପାଦରେ ମୋ ଶିର ଲଗାଇଥିବାରୁ ଲାକ୍ଷା (ତୋ ପାଦର ଅଲତାରଙ୍ଗ) ମୋ ମୁଣ୍ଡରୁ ଛାଡ଼ି ନ ଥିଲା । ୩୧ । ଶ୍ରୁତିଯୁଗେ ( ଦୁଇ କାନରେ ) ବଚନରୂପ ଅମୃତର

ଭିତରେ ରେ । ୩୧ । ଇନ୍ଦ୍ରନୀଳଚୁଡ଼ୀ ସଞ୍ଚାର ସୁଷମା ସଞ୍ଚାର କରାଇ ଚରମେ । ମଜ୍ଜାଇଲୁ ବ୍ରହ୍ମାନନ୍ଦ ଶରମେ । ମାୟା ଅବସାନ ଦଣ୍ଡେ ପୁଣି ଏଡ଼େ ଦଣ୍ଡ ଥିଲା ଏ କରମେ ରେ । ମଞ୍ଜୁଳା । ଏବେ ନ କଲେ ଏ ସୁଖ ସାକ୍ଷାତ । ହେବ ନାହିଁ ଏ ଜୀବନ ରକ୍ଷା ତ । ଦୀନାନୁକମ୍ପନହୀନା ବୋଲି ହେବ ଅପଶ ତୋହର ଖ୍ୟାତ ରେ । ୩୨ । ବିଚକ୍ଷଣ ଗୁଣନିଧି ଯିମ୍ଭକୁ କି ଅଧିକ ମୁଁ ଲେଖି ପାରିବି । ଚିଠା ଚିଠାଭିତରେ ଯେବେ କରିବି । ଆୟାସ ଲେଶ ତୋ ଦୟା ଅବଧାନେ ହେଲେ ସଂସାରୁ ସରିବି ରେ । ମଞ୍ଜୁଳା । ଏଣୁ ହୃଦୟ ହେବାରୁ କାତର । କଲି ନାହିଁ ଜଣାଣକୁ ବିସ୍ତାର । ବୁଝାଇ ଦେନିବୁ ଉଚିତାନୁଚିତ ବିଧି ତୁ ସେ ସମସ୍ତର ରେ ।୩୩। ତାଦୃଶ ସୁକୁମାରତର ଶ୍ରୀହସ୍ତ ହୃଦୟ ନୟନ ଯୁଗଳୀ । ଧରି ଦେନା ଅନାଇଁ ହେଲେ ଭୋଳ । ଏ ଅପରାଧ ମୋର କ୍ଷମା କରିବୁ କ୍ଷମାନିଧି ମୋ ସଙ୍ଗାଳି ରେ । ମଞ୍ଜୁଳା । ମୁଁ ତୋ ଚରଣେ ଅଳତା ବୋଳୁଛି । ପ୍ରିୟସଖୀମାନଙ୍କୁ ସଂଖୋଳୁଛି । ତୋ ବେଶ ଅର୍ଥେ ତାହାଙ୍କ ତୁଲେ ଫୁଲବାଡ଼ିରୁ ଫୁଲ ତୋଳୁଛି ରେ । ୩୪ । ଝରିମାଳିଆ ଶ୍ରବଣ ଅବତଂସ ସରୁ ପାଖୁଡ଼ା ଚନ୍ଦ୍ରହାର । ଫୁଲପହଞ୍ଚି ଫୁଲ ମୋତିସରି । ପଦ୍ମପତ୍ରୀ ପରି ରତ୍ନକୁ ବସାଇ ଅଙ୍ଗଦ କରୁଛି ତୋରି ରେ । ମଞ୍ଜୁଳା । ରାମ ସୁମିତ୍ରା-ନନ୍ଦବରଧନ । ତାଙ୍କ ଅନୁଜହିଁ ସେହି ସମାନ । ରାମଚନ୍ଦ୍ର ଜ୍ୟେଷ୍ଠରାୟ ଭୂନାଥର ସେ ଦୁହେଁ ଜୀବନଧନ ହେ ସୁଜନେ । ୩୫ ।

---

ଝରି ପୁରି ରହିଥିଲା । ୩୨ । ଇନ୍ଦ୍ରନୀଳମଣିରେ ନିର୍ମିତ ଚୁଡ଼ିର ସଞ୍ଚା (ଚନ୍ଦ୍ର)ର ସୁଷମା (ଶୋଭା)କୁ ମୋ ଚରମେ (ପିଠିରେ) ସଞ୍ଚର କରାଇ (ରଖାଇ) (ଆଲିଙ୍ଗନ-ଦ୍ୱାରା) ବ୍ରହ୍ମାନନ୍ଦ ଶର୍ମରେ (ବ୍ରହ୍ମପ୍ରାପ୍ତିଜନିତ ଆନନ୍ଦମୟ ସୁଖରେ) ମଜ୍ଜାଇ ଦେଲୁ (ବୁଡ଼ାଇ ଦେଲୁ), ମାୟା ଅବସାନଦଣ୍ଡେ—ଇନ୍ଦ୍ରଜାଲ ଶେଷରେ, ଦୀନାନୁକମ୍ପନ-ହୀନା—ଦରିଦ୍ରକୁ ଦୟା କରିବାରେ ଅକ୍ଷମା । ୩୩ । ଚିଠା—ବିରକ୍ତ, ଆୟାସଲେଶ—ସାମାନ୍ୟ କଷ୍ଟ । ୩୪ । ଝରିମାଳିଆ—ଏକପ୍ରକାର ଝରି ଲମ୍ବିଥିବା ଫୁଲତୋଡ଼ା, ଶ୍ରବଣଅବତଂସ—କାନଫୁଲ, ଫୁଲପହଞ୍ଚି—ଫୁଲରେ ତିଆରି ପଇଞ୍ଚି ଖଡ଼ୁ, ରତ୍ନ—ପଦ୍ମରାଗମଣି, ଅଙ୍ଗଦ—ବାହୁଭୂଷଣ । ୩୫ । ସୁମିତ୍ରାନନ୍ଦବରଧନ ତାଙ୍କ ଅନୁଜ—ସୁମିତ୍ରାଙ୍କର ଆନନ୍ଦବର୍ଦ୍ଧକ ତାଙ୍କ ସାନ ଭାଇ ଲକ୍ଷ୍ମଣ ।

# ତ୍ରୟୋଦଶ ଛାନ୍ଦ

## ରାଗ—ଚକ୍ରକେଦାର

( ସଖୀ କୁନ୍ଦଲତାର ଅନଙ୍ଗସୁନ୍ଦର ନାୟକଙ୍କୁ ପ୍ରତ୍ୟୁତ୍ତର ପତ୍ରାଙ୍କ )

ରାଧାମୋହନ ଗୁରୁ ଚରଣ । ଶୋଣ ପଙ୍କଜଯୁଗ ଶରଣ । ନାଗରୀ ସକଳ ସମ୍ପଦର ପଦ କୁନ୍ଦଲତା ଶିର ଆଭରଣ ହେ । ନାଗର ।୧। ଅଖଣ୍ଡିତ ଧରାଯୁବରାଜ । ସରସ୍ୱତୀସଙ୍ଗୀତସମାଜ—ରସିକନିକର-ଶିରୋମଣିକରଦୀପନୀରାଜିତପଦାମ୍ବୁଜ ହେ । ନାଗର ।୨। ଇଷ୍ଟଦେବ ଚନ୍ଦ୍ରକୁବଳୟ । ବାହୁବଳଜିତ ଭୁବଳୟ । ଅମନ୍ଦ ଗୁଣଗଣମଣି ମଞ୍ଜୁଷ ଶୋଭାଇନ୍ଦୀରାବନ୍ଦନାଳୟ ହେ । ନାଗର ।୩। ଦେଖି ତୁମ୍ଭର ଗମ୍ଭୀର ଭାବ । ବାଦ କଲା ଯା କ୍ଷୀର ଅର୍ଣ୍ଣବ । ପେଷି ମନ୍ଦରକୁ ତାହା ମନ୍ଦରକୁ ତହୁଁ ଲୁଣ୍ଠାଇ ନେଲା ଦାଇବ ହେ । ନାଗର ।୪। ଯଶତୁଲ୍ୟ ହେବି ବୋଲି ଶଶୀ । ମନେ ମନେ ଯା ହେଲା ସାହସୀ । କୁଳୁଛି ପ୍ରତି ରାତି ମୃଗକପଟେ ଘେନି ଧାତା ଦେବା ଦାଗମସୀ ହେ । ନାଗର ।୫। ରବି କରି ପ୍ରତାପକୁ ଲୋଡ଼ା । ପାଇ ରଶ୍ମିଚୟ ଭଡ଼ା ପୀଡ଼ା । ହେବାକୁ ନିର୍ଦ୍ଦୋଷ କରୁଛି ପ୍ରଦୋଷ କାଳେ ପ୍ରତୀଚୀ ସମୁଦ୍ରେ ବୁଡ଼ା ହେ । ନାଗର ।୬। କରି ମନେ

---

ତ୍ରୟୋଦଶ ଛାନ୍ଦ

୧ । ନାଗରୀସକଳସମ୍ପଦର ପଦ—ନାଗରୀର ସମସ୍ତ ସୁଖର ସ୍ଥାନ; କୁନ୍ଦଲତା (ଚନ୍ଦ୍ରକଳାର ସଖୀ ଏ ପତ୍ରର ଲେଖିକା)ର ମସ୍ତକର ଅଳଙ୍କାରସ୍ୱରୂପା ।୨। ଅଖଣ୍ଡିତ ଧରା—ସମଗ୍ର ପୃଥିବୀ; ସରସ୍ୱତୀଙ୍କ ସଙ୍ଗୀତସଭାର ଯେଉଁମାନେ ରସିକସମୂହ ସେମାନଙ୍କ ମସ୍ତକସ୍ଥ ମଣିର କର (କିରଣ) ଦ୍ୱାରା ନୀରାଜିତ (ଆରାଧିତ,ବନ୍ଦିତ) ହୋଇ-ଅଛି ପାଦପଦ୍ମ ଯାହାଙ୍କର ।୩। କୁବଳୟ—ନୀଳକଇଁ । ପ୍ରାକୃତିକ ପ୍ରେମରେ ଆବଦ୍ଧ ଚନ୍ଦ୍ରକୁବଳୟ ତୁମ୍ଭର ଇଷ୍ଟଦେବତା ଅଟନ୍ତି । ତୁମ୍ଭେ ବାହୁବଳରେ ଭୂବଳୟ (ଭୂମଣ୍ଡଳ) ଜୟ କରିଅଛ । ଅମନ୍ଦଗୁଣଗଣମଣି ମଞ୍ଜୁଷ—ସୁନ୍ଦରଗୁଣସମୂହର ମଞ୍ଜୁଷ (ପେଡ଼ି, ଆଧାର); ଶୋଭାଇନ୍ଦୀରାବନ୍ଦନାଳୟ—ସୌନ୍ଦର୍ଯ୍ୟଲକ୍ଷ୍ମୀଙ୍କର ବନ୍ଧନାଗାର । ୪ । ସମୁଦ୍ର ଅପେକ୍ଷା ତୁମ୍ଭର ହୃଦୟଭାବ ଅଧିକ ଗମ୍ଭୀର ।୫। ଯଶ ଶୁକ୍ଳବର୍ଣ୍ଣ ବୋଲି ବର୍ଣ୍ଣିତ ହୁଏ । ଚନ୍ଦ୍ର (କଳଙ୍କରୂପୀ) ମୃଗ ବ୍ୟାଜରେ ବିଧାତା ଦେଇଥିବା ମସୀ (କଳା)ଦାଗ ଧରି ପ୍ରତି ରାତିରେ କୁଳୁଛି ।୬। ସୂର୍ଯ୍ୟ ତୁମ୍ଭ ପରି ପ୍ରତାପୀ ହେବାକୁ ଇଚ୍ଛା କରି ରଶ୍ମି (କିରଣ ଓ ଦଉଡ଼ି) ସମୂହର ଭଡାକୁ ପୀଡ଼ା··· ··· ।୭। କାମ-

ଅନେକ ଉଦ୍ୟମ । ରୂପସମ ନୋହିବାରୁ କାମ । ଦେହ ଦେଖାଇବା ଲାଜେ ଦଗ୍ଧ ହୋଇ ଏକା ଶ୍ରୁତିଗତ କଲା ନାମ ହେ । ନାଗର । ୭ । ବାଦ ବାନ୍ଧି ତୁମ୍ଭ ସ୍ୱରତୁଲେ । ମଦେ କିନ୍ନରେ ଯେତେ ମାତିଲେ । କଉତୁକୀ ଦେବ କମଳସମ୍ଭବ ଅଶ୍ୱମୁହାଁ ବୋଲି ବୋଲି ହେଲେ ହେ । ନାଗର । ୮ । କମ୍ବୁଜୀବୀ ଯେବେ ଜୀବ ହେବେ । ଅଳ୍ପ କରିବା କୀର୍ତ୍ତି କହିବେ । କହୁ କହୁଁ ପୀତବର୍ଣ୍ଣ ଛାଡ଼ି ଶ୍ୱେତ ହୋଇଯିବାକୁ ଅବା ଶଙ୍କିବେ ହେ । ନାଗର । ୯ । ରିପୁ ବିଜୟେ କରିରାଜିକ । ରଖି ସେନାନ୍ତେ କରି ରାଜିକ । ରୋଦସୀ ମିଶା ସାଗରଗଣ ରସା ହେଲେ ନଅଣ୍ଟେ ଯାହା ବାଜୀଙ୍କ ହେ । ନାଗର । ୧୦ । ଦେଖି କରି କରେ କରବାଳ । ହୋଇ ପରସ୍ପରେ କଲ୍ଲୋଳ । ସକଳ ସୁରସୁନ୍ଦରୀ ସଜାଡ଼ନ୍ତି ହରିଚନ୍ଦନ କୁସୁମମାଳ ହେ । ନାଗର ।୧୧। ତୂଣେ ମାର୍ଗଣଚୟ ଉଦୟେ । ହେଲେ କର ଯେବେ ଉଇହୋଏ । କୁଳପାଳୀ କାଳ ଛାଡ଼ନ୍ତିଲେ ମିଳିହେମ ଅଚଳ କମ୍ପଇ ଭୟେ ହେ । ନାଗର । ୧୨ । ଦେବ ଈଦୃଶ ପ୍ରଭୁସରିକା ।

କନ୍ଦର୍ପ (ମହାଦେବଙ୍କ ଚକ୍ଷୁର ଅଗ୍ନିରେ ପୋଡ଼ିଯାଇଥିଲା) ଏକା······ତାହାର ନାମ ମାତ୍ର କାନରେ ଶୁଣାଯାଏ । ୮ । କିନ୍ନର—ଦେବତାମାନଙ୍କ ଗାୟକ, କଉତୁକୀ ଦେବକମଳ ସମ୍ଭବ—କୌତୁକପ୍ରିୟ ବ୍ରହ୍ମା; ଅଶ୍ୱମୁହାଁ—ଘୋଡ଼ାପରି ମୁହଁ ଯେଉଁମାନଙ୍କର (କିନ୍ନରମାନଙ୍କର ମୁହଁ ଘୋଡ଼ାପରି) ।୯। କମ୍ବୁଜୀବୀ—ଦୀର୍ଘଜୀବୀ, କହୁକହୁଁ ···ଯେଉଁ ଲୋକର ବର୍ଣ୍ଣ ଗୌର ସେ ତୁମ୍ଭ ଯଶ ବର୍ଣ୍ଣନା କରୁ କରୁ ଧଳା ହୋଇ ଯିବାପାଇଁ ଭୟ କରିବେ (ଯଶ ଶୁକ୍ଳ ବୋଲି ବର୍ଣ୍ଣିତ ହୁଏ) ।୧୦। କରିରାଜିକ—ହସ୍ତୀମାନଙ୍କୁ, ସେନାନ୍ତେ—ସେନାଦଳ ଶେଷରେ, ରାଜିକ କରି—ଧାଡ଼ି ଧାଡ଼ିକରି, ରୋଦସୀ—ସ୍ୱର୍ଗ ଓ ପୃଥିବୀ, ସାଗରଗଣ—ସବୁ ସମୁଦ୍ର, ରସା—ପୃଥିବୀ, ବାଜୀ—ଘୋଡ଼ା । ୧୧ । କରବାଳ—ଖଡ୍‌ଗ, ଯୁଦ୍ଧରେ ମରିବା ଲୋକ ସାଙ୍ଗେ ସାଙ୍ଗେ ସ୍ୱର୍ଗକୁ ଯାଏ, ତୁମ୍ଭେ ହାତରେ ଖଣ୍ଡା ଧରିବା ମାତ୍ରେ ସ୍ୱର୍ଗର ଦେବୀମାନେ ମନେ କରନ୍ତି ନିଶ୍ଚୟ ଅନେକ ବୀର ଯୁଦ୍ଧରେ ମରି ସ୍ୱର୍ଗକୁ ଆସିବେ; ତେଣୁ ସେମାନେ ସେହି ମୃତ ବୀରମାନଙ୍କୁ ଅଭ୍ୟର୍ଥନା କରିବା ପାଇଁ ପରସ୍ପର କଳି କରି ଆଗରୁ ସ୍ୱର୍ଗର ହରିଚନ୍ଦନ (ଦେବତରୁ) ଗଛର ଫୁଲରେ ବରଣମାଳା ପ୍ରସ୍ତୁତ କରି ରଖନ୍ତି । ୧୨ । ତୂଣ—ତୂଣୀର, ଶର ରଖିବା ମୁଣା, ମାର୍ଗଣଚୟ—ଶରସମୂହ, ଉଦୟେ—ପ୍ରକାଶରେ, ବାହାର କରିବାରେ । ତୂଣୀରରୁ ବାଣ ବାହାର କରିବାପାଇଁ ତୁମ୍ଭ ହାତ ଯେତେବେଳେ ଉପରକୁ ଉଠେ, ସେତେବେଳେ ( ସ୍ୱାମୀମାନଙ୍କର ମୃତ୍ୟୁ ଭୟରେ ) କୁଳପାଳୀ ( ତୁମ ଶତ୍ରୁଙ୍କ କୁଳକାମିନୀ ) ମାନଙ୍କର କଳା ପଡ଼ିଯିବା ଗୁଡ଼ିକ ସାଙ୍ଗେ ବକ୍ଷସ୍ଥିତ ହେମଅଚଳ ( ସ୍ୱର୍ଣ୍ଣପର୍ବତ ତୁଲ୍ୟ କୁଚ )

ଲେଖା ଲେଖି ପାରେ କିଶୋରୀ କି । ଲୂତାତନ୍ତୁ ପରି ବିତାନବାଗୁରି ଧରି ନେବ୍ଢ଼ ଅଛୁ କେଶରୀ କି ହେ । ନାଗର । ୧୩ । ଅହେ ଯୁବତୀ ଜୀବନ-ଧନ । ଜନ୍ମବେଳରୁ ଯେତି ବାମନ । କଳାକରକଳା କରେ ଧରି ଖେଳା କରିବାକୁ ସେ ବଳାଏ ମନ ହେ । ନାଗର । ୧୪ । ପୁଣି ଏ ଆଶା ଅଛି ବିଚାର । ଦେଖି ଲୋଡ଼େ ଯା ଶ୍ରୀହସ୍ତ ପଦ୍ମ । କ୍ଷୁଦ୍ର ଖଦ୍ୟୋତ କୀଟ କରେ ସାହସ ରବିତୁଲେ ହୋଇବାକୁ ମିତ୍ର ହେ । ନାଗର । ୧୫ । କରି ସଙ୍ଗୀଲି ସ୍ୱପ୍ନ ପ୍ରସାଦ । ଅମ୍ଭ ଭରସା ଅଛି ପ୍ରମାଦ । ଚକ୍ଷୁବିହୀନ ଭିକ୍ଷୁକଜନ ଲୋଡ଼ଇ ଲଭିବାକୁ ସହସ୍ରାକ୍ଷପଦ ହେ । ନାଗର । ୧୬ । ଯନ୍ତୁ କଲେ ଦୋଷ ନ ବୋଲଇ । ଲୋକ ଭାଗ୍ୟ ସିନା ଲୋଡ଼ୁଥାଇ । ବିଧିଅନୁକୂଳ ହେବାରୁ ହୋଇଲା ପକ୍ଷୀ ଚକୋର ଚନ୍ଦ୍ରିକାପାୟୀ ହେ । ନାଗର ।୧୭। ଧାତାକୃପା ହେବାରୁ ଅମନ୍ଦ । ଭୋଗ ନ କଲା କି ମକରନ୍ଦ । ତିନ୍ଦୁକ ଇନ୍ଧନଅଙ୍ଗାରଶକଳକଳା ବିକଟ କୀଟ ମିଳିନ୍ଦ ହେ । ନାଗର । ୧୮ । ଗୋପୀଜନ ମିହିରସୁତାକୂଳେ । ରଖିବାରୁ ବିଶ୍ୱାସ ନାଶ୍ଚଳେ । ଶ୍ରୀକୃଷ୍ଣଚନ୍ଦ୍ର ଚରଣସରସିଜସେବାଯୋଗ୍ୟ ନୋହିଲେ କି କାଳେ ହେ । ନାଗର । ୧୯ । ଅହେତୁକ ସ୍ନେହୀ ପ୍ରଭୁମାନେ । ତାରତମ୍ୟ ଥିଲେ ହେଲେ ମନେ । ରୁମାଧବଙ୍କୁ ଭୂ-ଜେମାଧବ ପରି ଅନୁକମ୍ପନ୍ତି ସମବିଧାନେ ହେ । ନାଗର । ୨୦ । ଶ୍ରିତଜନେ ବହିଲେ କରୁଣା । ନ

---

ଭିତ୍ତିରେ ଅରେ । ୧୩ । ହେ ଦେବ , ଏପରି ପ୍ରଭୁଙ୍କ ନିକଟକୁ କିଶୋରୀ ( ଅଳ୍ପ-ବୟସ୍କା ଯୁବତୀ ) କୌଣସି ଲେଖା ( ପତ୍ର ) ଲେଖି ପାରେ କି ? ଲୂତାତନ୍ତୁ—ବୁଢ଼ିଆଣୀଜାଲ, ବିତାନ—ବିସ୍ତାର, ବାଗୁରି—ଜାଲ, କେଶରୀ—ସିଂହ । ୧୪ । କଳାକରକଳା—ଚନ୍ଦ୍ରକଳା । ୧୫ । ଖଦ୍ୟୋତକୀଟ—ଜୁଳୁଜୁଳିଆପୋକ, ରବି ତୁଲେ—ସୂର୍ଯ୍ୟଙ୍କ ସାଙ୍ଗରେ । ୧୬ । ସ୍ୱପ୍ନପ୍ରସାଦ—ସ୍ୱପ୍ନରେ ଦର୍ଶନଲାଭରୂପ ଅନୁଗ୍ରହ, ଚକ୍ଷୁବିହୀନ ଭିକ୍ଷୁକଜନ—ଅନ୍ଧ ଭିଖାରୀ, ସହସ୍ରାକ୍ଷ—ସହସ୍ର ଚକ୍ଷୁଧାରୀ ଇନ୍ଦ୍ର । ୧୭ । ଚନ୍ଦ୍ରିକାପାୟୀ—ଚନ୍ଦ୍ରକିରଣ ପାନକାରୀ । ୧୮ । ଅମନ୍ଦ—ବହୁତ; ପ୍ରଚୁର; ମକ-ରନ୍ଦ—ପୁଷ୍ପମଧୁ, ତିନ୍ଦୁକ—କେନ୍ଦୁକାଠ, ଇନ୍ଧନ—ଜାଳଣୀକାଠ, ଶକଳ—ଖଣ୍ଡ, ପୋଡ଼ା କେନ୍ଦୁକାଠର ଅଙ୍ଗାରଖଣ୍ଡ ପରି କଳା; ବିକଟ କୀଟ—ଅସୁନ୍ଦର ପୋକ, ମିଳିନ୍ଦ—ଭ୍ରମର, ବିଧାତାଙ୍କ କୃପାବଳରେ କେନ୍ଦୁ କାଠଅଙ୍ଗାର ପରି କଳା ଅସୁନ୍ଦର ଭ୍ରମର ସିନା ମକରନ୍ଦ ପାନ କରେ । ୧୯ । ମିହିରସୁତାକୂଳେ—ଯମୁନାତୀରରେ । ୨୦ । ଅହେତୁକ ସ୍ନେହୀ—କାରଣ ନ ଥାଇ ଯେଉଁମାନେ ସ୍ନେହ କରନ୍ତି । ପ୍ରଭୁମାନେ—ଦେବତାମାନେ, ରୁମାଧବ—ସୁଗ୍ରୀବ, ଭୂ-ଜେମାଧବ—ପୃଥ୍ୱୀର

ଦଗଇ ପ୍ରଭୁପଣ ଊଣା । ଶଶ ଶଶଧର ଗର ଗଙ୍ଗାଧର ଯୋଗ ଥିବନ୍ତି ପୁରାଣେ ଶୁଣା ହେ । ନାଗର । ୨୧ । ପୁର୍ବେ ମୋତେ ତୁମ୍ଭ କ୍ଷୀରଧାତ୍ରୀ । କରିଥିବା ଯେଉଁ ଧର୍ମପୁତ୍ରୀ । ପୁତ୍ରୀନିର୍ବିଶେଷ କରି ସ୍ନେହେ ପରିପାଳିଥିଲେ ଜନୟିତ୍ରୀ ହେ । ନାଗର । ୨୨ । କନ୍ୟା ହୋଇଥିଲି ବା ରୋହିଣୀ । ମତେ କେଉଁ ଦେବୀ ଏଥି ଆଣି । ବାଳା ପ୍ରାଣପ୍ରିୟ ସଖୀ କରାଇଲା ବାଲ୍ୟ ସକାଶୁଁ ମୁଁ ନାହିଁ ଜାଣି ହେ । ନାଗର । ୨୩ । ଏଣୁ ଜଣାଣ ଲେଖଇ ରସି । କିଛି ନ ଜାଣେ ଅରାଳକେଶୀ । ହେଲେ ହେଲେ ଅନୁଚିତ ଅବଧାନୁ ଯେବେ କରୁଣାସୁଧା ବରଷି ହେ । ନାଗର । ୨୪ । ଜେମା ଲାଜେ ସିନା କହୁନାହିଁ ତାର ଶ୍ରୀଅଙ୍ଗ ବେଦନା ଗୁହି । ହେଲାଣି ପରତେ ମଦନ କରତେ ନିଶ୍ଚେ ସରିଯିବ ଚନ୍ଦ୍ରମୁହିଁ ହେ । ନାଗର । ୨୫ । ଦୁଃଖେ ଯେବେ ରାମା ଜୀବ ଯିବ । ତୁମ୍ଭ ପରି ପ୍ରଭୁ ନିନ୍ଦ୍ୟ ହେବ । ଚାତକ କଣ୍ଠ ଶୋଷଣେ ନାଶଗଲେ ଘନ ବିନା କାହାର ଲାଘବ ହେ । ନାଗର । ୨୬ । ଜୀବ ଯିବା ଚିନ୍ତା ନାହିଁ ତାର । ତୁମ୍ଭ ଶ୍ରୀଅଙ୍ଗ ଯେ ସୁକୁମାର । ମାର ମାରୁଛି ଯେଉଁ ହୃଦେ ନିରତେ ତହିଁ କାହିଁକି କଲ ଅଗାର ହେ । ନାଗର । ୨୭ । ଯେଉଁ ଅଙ୍ଗ ମାର୍ଦ୍ଦବ ସୁମରି । ବାଳା ଶିରୀଷରୁ ସୁକୁମାରୀ । ହେଲେହେଁ ତୁମ୍ଭ ହୃଦକୁ ନ ଛୁଇଁଲା କଦାଚିତ ବାଧିବାକୁ ଡରି ହେ । ନାଗର । ୨୮ ।

---

କନ୍ୟା ସୀତାଙ୍କ ସ୍ୱାମୀ ରାମଚନ୍ଦ୍ର । ୨୧ । ଶଶ······ଶଶଧର ( ଚନ୍ଦ୍ର ) ଶଶ ( ଠେକୁଆ ) କୁ, ଗଙ୍ଗାଧର ( ଶିବ ) ଗରକୁ ( ବିଷକୁ ) ଆଶ୍ରିତଜନଙ୍କଠାରେ କରୁଣା କରି ଧାରଣ କରିଅଛନ୍ତି । ୨୨ । କ୍ଷୀରଧାତ୍ରୀ—ସ୍ତନ୍ୟପାନ କରାଇଥିବା ଧାଈ ମା; ପୁତ୍ରୀନିର୍ବିଶେଷ କରି—ନିଜ କନ୍ୟା ପରି, ଜନୟିତ୍ରୀ—ମା, ଜନନୀ । ୨୩ । କନ୍ୟା—ଦଶବର୍ଷ ବୟସ୍କା ବାଳିକା, ରୋହିଣୀ—ନଅବର୍ଷ ବୟସ୍କା ବାଳିକା ( ଅଷ୍ଟବର୍ଷା ଭବେଦ୍ ଗୌରୀ, ନବବର୍ଷା ଚ ରୋହିଣୀ, ଦଶବର୍ଷା ଭବେତ୍ କନ୍ୟା··· ) । ବାଲ୍ୟ ସକାଶୁଁ—ମୁଁ ବାଳିକା ହୋଇଥିବାରୁ । ୨୪ । ଅରାଳକେଶୀ—କୁଟିଳକୁନ୍ତଳା; ଅନୁଚିତ ଅବଧାନୁ—ଉଚିତ ସାବଧାନତା ଅଭାବରୁ । ୨୫ । ମଦନ କରତେ—କନ୍ଦର୍ପର କରତନାମକ ଶସ୍ତ୍ରଦ୍ୱାରା । ୨୬ । କଣ୍ଠ ଶୋଷଣେ—କଣ୍ଠ ଶୁଖିଯିବାରୁ । ଲାଘବ—ହୀନତା । ୨୭ । ଅଗାର—ଗୃହ, ବାସ । ତାର ମରିବାରେ ଚିନ୍ତା ନାହିଁ, ମାତ୍ର ତୁମ୍ଭେ ସର୍ବଦା ତା ହୃଦୟରେ ବାସ କରିବାରୁ କାଳେ ତା ଶରୀର ନାଶ ହେଲେ ତା ମଧ୍ୟରେ ରହିଥିବା ତୁମ୍ଭର ସୁକୁମାର ଶରୀର ଆଘାତ ପାଇବ, ଏଥିପାଇଁ ତାହାର ଭୟ । ୨୮ । ଶିରୀଷ ପୁଷ୍ପପରି କୋମଳାଙ୍ଗୀ ହେଲେହେଁ ତୁମ୍ଭ ଶରୀରର ମାର୍ଦ୍ଦବ ( କୋମଳତା ) ସ୍ମରଣ କରି କାଳେ ତୁମ୍ଭଙ୍କୁ ବାଧିବ ଏଥିପାଇଁ ତୁମ୍ଭ ହୃଦୟରେ ରହିବାକୁ ସାହସ କରୁ ନାହିଁ; ଅର୍ଥାତ୍ ତୁମ୍ଭେ ଚନ୍ଦ୍ରକଳାକୁ ସବୁବେଳେ ମନରେ

ଚଣ୍ଡ କୁସୁମ କୋଦଣ୍ଡଧାରୀ । ତୁମ୍ଭ ନେତ୍ରାନ୍ତ ନିଦେଶକାରୀ । ତୁମ୍ଭଙ୍କୁ ସିନା ନ ବାଧିବ ତା ରୋଷୁଁ କେହି ବଞ୍ଚିବ ନୃପକୁମାରୀ ହେ । ନାଗର ।୨୯। ପ୍ରତିପଦାବିଭାବରୀଧବ । ଏବେ କେମିଠାରୁ ସ୍ଥୂଳ ହେବ । ତରୁଣୀଙ୍କୁ ଶ୍ୱାସ-ବାସଲୋଭୀ ରୋଲମ୍ବ ପକ୍ଷବାତେ ଅବା ଉଡ଼ିଯିବ ହେ । ନାଗର ।୩୦। ପୂର୍ବ ପୁଣ୍ୟପୁଞ୍ଜ ହେଲେ ତୁଣ୍ଡ । ତୁମ୍ଭ ଚୁମ୍ବ ଯୋଗ୍ୟ ଯେଉଁ ଗଣ୍ଡ । ତାହାକୁ ଛାର ପାଣ୍ଡୁ ଭାବ ଚୁମ୍ବୁଛି ଏଥୁଁ ନେତ୍ରଙ୍କୁ ଯେ ବଡ଼ ଦଣ୍ଡ ହେ । ନାଗର । ୩୧ । ରୁଷ ହେଲାନି ଦିବ୍ୟ ଅଶନ । ବାଜି ତପ୍ତ ନିଶ୍ୱାସ ଶ୍ୱସନ । ଧରାରେ ଝଡ଼ି ମଉଳିଯିବା ଜବା ପରି ହେଲାନି ଦନ୍ତବସନ ହେ । ନାଗର । ୩୨ । କେଲି କୁତଙ୍କୀ କାମଦୁଘାଟି । ମଣେ ପଲ୍ଲବ ଶଯ୍ୟାକୁ ଘାଟୀ । ଛାଟିଲୁଁ ଉରରେ ପାଟୀର ପଙ୍କରେ ଦକ୍ଷିଣ ଜଳା କବାଟୀ ହେ । ନାଗର । ୩୩ । ସହଜେତ ମଧ୍ୟ ଅତି କୃଶ । ଏଣୁ କଲାନି ଅତି ଅବଶ । ଝାଉଁଳି ଯିବା ହେମଲତାଅଙ୍ଗୀଙ୍କ ମହାଦୁର୍ବହ କୁଚକଳଶ ହେ । ନାଗର । ୩୪ । ବାଳା ହୋଇବାରୁ ଲୀଳା ତ୍ରୁଟି । ଦିନେ ଦିନେ ହୋଇଛି ପ୍ରକଟ । ଅପାଙ୍ଗ ନିକାଙ୍ଗଣେ ଭ୍ରମି ହେଲାନି ଖଞ୍ଜ

---

ସ୍ଥାନ ଦିଅ ବୋଲି କହିବାକୁ ସାହସ କରୁ ନାହିଁ । ୨୯ । ଚଣ୍ଡ କୁସୁମ କୋଦଣ୍ଡ-ଧାରୀ—ପ୍ରଚଣ୍ଡ ଫୁଲଧନୁ ଧାରଣକାରୀ ( କନ୍ଦର୍ପ ); ତୁମ୍ଭ ନେତ୍ରାନ୍ତ ନିଦେଶକାରୀ—( ନାରତ୍ୱାଦି ବିଷୟରେ ) ତୁମ୍ଭଠାରୁ ଊଣା ହେବାରୁ ତୁମ୍ଭ ଚକ୍ଷୁକୋଣର ଆଦେଶ ଅର୍ଥାତ୍ ଇଙ୍ଗିତ ଅନୁସାରେ କାର୍ଯ୍ୟ କରେ । କେହି—କିପରି । ଦୁଷ୍ଟ ମଦନ ତୁମ୍ଭର କିଙ୍କର ଥିବାରୁ ତା ଆଘାତ ତୁମ୍ଭଙ୍କୁ ସିନା ବାଧିବ ନାହିଁ, କିନ୍ତୁ ସେ ଦୁଷ୍ଟର କ୍ରୋଧକୁ ଚନ୍ଦ୍ରକଳା ସମ୍ଭାଳି ନ ପାରି ମରିଯିବ । ୩୦ । ପ୍ରତିପଦାବିଭାବରୀ ଧବ—ପ୍ରତିପଦ୍ ତିଥିର କ୍ଷୀଣ ଚନ୍ଦ୍ର, ଶ୍ୱାସବାସଲୋଭୀ—( ପଦ୍ମିନୀନାୟିକା ଚନ୍ଦ୍ରକଳାର ନିଃଶ୍ୱାସ ପଦ୍ମଫୁଲ ଗନ୍ଧବିଶିଷ୍ଟ ହୋଇଥିବାରୁ ) ତା ନିଃଶ୍ୱାସ ପବନଦ୍ୱାରା ଆକୃଷ୍ଟ ହୋଇ ପାଖରେ ଉଡ଼ୁଥିବା, ରୋଲମ୍ବ ପକ୍ଷବାତେ—ଭ୍ରମରର ଡେଣା ପବନରେ । ୩୧ । ପାଣ୍ଡୁଭାବ—ପାଣ୍ଡୁତା, ରକ୍ତହୀନତା ଯୋଗୁ ଶେତା ପଡ଼ିଯିବା । ୩୨ । ଅଶନ—ଖାଦ୍ୟ, ଜବା—ମନ୍ଦାରଫୁଲ, ଦନ୍ତବସନ—ଅଧର, ଓଷ୍ଠ । ୩୩ । କାମଦୁଘା—କାମଧେନୁପରି ଅଭୀଷ୍ଟଦାୟିନୀ, ପଲ୍ଲବ ଶଯ୍ୟା—କୋମଳ ନୂଆପତ୍ର ବିଛଣା, ଘାଟୀ—ଉଚ୍ଚ ସ୍ଥାନ, ପାଟୀର ପଙ୍କରେ—ଚନ୍ଦନରୂପ ପଙ୍କରେ, ଦକ୍ଷିଣର ମଳୟ ପବନ ବିରହିଣୀଙ୍କ ପକ୍ଷରେ ଯନ୍ତ୍ରଣାପ୍ରଦ ହୁଏ, ଏଥିପାଇଁ ତା ଦେହରେ ଦକ୍ଷିଣ ପବନ ନ ଲାଗିବ ବୋଲି ଝରକାରେ ବଟାଚନ୍ଦନ ଘୋଟି ବାୟୁନିର୍ଗମ ମାର୍ଗ ଆମେ ବନ୍ଦ କରୁଛୁ । ୩୪ । ମଧ୍ୟ—କଟିଦେଶ, ଅତିକୃଶ—ଅତିକ୍ଷୀଣ । ୩୫ । ଲୀଳାତ୍ରୁଟି—ସୌନ୍ଦର୍ଯ୍ୟହାନି,

ତାହା ନେତ୍ରଖଞ୍ଜରୀଟ ହେ । ନାଗର । ୩୫ । ତୁମ୍ଭେ ଚମତ୍କାର ଚନ୍ଦ୍ରବତ । ବାଳାଶତ୍ର-ଶତ୍ର-ଚନ୍ଦ୍ରକାନ୍ତ । କର ସ୍ମରଣ ବିନା ସିନା ଏ ଘେନ ହୋଇଗଲା ଏତେ ଦ୍ରବୀଭୂତ ହେ । ନାଗର । ୩୬ । ଏଣୁ ମଣେ ହେ ସୁନ୍ଦରବର । କର ସମ୍ପର୍କ ହେଲେ ତୁମ୍ଭର । ଦ୍ରବରୁ ଯେବେ ଦ୍ରବ ଜାତ ହୋଇବ ହୃଦ କି ହୋଇବଟି କେମାର ହେ । ନାଗର । ୩୭ । ଦିନେ ଦିନେ ଜନମାଦରଣେ । ଘେନ ତୁମ୍ଭେ ଥିଲ ପର ପାଶେ । ତୁଷ୍ଟି ବସି ପୁଣି ତୁମ୍ଭ ଗୁଡ଼ବାଣୀ ଶୁଣି ବୋଧହେଲା ପର ଦଶେ ହେ । ନାଗର । ୩୮ । ଏକୁଁ ଆରକେ ହୋଇ ନିପୁଣ । କେତେ ନ ଥିଲେ ନରେଶଗଣ । ବୀରସେନରାଜସୁତରେ ଭୀମଜା ମଜ୍ଜା ମଜ୍ଜାଇବାର ତ ଜାଣ ହେ । ନାଗର । ୩୯ । ଅପେ ହର ପେଷିଥିଲେ ଦୂତ । କେତେ ବୋଧିଲେ ଗିର ସାମନ୍ତ । ଚନ୍ଦ୍ରଶକଳମଣ୍ଡଳ ବିନା ନିକି ଅନେ ରସିଲା ଗଙ୍ଗଯିତ୍ତ ହେ । ନାଗର । ୪୦ । ମତ୍ତ ବିଧିନଷ୍ଟିତ ମନକୁ । ନତସ୍ଥଳାଭିମୁଖ ବନକୁ । ଫେରାଇ ହୁଅଇ ନି କି ବୁଝିବଲେ କଲେ ହେଲେ ନାନା ଯତନକୁ ହେ । ନାଗର । ୪୧ । ପ୍ରତିବନ୍ଧକ ଏଥି ଯେ ହେବ । ତାକୁ ଏ ମହୀ କେହି ସହିବ । ଚପଳା ଘନକୁ ମଣି କୁନ୍ଦନକୁ ଯୋଗେ ଘଟାଇଅଛୁ ଦଇବ ହେ । ନାଗର । ୪୨ । ନିଷ୍ଠେଁ କଲା ବିଧାତା ଅଗ୍ରହ । ପୁଣି ତୁମ୍ଭେ

---

ଦିନେ ଦିନେ...ଚନ୍ଦ୍ରକଳା ଆଖି 'ଖଞ୍ଜରୀଟ ବା ଖଞ୍ଜନ ପକ୍ଷୀପରି ତାହା ଅପାଙ୍ଗ (ନେତ୍ରପ୍ରାନ୍ତ) ରୂପ ନିଜ ଅଗଣାରେ ଭ୍ରମଣ କରୁଥିଲା, ଏବେ ସେ ସେଠାରେ ବୁଲିବାକୁ ସ୍ଥାନ ନ ପାଇ ଖଞ୍ଜ (ଛୋଟା) ହୋଇ ଗଲାଣି, ଅର୍ଥାତ୍ ଏବେ ଚନ୍ଦ୍ରକଳାର ନେତ୍ରବିଳାସ ଲୋପ ହେଲାଣି । ୩୬ । ତୁମ୍ଭେ ବିଚନ୍ଦ୍ର ଚନ୍ଦ୍ର ପରି; ଚନ୍ଦ୍ରକଳାର ଚିତ୍ତ ମଧ୍ୟ ବିଚନ୍ଦ୍ର ଚନ୍ଦ୍ରକାନ୍ତମଣି ପରି; କର—କିରଣ; ହାତ; ସାଧାରଣତଃ ଚନ୍ଦ୍ରର କିରଣରେ ଚନ୍ଦ୍ରକାନ୍ତମଣି ତରଳିଯାଏ, ମାତ୍ର ତୁମ୍ଭର କରସ୍ପର୍ଶ ବିନା ତାହାର ଚିତ୍ତ ଦ୍ରବି ଯାଇଅଛି, ତେଣୁ ଦୁହେଁ ବିଚନ୍ଦ୍ର । ୩୭ । ଯେତେବେଳେ ପ୍ରକୃତରେ ଚନ୍ଦ୍ରକାନ୍ତମଣି ରୂପ ତା ଦେହରେ ତୁମ୍ଭକର (ହାତ) ବାଜିବ, ସେତେବେଳେ ସେହି ତରଳ ବସ୍ତୁରୁ ପୁଣି ଯେବେ ତରଳ ବସ୍ତୁ ବାହାରିବ, ତେବେ ବାଳାର ହୃଦସ୍ଥ କଅଣ ହେବଟି ? ୩୯ । ବୀରସେନ-ରାଜସୁତ—ନଳ, ଭୀମଜା—ଦମୟନ୍ତୀ, ମଜ୍ଜା—ଅନ୍ତଃକରଣ, ମନ । ୪୦ । ବୋଧିଲେ —ବୁଝାଇଲେ, ଗିରସାମନ୍ତ—ହିମାଳୟ, ଚନ୍ଦ୍ରଶକଳମଣ୍ଡଳ—ଚନ୍ଦ୍ରଖଣ୍ଡଧାରୀଶିବ । ୪୧ । ମତ୍ତ—ଭାବରେ ଉନ୍ମତ୍ତ, ବିଧିନଷ୍ଟିତ—ନିୟମାନୁସାରେ ସ୍ଥିରସଂକଳ୍ପ, ନତ-ସ୍ଥଳାଭିମୁଖ—ନିମ୍ନଦେଶଗାମୀ, ବନ—ଜଳ ( ତୁଳନାକର କୁମାର ସମ୍ଭବ—କଇପ୍ସିତାର୍ଥସ୍ଥିରନିଶ୍ଚୟଂ ମନଃ ପୟଶ୍ଚନିମ୍ନାଭିମୁଖଂ ପ୍ରତିପୟେତ୍ ) । ୪୨ ଚପଳା—

ମଧୁବିବିଧରିଦ୍ଧ । ତେଜମାତ୍ଭୁବନଭୂଷଣସରୋଜିନୀ ଅଜ ଏ ବିଧିରେ କି ସନ୍ଦେହ ହେ । ନାଗର । ୪୩ । ଦୂରେ ଥାଉ ଆନ ଭାଗ୍ୟମାନ । ନ୍ତମେ ହୋଏ ସିନା ଏ ବିଧାନ । କରୁଣେ ହେଲେ ମୋ ସଖୀ ପ୍ରାଣ ରଖି ଦେଇ ଦରଶନରସାୟନ ହେ । ନାଗର । ୪୪। ଆଗେ ଅସୁଛି ମାସ ମାଧବ । ତହିଁ ବଳକ୍ଷ ପକ୍ଷରେ ହେବ । ବସନ୍ତ ମାଧବରୂପୀ ରମାଧବ ଦେବଙ୍କର ଯାତ୍ରା ମହୋତ୍ସବ ହେ । ନାଗର । ୪୫ । ବହୁ ନୃପେ ନ ଥିବେ ସାଥିରେ । ନେତ୍ରରଞ୍ଜନପୁରୀ ପଥରେ । ନୃପାତ୍ମଜାରେ କୃପାରେ ବିଜେ ହେବେ କାମକଳାନାଗରୀଙ୍କ ଥରେ ହେ । ନାଗର । ୪୬ । ମନସିଜ ମୃଗୟୂ ପୁଙ୍ଗବ । ପ୍ରକାଶିବ ତା ବିଦ୍ୟାପ୍ରଭାବ । କନକମଞ୍ଜରୀ ଖେଳାଖଞ୍ଜରୀଟ ପଞ୍ଜରୀରେ ସେଠାରେ ପଡ଼ିବ ହେ । ନାଗର । ୪୭ । ଶଠ ନୋହିଲେ ଏଥକୁ ଗଜ । ଏଡ଼େ ଯଶଶୋଭା ଯିବ ଭାଜି । ରାଜୀବନେତ୍ରାନାଶକ ବୋଲି ଲୋକେ ନଷ୍ଟେ ଗଳନ୍ତି ଡିଣ୍ଡିମ ବାଜି ହେ । ନାଗର । ୪୮ ତୁମ୍ଭ ପଣ୍ଡିତପଣ ଅଗାଧ । ତହିଁ ବିସ୍ତର ଲେଖା ନିଷେଧ । ବ୍ୟାସଙ୍କ ବର୍ଣ୍ଣ ବିନ୍ୟାସ ପରୁରିବା ପରି ହେବ ସିନା ଅପରାଧ ହେ । ନାଗର । ୪୯ । ପଲ୍ଲବାଏ ଏ ଶିଶିରେ ବନ । ବୃନ୍ଦ ଦେହେ ରଖେ ମଦନ । ଯୁବ-ସନ୍ଦେଶାମୃତ ନାମ ଏ ଛାନ୍ଦ କବିଦୋଷକୁ ନ ଘେନ ଘେନ ହେ । ନାଗର । ୫୦ । ରାମକୃଷ୍ଣ ଚନ୍ଦ୍ରକାନ୍ତମୟ । ଯେଣି ସୁରେଶାଧିକ ପ୍ରଣୟ । ତାହାଙ୍କ ଚରଣସରୋଜ ଶରଣ ନୃପ ରାମଚନ୍ଦ୍ର ସ୍ତୋତ୍ରରାୟ ହେ । ନାଗର । ୫୧ ।

---

ବିଜୁଳି; ମଣି—ରତ୍ନ; କୁନ୍ଦନ—ସୁନା । ୪୩ । ମଧୁର ବିଗ୍ରହ—ସୁନ୍ଦର ଶରୀର ଧାରୀ ଓ ମଧୁକାଳୀନ ବା ବସନ୍ତକାଳୀନ ସୂର୍ଯ୍ୟ, ସରୋଜିନୀ—ପଦ୍ମିନୀ । ୪୪ । ଦରଶନରସାୟନ—ଦର୍ଶନଦାନରୂପ ଜୀବନରକ୍ଷକ ରସୌଷଧ । ୪୫ । ମାଧବ ମାସ—ବୈଶାଖମାସ, ବଳକ୍ଷପକ୍ଷ,—ଶୁକ୍ଳପକ୍ଷ, ବସନ୍ତମାଧବରୂପୀ—ବସନ୍ତଲକ୍ଷ୍ମୀଙ୍କର ସ୍ୱାମୀରୂପୀ, ରମାଧବ—ବିଷ୍ଣୁ । ୪୬ । ନେତ୍ରରଞ୍ଜନପୁରୀପଥରେ—ଚକ୍ଷୁର ଆନନ୍ଦ-ପ୍ରଦ ଏ ନଗରୀର ପଥରେ । ୪୭ । ମନସିଜ ମୃଗୟୁ ପୁଙ୍ଗବ—କନ୍ଦର୍ପରୂପ ଶ୍ରେଷ୍ଠ ଶିକାରୀ । କନକ···ଚନ୍ଦ୍ରକଳାର ସୁବର୍ଣ୍ଣମଞ୍ଜରୀରୂପ ନେତ୍ରପ୍ରାନ୍ତରେ ଖେଳୁଥିବା ଖଞ୍ଜରୀଟ ପକ୍ଷୀ ସେହିଠାରେ ପଞ୍ଜୁରିରେ ପଡ଼ିବ ଅର୍ଥାତ୍ ଚନ୍ଦ୍ରକଳା ସେହିଠାରେ ତୁମ୍ଭଙ୍କୁ ଦେଖିବ । ୪୯ । ବର୍ଣ୍ଣବିନ୍ୟାସ—ଅକ୍ଷରସ୍ଥାପନପାଟବ । ୫୦ । ଏ ଗ୍ରନ୍ଥ ଶୀତକାଳରେ ମଧ୍ୟ ବନକୁ ନବପଲ୍ଲବଯୁକ୍ତ କରାଏ ।

---

## ଚତୁର୍ଦ୍ଦଶ ଛାନ୍ଦ

### ରାଗ—କାମୋଦୀ

### ( ନାୟକର ଅନ୍ତଶ୍ଚିନ୍ତା )

ନୃପତନୟ ନୟ ନୟନ ସବନୟ ପ୍ରିୟ ବୟସ୍ୟ ସଙ୍ଗେ ରସି । ଏକାନ୍ତେ ବସି ବସିମନୋରଞ୍ଜନା ବଶୀକରଣ ଗୁଣ କହେ ହସି ହେ । ପ୍ରାଣପ୍ରିୟ । ବାରିଜସମ୍ଭବ ସେ ଭଲ । ନାରୀ ଜଗତେ ଯେ ରଚିଲ । ତରୁଣେକ୍ଷଣେ କ୍ଷଣ ଦେବାରେ ବିଚକ୍ଷଣ ଶୁଭଲକ୍ଷଣ ପୂର୍ଣ୍ଣ କଲ ସେ । ୧ । ଏକାକୀ ନୟନର ନରମ ସ୍ଥଳୀ ନ ରଖିଇ କି ସମସ୍ତ ସୁଖର । ମେରୁଶିଖର ଖର ତଟିନୀ ଜଳେ ଖରଚଇ ଯେ ଶରୀର ଆଖର ହେ । ପ୍ରାଣପ୍ରିୟ । ଅନେକ ଜବାଲୀ କାଶୀରେ । ଚଢ଼ାଇ ଯେ କାଳିକା ଶିରେ । ତମ୍ଭା ତାହାଙ୍କ ବର ବରାଙ୍ଗେ ଦେଲେ ବର ବୋଲାଏ ରସିକରାଶିରେ ହେ । ୨ । ଯେ ତପର୍ତ୍ତୁରେ ତପ ଚର ପଞ୍ଚାଗ୍ନି ତପଥରେ ବା ହୋଇଥାଏ ଲାଜ । ସେ ସିନା ତଳ୍ପେ ରାଜ ରାଜୀବାକ୍ଷୀକି ରାଜ କରାଇ କରେ ମଦନାଜ ହେ । ପ୍ରାଣପ୍ରିୟ । ଆଜୀବ ଯାର ଚନ୍ଦ୍ରମୁଖୀ । ତା ଜୀବ ସିନା ଜୀବେ ଲେଖି । ପାଜି ବେଭାର ତାର ଅଜୀବେଶ୍ୱର ଗିର ଯା ଜବେ ନାହିଁ ଧାତା ରେଖି ହେ । ୩ । ସମଧୁ ମଧୁରସା ରସାଳରସମିଶା ସରଶାକରରସାକର । ଧୃରେନ୍ଦ୍ରଜା ଅଧରେ ଧରେ ଅନୁରୋଧରେ ଧୀରେ ଯେ ନାରେଦାତ

---

ଚତୁର୍ଦ୍ଦଶ ଛାନ୍ଦ

୧ । ନୟନନୟନ—ଶାସ୍ତ୍ରଚକ୍ଷୁ, ନୀତିନିପୁଣ; ପ୍ରିୟବୟସ୍ୟ—ପ୍ରିୟସଖା, ବଶିମନୋରଞ୍ଜନା—ମୁନିମନୋମୋହିନୀ, ବାରିଜସମ୍ଭବ – ବ୍ରହ୍ମା, ତରୁଣେକ୍ଷଣେ-କ୍ଷଣ···ଯୁବକମାନଙ୍କ ଚକ୍ଷୁରେ କ୍ଷଣ ଆନନ୍ଦ ଦେବାରେ ନିପୁଣ ଶୁଭଲକ୍ଷଣ ଦ୍ୱାରା ପୂର୍ଣ୍ଣ କଲ । ୨ । ଏକାକୀ ନୟନର ନରମସ୍ଥଳୀ—(ସ୍ତ୍ରୀ) ଚକ୍ଷୁର ଏକମାତ୍ର ନର୍ମ (କ୍ରୀଡ଼ା) ସ୍ଥାନ, ମେରୁଶିଖର—ମେରୁପର୍ବତର ଶୃଙ୍ଗ; ଖରତଟିନୀ—ପ୍ରବଳ ସ୍ରୋତସ୍ୱତୀ (ଏଠାରେ ସ୍ୱର୍ଗଗଙ୍ଗା); ଖରଚେ—ବ୍ୟୟ କରେ, ଆଖର—ଶେଷରେ, ଜବାଲୀ—ଜବା ବା ମନ୍ଦାର ଫୁଲସବୁ, ତାହାଙ୍କ ବର—କାଳିକାଙ୍କ ସ୍ୱାମୀ ବିଶ୍ୱେଶ୍ୱର ଶିବ; ବରାଙ୍ଗେ—ସୁନ୍ଦର ଶରୀରରେ, ବର—ଶ୍ରେଷ୍ଠ । ୩ । ତପର୍ତ୍ତୁ—ଗ୍ରୀଷ୍ମଋତୁ, ଚର—ଆଚରଣ କର, ପଞ୍ଚାଗ୍ନି ତପଥରେ—ଚାରିପାଖର ଚାରିଅଗ୍ନି ଓ ମୁଣ୍ଡ ଉପରେ ସୂର୍ଯ୍ୟ, ଏହି ପଞ୍ଚାଗ୍ନି ଉତ୍ତାପରେ; ତଳ୍ପେ—ବିଛଣାରେ, ଶଯ୍ୟାରେ; ରାଜ—ଶୋଭା ପାଇ, ରାଜୀବାକ୍ଷୀ—ପଦ୍ମନେତ୍ରା, ରାଜ କରାଇ—ସମ୍ମତା କରାଇ, ମଦନାଜ—କାମଯୁଦ୍ଧ, ଆଜୀବ—ଜୀବିକା ବା ଆଶ୍ରୟ, ପାଜିବେଭାର—ଦୁଷ୍ଟ

କରେ ହେ । ପ୍ରାଣପ୍ରିୟ । ବଧୂଲି ମଧୁଲିହ ପରି । ବଧୂ ଅଧରୁ ମଧୁଝରୀ ।
ପିଏ ସେହି ତରୁଣ ରଣରଣକ ରଣ ରସଲହରୀରେ ପହଁରି ହେ । ୪ ।
ଯେ ପୂରୁବରେ ବରେ ଲଭି ଥାଇ ଶ୍ରୀବରେ ଚଢ଼ାଇ ତୁଳସୀମଞ୍ଜରୀ । ସେ
ସିନା ସୁନାଗରୀ ତପତ ସୁନାଗୋରୀ ନୟନ ଖଞ୍ଜନପଞ୍ଜରୀ ହେ ।
ପ୍ରାଣପ୍ରିୟ । ତରୁଣୀ ଚିତ୍ତର ଭିତର । ତରକି ନ ପାରେ ଇତର । ତାର-
ତରଳତର ତରଙ୍ଗ ନେତ୍ରାନ୍ତର ଇତରେ ନୁହଇ ଖାତର ହେ । ୫ ।
ପରାନନ୍ଦ କନ୍ଦଳୀ ଦଳି ମାନସସ୍ଥଳୀ ମଲ୍ଲୀକି ହେବାକୁ ବାହାର । ଅବଳା-
ବଳାବଳାହକନିନଦୁଁ ବଳାତିଶୟ ନ ଲଭେ ଯାହାର ହେ । ପ୍ରାଣପ୍ରିୟ ।
ସେ କି କି ଜମା ପୁରୁଷରେ । ସରେ ସେ ପୁଣ୍ୟ କଲୁଷରେ । ସରେ ଯେ
ବିଶେଷରେ ମଧୁମାସ ଶେଷରେ ନ ଖେଳେ ବିବାସ ବେଶରେ ହେ । ୬ ।
ବରାରୋହାର ହାରଲତା କର ବାହାର ବାହାରେ ଯେ ଭିଡ଼େ ନିବିଡ଼େ ।
ବରତୁଳ ଲକୁଚବରତୁଳତା କୁଚଯୁଗ ସନ୍ଧିରେ ଧୀରେ ଜଡ଼େ ହେ ।
ପ୍ରାଣପ୍ରିୟ । କି ଭାଗ୍ୟ ସତେ ସେ ଯୁବାର । ବାରଦ୍ୱିଲୋକେ ତା ସେବାର ।
ବାରତା ବହିବାରେ ନ ଥିବ କେହି ବାରେ କେ ହେବ ତାହା
ପରିବାର ହେ । ୭ । ଧନଦାନୁଜ ଛଳି ମୋଡ଼ି ମୁଣ୍ଡ ମଣ୍ଡଳୀ କୁଣ୍ଡପିଚଣ୍ଡେ

---

ବ୍ୟବହାର, ଆଜ୍ଞାବେଶ୍ୱର ! —ହେ ପ୍ରାଣପ୍ରିୟେ ! ଆସ, ରେଖି—ଲେଖି ।
୪ । ସମଧୁ—ମହୁ ସହିତ, ମଧୁରସା—ଦ୍ରାକ୍ଷା, ରସାଳରସ—ଆମ୍ବରସ, ସର—ଦୁଧସର, ଶାକର—ନବାତ, ରସାକର—ନାନା ରସପୂର୍ଣ୍ଣ ଅମୃତକୁଣ୍ଡ, ଧରେନ୍ଦ୍ରଜା—ପାର୍ବତୀ, ବଧୂଲି···ବଧୂଲି ଫୁଲକୁ ମଧୁଲିହ (ଭ୍ରମର) ପରି, ମଧୁଝରୀ—ମଧୁପୂର୍ଣ୍ଣ ପାନ, ରଣରଣକରଣ—କାମଯୁଦ୍ଧ, କାମକ୍ରୀଡ଼ା । ୫ । ବରେ—ବରକୁ, ଶ୍ରୀବରେ—ବିଷ୍ଣୁଙ୍କଠାରେ, ସେ ସିନା···ସେ ସିନା ଆଦୃଷ୍ଟ ସୁନାପରି କାନ୍ତିବିଶିଷ୍ଟା ସୁନ୍ଦରୀ ସ୍ତ୍ରୀର ଚକ୍ଷୁ ରୂପ ଖଞ୍ଜନ ପକ୍ଷୀର ପଞ୍ଜରୀସ୍ୱରୂପ ହୁଏ, ଅର୍ଥାତ୍ ସୁନାଗରୀର ଦୃଷ୍ଟି ସେ ବ୍ୟକ୍ତିଠାରେ ଆବଦ୍ଧ ରହେ, ଇତର—ଦୁର୍ଗା ଓ ଶ୍ରୀକୃଷ୍ଣଙ୍କ ଭକ୍ତ ଭିନ୍ନ ଅନ୍ୟ ବ୍ୟକ୍ତି, ତାରତରଳତର—ଚଞ୍ଚଳ ନେତ୍ରର ତାରକାଯୁକ୍ତ ତରଙ୍ଗ ନେତ୍ରାନ୍ତର—ଢଳଢଳ ନୟନଭଙ୍ଗୀ । ୬ । ପରାନନ୍ଦକନ୍ଦଳୀ—ପରମାନନ୍ଦର ଅଙ୍କୁର, ଅବଳାବଳାବଳାହକନିନଦୁଁ—ସ୍ତ୍ରୀର ବଳା (ବଳୟ) ରୂପ ବଳାହକ (ମେଘ) ନିନଦୁଁ (ଧ୍ୱନିରୁ), ବଳାତିଶୟ—ଅତ୍ୟନ୍ତ ସାମର୍ଥ୍ୟ, କଲୁଷ—ପାପ, ସରେ ଯେ ବିଶେଷରେ···ପୋଖରୀରେ ବସନ୍ତକାଳ ଶେଷରେ ଯେ ବିବାସବେଶରେ ( ବସ୍ତ୍ରହୀନ ବା ନଗ୍ନ ହୋଇ ) ନ ଖେଳେ, ସେ କି ପୁରୁଷରେ ଜମା ( ଗଣା ) ?
୭ । ବରାରୋହ ( ବର—ବଡ଼, ଆରୋହ—ନିତମ୍ବ ଯାହାର ) ସୁନ୍ଦରୀ, ନିତମ୍ବବତୀ ସ୍ତ୍ରୀ; ବରତୁଳ—ଗୋଲ, ଲକୁଚବରତୁଳ—ସୁନ୍ଦର କେଉଟଫଳ ପରି, ବାରଦ୍ୱିଲୋକ—ଚଉଦ ଭୁବନ, ସେବାରବାର୍ତ୍ତା ବହିବାରେ—ଆରାଧନାର

ପକାଇଲା । ଜଣି ଜଗତୀ ଗଢ କର ନାରୀ ସନ୍ତତ ସୁଖେ ସମସ୍ତ ବଞ୍ଚାଇଲା ହେ । ପ୍ରାଣପ୍ରିୟ । ଜଗଜ୍ଜନମାଙ୍କି ନିରୋଧି । ହୋଇଲାସିନା ଅପରାଧି । ହେଲେ ରସଲମ୍ପଟପଙ୍କଲୀ ଶିରଃପଟ ପରତ ରଖିଗଲା ସିଦ୍ଧି ହେ । ୮ । ତରୁନିଚୟ ବନେ ତରୁଣୀ ଲସ୍ୟ ମନେ ଧରୁଁ ନିରତେ ତା ନ ସହି । ତାଙ୍କ ସଙ୍ଗକୁ ବହି ବହିଲା କୃପା ବହି ପହିଲ ସୁନାରୀକ ତହିଁ ହେ । ପ୍ରାଣପ୍ରିୟ । ତେଢ଼େ ବିବେକୀ ପୁରୁହୂତ । ମୁନିଦାରଙ୍କେ ଦେଲେ ଚିତ୍ତ । ସଂଯମୀ ସମୂହର ମୁକୁଟହୀର ହର ଅର୍ଦ୍ଧ ଦେହରେ ଶୋଭା ଚିନ୍ତ ହେ । ୯ । ଜଡ଼କୁ ଜଡ଼ୀ ଜଡ଼ି ଗଡ଼କୁ ସିନା ଗଡ଼ୀ ଜଟାକୁ ଜଟୀ ଅଛୁ ଜଟି । ଲଟା ମଧ୍ୟରେ ଲଟୀ ହୋଇଛୁ ଜଟା ଜଟି ଏହା ନ ମଣ ବଟାବଟି ହେ । ପ୍ରାଣପ୍ରିୟ । ଦ୍ରୁମରେ ବୋଲାଏ ଯେ ମୁନି । ତା ଅଙ୍ଗେ ତାମ୍ବୂଲୀ କାମିନୀ । ଗତ ବାରବାହକୁ ଚପଳା ଭୂରୁହକୁ ବଲ୍ଲରୀ ସିନ୍ଧୁକୁ ତଟିନୀ ହେ । ୧୦ । ଘଟକୁ ଘଟୀ ପଟୀ ପଟକୁ ତଥା ନଦୀ ତଟକୁ ତଟୀ ଘଟିଅଛୁ । ଶକଟକୁ ଶକଟୀ ଯୁବାକୁ କୃଶକଟୀ ବାହାରେ ସାହା ନାହିଁ କରୁ ହେ । ପ୍ରାଣପ୍ରିୟ । ପୁରୁଷ ପ୍ରକୃତର କୃତ । ଏରୂପେ ଏ ବିଶ୍ୱ ପ୍ରକୃତ । ସୁକୃତଜନ ବିନା ଆନ ଜନ ନବୀନା ନ ଥାଇ ଲଭିଥାଏ ସ୍ଥିତ ହେ । ୧୧ । ନାଗର ଯଉବନ ବନସ୍ଥଳୀମଣ୍ଡନ

---

ସମ୍ବାଦ ବହନ କାର୍ଯ୍ୟରେ, ପରିବାର—ପରିଜନ, ଆତ୍ମୀୟ । ୮ । ଧନଦାନୁଜ—କୁବେରଙ୍କ ସାନଭାଇ, ରାବଣ; ଛଳ—ଅଭିସନ୍ଧିପୂର୍ବକ, କୁଣ୍ଡପିଚଣ୍ଡେ—ହୋମ-କୁଣ୍ଡର ଗର୍ଭମଧ୍ୟରେ, ଜଗତୀ—ପୃଥିବୀକୁ, ଗଢକରନାରୀସନ୍ତତ—ସ୍ତ୍ରୀମାନଙ୍କୁ ଜଗତଜୀବନ ମନେକରି, ଜଗଜ୍ଜନନୀ—ଜଗତର ମାତୃସ୍ଥାନୀୟା, ସୀତାଦେବୀ; ନିରୋଧି—ବନ୍ଦ କରି, ହେଲେ·········ଏପରି କଲେ ସୁଦ୍ଧା ରସିକସମୂହର ଶିରୋ-ଭୂଷଣ ବସ୍ତ୍ରର ସିଦ୍ଧି ରଖିଗଲା ଅର୍ଥାତ୍ ରସିକଶ୍ରେଷ୍ଠ ବୋଲି ଶାଢ଼ୀ ବାନ୍ଧିଗଲା । ୯ । ତରୁନିଚୟ···ବୃକ୍ଷମାନେ ଅରଣ୍ୟମଧ୍ୟରେ ସର୍ବଦା ଯୁବତୀ ଲସ୍ୟ ( ପ୍ରଶସ୍ତ ) ହୃଦୟରେ ଧାରଣ କରିବାରୁ, ସୁନାରୀ—ଏକପ୍ରକାର ବୃକ୍ଷ ଓ ସୁନ୍ଦରୀ ନାରୀ; ପୁରୁହୂତ—ଇନ୍ଦ୍ର; ମୁନିଦାରଙ୍କେ—ମୁନିପତ୍ନୀ ଅହଲ୍ୟାଙ୍କଠାରେ, ଅର୍ଦ୍ଧଦେହରେ —ଅର୍ଦ୍ଧନାରୀଶ୍ୱର ରୂପରେ । ୧୦ । ଜଡ଼, ଜଡ଼ୀ, ଗଡ଼, ଗଡ଼ୀ, ଜଟ, ଜଟୀ ପ୍ରଭୃତି ପୁରୁଷ ଓ ସ୍ତ୍ରୀବାଚକ ଶବ୍ଦ ଏକତ୍ର ବ୍ୟବହୃତ ହୁଏ । ଜଟାଜଟୀ—ପରସ୍ପର ସଂଶ୍ଳିଷ୍ଟ, ବଟାବଟି—ମିଥ୍ୟା, ଠକାଠକ; ଦ୍ରୁମରେ···ଅଗସ୍ତି ଦ୍ରୁମ, ତାମ୍ବୂଲୀ —ପାନଲତା; ବାରବାହ—ମେଘ, ଚପଳା—ବିଜୁଳି, ଭୂରୁହ—ବୃକ୍ଷ, ବଲ୍ଲରୀ —ଲତା । ୧୧ । ଘଟ—ମାଠିଆ, ଘଟୀ—କ୍ଷୁଦ୍ରଘଟ, ଘଡ଼ି; ପଟୀ—ଶାଢ଼ୀ, ପଟ—ବସ୍ତ୍ର, ତଟ—କୂଳ, ତୀର; ତଟୀ—ତୀରଭୂମି, ଶକଟ—ଶଗଡ଼, ଶକଟୀ—କ୍ଷୁଦ୍ର ଗାଡ଼ି, କୃଶକଟୀ—କ୍ଷୀଣମଧ୍ୟା ଯୁବତୀ, ପୁରୁଷ······ଏ ବିଶ୍ୱପ୍ରକୃତ ପ୍ରକୃତି-ପୁରୁଷଙ୍କ ସଂଯୋଗରୁ ଉତ୍ପନ୍ନ, କୃତ—କାର୍ଯ୍ୟ, ସୁକୃତଜନ···ପୁଣ୍ୟାତ୍ମାଲୋକ ଭିନ୍ନ

ମଧୁ ଶ୍ରୀବନଜଜନୟିନା । ପୁରୁଷ ଜନ୍ମ ଲୋହା ଶିରୀଷ ସର ଦେହା ପରଶୁ ମଣି ପରି ସିନା ହେ । ପ୍ରାଣପ୍ରିୟ । ସ୍ମରଣ ହେବା କ୍ଷଣେ ତାର । ସୁବର୍ଣ୍ଣ ବଳି ଦଶେ ତାର । ସଂଗତ ଅବଶେଷେ ପ୍ରସରଇ ବିଶେଷେ ସୁବର୍ଣ୍ଣ ପାଟଳୀ ପ୍ରଚୁର ହେ । ୧୨ । ଆକାରବନ୍ତ ପଣେ ରମାଙ୍କୁ ଏହି ଗୁଣେ ଅଧିକା ବୋଲି ହେଲ ରାମା । ପୂର୍ବେ ଦୀର୍ଘ ଯତ୍ନରେ ଦ୍ୱିତୀୟା ମିଳେ ଗିରେ କହିଲେ ମିଳନ୍ତି ପ୍ରଥମା ହେ । ପ୍ରାଣପ୍ରିୟ । ଅଜନମୋହିନୀ କମଳା । ଜନମୋହିନୀ ପ୍ରେମଶୀଳା । ଶିଳାଲିଖିତାକ୍ଷର ମଧ୍ୟେ ଚିର ବିକ୍ଷର ସଂସାରସାରଶ୍ରୀ ବାଳା ହେ । ୧୩ । ଅଙ୍କେ ଶଙ୍କରଙ୍କର ଧୃତଦାଳନାବର ପଙ୍କେରୁହାକ୍ଷୀ ଥିଲେ ଜମି । ସ୍ୱର୍ଗେ ବିହରି ହରିହୟପଦବୀ ହରି ହରି-ଚନ୍ଦନ ବନେ ଭ୍ରମି ହେ । ପ୍ରାଣପ୍ରିୟ । କି ଭାଗ୍ୟ ଭୁଞ୍ଜିବ ମାନବ । ନବବୟସୀ ସେ ତ୍ରିଦିବ । ଦିବସବିବସନ ସୁଷମା ଶିବସନମତ ନ ଥିଲେ କେ ଦେଖିବ ହେ । ୧୪ । ରତିପତିର ତାର ତରସ୍କାରହିତର ନିବାରଣ ବାରଣଗତ । ଯା ହୃଦୟେ ଭରମ ରମଣୀୟ ବରମ ପରି ହୋଇବ-ପ୍ରତି ଗତ ହେ । ପ୍ରାଣପ୍ରିୟ । ବିନା ନବୀନା ଅବଲୋକେ । ସେ ଲୋକ ବସି ବ୍ରହ୍ମଲୋକେ । ଲୋକେଶପଦ ପାଦନତ ହେଲେହେଁ ପଦ ବିସୁବ ହେବ ତ ଅଶ୍ଳୋକେ ହେ । ୧୫ । ଥାଉ ରମଣୀମଣିମୁଖଚନ୍ଦ୍ର କି ମଣି

---

ଅନ୍ୟ କେହି ସ୍ତ୍ରୀ ସହିତ ସୁଖଭୋଗ କରେ ନାହିଁ । ୧୨ । ରସିକଲୋକର ଯୌବନ ବନସ୍ଥଳୀସ୍ୱରୂପ, ବନସ୍ଥଳୀ ଯେପରି ମଧୁଶ୍ରୀ ( ବସନ୍ତଲକ୍ଷ୍ମୀ ) ଦ୍ୱାରା ଶୋଭିତ ହୁଏ ପଦ୍ମନେତ୍ରା ସ୍ତ୍ରୀ ଦ୍ୱାରା ସେହିପରି ରସିକର ଯୌବନ ମଣ୍ଡିତ ହୁଏ । ପୁରୁଷଜନ୍ମ ଲୁହା ପରି କଠିନ, ଶିରୀଷଫୁଲ ସଦୃଶ କୋମଳାଙ୍ଗୀ ସ୍ତ୍ରୀ ସ୍ପର୍ଶମଣି ପରି, ସ୍ତ୍ରୀ ସଂସର୍ଗରେ ପୁରୁଷ ସୁନାଠାରୁ ବଳି ତାର ( ଉଜ୍ଜ୍ୱଳ ) ଦିଶେ, ସଙ୍ଗତ—ସଙ୍ଗମ, ସୁବର୍ଣ୍ଣପାଟଳୀ···ରୂପଶ୍ରୀ ସୁନ୍ଦର କରିଦିଏ । ୧୩ । ଆକାରବନ୍ତପଣେ—ଆକୃତ ସୌଷ୍ଠବରେ ଓ 'ଆ' ଅକ୍ଷର ଅଧିକ ଥିବାରୁ, ରମା—ଲକ୍ଷ୍ମୀ; ରାମା—ସ୍ତ୍ରୀ; ଦ୍ୱିତୀୟା— ( ଏଠାରେ ) ରାମା, ଗିରେ କହିଲେ—କଥାରେ କହିଲେ ବା ମାଗିଲେ; ପ୍ରଥମା— ( ଏଠାରେ ) ଲକ୍ଷ୍ମୀ, ଅଜନମୋହିନୀ—ଜନ୍ମରହିତ ବିଷ୍ଣୁଙ୍କ ସନ୍ତୋଷଦାୟିନୀ; ଶିଳାଲିଖିତାକ୍ଷର···ପଥରରେ ଲେଖା ଅକ୍ଷର ପରି ହୃଦୟ ମଧ୍ୟରେ ଲେଖି ରଖ ଯେ, ବାଳା ( ସ୍ତ୍ରୀ ) ସଂସାରର ସାରଶ୍ରୀ ( ସର୍ବୋତ୍କୃଷ୍ଟ ଶୋଭା ) । ୧୪ । ଯେବେ କୋଳରେ ଶିବମୋହିନୀ ଅର୍ଥାତ୍ ରୂପବତୀ ଯୁବତୀ ସ୍ତ୍ରୀ ଥାଏ, ତେବେ ସ୍ୱର୍ଗରେ ବିହାର କରି ହରିହୟପଦବୀ ( ଇନ୍ଦ୍ରପଦ ) ଲାଭ କରି ହରି ଚନ୍ଦନବନ ( ନନ୍ଦନକାନନ ) ରେ ବୁଲିଲେ ମନୁଷ୍ୟ ତହିଁରୁ କଅଣ ଅଧିକ ସୁଖ ପାଇବ ? ତ୍ରିଦିବ—ସ୍ୱର୍ଗ, ଦିବସବିବସନସୁଷମା—ଦିନରେ ନଗ୍ନଶୋଭା, ଶିବ ସନମତ—ଶିବଙ୍କର ଅନୁଗ୍ରହ । ରତିପତି—କନ୍ଦର୍ପ , ତାରତରସ୍କାରହିତ—

ମଣିଶିଖରାଳୟମାନେ । କେଉଁ ରସଲବକୁ ଭକୁଳବୃଷଭକୁ ମୋଦେ ପିଅନ୍ତ ପ୍ରଭଦନେ ହେ । ପ୍ରାଣପ୍ରିୟ । ବବୁଧଙ୍କର ବୁଧପଣ । ଏହ ବୋଧରୁ ଏକା ଜାଣ । ସୁରତଟିନୀତଟ ନାକଟେ ଥାଇ ଘଟ ଜଳ୍ପ ଲଭନ୍ତ ସନ୍ତର୍ପଣ ହେ । ୧୬ । ମୃଦୁଳାଙ୍ଗୀର ଗିର ବଦନଭାବ ଭଙ୍ଗିର ସମୀପେ ଯାର ଶ୍ରୁତ ଥିବ । ମହତୀ କଲାବତୀ କଚ୍ଛପୀ ରବେ ପୀତ ଲବେ ତ ତାହାର ନୋହିବ ହେ । ପ୍ରାଣପ୍ରିୟ । ଶୁକ ପଠନ ଶବଦର । ପିକ ପଞ୍ଚମ ନାନଦର । ଶ୍ରବଣରେ ତରସ ରସସଙ୍ଗୀ ହରଷ ଜନ୍ମ କ ହୋଇବ ହୃଦର ହେ । ୧୭। ପରମାଦର ଦରପଣବମ୍ବସୋଦର ଗଣ୍ଡମଣ୍ଡଳଠାରେ ଥିଲେ । ଇଷ୍ଟ ଦେବର ବର ଲବ୍ଧ ଗଉରବର ଭାଜନ ସେହ ହୁଏ ଭଲେ ହେ । ପ୍ରାଣପ୍ରିୟ । ତାହା ସମାନ ନାହିଁ ଧନ । ତାହା ସମାନ ସମ୍ମୋହନ । ଯାହା ସମାନ ମନ୍ଦ ଲଲ ଲପନ ଗୃନ୍ଦ ପ୍ରମୋଦ ସନ୍ଦୋହ ଦହନ ହେ ।୧୮। ତୁଷାର ବାସ ବାସରହିତ କୃତ୍ତିବାସପରସଙ୍ଗରାନ୍ତ ନିଃଶ୍ୱାସ । ଯେ ଭୋଗ କର କରିଗତ ଗଣ୍ଡମକରୀ ସ୍ୱେଦର ରଚିବ ନିରସ ହେ । ପ୍ରାଣପ୍ରିୟ । ମଳୟ-ବନୀ ମଧ୍ୟଚର ମନ୍ଦ ଚନ୍ଦନଗନ୍ଧଗ୍ରୈର । କେହ୍ନ ସେହ୍ନି ପ୍ରଭଞ୍ଜନ ହେବ ତାର ରଞ୍ଜନ ଯାହାର ସ୍ୱଭାବ ଖରର ହିଁ ହେ । ୧୯ । ଚରଣତାମରସ

---

—ଶର ଆଘାତ ଭୟ, ଭରମରମଣୀସ୍ୱ—ସ୍ୱର୍ଣ୍ଣ ପର ସୁନ୍ଦର, ବର୍ମ—ସାଞ୍ଜୁ, ଲୋକେଶପଦ—ବ୍ରହ୍ମପଦ, ବପଦ୍ଵ ହେବ—"ପଦ" ଶବ୍ଦ "ବ" ପୂର୍ବ ହେବ ଅର୍ଥାତ୍ ବପଦ ହେବ, ଅସ୍ତୋକେ—ବହୁ ପରିମାଣରେ । ୧୬ । କ ମଣି—କଅଣ ମନେ କର, ମଣିଶିଖରାଳୟମାନେ—ଦେବତାମାନେ, ଭକୁଳବୃଷଭ—ନକ୍ଷତ୍ରପତ ଅର୍ଥାତ୍ ଚନ୍ଦ୍ର, (ପୁରାଣରେ ଅଛି ଦେବତାମାନେ ପ୍ରତ୍ୟହ ଚନ୍ଦ୍ରଙ୍କ କଳା ପାନ କରନ୍ତ ) । ବବୁଧ—ଦେବତା, ବୁଧପଣ—ପାଣ୍ଡିତ୍ୟ, ବୋଧ—ବୁଦ୍ଧି, ସୁରତଟିନୀ—ସ୍ୱର୍ଗଗଙ୍ଗା, ସନ୍ତର୍ପଣ—ସନ୍ତୋଷ, ତୃପ୍ତି । ୧୭ । ମହତୀ—ନାରଦଙ୍କ ବୀଣା, କଳାବତୀ—ତୁମ୍ବୁର ଗନ୍ଧର୍ବଙ୍କ ବୀଣା, କଚ୍ଛପୀ—ସରସ୍ୱତୀଙ୍କ ବୀଣା, ତରସରସସଙ୍ଗୀ—ଶୀଘ୍ର ରସ ଉନ୍ମେଷକାରୀ । ୧୮ । ଦରପଣ ବମ୍ବ······ଦର୍ପଣ ବମ୍ବ ସୋଦରର ( ସଦୃଶ ) ସ୍ୱଚ୍ଛ ଗଣ୍ଡଦେଶ ଯାହାର, ଗୌରବର ଭାଜନ—ଗୌରବ ବା ପ୍ରଶଂସା ଲାଭ କରିବାର ଅଧିକାରୀ, ଲପନ—ମୁଖ, ପ୍ରମୋଦସନ୍ଦୋହଦହନ—ଆନନ୍ଦସମୂହର ଧ୍ୱଂସକାରୀ । ୧୯ । ତୁଷାରବାସ—ଶୀତଳ ଗୃହରେ, ବାସରହିତ—ନଗ୍ନ ଅବସ୍ଥାରେ, କୃତ୍ତିବାସପରସଙ୍ଗରାନ୍ତ ନିଃଶ୍ୱାସ—କାମମୁକ୍ତ ଶେଷ ନିଃଶ୍ୱାସ, କରିଗତ···ଗଜଗମନା ସ୍ତ୍ରୀର ଗଣ୍ଡସ୍ଥଳରେ ଅଙ୍କିତ ମକରୀ ଚିହ୍ନର ସ୍ୱେଦ (ଝାଳ)କୁ ନିରସ (ଦୂରୀକରଣ) କରିବ, ମଳୟ ବନୀମଧ୍ୟଚର—ମଳୟପର୍ବତସ୍ଥ ଅରଣ୍ୟ ମଧ୍ୟରେ ବିଚରଣ କରୁଥିବା, ମନ୍ଦ—ଧୀର ଓ ଅନ୍ୟ ଅର୍ଥ ନୀଚ, କେହ୍ନ—କାହ୍ନୁ, ପ୍ରଭଞ୍ଜନ—ପବନ, ରଞ୍ଜନ—ପ୍ରୀତିଯୁକ୍ତ,

ରସଜ୍ଞାଧିର ରସବଶରେ ଧରି ମୁହୁର୍ମୁହୁ । ରତି ଚୁମ୍ବନ ବନରୁହ ପ୍ରସୂନ ବନ ରତାଳି ନାଦ କହୁ କହୁ ହେ । ପ୍ରାଣପ୍ରିୟ । ଅଲକ୍ତ ରଞ୍ଜିତ କରିବୁ । ସୁଖେ ଯେ ସମସ୍ତ ହରିବ । ଧ୍ରୁବ ଧାମରୁ ମରୁଦଧିପ ଆଶ୍ରମରୁ ତହୁଁ ଅଧିକ କି ଲଭିବ ହେ । ୨୦ । ରସବନ୍ତୀରଜାକୁ ନିବଢ଼େ ଯାକୁ ଯାକୁ ଯାକୁ ମିଳିବ ଦେହାନ୍ତର । ତା ନାମ ଲେଖା ଲେଖା ଲେଖା ପ୍ରଥମେ ଲେଖା ହୋଇଲା ଅବଶ୍ୟ ବଗୃର ହେ । ପ୍ରାଣପ୍ରିୟ । ନବ ବୟସ ବିଭୂଷଣ । ଶଣଗଉରୀଦେହା ଜାଣ । ତାଠାରୁ ପୁରୁଷର ସରେ ଭାଗ୍ୟ-ବସର ତା ସମ ନାହିଁ ସେହି ପ୍ରାଣ ହେ । ୨୧ । ଚଟୁଲତର ଗୃଟୁ ରସପ୍ରସରପଟୁ ମୃଦୁଲ ବଚନ ବିଭବ । ତୁଲେ କାବ୍ୟ ନାଟକ ଅଲଙ୍କୃତ କଟକ ପରି ହୃଦୟ ହେଉଥିବ ହେ । ପ୍ରାଣପ୍ରିୟ । ଅନିଶ ଥିବ ଅନୁସର । ଅଖଣ୍ଡ ଧରାଧିପଶିରୀ । ସ୍ୱରୂପେ ଶିରୀସଙ୍ଗୀ ଶିରୀଷଅଙ୍ଗୀ ଅଙ୍ଗୀକାର ନ ଥିଲେ ବୃଥା ପରି ହେ । ୨୨ । କନକଧରାଧରାଧିକାରୀ ପୟୋଧରା ଧରାଉ-ଥିବ ପତଦ୍‌ଗ୍ରହ । ଧନଦ ସମ ଦରେ ଦରେ ହେଲେ ଆଦରେ କାହିଁକି ହୋଇବ ଆଗ୍ରହ ହେ । ପ୍ରାଣପ୍ରିୟ । ବଢ଼ାଉଥିବ ଲାଗି ବାସ । ବାସବ-ପଦେ କାହିଁ ଆଶ । ଆସରପରପରସାଦ ପରତାପର ବଶୁଁ କେ ନୋହିବ ତା ବଶ ହେ । ୨୩ । ଛଳରେ ଅଭଜାଇ ଜାଇଦଳ ଶେଯାଇ ଥିବା ଶେଯରେ ସମଜାଇ । ରସରଙ୍ଗେ ମଜ୍ଜାଇ ସ୍ମରକୁ ତରଜାଇ ନଖାଗ୍ରଜଘନେ ବଜାଇ ହେ । ପ୍ରାଣପ୍ରିୟ । ତା ଈଷଦ୍ଧାସଯୁକ୍ତ ମୁଖ । ଗୃହିଁ ପାସୋରି ସବୁ ଦୁଃଖ । ହରେ ଯେ ଏକ ପରା ପରାଣ ଏକପରା କରି ସେ ମର୍ତ୍ତ୍ୟ ଶତମୁଖ ହେ । ୨୪ । ନରେନ୍ଦ୍ରନନ୍ଦନର ନରମ ବଚନର ଶେଷେ ସରିବ ପ୍ରବନ୍ଧ

---

ଖଚର—ଆକାଶଗାମୀ ଅନ୍ୟ ଅର୍ଥ ଖେଚଡ଼ା ବା ବଦମାସ୍ । ୨୦ । ଚରଣତାମରସ—ପାଦପଦ୍ମ, ବନରୁହପ୍ରସୂନବନରତାଳି—ପ୍ରସ୍ଫୁଟିତ ପଦ୍ମବନରେ ଆସକ୍ତ ଭ୍ରମର, ଅଲକ୍ତ—ଅଲତା, ଧ୍ରୁବଧାମ—ସର୍ବୋଚ୍ଚ ଧ୍ରୁବଲୋକ, ମରୁଦଧିପ ଆଶ୍ରମ—ସ୍ୱର୍ଗପୁର ।୨୧। ରସବନ୍ତୀ ରଜା—ରସବନ୍ତୀଙ୍କ ମଧ୍ୟରେ ଶ୍ରେଷ୍ଠା, ଲେଖା—ଦେବତା, ଲେଖା ଲେଖା ଲେଖା···ଦେବତାମାନଙ୍କ ମଧ୍ୟରେ ପ୍ରଥମେ ଲେଖନୀୟ ହୋଇ ଲେଖା ହୁଏ । ଶଣଗଉରୀଦେହା—ଛଣପଟ ଫୁଲ ପରି ଗୌରବର୍ଣ୍ଣ ଦେହ ଯାହାର, ଭାଗ୍ୟବସର—ସୌଭାଗ୍ୟରାଶି ।୨୨। କଟକ—ସ୍ଥାନ, ରାଜଧାନୀ; ଅନିଶ—ସର୍ବଦା, ଅଖଣ୍ଡ ଧରାଧିପଶିରୀ—ସମ୍ପୂର୍ଣ୍ଣ ରାଜଲକ୍ଷ୍ମୀ ସ୍ୱରୂପେ, ଶ୍ରୀସଙ୍ଗୀ—ପ୍ରତ୍ୟକ୍ଷଲକ୍ଷ୍ମୀଙ୍କର ସହଚର ।୨୩। କନକଧରାଧରାଧିକାରୀ ପୟୋଧରା—ମେରୁ ପର୍ବତ ପରି ସ୍ଥାନର ଅଧିକାରୀ ଅର୍ଥାତ୍ ବିଶାଳ କୁଚଯୁକ୍ତା । ପତଦ୍‌ଗ୍ରହ—ପିକଦାନୀ, ଦରେ—ଅଳ୍ପ, ଟିକିଏ; ଆସରପର—ରାକ୍ଷସଶତ୍ରୁ, ଶମ୍ବରାରି, କନ୍ଦର୍ପ; ପରସାଦ ପରତାପ—ଅନୁଗ୍ରହରୁ ଜାତ ଦାରୁଣ ଯନ୍ତ୍ରଣା । ୨୪ । ସମଜାଇ—ରାଜି ହୋଇ, ଏକପରା—

ମୋଦେ । ତା ଭାବ ଅନୁମାନ ମାନସେ କର ମାନନାରେଁ ବୋଧିଲ ପ୍ରତି-
ପଦେ ହେ । ପ୍ରାଣପ୍ରିୟ । କୁନ୍ଦନଅର୍ଥେ ସିନା ମଣି । ରଖିଛୁ ଦଇବ କାମିଣି ।
ଇଷ୍ଟଦେବର ବର ପ୍ରସାଦପ୍ରଭାବର ସ୍ୱରୂପ ଅଛ ଦେବ ପୁଣି ହେ । ୨୫ ।
ରସାମୃତ ଝାର୍ଝରି ଝାରତେ ଝର ଝର ମୃଦୁଲ ହେବା ହୃଦୟକୁ ।
କବତା ଦେବା ପରିରମ୍ଭେ ତୋଷିଲ ପର ହରିଣଲକ୍ଷ୍ମ ଉଦୟକୁ ହେ ।
ପ୍ରାଣପ୍ରିୟ । ଚନ୍ଦ୍ରିକା ଅନୁସରେ ଯଥା । ତୁମ୍ଭ କାମିତ ଶିରି ତଥା । ଲବେ
ନାହିଁ ଅନ୍ୟଥା ରସେ ନୁଆଇଁ ମଥା ହରିବା ଯଥା ହୋଇ ବ୍ୟଥା ହେ ।୨୬।
ପ୍ରଚୁର ଅନୁଚର ପ୍ରତ୍ୟକ୍ଷେ ନ ଅଚର କର ମାନସଚର ଚର ।
ତାହାଙ୍କୁ ଚରାଚରସ୍ଥିତ ଉଇ ନୀଚର ଜଣା ହୁଅଇ ସୁବିରୁର ହେ ।
ପ୍ରାଣପ୍ରିୟ । ପୃଥୁଳ ସ୍ଥିଚର କୁଚର । ଯେ ଚୀର ଚିରସହଚର । ତାହାକୁ
ତା ରୁଚିର ସଂସର୍ଗଜଣା ସ୍ୱୈର ଉପପତିଙ୍କ ଙ୍କ ଗୋଚର ହେ ।୨୭। ଯେତେ
ତରୁଣଗଣ ଗଣନାରେ ନିପୁଣି ଲେଖନ୍ତି ଜଣି ଜଣି କରି । ତାଙ୍କ ସୁନ୍ଦର-
ପଣ ପଣନ୍ତେ ପଣ ପଣ କରି ବାନ୍ଧିଛୁ ତୁମ୍ଭ ଶିରି ହେ । ପ୍ରାଣପ୍ରିୟ ।
ତଦନୁରୂପ ମନୋରଥ । ପୂର୍ଣ୍ଣ କରିବେ ଉମାନାଥ । ସେ ରସେ ଜରଜର
କରି ଆମ୍ଭ ନଜର ପଥ ମଣ୍ଡିବ ମନମଥ ହେ । ୨୮ । କିଶୋରବରରଙ୍କ
ଚକ୍ରବର୍ତ୍ତୀଙ୍କ ଶଙ୍କ ମଣ୍ଡିଅଛ ଏ ବସୁମତୀ । ବାଞ୍ଛାତୀତ ସମ୍ପଦ ପଦ କ୍ଷପର
ହୃଦସ୍ଥଳେ ହୋଇବ ମୂର୍ତ୍ତିମତୀ ହେ । ପ୍ରାଣପ୍ରିୟ । ତୁମ୍ଭ ସୁଭାଗ୍ୟ ସୁର୍ଣ୍ଣଚନ୍ଦ୍ର ।
କରିବ ଜଗତୀ ଆନନ୍ଦ । ସମ୍ପୂର୍ଣ୍ଣ ହେଲା ହେ ଲାବଣ୍ୟସିନ୍ଧୁ ମହାଲା
ସ୍ତବରାଜ ନାମ ଏ ଛନ୍ଦ ହେ । ୨୯ । ସୁରଭାନସୁଦନ ସୁରଭିରୟାବନ

---

ଏକ ପ୍ରହର, ପରାଣ ଏକାପର କରି—ପ୍ରାଣ ଏକାପର କରି, ଶତମୁଖ—ଇନ୍ଦ୍ର ।
୨୫ । ନରମ ବଚନ – କୋମଳ କଥା, ମାନନାରେ—ସମ୍ମାନ ସହିତ, କୁନ୍ଦନ—
ସୁନା, ମଣି—ରତ୍ନ । ୨୬ । ପରିରମ୍ଭ—ଆଲିଙ୍ଗନ, ହରିଣଲକ୍ଷ୍ମ—ଚନ୍ଦ୍ର, ଚନ୍ଦ୍ରିକା –
ଜ୍ୟୋତ୍ସ୍ନା, କାମିତ ଶିରି – ଅଭିଲଷିତ ସମ୍ପଦ । ୨୭ । ପ୍ରଚୁର ଅନୁଚର…
ପ୍ରତ୍ୟକ୍ଷରେ ବହୁଭୃତ୍ୟ ସେଠାକୁ ନ ପଠାଅ । ମାନସଚର—ହଂସ, ଚର – ବାର୍ତ୍ତା-
ବହ, ସ୍ଥିଚ—ପିଣ୍ଡ, ଚୀର—ବସ୍ତ୍ର, ସ୍ୱୈର ଉପପତି—ଜାରପୁରୁଷ । ୨୮ । ତୁମ୍ଭର
ଶୋଭା ଅନ୍ୟ ସମସ୍ତ ରୂପବାନ୍ ଯୁବକଙ୍କର ଅସଂଖ୍ୟ ଶୋଭାକୁ ନିଜ ପଣରେ କାନ୍ଧରେ
ବାନ୍ଧିଛ, ଅର୍ଥାତ୍ ପୃଥିବୀର ସମସ୍ତ ଯୁବକଙ୍କ ମଧ୍ୟରେ ତୁମ୍ଭେ ସୁନ୍ଦରତମ, ନଜରପଥ
—ଦୃଷ୍ଟିପଥ । ୨୯ । କିଶୋରବର…ଶ୍ରେଷ୍ଠ ଯୁବକମାନଙ୍କ ମଧ୍ୟରେ ଯେଉଁମାନେ

ସୁରଭିମାଲ୍ୟ ଅଭରଣ । ସୁରଭିତରସ୍ଥିତ ସୁରଭିମିତତାତ ଅପୂର୍ବ ସୁରଭୀ କାରଣ ହେ । ମହାପ୍ରଭୁ । ପୁରଭିଦ୍ରଚିତଚରଣ । ସୁରଭି କର ଅଚରଣ । କର ଭୀଷଣଭରହରଣ ଜଲନ୍ତରମହୀମହେନ୍ଦ୍ରର ଶରଣ ହେ । ୩୦ ।

---

## ପଞ୍ଚଦଶ ଛାନ୍ଦ

### ରାଗ—ବରାଡ଼ୀ

### ( ମିଳନରେ ନାୟକର ପ୍ରଶଂସୋକ୍ତି )

ଅନଙ୍ଗସଙ୍ଗର ଶେଷ ସୁଖ ବ୍ରହ୍ମାନନ୍ଦରସ ପ୍ରବାହରେ ପଡ଼ି ଯୁବରାଜ । କିଶୋରୀଙ୍କ ଧରି କୋଳେ ଚେଲାଞ୍ଚଳ ବାଞ୍ଛାବେଳେ କହେ ରମ୍ଭି ମୁଖ-ଦ୍ୱିଜରାଜ ହେ । ଜୀବବନ୍ଧୁ । ମୋ ରାଣଟି ପରୁଛୁ କହ । କି ପଦାର୍ଥ ତୁ ମୋର ପ୍ରାଣପଞ୍ଚକ କି ବରବରନା କି ତୁ ଜଗତମୋହ ରେ । ୧ । ମୋର ପୂର୍ବ ତପୋବଳ କଳପବଲ୍ଲରୀଫଳ ତୁହି କି ରେ ମହୀସ୍ଥଳୀଭୂଷା । କି ମୋ ସାମ୍ରାଜ୍ୟବିଭୂତି ହୋଇଅଛୁ ମୂର୍ତ୍ତିମତୀ ତୋ ସ୍ନେହ ମୋ ହୃଦପଦ୍ମ ପୂଷାରେ । ଜୀବବନ୍ଧୁ । ମୁଁ ବକ୍ଷ ତୁହି କି ମୋତିମାଳା । ମୁଁ କୁସୁମ ତୁ ବାସନା କି ରେ ହୀରକଦଶନା ମୁଁ ଅକାଶ ତୁ କି ଚନ୍ଦ୍ରକଳା ରେ । ୨ । ପଟୁ ନଖ ଖଞ୍ଜରୀଟ ଘଟଣନେନ୍ଦ୍ର ମୁଁ ଘଟ ତୁହି

---

ପ୍ରଧାନ ତୁମ୍ଭେ ତାଙ୍କର ଇନ୍ଦ୍ର ସଦୃଶ । ୩୦ । ହେ ସୁରଭିନସୂଦନ—ହେ ଦେବତାଙ୍କର ଭୟବିନାଶକ, ସୁରଭିଚୟାବନ—ଗାଭୀସମୂହର ରକ୍ଷକ, ଗୋପାଳ; ସୁରଭିମାଲ୍ୟ-ଆଭରଣ—ସୁବାସ ଫୁଲମାଳାଦ୍ୱାରା ଶୋଭମାନ, ସୁରଭିତର ସ୍ଥିତ—ଦେବତାଙ୍କ ମଧ୍ୟରେ ଅବସ୍ଥିତ, ସୁରଭିମିତତାତ—ବସନ୍ତର ମିତ୍ର କନ୍ଦର୍ପର ପିତା କୃଷ୍ଣ, ଅ-ପୂର୍ବ ସୁରଭୀକାରଣ—'ଅ-ପୂର୍ବ ସୁର' ଅର୍ଥାତ୍ ଅସୁର ସେମାନଙ୍କର ଭୟର କାରଣ, ପୁରଭିଦ୍‌ରଚିତ ଚରଣ—ଶିବଙ୍କଦ୍ୱାରା ପୂଜିତ ଚରଣ ଯାହାଙ୍କର । ସୁରଭି କର ଆଚରଣ—ମଙ୍ଗଳବିଧାନ କର, ଭୀଷଣଭରହରଣ—ପୃଥିବୀର ଭୀଷଣ ଭାର ହରଣକାରୀ ।

---

### ପଞ୍ଚଦଶ ଛାନ୍ଦ

୧ । ଅନଙ୍ଗସଙ୍ଗର—କାମ ଯୁଦ୍ଧ, ଚେଲାଞ୍ଚଳ—କାନ ପଣନ୍ତ, ମୁଖଦ୍ୱିଜ-ରାଜ—ମୁଖଚନ୍ଦ୍ର, ପ୍ରାଣପଞ୍ଚକ—ପଞ୍ଚପ୍ରାଣସ୍ୱରୂପ । ୨ । କଳପବଲ୍ଲରୀ—କଳ୍ପଲତା,

ଜୀବନ କି କହ କହ । ତୁ ପରିଣତଚନ୍ଦ୍ରମା ଚକୋରି ମୁଁ କିରେ ରାମା ମୁଁ ମୃତକ ତୁ କି ବାରିବାହ ରେ । ଜୀବବନ୍ଧୁ ! ମୁଁ କି ବନ ତୁ ବସନ୍ତଶିରୀ । ବିକଶିତ ଅରବିନ୍ଦ ତୁ କି ମୁଁ ଭୃଙ୍ଗୀ ମିଳିନ୍ଦ ମୁଁ ମୀନ ତୁ କି ଗମ୍ଭୀର ବାରି ରେ । ୩ । ମୁଁ କାବ୍ୟ ବନ୍ଧ ତୁ ରସ, ରସ ମୁଁ ତାହା ବିଶେଷ ସ୍ୱାଦୁ ଗୁଣ କି ରେ ଗୁଣନିଧି । ତୁ ପ୍ରଭୁ ମୁଁ ପରିଜନ ଏଥି ନାହିଁ ଅନୁମାନ ମୁଁ ମନ୍ତ୍ର ଜପ କି ତୁ ତା ସିଦ୍ଧି ରେ । ଜୀବବନ୍ଧୁ ! ମୁଁ ମନ୍ଦିର ତୁ କି ଦୀପଶିଖା । କି ବୋଲି ତୋ ସମ୍ବୋଧନ କରିବି ରେ ପ୍ରାଣଧନ ସକରୁଣଚିତ୍ତେ ମୋତେ ଶିଖା ରେ । ୪ । ମୁଁ ଦେହ ତୁ ଅଳଙ୍କୃତ କି ରେ କେଳିକଳାଦତ୍ତ ସହଜେ ମୁଁ ନୃପ ତୁ କି ନୀତ । ମୁଁ ଶାଖୀ ତୁ ବନଲତା ମୁଁ ଜଳ ତୁ ନିର୍ମଳତା ମୁଁ ରଜନୀ ତୁହି କି ମୋ ଗତି ରେ । ଜୀବବନ୍ଧୁ ! ଅଳକା ମୁଁ ତୁ କି ମୋ ସମ୍ପଦ । ମୁଁ କି ପ୍ରସିଦ୍ଧ ପ୍ରାସାଦ ସ୍ୱାଦୁମୃଦୁତରନାଦକଣ୍ଠି କି ତୁ ମହୋତ୍ସବ ଭେଦ ରେ । ୫ । ମୁଁ କି ବାଳକାଳ ଅଙ୍କ ଅଟେ ବିବିଧପ୍ରବନ୍ଧପଣ୍ଡିତା ତୁ ନେଇଗଲୁ ମୋର । ମୋ ମାନସ ସେ ସରସୀ ତୁ କି କେଳିକଳହଂସୀ ମୁଁ ସୁରତ ତୁ କି ଅନ୍ତଃସାର ରେ । ଜୀବବନ୍ଧୁ ! ମୁଁ ମୁକୁର ତୁ କି ତାହା ଝଳ । ମୁଁ କନକ ତୁ ନୂତନ ରତନ ମୁଁ କି ରତନ ତୁ କି କରକଳିକାଅବଳୀ ରେ । ୬ । ମୋ ଧନଟି କାହିଁ କହ ବୋଲି ଯେ ଏତେ ଆଗ୍ରହ କରୁଅଛୁ କହିଲୁ ତ ନାହିଁ । ବଞ୍ଚାଇ ଯେ ଲକ୍ଷେ ରାଣ ଭଲ କି ଗଲେ ମୋ ପ୍ରାଣ ସ୍ନେହ ଥିବା ଜଣାଗଲା କେହ୍ନେ ରେ । ଜୀବବନ୍ଧୁ । ମତେ ପଚାରିଲେ କି ପଚାର । ନ କହିଲେ ମୁଁ ଛଦ୍ମରେ ଘେନି ହୃଦୟୁ ପଦ୍ମରେ ତହିଁକି ବିଚାର ଉପଚାର ରେ ।୭। ଘରେ ପର ଅନୁସରି ଥିବା ଲୋକେ

---

ସାମ୍ରାଜ୍ୟବିଭୂତ—ରାଜ୍ୟର ଐଶ୍ୱର୍ଯ୍ୟ, ପୂଷା—ସୂର୍ଯ୍ୟ । ୩ । ଚଞ୍ଚଳଖଞ୍ଜରୀଟ ପରି ସୁନ୍ଦର ନେତ୍ର ଯାହାର, ଘଟ—କୁମ୍ଭ ବା ଦେହ, ଜୀବନ—ଜଳ ବା ପ୍ରାଣ, ପରିଣତ ଚନ୍ଦ୍ରମା—ପୂର୍ଣ୍ଣଚନ୍ଦ୍ର, ବାରିବାହ—ମେଘ, ବସନ୍ତଶିରୀ—ବସନ୍ତଶୋଭା, ଅରବିନ୍ଦ—ପଦ୍ମ, ମିଳିନ୍ଦ—ଭ୍ରମର । ୪ । ଗୁ ସେ ରସର ବିଶିଷ୍ଟ ସ୍ୱାଦୁତା, ପରିଜନ—ଭୃତ୍ୟ । ୫ । ଅଳଙ୍କୃତି—ଅଳଙ୍କାର, ନୀତି—ରାଜନୀତି, ଶାଖୀ—ବୃକ୍ଷ, ରଜନୀ—ରାତି, ଗତି—ପ୍ରାପ୍ତି ( ଏଠାରେ ଚନ୍ଦ୍ର ), ପ୍ରାସାଦ—ଦେବାଳୟ, ହେ ମୃଦୁମଧୁରଭାଷିଣି ! ଗୁ କି ସେ ଦେବମନ୍ଦିରର ଉତ୍ସବସ୍ୱରୂପା । ୬ । ବିବିଧପ୍ରବନ୍ଧପଣ୍ଡିତା—ନାନା ଶାସ୍ତ୍ରନିପୁଣା, ମୋ ମାନସ ସେ ସରସୀ—ମୋର ମନ ମାନସସରୋବର ପରି, ସୁରତ—ରତିକ୍ରୀଡ଼ା, ଅନ୍ତଃସାର—(ଏଠାରେ) ବୀର୍ଯ୍ୟ,

ଏତେ ସବୁ ଲଜ୍ଜା ତୁ ଯେ ରଖିଅଛୁ ଠାକ । ନଖ ଶିଖଠାରୁ କେଶଯାଏ ମନ ଜାଣି ବେଶ କେ କରିବ ପୁଣି କାଲିଯାକ ରେ । ଜୀବବନ୍ଧୁ । ମୋ ତୁଳ୍ୟ ତ ନୋହେ ଲଜ୍ଜି ଶାଢ଼ୀ । ତାହାକୁ ରଖିବୁ ଦୂରେ ରସଲମ୍ପଟୀ ମୋ ଉରେ ରହିବୁ ନିବିଡ଼େ ପରି ଜଉ ରେ । ୮ । ସବ୍ରୀଡ଼ ନେତ୍ରଯୁଗଳୀ ନୀଳଘନ ପକ୍ଷ୍ମପାଳୀ ଟେକି ମୋ ମୁଖକୁ ହସି ଚାହିଁ । ଅନଙ୍ଗ କଳାନିଧିରେ କହ କହ "ମୃଦୁଗିରେ ମୋର ବନ୍ଧୁ ଅଛି କାହିଁ କାହିଁ ରେ ।" ଜୀବବନ୍ଧୁ । ମୁଁ ବୋଲିବା କଥା ଯେବେ ଲଜ୍ଜ । ଏ ରୁଚିରାଙ୍ଗୁଳୀ କଳୀ ଅଗ୍ରେ ଉରୋଜଯୁଗଳୀ ମଧ୍ୟ ଛୁଇଁ ବଢ଼ାଅ ମୋ ଓଜ ରେ । ୯ । ଏତେ ବିନୀତରେ ଏହି କଥାରେ ନିର୍ବାହ ନାହିଁ କରି ତତେ ସକଳ ସମ୍ପତ୍ତି । କରିଛୁ ଯେ ଅନଳପ ସଉଭାଗ୍ୟ ସଂକଳପ କେମନ୍ତେ ସେ ହୋଇବ ଭରତି ରେ । ଜୀବବନ୍ଧୁ । ତୁହି କି ମୋ ସକଳସଙ୍ଖାଳି । ବଚନେ ପଛେ ନକହି ନେତ୍ରନୀଳ- ଜଳରୁହ ଥରେ ଉରୋଜରେ ଦିଅ ଢାଳି ରେ । ୧୦ । ତ୍ରିଲୋକଯାକ ଲାବଣ୍ୟ କରିଥିଲି କେତେ ପୁଣ୍ୟ ଏ ମୁଖଚନ୍ଦ୍ରରେ କଲି କେଳି । ତହୁଁ କେତେ ଗୁଣେ ବଳି ମୋର ଏ ନେତ୍ରଯୁଗଳୀ କରିଥିଲେ ତପ ନୋହେ କଳି ରେ । ଜୀବବନ୍ଧୁ । ଏଡ଼େ ଲଘେ ଭୋଗ କରେ ଚାହିଁ । ପୁଲୋମା- ପୁତ୍ରୀ କାମୁକ ନୟନ ସହସ୍ରଯାକ ଏ ଶିରୀ ତ ଦେଖି ପାରି ନାହିଁ ରେ ।୧୧। କି ଭାଗ୍ୟବନ୍ତ ମୋ କର ଦ୍ୱିଜେ ହିରଣ୍ୟଭୂଧର କେତେବାର ଦେଇଥିଲି ଦାନ । ଫିଠାଇ ରାଇକାହୁଣ୍ଡି ବୋଲି ସୁଧାକର ଗୁଣ୍ଡି ଭୋଗ କଲି ଏ ସୁନ୍ଦର ସ୍ତନ ରେ । ଜୀବବନ୍ଧୁ । କି ମଧୁର ଏ ତୋ ଦନ୍ତଚେଲ । ସୁଧା ରସେ ମୁଧାମତି ଦ୍ରାକ୍ଷାରେ କ୍ଷୀର ପ୍ରତୀତି ହୁଏ ଅନ୍ୟ କେ ଏହାର ତୁଲ ରେ ।୧୨। ରସମୟୀ ଏ ସମୟ ସମୁଚିତ ହୃଦାଶୟ ନିଜ ଅନୁଭବେ ଜାଣି

---

ଝଳ—କାନ୍ତି, କରକଳିକା ଆବଳୀ—ରନ୍ଧ୍ରରୁ ବାହାରୁଥିବା କିରଣସବୁ ।୮। ସବ୍ରୀଡ଼ —ସଲଜ୍ଜ; ଏ ରୁଚିର···ଓଜ—ସୁନ୍ଦର ପୁଷ୍ପକଢ଼ି ପରି ହୋଇଥିବା ଅଙ୍ଗୁଳି ଅଗରେ କୁଚଦ୍ୱୟର ମଧ୍ୟକୁ ସ୍ପର୍ଶ କରି ମୋର ମନବଳକୁ ବଢ଼ାଅ । ୧୦ । ନିର୍ବାହ— ସମ୍ପାଦନ, ନିଷ୍ପତ୍ତି; ଅନଳପସଉଭାଗ୍ୟସଂକଳପ—ପ୍ରଚୁର ସୁଖ ପାଇବାର ସଙ୍କଳ୍ପ, ଜଳରୁହ—ପଦ୍ମ । ୧୧ । ଏଡ଼େ ଲଘେ—ଏତେ ଶୀଘ୍ର, ପୁଲୋମାପୁତ୍ରୀକାମୁକ··· ଶଚୀଙ୍କ ପ୍ରତି ଅଭିଳାଷୀ ଇନ୍ଦ୍ରଙ୍କ ସହସ୍ର ସଂଖ୍ୟକ ଚକ୍ଷୁ ତୋର ଏ ଲାବଣ୍ୟ ଦେଖି ପାରି ନାହିଁ । ୧୨ । ହିରଣ୍ୟଭୂଧର—ସୁନାର ପର୍ବତ, ରାଇକାହୁଣ୍ଡି—କାଞ୍ଜି ଲାଗିଥିବା ଦଉଡ଼ିର ଗଣ୍ଡି, ସୁଧାକରଗୁଣ୍ଡି—କର୍ପୂରଚୂର୍ଣ୍ଣ, ଦନ୍ତଚେଲ—ଅଧର, ତୋ ଅଧରରୁ ଯେଉଁ ଅମୃତ ମୁଁ ଚାଖିଛି ତା ତୁଳନାରେ ପ୍ରକୃତ ସୁଧାରସରେ ( ଅମୃତ ରସରେ ) ମୋର ମୁଧାମତି ( ବୃଥା ବୁଦ୍ଧି ) ଜାତ ହୁଏ; ଅର୍ଥାତ୍ ପ୍ରକୃତରେ ଏହା

ଜାଣି । କୁସୁମବଶିଖସଖା ଋତୁ କଶଳୟ ଲେଖା ଜଣାକରେ କାହିଁ ଦେଲୁ ପାଣି ରେ । ଜୀବବନ୍ଧୁ । ଏହିଟି ବୋଲାଏ ଭକ୍ଷଧୂଳି । ପଲକ ଅର୍ଦ୍ଧେକେ ସାତ ଯେତେ ଧ୍ୱସ୍ତ ହୋଏ ସେତ ଶତଜନ୍ମେ ନ ପାଇବ ମିଳି ରେ । ୧୩ । ନ ପାର ପାଳି ମୋ କଥା ହସି ଯେ ନୁଆଉଁ ମଥା ହଜି ଯାଉଅଛୁ ମୋର ବୁଦ୍ଧି । ଭଲେ ଭରଜି ମରକ୍ତା ଯେବେ ପ୍ରଭୁ ପାଶେ ଭଜି ଥାଇ କାଳେ ନୋହି ଅପରାଧୀ ରେ । ଜୀବବନ୍ଧୁ । କପର ଜାଣିବ ତୋର ମନ । କେଉଁ ସେବା କେତେବେଳେ ଗୃହି ବୟସ୍ୟାମଣ୍ଡଳେ ସମ୍ପାଦିବ ଦିବ୍ୟ ଅବଧାନ ରେ । ୧୪ । ଚନ୍ଦ୍ରହାର ପ୍ରିୟସଖି କର କରେ ଚନ୍ଦ୍ରମୁଖି ବନ୍ଧିବ ହୃଦୟ ସ୍ଥଳେ ତୋତେ । ମଉଳମଣ୍ଡନଚମ୍ପା ଗଭା କଲେ ଅନୁକମ୍ପା ପାତ୍ର କର ଘେନିବୁ କି ଚିତ୍ତେ ରେ । ଜୀବବନ୍ଧୁ । ପ୍ରେମପଟ୍ଟତନ୍ତୁ ଗୁନ୍ଥା କର । ହୋଇ ପ୍ରମୋଦେ ମଗନ କୁତୁକେ ଧର ଲପନ କରିବ କି କଣ୍ଠଲଗ୍ନ ସର ରେ । ୧୫ । ତୁ ମୋତେ କପର ପରପାଳିବୁ ରେ କୃଶୋଦର ଜଣାକର ମୋ ଭରସା ପାଇ । ହେବ ପଦଶତପତ୍ରତଳେ କି ଅଳତା ଚିତ୍ର ଅବା ମଣିମଣ୍ଡିତଭଣ୍ଠାଇ ରେ । ଜୀବବନ୍ଧୁ । ହେବ କି ପାହାଡ଼ାବଳେ ବେଳେ । ପାହୁଡ଼ ବାଜଣି ବଳା ପଉଞ୍ଜି ମଞ୍ଜୁ ଶିଞ୍ଜୁଳା ତୁଲେ ମିଶିବ କି କୁତୂହଳେ ରେ । ୧୬ । ଅଦ୍ଭୁତ ସୁନ୍ଦର କଟୀତଟୀ କାଞ୍ଚୀକ୍ଷୁଦ୍ରଘଣ୍ଟି ପଟଳୀରେ କରିବୁ କି ଏକ । ତୋ ଲାଗି ଦୁକୂଳ ଭାଗ୍ୟ ପରମ୍ପରା ଭୋଗ ଯୋଗ୍ୟ ହେବ କି ରଜନୀବିବାଯାକ ରେ । ଜୀବବନ୍ଧୁ । ହେବ କି କାଞ୍ଚୁଳି ପୟୋଧରେ । ଧାରାଧରମାଳାଲୀଳା ଧରିବ କି ରେ କୋମଳା ଧରାଧରାଧିରାଜ ମୂର୍ଦ୍ଧରେ ରେ । ୧୭ । ମହିଳାମଣ୍ଡଳୀ ମଥାମଣି କି ଅଦ୍ଭୁତ କଥା

---

ଛଡ଼ା ଅନ୍ୟ ଅମୃତ ନାହିଁ ବୋଲି ମନେ ହୁଏ । ଦ୍ରାକ୍ଷାଫଳ କ୍ଷାର (ଲୁଣିଆ ଖାର) ପରି ବୋଧହୁଏ ।୧୩। କୁସୁମବଶିଖ···ଯେଉଁ ଅଧର କନ୍ଦର୍ପବନ୍ଧୁ ବସନ୍ତ ଋତୁର କଶଳୟ (ନୂତନ ପଲ୍ଲବ)ର କଣାକ ଅର୍ଥାତ୍ ଜୟକାର, ତହିଁରେ କାହିଁକି ପାଣି (ହସ୍ତ) ଦେଲୁ, ଅର୍ଥାତ୍ ଅଧରକୁ କାହିଁକି ହାତରେ ଲୁଚାଇଲୁ । ଏହାକୁ ଭକ୍ଷ ଧୂଳି ଅର୍ଥାତ୍ ଖାଇବା ପତ୍ରରେ ଧୂଳିଦେବା କହନ୍ତି । ଏହାଦ୍ୱାରା ଅର୍ଦ୍ଧନିମେଷରେ ଯେତେ ସାତ (ସୁଖ) ଧ୍ୱସ୍ତହୁଏ (ନଷ୍ଟହୁଏ) ତାହା ଶହେ ଜନ୍ମରେ ମିଳିବ ନାହିଁ । ୧୪ । ବୟସ୍ୟାମଣ୍ଡଳେ—ସଖୀମାନଙ୍କ ମଧ୍ୟରେ । ୧୫ । ଚନ୍ଦ୍ରହାର—ଏକପ୍ରକାର ହାର, ମଉଳମଣ୍ଡନ—ମସ୍ତକ ଭୂଷଣ, ଅନୁକମ୍ପାପାତ୍ର—କୃପାପାତ୍ର, ପ୍ରେମପଟ୍ଟ—ପ୍ରଣୟ ଚିତ୍ର, ତନ୍ତୁଗୁନ୍ଥାକର—ସୂତାରେ ଗୁନ୍ଥି, କରିବ କି କଣ୍ଠଲଗ୍ନସର—ଗଳାରେ ଲମ୍ବାଇ ଦେବ କି ! ୧୬ । ପଦଶତପତ୍ରତଳେ-ପାଦପଦ୍ମରେ ।୧୭। କାଞ୍ଚୀକ୍ଷୁଦ୍ରଘଣ୍ଟି ପଟଳୀରେ—ଅଣ୍ଟା ଚନ୍ଦ୍ରହାରରେ ଥିବା କ୍ଷୁଦ୍ର ଘଣ୍ଟିମାନଙ୍କ ମଧ୍ୟରେ । ଲାଗିଦୁକୂଳ—

ଗୋଟିଏ ପଦ୍ମରୁଅଛୁ ଭ୍ରମ । ନବନୀତ ପିଣ୍ଡୁଲାକୁ ଆଣି କୁହଇ ତୁଲାକୁ ଏପରି ତ ତୋ ଶ୍ରୀଅଙ୍ଗଦେଶ ରେ । ଜୀବବନ୍ଧୁ । ଛବି ଏଡ଼େ ଅବିବେକ ମାର । ତାହା ଅମଳ ଅଜ୍ଞାନ ବଶେ କଲେ ଆଲିଙ୍ଗନ ସରିଯିବ ସିନା ମୋ ସଂସାର ରେ ।୧୮। କଣ୍ଟିତମଧ୍ୟା ଗଭୀର କୁଚର ଚିବୁକେ ତୋର ମୃଗମଦ-ପଙ୍କରଚନ ଭୃଙ୍ଗୀ । ହେଲେ ସେ ଅବା ମୋ ଗୁରୁ ଶିଖାଇବ ପ୍ରସୂନରୁ ନିର୍ବାଧ ମରନ୍ଦଭୋଗଭଙ୍ଗୀ ରେ । ଜୀବବନ୍ଧୁ । ତୋ ସହଜ ପଙ୍କଜବାସକୁ । ଗଣୁଥିଲେ ସଚେତନେ ତୋ ଅଙ୍ଗ ସଙ୍ଗ ଯତନେ କରନ୍ତି ତାଠାରୁ ଅଭ୍ୟାସକୁ ରେ ।୧୯। ମୁଁ କାମଜାଠର ଶିଖୀ ସକାଶୁଁ ହେବାରୁ ଭୋଗୀ ଦେଖି ଏ ଲାବଣ୍ୟ ନବାମୃତ । ଆଖିରେ ଅଳପ ଗୃହିଁ ଦେଲେ ତୁ ମନ୍ଦାକ୍ଷେ ଲାଗି ରହି କୋଳେ ମୁଖ କରୁ ନତ ରେ । ଜୀବବନ୍ଧୁ । ଜର ଜର ଗୋଟିଯାକ ରସେ । ସ୍ମରଜ୍ୱର କମ୍ପମାନ ଶମ୍ପାର ତ ତୁ ସମାନ କରଜର ମୃଦୁଳ ସ୍ପରଶେ ରେ । ୨୦ । କନକ ପାରଦ ରସମସ୍ତ କରି କା ଲୋକେଶ ଗଢ଼ିର ନିର୍ବାହ କଲା ତୋର । ବରିଜଲେ ହେଲେ କୋଳେ ସମସ୍ତ ବାଞ୍ଛିତ ସ୍ଥଳେ ସ୍ଥିର ହେଉ ନାହିଁ ମୋର କର ରେ । ଜୀବବନ୍ଧୁ । କେଉଁ ଅଙ୍ଗେ ନ ଦେଲେ ଚୁମ୍ବନ । ଚୁମ୍ବ ବିନା କେତେବେଳେ ରହିବ ଜୀବ ନାଷ୍ଟଲେ କେତେ ଯୁଗେ ତୁଷ୍ଟ ହେବ ମନ ରେ ।୨୧। ଘନ-ଜଘନା ରେ ଘେନ ତେଡ଼େ ଧୀର ଚରନ୍ତନ ଶତପତ୍ର ପୁଷ୍ପ ଆଚରଣ । କୃତବୀର୍ଯ୍ୟ ସୁତ ଶେଷ ଶଙ୍କ ଏ ତିନୀଙ୍କ ବେଶ ଦେଇ ନୋହିଲୁ ଯା ମୋ ଶରଣ ରେ । ଜୀବବନ୍ଧୁ । ତୋ ଅଶ୍ଳେଷ ଚୁମ୍ବ ଦରଶନେ । ଦ୍ୱିବାହୁ ଏକ ବଦନ ଦ୍ୱିଲୋଚନବନ୍ତ ଜନ ପ୍ରସାଦ ଲଭିବ କେହି ମନେ ରେ ।୨୨।

---

ପିଣ୍ଡା ପାଟଶାଢ଼ୀ, ଧାରାଧରମାଳାଲୀଳା—ବର୍ଷାକାଳ ମେଘମାଳାର କ୍ରୀଡ଼ା, ଧରାଧରାଧିରାଜମୂର୍ଦ୍ଧରେ—ଉଚ୍ଚ ପର୍ବତ ମସ୍ତକରେ ( କୁଚରେ ) । ୧୮ । ନବନୀତ ପିଣ୍ଡୁଲା—ଲହୁଣୀରେ ତଆରି ପିଣ୍ଡୁଲା, ତୁଲାକୁ—ତୁଳନାକୁ, ସାଦୃଶ୍ୟକୁ; ଛବି—ଶୋଭା, ତାହା ଅମଳ···କାମବିହ୍ୱଳ ହୋଇ ଆଲିଙ୍ଗନ କଲେ । ୧୯ । କଣ୍ଟିତମଧ୍ୟା—କ୍ଷୀଣକଟି, ମୃଗମଦପଙ୍କ ରଚନଭୃଙ୍ଗୀ—ଚିବୁକରେ କସ୍ତୁରୀରେ ରଚିତ ହୋଇଥିବା ଭ୍ରମରୀ । ଭ୍ରମରୀ ଫୁଲରୁ ଯେଉଁ ରୀତିରେ ମରନ୍ଦ ( ମକରନ୍ଦ ମଧୁ ) ପାନ କରେ, ସହଜପଙ୍କଜବାସକୁ—ସ୍ୱାଭାବିକ ପଦ୍ମ ଗନ୍ଧକୁ ।୨୦। କାମଜାଠରଶିଖୀ—ଅନ୍ତରରେ ଥିବା ପ୍ରବଳ କାମଅଗ୍ନିରେ । ମନ୍ଦାକ୍ଷେ—ଲଜ୍ଜାରେ, ଶମ୍ପାର ତ ତୁ ସମାନ—ବିଦ୍ୟୁତ୍ ପରି; କରଜରମୃଦୁଳସ୍ପରଶେ—ନଖରେ ଧୀରସ୍ପର୍ଶ କରିବାଦ୍ୱାରା ।୨୧। କନକପାରଦ ରସମସ୍ତ କରି—ଅର୍ଥାତ୍ ସୁନା ଓ ପାରଦକୁ ଏକତ୍ର ତରଳାଇ, ଲୋକେଶ—ବ୍ରହ୍ମା । ୨୨ । ଘନଜଘନା—ସ୍ଥୂଳଜଙ୍ଘ ଯାହାର, ଚରନ୍ତନ—ଅତିପ୍ରାଚୀନ, ଶତପତ୍ରପୁଷ୍ପ—

ଜଳଜଜିତ୍ୱର ପାଣି ଧରି ଜଣାଉଛୁ ପୁଣି ପ୍ରବଳିତ ଅନଙ୍ଗ ଆହବେ । ମୋ ଶରୀରଭରି ବୁହା ମର୍ଦ୍ଦନ ପୀଡ଼ନ ସୁହା ଭଲି ବଳ ନ ପାଇବ ଯେବେ ରେ । ଜୀବବନ୍ଧୁ । ଖେଳିବୁ ମୋ ଉରସ୍ଥଳେ ରହି । ତୋ ନଖାଗ୍ର ଦନ୍ତପୀଡ଼ା ଶ୍ରୀଭୁଜ ନିବିଡ଼ଭିଡ଼ା ବୁଝିବା ମୁଁ ସହିବି କି ନାହିଁ ରେ । ୨୩ । ନ କରି ଲାଜେ ଖାତିର କ୍ଷଣେ କ୍ଷଣେ ତୁ ମାତିର ହରୁଥିବୁ ହୋଇ ରସଲୋଭୀ । ମଦମତ୍ତ ଭୃଙ୍ଗଜାତ ସ୍ୱପକ୍ଷ ସଙ୍ଘାତ ଜାତ ବାତପ୍ରକମ୍ପିତ ଗର୍ଭଶୋଭୀ ରେ । ଜୀବବନ୍ଧୁ । ପୂରିବ ଉଭୟ ମନୋରଥ । ନଥ ନଚନ ମନମଥ ନିରମ ବିଧାନ ବଢ଼ାଇବ ସୁଖ ସ୍ୱର୍ଗପଥ ରେ । ୨୪ । ତହୁଁ ମୁଁ କରେ ମୁକୁରେ ଦେଖାଇ ଦକ୍ଷିଣ କର ଅଗ୍ରେ ସ୍ତନଅଗ୍ରେ ଦଳୁଥିବ । ଦେଖିବୁ ସେକାଳେ ସାତ ପୁଲକାଳି କଣ୍ଟକିତ କପୋଳ ଦର୍ପଣଖଣ୍ଡ ଛବି ରେ । ଜୀବବନ୍ଧୁ । ଚାହିଁବୁ ସଲଜ୍ଜ ମନ୍ଦହସା । ଅପାଙ୍ଗ ନୟନ ଖୋସା ଖୋସାର ଦରଲହସା ଶୋଭା ହୋଇଥିବ ତହିଁ ମିଶା ରେ । ୨୫ । ଏଥିରେ ତୁ ଯେବେ ଶାନ୍ତ ହେବୁ ରେ କୁମୁଦକାନ୍ତମଣ୍ଡଳମଦଖଣ୍ଡନମୁଖି । ମୋ ବକ୍ଷମୁକ୍ତାହାର ବଲ୍ଲରି କରି ବାହାର ରହତ୍ତୁଉରୋଜ ଉପରେ ଯୋଖି ରେ । ଜୀବବନ୍ଧୁ । ନ ପଡ଼ୁ ପଛେ ମୋର ଅଙ୍କେ । ପର୍ଯ୍ୟଙ୍କବନ୍ଧରେ ବସି ଅନାୟାସେ ହସି ହସି ସ୍ମରବଳ ଦଳିବା ନିଃଶଙ୍କେ ରେ । ୨୬ । ଜାଣ ମୋ ପ୍ରାଣମିତରେ ତୋ ମରଜିରୁ ଇତରେ ସଂଚରିବା ସେବକ ମୁଁ ନୋହେ । ସୁଗୁଣ ଗ୍ରାହକଚିତ୍ତେ ବିଗୁରି ସେବାରେ ମୋତେ ରଖିଚୁ କେମନ୍ତେ ଅନୁଗ୍ରହେ

---

ବ୍ରହ୍ମା, କୃତବୀର୍ଯ୍ୟସୁତ—କାର୍ତ୍ତବୀର୍ଯ୍ୟ ( ସହସ୍ର ବାହୁବିଶିଷ୍ଟ ), ଶେଷ—ଅନନ୍ତ ଦେବ ( ସହସ୍ରମୁଖବିଶିଷ୍ଟ ), ଶକ୍ର—ଇନ୍ଦ୍ର, ( ସହସ୍ର ନେତ୍ରବିଶିଷ୍ଟ ), ବ୍ରହ୍ମା ମୋତେ ଏମାନଙ୍କ ପରି ସହସ୍ର ବାହୁ, ସହସ୍ର ମୁଖ ଓ ସହସ୍ର ଚକ୍ଷୁ ଦେଇ ନ ଥିବାରୁ ମୁଁ ଦୁଇବାହୁ, ଏକମୁଖ ଓ ଦୁଇ ଚକ୍ଷୁରେ ତୋର ଆଲିଙ୍ଗନ, ଚୁମ୍ବନ ଓ ଦର୍ଶନ କରି ଆଦୌ ହୃଦୟରେ ପ୍ରସାଦ ( ତୃପ୍ତି, ସନ୍ତୋଷ ) ଲଭ କରି ପାରୁ ନାହିଁ । ୨୩ । ଜଳଜଜିତ୍ୱରପାଣି—ପଦ୍ମକୁ ଜୟ କରିଥିବା ହାତ, ପ୍ରଜ୍ୱଳିତ ଅନଙ୍ଗଆହବେ —ପ୍ରବଳକାମଯୁଦ୍ଧରେ । ୨୪ । ମଦମତ୍ତ···ଉନ୍ମତ୍ତ ଭୃଙ୍ଗଜାତ ( ଭ୍ରମରସମୂହ ) ର ନିଜ ପକ୍ଷ ସଞ୍ଚାଳନରୁ ବାୟୁର ଆଘାତରେ ଗର୍ଭଶୋଭା କମ୍ପିତ ହେବାଭଳି ଜଣାଯାଉଥିବ, ଅର୍ଥାତ୍ ଧୀରେ ଧୀରେ ଜୁଡ଼ା କମ୍ପୁଥିବ । ମନମଥନିରମବିଧାନ— —କାମକ୍ରୀଡ଼ାବିଧି ( ଏଠାରେ ବିପରୀତ ବିଧି ବ୍ୟଙ୍ଗ୍ୟ ) । ୨୫ । ମୁକୁର—ଦର୍ପଣ, ସାତ—ସୁଖ, ପୁଲକାଳିକଣ୍ଟକିତ—ରୋମାଞ୍ଚିତ, କପୋଳ—ଗଣ୍ଡଦେଶ, ଖୋସା —ଖୋସିବା ବା ନିବେଶିବା କାର୍ଯ୍ୟ, ଖୋସା—ଜୁଡ଼ା ଦରଲହସା—ଅଳ୍ପ ଢିଲ ହୋଇଥିବା । ୨୬ । କୁମୁଦକାନ୍ତ···ଯାହାର ମୁଖ ଚନ୍ଦ୍ରମଣ୍ଡଳ ଗର୍ବ ଧ୍ୱଂସ

ରେ । ଜୀବବନ୍ଧୁ । ପ୍ରଭୁ ତୁହି ତତେ ଜଣା ତାହା । ସମସ୍ତମାନ ସେବାର ଜାଣି ସେବା କରିବାର ବିନା ମୁଁ ନ ଜାଣେ ଆନ ରାହା ରେ । ୨୭। ମଣ୍ଡି ତୋ ନିତମ୍ବେ ଅଙ୍କ ଅଧର ପଙ୍କିଲ କଙ୍କପତ୍ରରେ କୁରୁଳି କେଶପାଶ । ଷଟ୍ ପଞ୍ଚାଶତ ଦେଶପ୍ରଥିତ ପେଶଲ ବେଶ ସମୁଚିତ ମଣ୍ଡନ ବିନ୍ୟାସ ରେ ଜୀବବନ୍ଧୁ । ଜାଣଇ ନ ହୁଡ଼ି ଅଣୁମାତ୍ର । କୁସୁମୀ ଥାନ ଆଖିଆ ମଷିକା ମକରୀ ଚୁଆ ମୃଗମଦପତ୍ରଭଙ୍ଗ ରଚନ ରେ । ୨୮ । ବିବିଧ ଜାତି ପ୍ରସୂନ ରଚନ ମଣ୍ଡନମାନ ସଜାଡ଼ି ଜାଣଇ ଋତୁଭେଦେ । ବହଳ ଅଳତା-ଦ୍ରବବଲ୍ଲରୀ ଚନ୍ଦନପାଟବ ଦେଖାଇବି ଏ ସୁନ୍ଦର ପଦେ ରେ । ଜୀବବନ୍ଧୁ । ଉରୋଜ ଉଲ୍ଲାସ କ୍ରମ ଜାଣି । ସୁନୁଲି କସିଦାପଡ଼ା ଗାଇକାସିହା ସଜଡ଼ା ବିଧି ଜାଣିମାରେ ମୁଁ ବିଜ୍ଞାଣି ରେ । ୨୯ । କନକଦଳ ସୋଦର ବିଡ଼ିଆ ନାନା ପ୍ରକାର ଭିଙ୍ଗିବା ଭଙ୍ଗିରେ ମୋ ଗୁମାନ । ତୁହେଁ କଳପିବା ଗୀତ ପ୍ରବନ୍ଧ ରସ ରଚନ ଲେଖିବି ଯେନ ଥିବ ମାନସ ରେ । ଜୀବବନ୍ଧୁ । ସଙ୍ଗୀତ ସଙ୍ଗୀତ ହେବି ମୁହିଁ । ଅମରପାମର ଦୁଇ ଧେନୁ ଧେନାଇ ପାରଇ ପ୍ରଭୁ ତୁ ବଡ଼ାଇ କହୁ ନାହିଁ ରେ । ୩୦ । ପଚ୍ଛ ଢଳା ସମ ସମ ମଉଳି ଘନ ସୁଷମ ବରତୁଳ ଠାଣି ପାଣିବନ୍ତ । ପୃଥୁରୋମବୀଜ ରୋପି ମୃଗେନ୍ଦ୍ର ଜାଲିଆ ଲିପି ପ୍ରବଳବି ଯହିଁ ତୋର ସ୍ୱାନ୍ତ ରେ । ଜୀବବନ୍ଧୁ । କେତେକ କେତକୀ ଚମ୍ପା ଆଦି । ଯେଉଁ ପୁଷ୍ପ ଦଳେ ଫରମାସିବୁ ରମଣୀ-ବର ଲେଖିଥିବି ପ୍ରସଂସିବ ବାଦୀ ରେ । ୩୧ । କ୍ଷଣେ ରହ ଅକମ୍ପନେ

କରେ; ପର୍ଯ୍ୟଙ୍କବନ୍ଧ—ଏକପ୍ରକାର ରତିବନ୍ଧ । ୨୮ । ତୋ ନିତମ୍ବରେ ମୋ ଅଙ୍କକୁ ମଣ୍ଡି ଅର୍ଥାତ୍ ତୋତେ କୋଳରେ ବସାଇ; ଅଧରପଙ୍କିଲ—ଅଧରଦ୍ୱାରା ବୋଳା; କଙ୍କପତ୍ର—କେଶଶୋଭାବର୍ଦ୍ଧକ କଙ୍କପକ୍ଷୀର ପକ୍ଷ; କୁରୁଳି — ଚୂର୍ଣ୍ଣକୁନ୍ତଳ; ପେଶଲ — ସୁନ୍ଦର; କୁସୁମୀଥାନ — ଫୁଲ ପଡ଼ିଥିବା; ଆଖିଆ—ଏକପ୍ରକାର କାଞ୍ଚଳ । ୨୯ । ଚନ୍ଦନପାଟବ—ଚନ୍ଦନପୂର୍ଣତା; ସୁନୁଲିକସିଦାପଡ଼ା—ସୁନେଲି ରଙ୍ଗର ଫୁଲ ବୁଣା ଜରିକାମ ହୋଇଥିବା; ଗାଇକାସିହା—କାଞ୍ଚୁଲି ସିଲାଇ କରିବା; ବିଜ୍ଞାଣି —କାରିଗର । ୩୦ । କନକଦଳସୋଦର—ସୁନାପତ୍ର ପରି ହଳଦିଆ; ବିଡ଼ିଆ—ପାନ; କଳପିବା—କଳ୍ପନା କରିବା; ସଙ୍ଗୀତ ସଙ୍ଗୀ—ସଙ୍ଗୀତର ସାଥୀ; ଦୁଇ ଅମର ପାମର — ସଂସ୍କୃତ ଓ ଦେଶଭାଷା । ୩୧ । ପଚ୍ଛ ଢଳା—ପଚ୍ଛକୁ ଢଳିପଡ଼ିଥିବା; ସମ ମଉଳି—ମୁଣ୍ଡକୁ ସମାନ ହୋଇଥିବା; ପୃଥୁରୋମବୀଜ—ମାଛମଞ୍ଜିଆ ( ମୂଳ ସରୁଆ); ମୃଗେନ୍ଦ୍ର ଜାଲିଆ—ସିଂହଝୁଲିଆ ( ମଝି ସରୁଆ ) । ଲିପି—ଅକ୍ଷର; ତୋର ସ୍ୱାନ୍ତ—ତୋ ନିଜ ମନ; ଅର୍ଥାତ୍ ମୁଁ ନାନାପ୍ରକାର ଫୁଲଝରା ଢଆର

ଏ ସୁନ୍ଦରେନ୍ଦୁ ଲପନେ ଚୁମ୍ବଇ ମୁଁ ଲକ୍ଷେ ଗଣି ଗଣି । ସୁଧାରୁ ଲାଗେ ମଧୁର ପୂରଇ ନାହିଁ ଉଦର ଏ କି ସୁନ୍ଦ୍ର ଖଞ୍ଜିଅଛୁ ପୁଣି ରେ । ଜୀବବନ୍ଧୁ । ଯାହା ହେଉଅଛି ମନ ଏଣୁ । ମନସିକୋଲ୍ଲାସ ନାମ ଏ ଛାନ୍ଦ ରସିକା ଶ୍ୟାମ ଇନ୍ଦୀବରନେତ୍ରା ତୁ ତ ଜାଣୁ ରେ । ୩୨ । ବନମାଲା ବିରାଜିତ ବୃଷଭାନୁଭବାୟତ୍ତ ଚନ୍ଦ୍ରକଲାବର୍ଣ୍ୟବେଶଶାଳୀ । ଭବଭୟ-ନିବାରଣ ଧରଣୀ ଧରଧାରଣ ପ୍ରଭୋ ସଦାଶିବ ବନମାଲୀ ହେ । ଜୀବବନ୍ଧୁ । ଦୁହିଙ୍କର ଗୁରୁ ଶ୍ରୀଚରଣ । ଜଳନ୍ତର ହରିହସ୍ତ ରାମଚନ୍ଦ୍ର ଶ୍ଳୋଚିବାସ୍ତୁ । ଦେବର ହୋଇବେ କି ଶରଣ ହେ । ୩୩ ।

---

## ଷୋଡ଼ଶ ଛାନ୍ଦ

### ରାଗ—କୃଷ୍ଣକଳା

### ( ନାୟକର ବିଦେଶରୁ ପତ୍ରଲେଖନ )

ଚିର ପ୍ରବାସରେ ରହିବାରୁ ନାଗରିକ । ତୀରପ୍ରହାରେ ମଦନ ହରିଲା ବିବେକ । ଦିନୁ ଦିନୁ ତନୁ ହୋଇବାରୁ ଅତି କ୍ଷୀଣ । ତନୂଦରୀ ଶ୍ରୀଛାମୁକୁ ଲେଖଇ ଜଣାଣ । ୧ । ଚିବୁକ ଚୁମ୍ବନ ଗାଢ଼ ଆଶ୍ଳେଷ ସଂଖୋଳା । ଦିବ୍ୟ ଅବଧାନକୁ ଆସିବ ପ୍ରେମଶୀଳା ଅରଜିବା ପାଇଁ ନାନା ଦୁଃସହ ବେଦନା । ବରଜିଲି ତୋତେ ଯେଉଁ ଦିନୁ ଚନ୍ଦ୍ରାନନା । ୨ । ଲଭିବାର ଦୁଃଖରାଶି ଓର ନ ଲେଖିଲି । କି ଶୋଗ୍ୟ ତୁ ପଢ଼ି ଶୋକେ ସନ୍ଦିଗ୍ଧ ହେବୁ ବୋଲି । ତୁ ସାର ହୋଇ ନ ଥିବା ସକାଶୁଁ ମୋ ପାଖେ ।

---

କର ଓ ଅକ୍ଷର ଲେଖି ଜାଣେ । ୩୨ । ସୁନ୍ଦରେନ୍ଦୁଲପନେ—ସୁନ୍ଦରଚନ୍ଦ୍ର ମୁଖରେ । ୩୩ । ବନମାଲାବିରାଜିତ—(କୃଷ୍ଣ ) ବନଫୁଲ ମାଳାରେ ଶୋଭିତ, ( ଶିବ ) କୈଳାସର ବନସମୂହରେ ଶୋଭିତ । ବୃଷଭାନୁଭବାୟତ୍ତ— ( କୃଷ୍ଣ ) ରାଧିକାଙ୍କ ଅଧୀନ, (ଶିବ ) ବୃଷଭର ସାମର୍ଥ୍ୟର ଅଧୀନ; ଚନ୍ଦ୍ରକଲାବର୍ଣ୍ୟ ବେଶଶାଳୀ—( କୃଷ୍ଣ ) ମୟୂରଚନ୍ଦ୍ରିକାର ଶୋଭାରେ ସୁନ୍ଦର, (ଶିବ) ଚନ୍ଦ୍ରଙ୍କର ସୌନ୍ଦର୍ଯ୍ୟ-ଦ୍ୱାରା ସୁନ୍ଦର; ଭବଭୟନିବାରଣ—(ଉଭୟ) ସଂସାରର ଜନ୍ମଦୁଃଖ ନିବାରକ ଅର୍ଥାତ୍ ମୁକ୍ତିଦାତା, ଧରଣୀଧରଧାରଣ—(କୃଷ୍ଣ) ଗୋବର୍ଦ୍ଧନଧାରୀ, ( ଶିବ ) ସର୍ପଭୂଷଣ; ଜଳନ୍ତରହରିହସ୍ତ—ଜଳନ୍ତରର ଇନ୍ଦ୍ର ବା ରାଜା ।

---

ଷୋଡ଼ଶ ଛାନ୍ଦ

୧ । ତନୂଦରୀ—କ୍ଷୀଣୋଦରୀ । ୩ । ତୁ ସାର ହୋଇ ନ ଥିବା ସକାଶୁ —

ପୂଷାରଠାରୁ ମୋ ଭ୍ରାନ୍ତି ତୁଷାରମୟୂଖେ । ୩ । ମାରୁତ ନ ବୋଲି ତା କରକୁ ବଡ଼ଲୋକେ । ମଣ୍ଟଚ ବୋଲନ୍ତି ସତେ କେଉଁ ଅବିବେକେ । ସ୍ୟନ୍ଦନଚରଣ ଗୃରୁ ନିତମ୍ବବିତ ରେ । ଚନ୍ଦନର ବନ୍ଦନମୁଁ ନ କଲି ଭ୍ରାନ୍ତିରେ । ୪ । କାଳପାଶ ଘେନି ହୋଏ ମରୁତ ତ କାଳ । କେହ୍ନ ନ ବୋଲେ ଏ ମନ୍ଦ ମରୁ ତତକାଳ । ସ୍ତବକିତ ମଞ୍ଜୁଷାରେ ନବ କିଶଳୟ ନେବ କି ପରାଣ ପର ଜାତ କରେ ଭୟ । ୫ । ତୋ ଗିର ସ୍ମରଣୁଁ ସ୍ନେହ ନାହିଁ କୀରବରେ । କର୍ଣ୍ଣେ ବଜ୍ରବୁଦ୍ଧି ହୋଏ ଶୁଣି ପିକବରେ । ମନ୍ତ୍ର ନାଶ ନୋହିବାରୁ ଅନିଷ୍ଟଶଙ୍କାର । ଭ୍ରମସିଦ୍ଧ ହେତୁ ହେଲି ଭ୍ରମସି-ଝଙ୍କାର । ୬ । ଆହା ରେ ରୁଚିରଦେହା ତାଙ୍କ ବିନା କେବେ । ଆହାରେ ରୁଚି ଥିବାର ନ ଜାଣଇ ଲବେ । ମନ୍ମାସାର ତ ଅସାର ହେଲାନି ବିଙ୍କଲେ । ସରସ କଞ୍ଜହିଁ ବହ୍ନି ନୋହେ ହୃଦସ୍ଥଳେ । ୭ । ଜୀବ ଯିବ ବୋଲି ଚିନ୍ତା ନାହିଁ ଚିତ୍ତେ ମୋର । ଜୀବଂଜୀବ ମୋ ନେବ ତୋ ମୁଖ କଳାକର । ତାହା ଦରଶନ ବିନା ମାରିବାକୁ ମୋତେ । ଯାହା ଦରପଣ ମାର ଦେଖାଇ ନିରତେ । ୮ । ବିଷାଇ ତୋ ମାର୍ଦ୍ଦବ ଶ୍ରୀଅଙ୍ଗସ୍ମୃତ ଗରେ । ସାର ଦେଲାନିଟି କୋଟି ଶରପ୍ରୟୋଗରେ । ବର୍ଣ୍ଣିବଟି କେହ୍ନ ରେ ବିପଞ୍ଚୀକ୍ୱଣା ବାଣୀ । ସଞ୍ଚି ରେଖ ବିରଞ୍ଚି କି ଦଣ୍ଡ ଦେଲା ଆଣି । ୯ । ନିରତେ ମୋ ହୃଦ ରଙ୍ଗସ୍ଥଳୀ ମଧ୍ୟ ରହି । ନାଚିବାରୁ ପାଚିବା ରୁଚକସ୍ତନା ଭୁହି ।

---

ରୁ ହିଁର ହୋଇ ମୋ ସାଙ୍ଗରେ ନ ଥିବାରୁ । ପୂଷା—ସୂର୍ଯ୍ୟ, ତୁଷାରମୟୂଖେ—ଚନ୍ଦ୍ରଠାରେ । ୪ । ମାରୁତ—ମାରୁଅଛି ବା ମାରଣା, କର—କିରଣ, ମଣ୍ଟଚ—କିରଣ, ସ୍ୟନ୍ଦନଚରଣ ଗୃରୁ ନିତମ୍ବବିତରେ—ହେ ରଥଚକ୍ରପରି ମନୋହର ନିତମ୍ବ ମୁକ୍ତା । ୫ । କାଳପାଶ—ପ୍ରାଣବିନାଶକ ପାଶ, ମରୁତ ତ କାଳ—ପବନ ପ୍ରତ୍ୟକ୍ଷ ଯମ ପରି; କେହ୍ନ···କେହ୍ନ କହେ ନାହିଁ; "ଏ ମନ୍ଦ ତତ୍କାଳ ( ସାଙ୍ଗେ ସାଙ୍ଗେ ) ମରୁ ।" ସ୍ତବକିତ ମଞ୍ଜୁଷା—ପେନ୍ଥା ପେନ୍ଥା ହୋଇଥିବା ଫୁଲକଡ଼ି; କିଶଳୟ—ନୂଆପତ୍ର । ୬ । କୀରବରେ—ଶ୍ରେଷ୍ଠ ଶୁକଠାରେ; ପିକବରେ—କୋକିଳଠାରେ । ଭ୍ରମସିଦ୍ଧ ହେତୁ—ଭ୍ରାନ୍ତିପୂର୍ଣ୍ଣ ଧାରଣାର କାରଣ । ୭ । ରୁଚିରଦେହା—ସୁନ୍ଦରୀ; ଆହାରେ ରୁଚି—ଖାଦ୍ୟରେ ଅଭିଳାଷ; ମନ୍ମାସାର—ଅନ୍ତଃକରଣଶକ୍ତି; ଅସାର—ଦୁର୍ବଳ; କଞ୍ଜ—ପଦ୍ମ । ୮ । ଜୀବଂଜୀବ—ଚକୋର; କଳାକର—ଚନ୍ଦ୍ର; ଦରପଣ—ଦର୍ପଣ; ମାର—କନ୍ଦର୍ପ । ୯ । ବିଷାଇ—ବିଷଲିପ୍ତ କରାଇ, ମାର୍ଦ୍ଦବ ଶ୍ରୀଅଙ୍ଗସ୍ମୃତ ଗରେ—କୋମଳତାପୂର୍ଣ୍ଣ ସୁନ୍ଦର ଅଙ୍ଗରୁ ଜନିତ ବିଷରେ । ବିପଞ୍ଚୀକ୍ୱଣାବାଣୀ—ବୀଣା-କ୍ୱଣାବଚନା ବିରଞ୍ଚି—ବ୍ରହ୍ମା । ୧୦ । ପାଚିବା ରୁଚକସ୍ତନା—ପାଚିଲା ଡାଳିମ୍ବଫଳ ପରି

ତୋ ଲାବଣ୍ୟ ବିନା ଆନ୍ୟ ଲିଭର ନ ଦିଶେ । କି ମୋହନମନ୍ତ୍ର ସିନ୍ଧୁ ଭିତରେ ନ ଦିଶେ ।୧୦। ନୟନ ମୁଦିଲେ ଦିଶୁ ମୋ ଅନ୍ତଃକରଣେ । ଗୁହିଁଲେ ଚରିତ ଦିଶୁ ହରିତବରଣେ । ପ୍ରିୟ ଆଳୀ ଜଣେ ମାନ ସମୀପେ ରୁହାଇ । ଯାଇ ଜାଲ ଯବନିକାପାଶେ ଉଭା ହୋଇ ।୧୧। କୁସୁମମଣ୍ଡପେ ମୁଁ ଏକାନ୍ତେ ଥିବା ଜାଣି । ନ ଜାଣିଲା ହୋଇ କହିବାର ରସ ବାଣୀ । ଘେସାଇ ସଖୀଙ୍କ କରିବାର ପରିହାସ । ମିଶାଇ ତହିଁରେ ମୁଁ ଶୁଣିବାଭଳି ହାସ । ୧୨ । ମଞ୍ଜୁଆଡ ବନ୍ଧୁ ରାଗମଞ୍ଜୁଳ ଅଙ୍ଗୁଳି । ଗଳାଇ ପରଦା ଚକ୍ର କରାଇବା କେଳି । କେତେ ଉଚ୍ଚସ୍ୱରେ କହୁଚ ମା କଥା ବୋଲି । ଜାଲମାର୍ଗେ ଅନାଇଁ ନଗ୍ନର ରୁଚିରୁ ଚଲ୍ଲୀ । ୧୩ । ଫିଙ୍ଗି ମୋ ବଦନେ ନେତ୍ର ଇନ୍ଦୀବରବର । ଅମନ୍ଦ କନ୍ଦର୍ପ ମନ୍ଦସ୍ମିତ ବିହିବାର । କହ କହ ସଖି କେହି ନାହାନ୍ତି ତ ବୋଲି । ସଖୀଙ୍କ ଦେବାର ଶାଢ଼ୀ-ବାଡ଼ଦଗେ ପେଲି । ୧୪ । ପୁଣି ସବୁ ସଖୀଙ୍କି ଡକାଇ କରି ସଭା । କର-କଞ୍ଜ ଖଞ୍ଜି ଜନମାଇ ବୀଣାଶୋଭା । ଝରାଇ ସୁବର୍ଣ୍ଣ କର୍ଣ୍ଣସୁଧା ଝରିବାର । କଳନ୍ତି ଗାଇମା ଶିରୀ ଗ୍ରେଶ୍ରୀ କରିବାର ।୧୫। ମୁଁ ମିଳୁ ମନ୍ଦାକ୍ଷେ ହସି ରସନା କାମୋଡ଼ି । ରସନା ବଜାଇ ଡଳେ ବିପଞ୍ଚୀ କଚୁଡ଼ି । ପଳାଇ ଯିବାର ମଦ କଳହଂସ ପରି । ଦେଲା ପରି ମୋ ନୟନେ ଘନସାର ଚୂରି । ୧୬ । ନେବାଅଞ୍ଚଳେ ଗୁହିଁ ପରକାଶି ଦର ସ୍ମିତ । ଏ ଜୀବ ଥିବାରେ କି ପାସୋରିପାରେ ଶତ । ଚରମାଦ୍ରି ଚୂଳକୁ ଚୁମ୍ବନ୍ତେ କରମାଳୀ ପେଷି ବିଚକିଳକଳିକୁଳେ କରମାଳି । ୧୭ । ଭୃଙ୍ଗ ଝରିରେ ମିଶାଇ ପୁଷ୍ପଚୟ ତୋଷି । ହେଲ ବାର ନ ଘେନିବେ ବୋଲି ଅଭ ଭାଷି । ସେ ଇଙ୍ଗିତ ଭଙ୍ଗି ଶୁଭାଙ୍ଗୀର ତରକଇ । ଅଧ ଉର୍ଦ୍ଧ୍ୱେ ସାତଗୋଟି ପଙ୍କଜ

---

ସ୍ତନ ଯାହାର । ୧୧ । ଜାଲ ଯବନିକା—ଝାଲର ପରଦା । ୧୨ । ରସବାଣୀ —ରସପୂର୍ଣ୍ଣ କଥା । ୧୩ । ରୁଚିରୁଚଲ୍ଲୀ—ସୁନ୍ଦର ଭ୍ରୂଲତା । ୧୪ । ନେତ୍ର-ଇନ୍ଦୀବରବର—ସୁନ୍ଦର ନେତ୍ରରୂପ ନୀଳପଦ୍ମ । ଶାଢ଼ୀବାଡ଼ ଦଗେ—ପରଦା ଆଡ଼କୁ । ୧୫ । କରକଞ୍ଜଖଞ୍ଜି ଜନମାଇ ବୀଣାଶୋଭା—ହସ୍ତପଦ୍ମରେ ବୀଣା ଧରି । ୧୬ । ମନ୍ଦାକ୍ଷେ—ଲଜ୍ଜାରେ, ରସନା—ଜିହ୍ୱା ଓ କଟିଭୂଷଣ କାଞ୍ଚୀଦାମ, ଡଳେ—ବନ୍ଧଣାରେ । ବିପଞ୍ଚୀ—ବୀଣା, ଘନସାର—କର୍ପୂର ୧୭ । ଚରମାଦ୍ରି ଚୂଳକୁ—ଅସ୍ତପର୍ବତ ଶିଖରକୁ, କରମାଳୀ ସୂର୍ଯ୍ୟ ଓ ହାତରେ ଧରିଥିବା ମାଳା, ବିଚକିଳକଳିକୁଳେ—ମଲ୍ଲୀଫୁଲ କଢ଼ିମାନଙ୍କରେ । ୧୮ । ଭୃଙ୍ଗ-ଝରି—ବଡ଼ ବଡ଼ ଫୁଲତୋଡ଼ା, ହେଲ ବାର ନ ଘେନିବେ—ମୁଁ ( ଗୃହିଦନ ) ପୃଥକ୍ ହେଲି; ସାତଗୋଟି ପଙ୍କଜ—ଏକ ମୁଖ, ଦୁଇ କର, ପାଦ ଓ ସ୍ତନ

ରଖାଇ । ୧୮ । ତଳକୁ ରହାଇ ତହିଁ ଯେଉଁ ଦୁଇ ଗୋଟି । ଗୋଟି ଗୋଟି କରେ ଚୁମ୍ବ ଦିଏ କୋଟି କୋଟି । ଦିନେ ଦିନେ ଦିନାନ୍ତରେ ଅଜନମ-ସୁଖୀ । ପରିଜନ ବିନା ମୁଁ ଏକାନ୍ତେ ଥିବା ଦେଖି । ୧୯ । ସ୍ନେହସ୍ରୋତେ ଭସିବା ମାନସ ନ ସମ୍ଭାଳି । କରାଇ ଅଧରେ ଜ୍ଞାନହକା ହାସ କେଳି । କମ୍ପାଇ ତାଙ୍କ ମୋତଚୁମ୍ବା ଅପ୍ରକଟେ । ଝମ୍ପାଇ ଶ୍ରୁତିକି ଲୋଳ ନେତ୍ରଖଞ୍ଜରିଟେ । ୨୦ । ଶ୍ରବଣେ କଣ୍ଟୁ କହିବା କପଟରେ ଅସୁ । ସ୍ନେହରେ ମୋ ଗଣ୍ଡେ ଚୁମ୍ବକଦମ୍ବ ବରଷୁ । ଧନ ତୋ ଏ ଅବଧାନ ଭାବିଲି ଉତ୍ତରୁ । ନ ଫାଟେ ଯା ଛାତି ଏ ନିରାଟ ବଜ୍ରଠାରୁ ।୨୧। ଇନ୍ଦ୍ରହିଁ ହେଲେ ଏହାକୁ ନିଜାଙ୍କେ ନ କରେ । ଶତର ଚିରବିରହ ସହିବା ଭୟରେ । ପୂର୍ବ ଶୁଦ୍ଧାନ୍ତ ପ୍ରାସାଦେ କୁହୁକଣାନନେ । ଉଭା ହୋଇଥିଲୁ ନୀଳ ଚେଳ ପିନ୍ଧି ଦିନେ । ୨୨ । ମସାଲ ପ୍ରଦୀପ କିଛି ନ ଥିଲା ହାଜର । ମୁଁ ମଧ୍ୟ ମଣ୍ଡପେ ଥିଲି ପଡ଼ିଲା ନଜର । ତୋ ମୁଖମଣ୍ଡଳ ବୋଲି ନୋହିଲା ବିବେକ । ସେ ନିଶାରେ କଲି ରାକା ବ୍ୟବହାର ଯାକ । ୨୩ । ତମମୁଖ ଉଚ୍ଛିଷ୍ଟ ସମାନ କଲେ ଧେନି । ବିମ୍ବପ୍ରତି ବିମ୍ବାଧରୀ ହୋଇଲୁ ମାନିନୀ । ଗିରି ମାଡ଼ିପଡ଼ି ନାଡ଼ି ଛାଡ଼ି ଗଲା ପରି । ଗିରିଜେମାବର-ପର ଶରେ ଗଲି ସରି । ୨୪ । ଜଣାଇଲି ଚିବୁକରେ କରନ୍ୟାସ କରି । ତୁ ମୋ ଧନୀ ପରି ସୁନାଗୋରି ସୁକୁମାରି । ଦାସୀମାନଙ୍କରେ ଜଣେ ମୁଁ ପରି ତୋହର । ଭସିଯିବି ସିନା ହେଲେ କରୁଣାନ୍ତ ହର । ୨୫ । ମୁଁ ତୋ ପଦକଞ୍ଜ ଅଳିକିତ ଚିରକିରୀ । ତୁ ମୋ ମଙ୍ଗଳ ଭୂଷଣ ଚମ୍ପାଝରୀ ପରି । ତଳକୁ ଅନାଇ ନ ଗୃହ୍ଣୁଁ ଯାହା ମୋତେ । ନୀଳକୁନ୍ତଳା ମୋ ଭାଗ୍ୟମୂଳ କେ ଜଗତେ । ୨୬ । ଶୁଣି ଗୁଣବତୀ ଗେଲେ ଗୁମାନ ଛାଡ଼ିଲୁ । ପୁଣି ହସି ସ୍ତନଯୁଗେ ଜଡ଼ାଇ ଭିଡ଼ିଲୁ । ପ୍ରସାଦ ମୋ ବିବଶ ମନକୁ ରଖାଇଲୁ । ପ୍ରାସାଦେ ମୁଁ ସିନା ଥିଲି ବୋଲି ବୁଝାଇଲୁ । ୨୭ । ବଡ଼ ସାର

---

ସଦୃଶ । ୧୯ । ପରିଜନ—ଭୃତ୍ୟାଦି ଅନୁଚର । ୨୧ । ଚୁମ୍ବକଦମ୍ବ—ଚୁମ୍ବନ-ସମୂହ, ନିରାଟ—ନିଷ୍ଠୁର, କର୍କଶ । ୨୨ । ଏହାକୁ—( ଏଠାରେ ହୃଦୟକୁ ) । ପୂର୍ବଶୁଦ୍ଧାନ୍ତ ପ୍ରାସାଦେ—ପୁରୁଣା ଅନ୍ତଃପୁର କୋଠାରେ, କୁହୁକଣାନନେ—ଅମାବାସ୍ୟାର ସନ୍ଧ୍ୟାବେଳେ, ନୀଳଚେଳ—ନେଳିଆ ଲୁଗା । ୨୩ । ରାକା—ପୂର୍ଣ୍ଣିମା ରାତି, ତୋ ମୁଖ ଚନ୍ଦ୍ରପରି ହୋଇ ଅମାବାସ୍ୟା ଅନ୍ଧକାର ଦୂରକରି ଦେବାରୁ । ୨୪ । ତମମୁଖ ଉଚ୍ଛିଷ୍ଟ—ରାହୁ ମୁହଁର ଅଇଁଠା—ଚନ୍ଦ୍ର; ଗିରିଜେମା-ବରପର—ଶିବଶତ୍ରୁ କନ୍ଦର୍ପ । ୨୫ । କରୁଣାନ୍ତ ହର—ନିର୍ଦ୍ଦୟତା ଦୂର କର । ୨୭ । ପ୍ରସାଦୁଁ—ଅନୁଗ୍ରହକରି, ରଖାଇଲୁ—ରଞ୍ଜାଇଲୁ, ପ୍ରାସାଦେ—କୋଠାରେ ।

ବଡ଼ଘରେ ବରଷାର କାଳେ । ବସିଥିଲୁ ଗବାକ୍ଷ ସମୀପେ ମୋର କୋଟଳେ । ପରବୃନ୍ଦ ସରିତଲହରୀ ଦୂରେ ଚାହିଁ । ଏମନ୍ତ ଭାଷିଲୁ ପରିଣତ ଚନ୍ଦ୍ରମୁଖୀଁ । ୨୮ । ତୀରତରୁମାନଙ୍କର ସାର ନେବ ଧନୀ । ମୁଁ ବୋଇଲି ଅନ୍ତରୁ ତୁ ପେଷିଅ ଭାବିନୀ । ଚତୁରୀ ତହିଁକି ହସି କହିବା ଭାରତୀ । କତୁର ପକାଉଛୁ ମୋ ଅନାଦରେ ଧୂର୍ତ୍ତ । ୨୯ । ଦିନେ ସ୍ମରବଶେ କରକଞ୍ଜ ଯା ଧଇଲି । ଅଧରେ ମୋହପର ହେବୁ ଛଇଳା ବୋଇଲି । ତହିଁକି ଭାଷିଲୁ ହସି ଭରେ କର ଡାଡ଼ି । ଦଶନାନ୍ତେ ରସନା ପଲ୍ଲବାଞ୍ଚଳେ ଭିଡ଼ି । ୩୦ । ମେଧାରେ ଧିଷଣ ବଳେ ବାଲୀରୂପେ କାମ । ସଙ୍ଗୀତେ ଗନ୍ଧର୍ବ କ୍ଷମାଗୁଣେ କ୍ଷମୋପମ । ମୋ ଛାର କିଶୋରୀ ତୁମ୍ଭପରି କେହି ହେବ । ଏତେ କହି ଖେଳିଲୁ ମୋ ଛାତିରେ ବାଜିବ । ୩୧ । ହୋଇଗଲା ବିରତ ମଞ୍ଜୀର ମଞ୍ଜୁରବ । ମେଖଳା କିଙ୍କିଣୀ କଲା ଶ୍ରବଣ ଉତ୍ସବ । ମେରୁଯୁଗ କମ୍ପିଲା ତଳକୁ କରି ଚୂଳ । ବିଷ୍ଣୁପଦେ ଲମ୍ବି ମନ୍ଦାକିନୀ ହେଲା ଲୋଳ ।୩୨ । ଶଙ୍ଖ ଶିଖେ ଶଶୀ ଶଶୀ ଦୁଇ ପାଖେ ରହି । କମ୍ପିଲେ ଭାର୍ଗବ କବି ତରଳତା ବହି । ଝଲକା ମୋତିରେ କରି ଲବଳୀ ବିଶ୍ୱାସ । ଝାମ୍ପି ଫେରିଲା ଖଞ୍ଜନ ଅଗେ ଚାହିଁ ପାଶ । ୩୩ । ଚାମୀକର କର ଚଞ୍ଚୁପୁଟରେ ଲବଳୀ । ଧରି ପ୍ରମୋଦରେ ତାକୁ ଖେଳାଇଲା ଦୋଳି । ଝାମ୍ପି ନ ପାରିଲା ପକ୍ୱବିମ୍ବ ତାହା ତଳୁ । ଛାଡ଼ି ନ ପାରିଲା ଅଶା ଲବଳୀ କବଳୁ । ୩୪ । ବିପରୀତ କାଳ ହୋଇବାରୁ

---

୨୮ । ବଡ଼ସାର ବଡ଼ଘରେ—ଅତ୍ୟୁନ୍ନତ କୋଠାରେ, ଗବାକ୍ଷ—ଝରକା, ପରବୃନ୍ଦସରିତଲହରୀ—ବଢ଼ିଥିବା ନଈର ଢେଉ । ୨୯ । ଧନୀ—ନଦୀ, ଭାବିନୀ—ହେ ରମଣି, ବୋଇଲି—ତୋ କହିବା ଧାଡ଼ିଟିକୁ ଶେଷଆଡ଼ୁ ପଢ଼ 'ନଧୂବନେରସ' ଅଧରେ ମୋହ ପର ହେବୁ—ପୁରୁଷାୟିତ ରତି ପ୍ରଦାନ କରିବୁ, ଦଶନାନ୍ତେ··· ···ଦାନ୍ତରେ ଓଠ କାମୁଡ଼ି । ୩୧ । ମେଧାରେ—ବୁଦ୍ଧିରେ, ଧିଷଣ—ବୃହସ୍ପତି, ବାଲୀ—ମର୍କଟରାଜ, ରୂପେ କାମ—ସୌନ୍ଦର୍ଯ୍ୟରେ କନ୍ଦର୍ପପରି, କ୍ଷମୋପମ—ପୃଥିବୀ ପରି । ୩୨ । ମଞ୍ଜୀର—ନୂପୁର, ମଞ୍ଜୁରବ—ମନୋହର ଧ୍ୱନି, ମେଖଳା-କିଙ୍କିଣୀ—କଟୀ ଅଲଙ୍କାରର ଘୁଙ୍ଗୁର, ବିଷ୍ଣୁପଦ—ଆକାଶ, ଶୂନ୍ୟ ମନ୍ଦାକିନୀ—ସ୍ୱର୍ଗଗଙ୍ଗା ଓ ହାର, ଲୋଳ—ଚଞ୍ଚଳ ।୩୩। ଶଙ୍ଖଶିଖେ ଶଶୀ—ଗ୍ରୀବାରୂପ ଶଙ୍ଖ ( କମ୍ବୁ ) ଉପରେ, ମୁଖରୂପ ଶଶୀ ( ଚନ୍ଦ୍ର ), ଶଶୀ ଦୁଇ ପାଖରେ ( ମୁଖ ଦୁଇ ପାଖରେ ) ଭାର୍ଗବ କବି—ଶୁକ୍ର ସୂର୍ଯ୍ୟ ରୂପୀ କର୍ଣ୍ଣ ଭୂଷଣ ତରଳତା ବହି ଚଞ୍ଚଳ ହୋଇ କମ୍ପିଲେ । ଝଲକା ମୋତିରେ—କାନଫୁଲରେ ଲାଗିଥିବା ମୁକ୍ତାରେ, ଲବଳୀ—ନରକୋଳି, ଖଞ୍ଜନ—ନୟନରୂପ ଖଞ୍ଜନ ପକ୍ଷୀ, ପାଶ—(ଏଠାରେ) କର୍ଣ୍ଣରୂପ । ୩୪ । ଚାମୀକରକର ଚଞ୍ଚୁପୁଟରେ—ସୁବର୍ଣ୍ଣ ତେଜୋମୟ ଅଗ୍ରରେ ( ନାସିକା-

ପରବେଶ । ବିପରୀତ ରୀତପାକ ହୋଇଲା ପ୍ରକାଶ । ଆରମ୍ଭିଲା ନରତନ କି ଯତନ କରି । କନକ କେତକୀଦଳେ କଳା ନାଗ ଧରି । ୩୫ । ସେ ସମୟ ମିଶି ରସ ବରଷା ସଙ୍ଗରେ । ସୁବାସିଲା ଚନ୍ଦନ ମାରୁତ ତରଙ୍ଗରେ । ନିଦାଘରେ ଲୁଳି କେଳି କନକମଞ୍ଜରୀ । ଜୀବିଗଲା ଗାଢ଼େ ଦ୍ରୁମେ ଅବଲମ୍ବ କରି । ୩୬ । ସେ ସୁଭାଗ୍ୟ ସୁଖସ୍ୱର୍ଗ ସମ୍ପତ୍ତି ସ୍ମରଣୁ । ନ ଦିଶଇ ମୋତେ ଆନ ଉପାୟ ମରଣୁ । କରିବି କି ବୁଦ୍ଧିରେ ସୁବୁଦ୍ଧି ଗୁମାବର । ବରଷ ଶତ ହେଲାନି ତ୍ରୁଟିକ ମାତର । ୩୭ । ତରଳ ଗଲାନି ଭଯେ ମନ୍ତ୍ରାନବନୀତ । ନିତମ୍ବିନୀମଣି ପରି ତୁହି ମୋ ଜୀବିତ । ବିତରଣ କରି ଦନ୍ତଚେଲ୍ଲୁଁ ସୁଧାରସ । ରସନାକୁ ଯେବେ ମୋର କରିବୁ ସନ୍ତୋଷ ।୩୮। ତୋ ସକାଶୁଁ ସିନା ମୁଁ ତରୁଣ ପୁରନ୍ଦର । ଦରକଣ୍ଠି ନୋହୁ ତୁ ମୋ ପରାଣୁ ବାହାର । ହାରି ମଧ୍ୟ ତରଳ ମୁଁ କେହ୍ନେ ତୋତେ କରି । କରଗତ ହେବ କେଲିବିପିନବିହାରୀ ।୩୯। ହାରି ଜୁହାରିବି ଦୂରୁ ପ୍ରସୂନ ପ୍ରହର । ହର ପ୍ରସାଦୁଁ ଏ ଭାଗ୍ୟ କେବେ ହେବ ମୋର । ତୋ ଶ୍ରୀହସ୍ତ ପ୍ରତିଲେଖ ଦରଶନାବଧି । ରଖିଅଛି ଜାଣ ପ୍ରାଣ ଲବଣ୍ୟବାରିଧି । ୪୦ । ତୁ ତ ଗୁଣଗଣମଣି ମଞ୍ଜୁଷ ମୋ ବନ୍ଧୁ । ବିଶେଷ ଅରଜ କିସ ଦେବି ରସସିନ୍ଧୁ । ଶୁଣ ହେ ରସିକବରେ ହୋଇ ପୂର୍ଣ୍ଣମୋଦ । ଜଳନ୍ତର ବସୁନ୍ଧରୀ କପଟକ୍ଷୀରୋଦ । ୪୧ । ତହୁଁ ଚିଦସୁଧାକର ରାମଚନ୍ଦ୍ର ଦେବ । କଲପନା କଲେ ଏ ଶ୍ରବଣ ମହୋତ୍ସବ । ହେବ ଏ ନିଖିଳ ତୃଷାଭୟ-ନିବାରଣୀ । ଦୁଃଖ ନିବେଦନ ରସାମୃତତରଙ୍ଗିଣୀ । ୪୨ ।

---

ଦଣ୍ଡିରୂପ), ପକ୍ୱବିମ୍ବ—ପାଚିଲା ବିମ୍ବଫଳ ( ଅଧରରୂପ ), ଲଦଳୀକବଳୁ—ନର-କୋଳଫଳ ଭକ୍ଷଣରୁ । ୩୫ । କନକକେତକୀଦଳେ କଳାନାଗପରି—ସୁନାରଙ୍ଗର କେତକୀପତ୍ରରେ କଳାନାଗ ପରି ପୃଷ୍ଠଦେଶରେ ବେଣୀ ନୃତ୍ୟ କଲା । ୩୬ । ରସ-ବରଷାସଙ୍ଗରେ—ଜଳବୃଷ୍ଟି ସହିତରେ ଅଥଚ ଶୃଙ୍ଗାରରସମୟ ମୁଦ୍ଧରେ, ଲୁଳି—କ୍ଲାନ୍ତ ହୋଇ, କନକ ମଞ୍ଜରୀ—ସ୍ୱର୍ଣ୍ଣବର୍ଣ୍ଣ କଳିକା ଅର୍ଥାତ୍ ତତ୍ସଦୃଶୀ କିଶୋରୀ, ଦ୍ରୁମ—ବୃକ୍ଷ ଅଥଚ ଦ୍ରୁମରୂପୀ ପୁରୁଷ । ୩୭ । ତ୍ରୁଟି—କ୍ଷଣକାଳ, ମନ୍ତ୍ରାନବନୀତ—ଅନ୍ତଃକରଣରୂପ ଲହୁଣୀ, ନିତମ୍ବିନୀମଣି—ରମଣୀମଣି, ଦନ୍ତଚେଲ୍ଲୁ—ଅଧରରୁ । ୩୯ । ତରୁଣପୁରନ୍ଦର—ମୁବକଶ୍ରେଷ୍ଠ, ଦରକଣ୍ଠି ! ହେ କମ୍ବୁକଣ୍ଠି ତରଳ—ହାରମଧ୍ୟ ମଣି । ୪୦ । ପ୍ରସୂନପ୍ରହର—କନ୍ଦର୍ପ । ୪୧ । ଅରଜ—ଅର୍ଜି, ପ୍ରାର୍ଥନାପତ୍ର; କପଟକ୍ଷୀରୋଦ—କପଟ କ୍ଷୀରସମୁଦ୍ର । ୪୨ । ଚିଦସୁଧାକର—ବିଶଦ ଚନ୍ଦ୍ରମା, ରସାମୃତତରଙ୍ଗିଣୀ—ଶୃଙ୍ଗାରରସରୂପ ଜଳପୂର୍ଣ୍ଣ ନଦୀ ।

# ସପ୍ତଦଶ ଛାନ୍ଦ

ରାଗ—ସମ୍ଭୋଗ ଭୂପାଳ

( ସଂଭୋଗ ଗୃହ )

କେଉଁ ରସିକ ବାଳାକୁ କୋଳେ ଧର । କହେ ଶତ୍ରୁକେ କର ବିନ୍ୟାସ କର । ୧ । ଶିରୀଷାଙ୍ଗୀ ପ୍ରାଣେଶ୍ୱରୀ ତୁହି ପରା । ତରୁଣବନ୍ଧୁଆ ମୋ ହୃଦସ୍ଥ ହାର । ୨ । ଗୁରୁ ମୋତିକାଦନ୍ତୀ ବିମ୍ବାଧରୀ । ଧରଣୀମଣ୍ଡନା ମୋ ଲୋଚନଶିରୀ । ୩ । ଝଲଗୋରୀ ସୁନୟନା ସୁକୁମାରୀ । ବାଳାମଣି ମୋ ଶିରଭୂଷଣଶିରୀ । ୪ । ମୁହିଁ ତୋ ଚରଣସେବା ନଉକର । ତୁ ମୋ ପ୍ରଭୁ ସିନା ନିତମ୍ବିନୀବର । ୫ । ବାଳାବଳୟମଉଳି ଅଳଙ୍କାର । ରମା ସମାନ ନୋହେ ଶୋଭାକୁ ତୋର । ୬ । ଯୋଗିଯୋଗଧ୍ୱଂସିନୀ ରେ ଜୀବବନ୍ଧୁ । ବନ୍ଧୁଜୀବଅଧରୀ କରୁଣାସିନ୍ଧୁ । ୭ । କେଶ ସମ ନୋହିବାରୁ ନବଘନ । ନୀରଛଳେ ମୁଞ୍ଚେ ଅଶ୍ରୁ ଘନ ଘନ । ୮ । ମନମୋହନା ନବୀନା ମଦାଳସୀ । ତୋର ବଦନ ସଦୃଶ ନୋହେ ଶଶୀ । ୯ । ନାସା ଶୋଭାକୁ କାହାକୁ ଲକ୍ଷି ପାରି । ତଳତଳକ ଝଲକେ ନୋହେ ସରି ।୧୦। ନେତ୍ର ତୁଲ୍ୟ ନୋହିବାରୁ ଇନ୍ଦୀବର । ଭୟେ ପଳାଇ ବନରେ କଲା ଘର । ୧୧ । ଭ୍ରୂଲତାଧନୁ କଜ୍ଜଳ ଗୁଣରେ ରାଜେ । ଗୁହିଁ ପଞ୍ଚାସ୍ତ୍ର ତପଗରବ ଭାଜେ । ୧୨ । ଦିବ୍ୟ ଝଲମଲ ତୋର ଗଣ୍ଡସ୍ଥଳୀ । ମାରମୁକୁର ସ୍ଥିର କି ଏହା ଭଲି । ୧୩ । ନବପଲ୍ଲବେ ତୁଲ୍ୟ କି ତୋ ଅଧର । ଏକା ମଧୁମାସେ

---

ସପ୍ତଦଶ ଛାନ୍ଦ

୪ । ଝଲଗୋରୀ—ସମୁଜ୍ଜ୍ୱଳ ଗୌରବର୍ଣ୍ଣା । ୫ । ନଉକର—ଚାକର । ୬ । ବାଳାବଳୟମଉଳି ଅଳଙ୍କାର—ଯୁବତୀସମୂହର ମସ୍ତକଭୂଷଣରୂପା, ରମା—ଲକ୍ଷ୍ମୀ । ୭ । ବନ୍ଧୁଜୀବଅଧରୀ—ବନ୍ଧୁଲିଫୁଲ ପରି ରକ୍ତବର୍ଣ୍ଣ ଅଧର ଯାହାର । ୮ । ନବଘନ—ନୂତନ ମେଘ ।୧୦। ନାସାଶୋଭାକୁ···ନାସିକା ଶୋଭାକୁ କାହା ସଙ୍ଗେ ତୁଳନା କରିବ ? ତଳତଳକ—ଉତ୍କୃଷ୍ଟ ରାଶିଫୁଲ, ଝଲକେ—ଅଳ୍ପମାତ୍ରାରେ ସୁଦ୍ଧା । ୧୧ । ଇନ୍ଦୀବର—ନୀଳକଇଁ, ବନରେ—ଜଳରେ । ୧୨ । ଭ୍ରୂଲତା—ରୂପ ଧନୁ କଜ୍ଜ୍ୱଳରେଖାରୂପ ଗୁଣରେ ଶୋଭାପାଏ । ୩୩ । ଝଲମଲ—କାନ୍ତିଯୁକ୍ତ, ମାରମୁକୁର—କନ୍ଦର୍ପର ଦର୍ପଣ । ୧୪ । ମଧୁମାସ—ବସନ୍ତ ଋତୁ । ୧୫ । ପାଟଳୀ-

ସିନା ସେ ମଧୁର । ୧୪ । ଶ୍ରୁତି ଘଟନା ପାଟଳୀ ନୋହେ ସର । ସ୍ୱର୍ଣ୍ଣ-ତୁଳେ ଗୁଞ୍ଜକୁ ତୁଳିଲା ପର । ୧୫ । କମ୍ବୁକଣ୍ଠୁଲେ ତୁଲ୍ୟ ହେବାପାଇଁ । ଶମ୍ଭୁଠାବରେ ସେବାରେ ନିତ ଯାଇ । ୧୬ । ସେ କି ଶିବ ସେବି ସମ ହୋଇପାରେ । ମାହା ଉପମା ନାହିଁ ତ୍ରିପିଷ୍ଟପରେ । ୧୭ । ମଧୁଜିଣା-ବାଣୀ ଅରେ ଧୀରବର । ସୁଧାହଁସିରୁ ତ ସ୍ୱାଦୁ ଗିର ତୋର । ୧୮ । ଉଇସ୍ତନା ସୁବରନା ଦବ୍ୟ ବେଣୀ । ଦାସ ସ୍ନେହବତ୍ସଲାରେ ନୀଳକେଶୀ । ୧୯ । ପୂର୍ବକାଳ କାଶୀବାସୀ ସେବିବାର । ଫଳ ଫଳିଲା କି ଏତେକାଳେ ମୋର । ୨୦ । ଧରି ଚରଣକଞ୍ଜ ଅଲତା ଦେଲି । ଶକ୍ରପଦ ପଦତଳେ ରଖାଇଲି । ୨୧ । ଗଙ୍ଗାସାଗରେ ମୁଁ ହାସିଥିବା ଘେନ । ମୋର ଅଙ୍କ ଅଲଙ୍କାର ହେଲୁ ଧନ । ୨୨ । କାମକଳାନିଧି ଅରେ କୃଶୋଦରି । ଦରିଦ୍ର ମୁଁ ବରୁ କଳ୍ପଲତା ପରି । ୨୩ । ପରଣତ କରକ ସୁବୀଜଦନ୍ତ । ଦନ୍ତିରାଜଗମନା ତୁ ମୋ ସମସ୍ତ । ୨୪ । କରିଅରିଜିଣାମଧ୍ୟା ସୁଲକ୍ଷଣା । ରମ୍ଭାଦେହା ଚଞ୍ଚଳାକ୍ଷି ବିଚକ୍ଷଣା । ୨୫ । କଞ୍ଜବୃନ୍ଦୁ ଚରଣାରେ ଚନ୍ଦ୍ରାନନା । ରମ୍ଭା ଉର୍ବଶୀରେ କି ତୋ ଗଣନା । ୨୬ । ରସନିଧି ତୁ ମୋ ଗଳା ମାଳା ସିନା । ଗୁଣକଳଧିରେ ତୁ ମୋ ଗଣ୍ଠି ସୁନା । ୨୭ । ପଣ୍ଡିତାମଣି ରମଣୀ ଏଣୀଦୃଗୀ । ଉମାପତିମୋହିନୀ ରେ କୁନ୍ଦହାସି । ୨୮ । ନବମାଳୀ-କରଜା ସୁନ୍ଦରୀରଜା । ତୋ ଲଗିବାସ ଭଳି ମୁଁ ସୁଜରଜା । ୨୯ । ରସାଳସା ବରଯୋଷା ସୁନୟନା । ମୋ ସମସ୍ତ ସଉଭାଗ୍ୟ ତୁହି ସିନା । ୩୦ । ମୋର ମାଗୁଣି ଗୁଣମଣିକି ଏତେ । ସ୍ନେହ କିଣା ନ କରିବୁ କଦାଚିତେ । ୩୧ । ଏହି ସୁଖେ ମୁଁ ସମସ୍ତେ ହରୁଥିବି । ଚନ୍ଦ୍ରହାରି ପରି ହୃଦେ କରୁଥିବି । ୩୨ । କ୍ଷଣେ କ୍ଷଣେ କରି ଆନ ଆନ ବେଶ । ବ୍ରହ୍ମାନନ୍ଦରେ କରିବି ପରିହାସ । ୩୩ । ମଣି କଠାଉ ଅଲତା ପରି ଅବା ।

ପାଟଳୀଫୁଲ (କର୍ଣ୍ଣସଙ୍ଗେ ଉପମିତ ହୁଏ), ଗୁଞ୍ଜ—କାଇଁଚ । ୧୬ । କମ୍ବୁ—ଶଙ୍ଖ । ୧୭ । ତ୍ରିପିଷ୍ଟପରେ—ତ୍ରିଭୁବନରେ । ୨୦ । କାଶୀବାସୀ—ବିଶ୍ୱେଶ୍ୱର ଶିବ । ୨୧ । ଶକ୍ରପଦ- ଇନ୍ଦ୍ରପଦ । ୨୪ । ପାଚିଲା ଡାଳିମ୍ବ ବୀଜ ପରି ଦନ୍ତ ଯାହାର, ଦନ୍ତିରାଜଗମନା—ମତ୍ତହସ୍ତୀର ଗତିପରି ଗତି ଯାହାର । ୨୫ । କରିଅରିଜିଣାମଧ୍ୟା—ସିଂହ କଟିକୁ ଯାହାର କଟି ଜିଣିଅଛି । ୨୮ । ଉମାପତିମୋହିନୀ—ଶିବମୋହିନୀ, କୁନ୍ଦହାସୀ—କୁନ୍ଦଫୁଲ ପରି ହାସ ଯାହାର ।୨୯। ନବମାଳୀକରଜା—ନଆଳୀଫୁଲ ପରି କରଜ (ନଖ) ଯାହାର; ଲଗିବାସ—ପିନ୍ଧାଲୁଗା ।୩୩। ବ୍ରହ୍ମାନନ୍ଦରେ କରିବି

ଲାଗି ପଦତଳେ କରୁଥିବ ସେବା । ୩୪ । ମୋତେ ଦେଉଥିବୁ ଚୁମ୍ବ ବରତନ । ମୋର ସେହିଟି ସଙ୍ଗାଳି ସୁରତନ । ୩୫ । ଜଳନ୍ତରଧରନାଥ ରସବାଣୀ । ବୀଣାବିଶାରଦା ମୋଦେ ଶୁଣି ଶୁଣି । ୩୬ । ଲାଜମିଶ୍ରିତ ଧଇର୍ଯ୍ୟଧରା ହାସେ । ମଣ୍ଡି ଦେଲା କଣ୍ଠକୁ ଶ୍ରୀଭୁଜ ପାଶେ । ୩୭ । ରାଧା-ଜନକନନ୍ଦନା ପ୍ରାଣନାଥ । ଦୁଇ ପ୍ରଭୁ ପୂରକର ମନୋରଥ । ୩୮ ।

---

## ଅଷ୍ଟାଦଶ ଛାନ୍ଦ

### ରାଗ—ଆଷାଢ଼ଶୁକ୍ଳ

### ( ବସନ୍ତ ବର୍ଣ୍ଣନା )

ପରବେଶ ହେଲା ସୁରଭିକାଳ । ବରବେଶ ହେଲେ ଭୂରୁହକୁଳ । ଗରବେ ପ୍ରବଳ ହେଲା ମଦନ । ଭରବେ ଜାର ହେଲେ ଯୋଗୀଜନ । ପରବେଶ ଗୃହିଁ । ସରବେ ଭାଳିଲେ ବଞ୍ଚିବା କେହି । ୧ । ପଲ୍ଲବ ପାଟଳ ଦର୍ଶିଲା ବନୀ । କେଶରଧୂସର ହେଲା ଅବନୀ । ଫୁଟିଲେ ବିବିଧ କୁସୁମ-ବୃନ୍ଦ । ଛୁଟିଲା ବିନ୍ଦୁ ବିନ୍ଦୁ ମକରନ୍ଦ । ରସାଳ ମୁକୁଳ । ଗୃହିଁ ଶ୍ଳଥ ହେଲା-ବାମା ଦୁକୂଳ । ୨ । ସୁରତଶ୍ରାନ୍ତ କାମିନୀକୁଚର । ସ୍ୱେଦବିନ୍ଦୁ ବୃନ୍ଦ ମୁକୁତା ଗ୍ଳେର । ଲତା ବନିତା ନରତନଗୁରୁ । ପ୍ରସରିଲା ମିତ୍ରପୁତ୍ର ଦିଗରୁ । ଚନ୍ଦନ ପବନ । ପୁଟବାସିତ କଲା ଉପବନ । ୩ । ମଳୟବନୀ

---

ପରହାସ—ବ୍ରହ୍ମ ପ୍ରାପ୍ତିଜନିତ ଦିବ୍ୟ ଆନନ୍ଦକୁ ଉପହାସ କରିବ । ୩୫ । ବରତନ —ବେତନ ।

---

ଅଷ୍ଟାଦଶ ଛାନ୍ଦ

୧ । ସୁରଭିକାଳ—ବସନ୍ତ ସମୟ, ଭୂରୁହକୁଳ—ବୃକ୍ଷମାନେ, ବରବେଶ ହେଲେ—ବିବାହୋଚିତ ସୁନ୍ଦର ବେଶରେ ମଣ୍ଡିତ ହେଲେ, ଭରବେ —ଭ୍ରମର ଧ୍ୱନି ଶୁଣି, ଜାର—କାମୁକ । ୨ । ପଲ୍ଲବପାଟଳ—ନବପତ୍ର-ଦ୍ୱାରା ପାଟଳବର୍ଣ୍ଣ, ବନୀ—ଅରଣ୍ୟଭୂମି, କେଶରଧୂସର—ପୁଷ୍ପପରାଗରେ ଧୂଳିମୟ, ରସାଳମୁକୁଳ—ଆମ୍ବ ବଉଳ, ଶ୍ଳଥ—ଢିଲା, ବାମାଦୁକୂଳ—ସ୍ତ୍ରୀମାନଙ୍କର ପିନ୍ଧା ପାଟଶାଢ଼ୀ । ୩ । ଲତା-ବନିତା-ନରତନଗୁରୁ—ଲତାରୂପ ସ୍ତ୍ରୀମାନଙ୍କୁ ନଚାଇବାରେ ଗୁରୁସ୍ଥାନୀୟ । ମିତ୍ରପୁତ୍ରଦିଗରୁ—ସୂର୍ଯ୍ୟଙ୍କ ପୁତ୍ର ଯମଙ୍କ ଦିଗରୁ ଅର୍ଥାତ୍ ଦକ୍ଷିଣ ଦିଗରୁ । ପୁଟବାସିତ କଲା ଉପବନ—ବଗିଚାମାନଙ୍କୁ

ଭୁଜଙ୍ଗ ସଙ୍ଗରେ । ହରବାର କାଳ ଗିରିଶୃଙ୍ଗରେ । କଳନା କଲେହେଁ ନାନା ଆଗମ । ମାନ୍ୟ ଲକ୍ଷଣ ତ୍ୟାଗେ ନୋହି କ୍ଷମ । ଡରେ ନ କର୍ମିଲ । କେ ପୁଷ୍ପିତା ବନିତାକୁ ଝାମ୍ପିଲ । ୪ । ଦେଖି ଶାଖୀଙ୍କ ପରସ୍ପର କଳି । ଝଙ୍କାର ହୁଙ୍କାରେ ମଧ୍ୟରେ ମିଳି । ଭଲ ଭଙ୍ଗାଇ ଦେଲେ ଭୃଙ୍ଗମାନେ । ଫୁଟି ବାସିଲେ ସେ ଯେ ଯାହା ସ୍ଥାନେ । ଥିଲେ ଭଲ ଲୋକ । ନୁହଇ କି ସମ ବିଷମଯାକ । ୫ । ହେଲା ପଲାଶମୁକୁଳ ପ୍ରକାଶ । ସଲୋହିତ ସିଂହ-ନଖ ସଦୃଶ । ତହୁଁ ପଛଘୁଞ୍ଚା ଦେଇ କୁଞ୍ଜରେ । ଲୁଚିବାନ୍ତି ଆନ କୁଞ୍ଜ-ପୁଞ୍ଜରେ । ତାହା ଗୁହିଁକରି । ହସିଲା ନବମାଲିକା ବଲ୍ଲରୀ । ୬ । ଶାଖା-ମାନଙ୍କେ ରଖି ପଦକ୍ରମ । ବିଯୋଗି ବିଧ୍ୱଂସ ଅଥର୍ବୋପମ । ପଞ୍ଚମସ୍ୱରେ କଳକଣ୍ଠଦ୍ୱିଜ । ପକ୍ଷପାତ କଲେ ଅନଙ୍ଗ ଓଜ । ଏକାକୀ ଡରିଲେ । ଦମ୍ପତି ସୁଖେ ବନେ ବିହରିଲେ । ୭ । କାଳକଳନ ଦିଗେ ଯାହା ପ୍ରୀତ । କଳି ଆରମ୍ଭରୁ ଯାହା ଉତ୍ପନ୍ନ । ଯେ ପ୍ରସରନ୍ତେ ଜାତକାହିଁ ନାହିଁ । ମୂନାଗ୍ରୀ ପୁଷ୍ପିତ ହୋଇଲା ତହିଁ । ବିଟପ ମଧୁପେ । ଉନ୍ମତ୍ତ ହେଲେ ତା ଦେଖି ସମୀପେ । ୮ । ଇତର ତରୁଭାଗ୍ୟ ଦେଖି ପାଶେ । ଅଳିସଙ୍ଗ ଭୋଗ ଲଭିବା

---

ସ୍ଥାୟୀ ସୌରଭମସ୍ତ କଲ । ୪ । ମଳୟବନୀ ଭୁଜଙ୍ଗ ସଙ୍ଗରେ—ମଳୟବନର ସାପ ସଙ୍ଗରେ, କଳନା କଲେହେଁ—ଜାଣିଥିଲେହେଁ, ଆଗମ—ଶାସ୍ତ୍ର, ପୁଷ୍ପିତା ବନିତା—ପବନ ଫୁଲ ଫୁଟିଥିବା ଲତାରୂପ ସ୍ତ୍ରୀକୁ ଆକ୍ରମଣ କଲା ।୫। ଶାଖୀ—ବୃକ୍ଷ, ନୁହଇ କି ସମ ବିଷମଯାକ—ପରସ୍ପର ବିରୁଦ୍ଧ ଭାବ ସମତାପ୍ରାପ୍ତ ହୁଏ ନାହିଁ କି ? ୬ । ସଲୋହିତ···ସିଂହର ନାଲି ନଖ ପରି, କୁଞ୍ଜରେ—ହାତୀମାନେ, ଆନ କୁଞ୍ଜପୁଞ୍ଜରେ—ପଲାସ ଭିନ୍ନ ଅନ୍ୟ ବୃକ୍ଷକୁଞ୍ଜମାନଙ୍କରେ, ନବମାଲିକାବଲ୍ଲରୀ—ନଆଳୀଫୁଲ ଲତା । ୭ । ଶାଖା—ଡାଳ ଓ ବେଦର ବିଭିନ୍ନ ଶାଖା, ପଦକ୍ରମ—ପଦବିକ୍ଷେପ ଓ ବିଭକ୍ତିଯୁକ୍ତ ଶବ୍ଦର କ୍ରମ, ବିଯୋଗିଧ୍ୱଂସଅଥର୍ବୋପମ—ବିରହୀ-ମାନଙ୍କୁ ମାରିବାରେ ଅଥର୍ବବେଦୋକ୍ତ ମାରଣ ମନ୍ତ୍ର ସଦୃଶ, କଳକଣ୍ଠ ଦ୍ୱିଜ—କୋକିଳରୂପ ବ୍ରାହ୍ମଣ, ଅନଙ୍ଗଓଜ—କାମଶକ୍ତି ( ପ୍ରତି ), ପଞ୍ଚମସ୍ୱରେ—ପକ୍ଷପାତ କଲେ, ( ବ୍ରାହ୍ମଣ ପକ୍ଷରେ ) ସୁକଣ୍ଠରେ ବେଦମନ୍ତ୍ରପାଠ କରି କନ୍ଦର୍ପର ପକ୍ଷ ଗ୍ରହଣ କଲେ; ( କୋକିଳ ପକ୍ଷରେ ) ପଞ୍ଚମସ୍ୱରରେ ଗୀତ ଗାଇ ବୁଲିଲେ । ୮ । କାଳକଳନଦିଗେ—ଦକ୍ଷିଣ ଦିଗରେ, କଳି ଆରମ୍ଭରୁ—ଫୁଲରେ କଢ଼ ହେବା ଦିନରୁ, ଯେ—ଯେଉଁ ମଳୟପବନ ଜାତକାହିଁ ନାହିଁ···ମାଳତୀଫୁଲ ମଧ୍ୟ ଫୁଟେ ନାହିଁ ( ମାଳତୀ ବସନ୍ତରେ ଫୁଟେ ନାହିଁ ), ସୁନାଗ୍ରୀ—

ଆଶେ । ସ୍ୱନ୍ଦର ଗନ୍ଧଫଳବୃନ୍ଦମିଷେ । ସ୍ୱଶାଖା ଅଙ୍ଗ ସକଳ ପ୍ରବନ୍ଧଶେ । ଜାଳି ଦୀପଚୟ । ଚମ୍ପାଲତା କଲା ବ୍ରତୋପଚୟ । ୯ । ଅଳୀଙ୍କ ଘେନି ଯୁବତୀନଚୟ । ରସେ ବଶଲେ କୁସୁମାବଚୟ । ନିମଗ୍ନ ହୋଇ ପରମ ହରଷେ । ବନ୍ଧିଲେ ସଳାପ ବିବିଧ ରସେ । କେ ବୋଲେ ସଖୀକି । ପୁରୁଷେ ଏଡ଼େ ବିଶ୍ୱାସ କାହିଁକି । ୧୦ । ଆନ୍ତ କେ କହେ ଛାହିଁକି ନୋହିବ । ଅଶୋକ ତ ତତେ କଲା ଦଇବ । ମୁଖେ ରଖିଅଛୁ ମଲ୍ଲିକା ହାସ । କାହିଁକି ନ କରିବୁ ପରିହାସ । କେ ପୁଣି ବୋଇଲା । ମୋ କରେ ଛୁଗ୍ରିଅନା ରେ ଛଇଲା ।୧୧। ପୁନ୍ନାଗମୟ ହେବାରୁ କେ ବାଲା । ବନ୍ଧି କେ ଅଂସରେ କେଶରମାଳା । ମାର ତା ଉରୋଜକୁମ୍ଭେ କରଜ । ସିନ୍ଦୁବାର କଲି ମାଳିକାବ୍ରଜ । ମୁକୁତା ବନ୍ଧିଲା । ବାରଣଦାରଣଲୀଳା ବାନ୍ଧିଲା । ୧୨ । ମିଳନ୍ଧେ ଯୂଥିକଳି ମୁଖେ ଧରି । ରବବ୍ୟାଜେ ବଜାଇଲେ ମଧୁସ୍ତ୍ରୀ । ଭୃଙ୍ଗୀ ଆରମ୍ଭିଲେ ମଙ୍ଗଳ ଗୀତ । କଳକଣ୍ଠଯାକ ହୋଇ ସଙ୍ଘାତ ହୋଇ ମଦଲୋଲ । ଉଲ୍ଲୁଳି ପୂର୍ଣ୍ଣ କଲେ ଜଳସ୍ଥଳ । ୧୩ । ତରୁ କରୁଛନ୍ତି ସେବା ପ୍ରକଟ । କେ ହୋଏ ଫଳ ଫୁଲ ଧରି ଭେଟ । ନବ କିଶଳୟ ପାଟ ଅଲଟ । ଘେନି କେ ବଜନେ ହେଲା ଲମ୍ପଟ । କେଉଁ ଶାଖୀ ନଟ ନଟ । ଉଡ଼ାଇଲା ବ୍ୟୋମ ପରାଗପାଟ । ୧୪ । କରକ ଘେନିଲା ସ୍ୱଫଳ ଘଟ । ପର୍ଣ୍ଣ ସରକ ହେବାରୁ ଦୁର୍ଘଟ । ମୋଠାରେ କେ କଲା ବୋଲି କପଟ । ଲଗିର ମନେ ହେଲା ଛଟପଟ । ଅଳି-ଯୋଗକୂଟ । କେଉଁ ବଲ୍ଲରୀ ଗୃହେଁ ମଠ ମଠ । ୧୫ । ହୋଇ ଅନିଳସୂତ୍ରଧାର ଗୂଢ । ପୁଷ୍ପଭୂଷଣେ ହୋଇ

---

ଏକପ୍ରକାର ଅରଣ୍ୟ ବୃକ୍ଷ, ବିଟପ—ଜାର, ମଧୁପେ—ଭ୍ରମରମାନେ । ୯ । ଚମ୍ପା-ଲତା ଭ୍ରମରକୁ ଆକର୍ଷଣ କରିବାପାଇଁ ଗନ୍ଧଫଳବୃନ୍ଦମିଷେ ( ଚମ୍ପାକଢ଼ ସମୂହ ବ୍ୟାଜରେ ) ନିଜ ସବ ଶରୀରରେ ଦୀପ ଜାଳି ବ୍ରତଜନିତ ପୁଣ୍ୟର ଉପଚୟ (ବୃଦ୍ଧି) କଲା । ୧୦ । କୁସୁମାବଚୟ—ଫୁଲତୋଳା । ୧୧ । ମୋ କରେ ଛୁରି-ଅନା—ମୋ ହାତରେ ଛୁରି ଅଛି ଦେଖ, ମୋ ହାତରେ ଛୁରି ଅନା ଫୁଲ । ୧୨ । ପୁନ୍ନାଗମୟ—ନାଗେଶ୍ୱର ପୁଷ୍ପମଣ୍ଡିତ, ପୁନ୍ନାଗ—ନାଗେଶ୍ୱର, ଅର୍ଣ୍ଣ ଶ୍ରେଷ୍ଠହାତୀ; ଅଂସରେ—କାନ୍ଧରେ, କେଶରମାଳା—ନାଗେଶ୍ୱରଫୁଲ ମାଳା ଓ ସିଂହର ସଟା-ସମୂହ, ଉରୋଜକୁମ୍ଭେ—ସ୍ତନରୂପ କୁମ୍ଭସ୍ଥଳରେ, କରଜ—ନଖ, ସିନ୍ଦୁବାରକଳି-ମାଳିକାବ୍ରଜ—ବେଗୁନିଆକଢ଼ର ମାଳସବୁ, ବାରଣଦାରଣଲୀଳା—ସିଂହର ହାତୀ ମାରିବା କ୍ରୀଡ଼ା । ୧୩ । ମିଳନ୍ଧେ—ଭ୍ରମରମାନେ, ଯୂଥିକଳି—ଯୂଇଫୁଲ କଢ଼, ମଧୁସ୍ତ୍ରୀ—ମହୁରୀ, କଳକଣ୍ଠ—କୋକିଳ, ସଙ୍ଘାତ—ମିଳିତ, ଉଲ୍ଲୁଳି—ହୁଳହୁଳି ଧ୍ୱନି ।୧୪। ଉଡ଼ାଇଲା···କେଉଁ ବୃକ୍ଷ ନଟ ହୋଇ ଆକାଶର ପରାଗ (ପୁଷ୍ପଧୂଳି) ରୂପ ପାଟ ଉଡ଼ାଇଲା ।୧୫। କରକ—ଡାଳିମ୍ବ, ପର୍ଣ୍ଣସରକ ହେବାରୁ ଦୁର୍ଘଟ—ବାଉଁଶ

ଝଟ ଝଟ । ଉଗାଲ ମଂଦାନଭୂପତ ବାଟ । ଯେଉଁ ଲତକା ଅବମ୍ଭିଲ ନାଟ । ଯେଉଁ ତରୁଭାଟ । ପକ୍ଷିରବେ ସ୍ତୁତ କଲା ନାଗଟ । ୧୬ । ଫଳକରେ କଗ୍ନ ହୋଇ ସ୍ୱକଟ । କେତେ ବିଟପୀ ବେଶେ ହେଲେ ଭଟ । ବିରହାନନ୍ଦା ଶସ୍ତ୍ରକୁ ଅକାଟ । କାଣିମାରେ କି ସେ ସମର୍ଥ ଥାଟ । କି ରସିକ ହାଟ । ସବୁରି ପ୍ରୀତ କଣିବାରେ ହଟ । ୧୭ । ନିକୁଞ୍ଜ ସଞ୍ଚାରେ ନାହିଁ ଅଙ୍କଟ । ନାନାବିଧ ସୁଖ ଅତ ନିକଟ । ଦମ୍ପତଭରେ ରଟେ କଟ କଟ । ପ୍ରତ ସଙ୍କେତ ଲତା ଗୃହେ ଖଟ । ସରଗଲା ଲଟ । ଚଳ ଯୋଗୀଏ ଛୁଣ୍ଡାଇଲେ ଜଟ । ୧୮ । କେ ବାସ କର କେଳିବାପୀ ତଟ । ପାସୋର ଦେଲେ ପିନ୍ଧିବାରପଟ । ରଖିଲେ ମାନକ ପ୍ରଚ୍ଛଦପଟ । ରସ ଅବଶ ହୋଇଲେ କପଟ । ଯାଠାରେ କପଟ । ଧାତା ଖେଳିଛୁ ତାହାର ଅପଟ । ୧୯ । ନମାନ ଭବ ଶାର୍ଦ୍ଦୁଳ ଝପଟ । ଯେ ଜନେ ବାନ୍ଧିଥିଲେ ଯୋଗପଟ । ବାଜିବାରୁ ମନମଥ ଚପେଟ । ନ କଲେ କେ କାହାକୁ ଉଚପେଟ । ତାଳ ପହପଟ । ହେଲା ସବୁର ତଳପରେ ସ୍ଫୁଟ । ୨୦ । ହେବାରୁ ହୃଦ ଅନଙ୍ଗ ଅଖୋଟ । ଧଇର୍ଯ୍ୟଶିଳାଘଟିତ କବାଟ । ଅତରକତେ ହୁଅନ୍ତେ ବିପାଟ । ବିରହିଣୀ ଏକାନ୍ତ ଚହପଟ । କର ସ୍ନେହଘୋଟ । ମଣ୍ଡିଲେ ନିଜ ବକ୍ଷୋଜସଂପୁଟ । ୨୧ । କାହା ଘୁରର ମଦ ହୋଇବ ମୋଟ । ହୋଇଲା ହରଧୃତ ପହିଁ ଗ୍ଲୋଟ । ଜନମୂ ଅମ୍ଭେ ନୋହୁ ବୋଲି ବିଟ । ଯେଉଁମାନେ ବାନ୍ଧିଥିଲେ ମୁକୁଟ । ରଟନ୍ତେ କୁକ୍କୁଟ । ଜୀବ ହେଲା ତାକୁ ଶତ ଶକଟ । ୨୨ । ବିରହେ ବନ୍ଧା

---

କରଡ଼ରେ ପଶ ପର୍ଯ୍ୟନ୍ତ ନ ଥିବାରୁ, କଗ୍ନିର—ଗଜାବାଉଁଶ ବା କରଡ଼ୀ, ଅଲିଯୋଗକୁଟ—ଭ୍ରମରମିଳନରୂପ କପଟ (ପ୍ରକୃତ ପୁରୁଷ ମିଳନ) । ୧୬ । ଅନିଲ-ସୂତ୍ରଧରସ୍ଥଟ—ପବନରୂପ ପ୍ରଧାନ ନଟର ଶିଷ୍ୟ । ୧୭ । ଫଳକରେ କଗ୍ନ ହୋଇ ସ୍ୱକଟ—ଡାଳରେ ପ୍ରଚୁର ଫଳ ଧରିବାରୁ ଫଳକଧାରୀ ହାତୀ ପରି ଭୟଙ୍କର ହୋଇ; ବିଟପୀ—ଗଛ, ଭଟ—ଯୋଦ୍ଧା, ଥାଟ—ସୈନ୍ୟଦଳ, ହଟ—ଜିଦ୍ ବା କୌତୁକ । ୧୮ । ଲଟ—କୌତୁକ, ଚଳ—ବିରକ୍ତ ହୋଇ । ୧୯ । କେଳିବାପୀ—କ୍ରୀଡ଼ାପୁଷ୍କରଣୀ, ପାସୋରଦେଲେ······ସବୁବେଳେ ନଗ୍ନ ହୋଇ ଜଳକ୍ରୀଡ଼ା କରିବାରୁ ପିନ୍ଧାଲୁଗାକୁ ମଧ୍ୟ ଭୁଲିଗଲେ; ପ୍ରଚ୍ଛଦପଟ—ଘୋଡ଼ହେବା ଲୁଗା, ଯାଠାରେ କପଟ ··· ବିଧାତା ଯାହା ପ୍ରତ ବିମୁଖ (ଯେ ପତ୍ନୀଶୂନ୍ୟ) ତାହାର ଏକା ଦୁଃଖ । ୨୦ । ଭବଶାର୍ଦ୍ଦୁଳଝପଟ···ସଂସାରରୂପ ବ୍ୟାଘ୍ର ଆକ୍ରମଣ ନ ମାନି ଯେଉଁ-ମାନେ ଯୋଗୀ ହୋଇଥିଲେ । ମନମଥଚପେଟ—କନ୍ଦର୍ପର ଗୁପୁଡ଼ା ବା ଆଘାତ, ଉଚପେଟ—ଗଉ ବଣ୍ଟା, ତଳପ—ତଳିମ, ଶଯ୍ୟା । ୨୧ । ଅନଙ୍ଗଆଖୋଟ—କନ୍ଦର୍ପର କ୍ରୀଡ଼ାଭୂମି, ବିପାଟ—ଉନ୍ମୁକ୍ତ, ବକ୍ଷୋଜସଂପୁଟ—କୁଚରୂପ ପେଡ଼ି । ୨୨ । ଯେଉଁଠାରେ ଶିବଙ୍କର ଧୈର୍ଯ୍ୟ ଗ୍ଲୋଟ (ଛେଦ୍ର) ହେଲା ଅର୍ଥାତ୍ ଶିବଙ୍କ ଧୈର୍ଯ୍ୟ ସୁଦ୍ଧା ନଷ୍ଟ ହେଲା ସେଠାରେ ଅନ୍ୟ କାହାର ଗର୍ବ ରହି ପାରିଲା କି ? ବିଟ—

ହେବାରୁ ଜକଟ । ସଂଖାଳ ହେବାରୁ ନୀରଜକଟ । କର ନ ପାର କ୍ରୋଧ ଅପ୍ରକଟ । କେ କାହାକୁ ବୋଲେ ରେ ଶରକଟ । ମନକୁ ଚକଟ । ଆମ୍ଭଙ୍କୁ ତ ତହୁଁ ନାହିଁ ବକଟ । ୨୩ । ଭଲ ହୋଇ ଅସ୍ତ ନୋହୁ ପତଙ୍ଗ । ଅଭିସାରିକା ହେଲେ ଚଙ୍ଗଚଙ୍ଗ । ପିକ ନୟନ ଦର୍ଶିଲ ତ ରଙ୍ଗ । ସପୁଷ୍ପରଜ ଅନିଳ ତରଙ୍ଗ । ବାଜି ଯୁବଅଙ୍ଗ । ଚମକି ଲୋଡ଼ିଲେ ତରୁଣୀସଙ୍ଗ । ୨୪ । ଶୂନ୍ୟ ପୂର୍ଣ୍ଣ ହେଲ ସ୍ମରନିଷଙ୍ଗ । ସବୁଠାରେ ତାହାର ପରସଙ୍ଗ । ଫିଙ୍ଗି ରତିଅଭିଲାଷୀ ଅପାଙ୍ଗ । ଠାରିଲେ ହେଲେ ଯା ନ ଘେନି ଖଙ୍ଗ । ମଣ୍ଡିଲେ ଉତ୍ସଙ୍ଗ । ଯହିଁ ଅପରିଚିତାର ଏ ଢଙ୍ଗ ।୨୫। ଲତାବଳୀ ଗୁଚ୍ଛେ ଖେଳନ୍ତେ ଭୃଙ୍ଗ । ମଣି ତାହାକୁ ଲୀଳା ଭ୍ରୂଭଙ୍ଗ । ସଂଯମୀଙ୍କ ପୀଡ଼ା ଦେଲ ଅନଙ୍ଗ । ଚଳି ନ ପାର ହେଲେ ଥଙ୍ଗ ଥଙ୍ଗ । ଯେ ଜାତ ଭୁଜଙ୍ଗ । ସେ ନାରୀ ସଙ୍ଗେ ନ କଲେ କି ରଙ୍ଗ । ୨୬ । ସେ ଋତୁ ନବ ଋତୁମତୀ ହେଲ । କେଶକୁ ନବକୁସୁମେ ମଣ୍ଡିଲ । ପ୍ରତିଦିନ ଗତି ହୋଇଲା ମନ୍ଦ । ରସ ବରଷିଲ ନୋହେ ମରନ୍ଦ । କୁନ୍ଦବିକସନ । ମନ୍ଦାର ଅଧର ମନ୍ଦ ହସନ । ୨୭ । ନାନା କିଶଲୟ ଚାରୁ ବସନ । ଯୁବା ବିହାର ସୁରତ ବ୍ୟସନ । ଦକ୍ଷିଣ ବାତ ସୁରଭି ଶ୍ୱସନ । ଗୃହାଣୀ ଚଞ୍ଚଳ ମରନ୍ଦାଶନ । ମଲ୍ଲିକା ଦଶନ । ବହଳ ପୁଷ୍ପଧୂଳି ତା ଆସନ । ୨୮ । ନିଜ ସୌରଭ ଅଧିବାସନ । ପଙ୍କଜପାନଙ୍କ ପାନବାସନ । ଯୁବରଞ୍ଜନ ଯାହା ଦରଶନ । କେତକୀତନୁ କେଡ଼େ ପରସନ । ବିବେକନାଶନ । ଗିର ତାହାର କଲକଣ୍ଠସ୍ୱନ । ୨୯ । ଏପରି ଦେଖି ସେ ଋତୁଲକ୍ଷଣ । କୋଟିସଂଖ୍ୟକ ଯୁଗ ହେଲ କ୍ଷଣ । ଅନଙ୍ଗସୁନ୍ଦର ସୁବିଚକ୍ଷଣ । ଭ୍ରମାଇଲ ପ୍ରତି ଦିଗେ ଈକ୍ଷଣ । ନ କଲ ବୀକ୍ଷଣ । ହରିଣାକ୍ଷୀ ବିନା ଆନ ରକ୍ଷଣ ।୩୦।

---

ଜାର, ଜୀବ ହେଲ...ଜୀବନ ଶ୍ୱାସାକ୍ରାନ୍ତ ବୋଧ ହେଲ । ୨୩ । ଜକଟ—ଦୃଢ଼ ରୂପେ, ନୀରଜକଟ—ପଦ୍ମପତ୍ରର ଶଯ୍ୟା, ଶରକଟ—ଦୁର୍ବଳ । ୨୪ । ପତଙ୍ଗ—ସୂର୍ଯ୍ୟ, ସପୁଷ୍ପରଜ ଅନିଳ ତରଙ୍ଗ—ଫୁଲପରାଗଯୁକ୍ତ ପବନର ଲହରୀ । ୨୫ । କାମନିଷଙ୍ଗ—କନ୍ଦର୍ପର ଶରମୁଣା, ଶୂନ୍ୟ ପୂର୍ଣ୍ଣ ହେଲ—ଶୂନ୍ୟଦ୍ୱାରା ପୂର୍ଣ୍ଣ ହେଲ ଅର୍ଥାତ୍ ସମ୍ପୂର୍ଣ୍ଣରୂପେ ଶୂନ୍ୟ ହୋଇଗଲ ( ସବୁବେଳେ ଶର ମାରିବା ହେତୁରୁ ) । ପରସଙ୍ଗ—ପ୍ରସଙ୍ଗ, ଖଙ୍ଗ—ଅସୁଖ । ୨୬ । ଜାତଭୁଜଙ୍ଗ—ସ୍ୱଭାବତଃ ବିଟ । ୨୭ । ମରନ୍ଦ—ମକରନ୍ଦ । ୨୮ । ଦକ୍ଷିଣବାତ...ମଳୟ ପବନ ସୁଗନ୍ଧଯୁକ୍ତ ନିଃଶ୍ୱାସ ପରି ହେଲ । ଗୃହାଣୀ ଚଞ୍ଚଳ ମରନ୍ଦାଶନ—ମରନ୍ଦାଶନ ( ଭ୍ରମର ) ଚଞ୍ଚଳ ଗୃହାଣୀ ହେଲ । ୨୯ । ଅଧିବାସନ—ଗନ୍ଧମାଲ୍ୟାଦି-ଦ୍ୱାରା ସଂସ୍କାର, ପଙ୍କଜପାନଙ୍କ·····ପଦ୍ମରୂପ ପାନପାତ୍ର, ପାନ ବାସନ ( ପାନ )

ଚିଠାଉ ସଙ୍କେତ ସମସ୍ତ ଅସି । ହେବାରୁ ହୃଦୟସ୍ଥଳବାଳାସୀ । ହେଲ ସେ ଧୃତଧରାଧରଶମ୍ବ । ଦଶିଲ ନାହିଁ କାହିଁ ଅବଲମ୍ବ । ମୋହ ଅନ୍ଧକାର । କଲା ଚେତନା-ଚନ୍ଦ୍ରକୁ ଧିକ୍କାର । ୩୧ । ଗୃହିଁ ତା ତାହା ପ୍ରିୟ ସହଚର । ଶୂନ୍ୟ ମଣି ବିଶ୍ୱ ସଚରାଚର । କୃଷ୍ଣପ୍ରତିପଦା ରଜନୀମୁଖ । ଅଙ୍କେ ଧଇଲ କି ସୁଧାମୟୂଖ । ସେହିପରି କୋଳେ । ଧରିଲ ଯୁବରାଜକୁ ବିକଳେ । ୩୨ । ନ ଲଭି ତା ମୃଦୁ ବଦନବାତ । ଶ୍ରବଣେ କେ ଦେଲ ବଦନବାତ । ଘନସାରମିଶା ପନୀର ପାଣି । ନୟନ ଯୁଗରେ ଲଗାଇ ପୁଣି । ଲପନେ ସିଞ୍ଚିଲ । କରକମଳ ବ୍ୟଜନେ ବିଞ୍ଚିଲ । ୩୩ । ପୁଣି କେ କର ଧମନୀ ପରୀକ୍ଷା । ବୋଇଲ ଜଗଦୀଶ କର ରକ୍ଷା । ଶୁଭ ସମୀପେ ଡାକିଲ ଏ ଗିର । ଅଖଣ୍ଡ ଧରାଖଣ୍ଡଳ କୁମାର । ବୀର ଅଧୀଶ୍ୱର । ନବ କୋଟି ବାହାରେହପ୍ରବର । ୩୪ । ଚତୁରୀ ଚକ୍ଷୁ-ଚକୋର ଚନ୍ଦ୍ରମା । ଭାରତୀ ସାରକେଳ କଳାସୀମା । ଯାଚକ ମନୋରଥ କଳ୍ପଶାଖୀ । ଦେଉ ମହାଦେଈ ଦୁହିଙ୍କ ଅଖି । ନବ ଯୁବରାଜ । ଶ୍ରୀଅଙ୍ଗ କି ଲାଗୁଅଛି କି ଆଜ । ୩୫ । ସେ ପୁରେ ସେପରି ଚହଲ ଜାଣି । ପ୍ରତାପ କଣ୍ଠୀରବ ନୃପମଣି । ଅଗଦଙ୍କାରରାଜକୁ ଅଣାଇଁ । ପୁଚ୍ଛନ୍ତେ ସେ ଜଣାଇଲେ ମଣାଇ । ତାହାଙ୍କ ମନକୁ । ଦେବ ଆସୁ ଦାବ୍ୟ ଅବଧାନକୁ । ୩୬ । ଶ୍ରୀହସ୍ତ ଦେଖି ବିଗ୍ରହିଲୁ ଦେବ । ବିଷମ ପ୍ରହର ପର୍ଯ୍ୟନ୍ତେ ହେବ । ଚନ୍ଦ୍ରକଳା କର ପଡ଼ିଲେ ରାତି । ଶାନ୍ତ ହେବ ସେ ଅତନୁତାପତି । ମଣି ନରପତି । ଚିନ୍ତାରେ ନମସ୍କାଇ ଦେଲେ ମତି । ୩୭ । ଅରୁଣ

---

ରଖିବା ଡବା ) ହେଲ । ୩୦ । କ୍ଷଣକ କୋଟି ସଂଖ୍ୟକ ଯୁଗ ପରି ହେଲ । ଅନଙ୍ଗସୁନ୍ଦର—ଯୁବରାଜାଙ୍କ ନାମ, ଈକ୍ଷଣ—ଆଖି, ବୀକ୍ଷଣ—ଦର୍ଶନ । ୩୧ । ସେ ଧୃତଧରାଧରଶମ୍ବ ହେଲ—ଚନ୍ଦ୍ରକଳାଠାରୁ ପାଇଥିବା ପତ୍ର ଧୈର୍ଯ୍ୟପର୍ବତ ନାଶ ପକ୍ଷରେ ଶମ୍ବ ( ବଜ୍ର ) ହେଲ । ୩୩ । ଶ୍ରବଣେ କେ ଦେଲ ବଦନ ବାତ—କିଏ କାନ ଫୁଙ୍କିଲ । ଘନସାର—କର୍ପୂର, ଲପନ—ମୁଖ । ୩୪ । ଧମନୀ—ନାଡ଼ି, ବାହାରେହପ୍ରବର—କ୍ଷତ୍ରିୟବଂଶଜାତ । ୩୫ । ଭାରତୀ ସାରକେଳକଳାସୀମା—ଯେ ସରସ୍ୱତୀଙ୍କ ସଙ୍ଗୀତ ବିଦ୍ୟାରେ ପରମପ୍ରବୀଣ, ଦେଉ—ରାଜା, ମହାଦେଈ—ରାଣୀ । ୩୬ । ପ୍ରତାପୀ କଣ୍ଠୀରବ ନୃପମଣି—ପ୍ରତାପସିଂହ ରାଜା, ଅଗଦଙ୍କାର ରାଜ—ବୈଦ୍ୟରାଜ । ୩୭ । ବିଷମ ପ୍ରହର ପର୍ଯ୍ୟନ୍ତେ ହେବ—କ୍ଳେଶକର ଅବସ୍ଥା ପ୍ରହରକାଲ ହେବ । ଚନ୍ଦ୍ରକଳା କର—ଚନ୍ଦ୍ରଙ୍କ କଳାର କରଣ ଓ ଚନ୍ଦ୍ରକଳା ନାୟିକାର ହସ୍ତ । ଅତନୁତପତି—

ଉଦୟେ ସେ ଦିନ କ୍ଷଣି । ସ୍ୱପ୍ନେ ଧରଣୀସୁର ଜଣେ ଆସି । ଆଶିଷ ଦେଇ ସେ ନରପତିଙ୍କ । ପ୍ରବୋଧି କହିଲେ ଗିର ଏତିକ । ଶୁଣ କ୍ଷମାଧବ । ମହା-ମହିମବସନ୍ତମାଧବ । ୩୮ । କାମକଳାରେ ବିଜେ କରିଛନ୍ତି । କାମକଳାପ କଳାପ ମୂରତି । ତାହାଙ୍କ ରଙ୍ଗ ରାଜୀବ ଚରଣ । ବିଲୋକେ ତୋ ପୁତ୍ର ଅପମରଣ । କେବଳ ବଞ୍ଚିବ । ଅନ୍ୟଥା ରଖି ନ ପାରନ୍ତି ଶିବ । ୩୯ । ଏହା କହି ହୋଇ ଅନ୍ତରହିତ । ହୋଇଲା ପ୍ରଭାତକ ନଉବତ । ଶୁଭିଲା ବନ୍ଦିବୃନ୍ଦ ସ୍ତୁତିବାଦ । ଶୁଦ୍ଧାନ୍ତକାନ୍ତାଜନଭୂଷାନାଦ । ଧରି ହରିନାମ । ଅପହୃତ ହେଲେ ନୃପସତ୍ତମ । ୪୦ । ହୋଇଲା କାଠିଲାଗି ଅବକାଶ । ମନ୍ତ୍ରିବରଙ୍କୁ କଲେ ଫରମାସ । ମାଧବମାସ ବଳକ୍ଷ ପକ୍ଷରେ । କାମକଳାଖ୍ୟ ନଗରୀ ମୁଖ୍ୟରେ । ଶ୍ରୀ ମାଧବଙ୍କର । ହେବ ବାସନ୍ତିକ ଯାତ୍ରା ପ୍ରବର । ୪୧ । ମୋ କୁଳନଳଯୁ ନେତ୍ରସମ୍ପଦ । ନ ଲଭିବାକୁ ମହାମୋହପଦ । ଦରଶନକୁ ଯିବ ଯୁବରାଜ । ତହିଁ ସମୁଚିତ ସମ୍ଭାର ସଜ । ଏ କ୍ଷାଦେଶ ଗିର । ଉଷ୍ଣୀଷ କଲା ସଚିବପ୍ରବର । ୪୨ । ଶେଷବିଳାସରୁ ଲଭି ବିରାମ । ଅଶେଷ-ବିଳାସୀ ଯେଉଁ ଶ୍ରୀରାମ । ଏକ ରଥାଙ୍ଗ ପରିତ୍ୟାଗ କଲେ । ଦଶରଥାଙ୍ଗରୁ ସମ୍ଭୂତ ହେଲେ । ରଚଇ ପ୍ରଣତି । ତାଙ୍କ ଚରଣେ ଜଳନ୍ତର ପତି । ୪୩ ।

---

ଶୂନ୍ୟ ଛାତି ଓ କନ୍ଦର୍ପ ଜ୍ୱାଳା । ୩୮ । ଧରଣୀସୁର—ବ୍ରାହ୍ମଣ, କ୍ଷମାଧବ —ରାଜା, ବସନ୍ତମାଧବ—ଦେବତା ବିଶେଷ । ୩୯ । କାମକଳା—ନଗରୀର ନାମ, କାମକଳାପ କଳାପ ମୂରତି—କମନୀୟ ମୟୂରପୁଚ୍ଛରେ ବିଚିତ୍ର ବର୍ଣ୍ଣ ମୂର୍ତ୍ତି ଯାହାଙ୍କର । ଅପମରଣ—ଅପମୃତ୍ୟୁ । ୪୦ । ନଉବତ—ନହବତ ବାଜା, ବନ୍ଦିବୃନ୍ଦ—ଭାଟ ସମୂହ, ଶୁଦ୍ଧାନ୍ତକାନ୍ତାଜନ—ଅନ୍ତଃପୁରସ୍ଥା ସ୍ତ୍ରୀମାନଙ୍କର । ୪୧ । କାଠିଲାଗି ଅବକାଶ—ଦାନ୍ତ ଘଷିବା ବେଳ । ମାଧବ ମାସ—ବୈଶାଖ ମାସ, ବଳକ୍ଷ ପକ୍ଷରେ—ଶୁକ୍ଳପକ୍ଷରେ । ୪୨ । ମହାମୋହପଦ—ମୂର୍ଚ୍ଛା ପ୍ରାପ୍ତି, ଉଷ୍ଣୀଷ—ପଗଡ଼ି; ଶିରୋଧାର୍ଯ୍ୟ । ୪୩ । ଶେଷ ବିଳାସ—ସର୍ପରାଜ ଶେଷଦେବଙ୍କ ଉପରେ ଶୋଇବାରୂପ ବ୍ୟସନ । ଏକ ରଥାଙ୍ଗ ପରିତ୍ୟାଗ କଲେ—ଏକ ଚକ୍ର ମଧ୍ୟ ସଙ୍ଗରେ ରଖି ନ ଥିଲେ । ଦଶରଥାଙ୍ଗ—ଦଶରଥଙ୍କ ଶରୀରରୁ ।

## ଊନବିଂଶ ଛାନ୍ଦ

ରାଗ—ରାମକେରୀ

( ଚନ୍ଦ୍ରକଳାର ପରିଣୟ ମନ୍ତ୍ରଣା )

ମସୀକେଶାରସ ରସିକେ ଶୁଣ ଏ ରସ ସ୍ନେହେ । ମଣିମଞ୍ଜୁଳେଶ ମନ୍ତ୍ରୀକି ଅଣି ଏକାନ୍ତେ କହେ । ୧ । ସୁତାପରିଣୟସୁତାପ ଶୀର୍ଣ୍ଣ କଲା ମୋ ଦେହ । କି ବୁଦ୍ଧି ଏଥିକି ସୁବୁଦ୍ଧି ବଳେ ବିଚାରି କହ । ୨ । ସଚିବ ତହିଁକି ବିରଚି ବହୁ ବିଚାର ଭାଷେ । କହିବାର ମୋର ମହୀବାସବ ଘେନ ମାନସେ । ୩ । ନାକରେ ଭୂଲୋକ ଯାକରେ ନାଗେ ଦେଇଲି ମନ । ବିରଚିମାନରେ ବର ତ ନାହିଁ ଜେମା ସମାନ । ୪ । ଶାରଙ୍ଗଧରଙ୍କୁ ତ ରଙ୍କୁନେତ୍ରା ବୋଲିବା ନାହିଁ । ବରିବ କରିବଦନଙ୍କ ଜନକଙ୍କୁ ସେ କେହି । ୫ । ଚତୁରବଦନଙ୍କୁ ପାରିବ ନାହିଁ ଭାବିତରୁ ବର । ନତନୁ ତନୁ-ବିହୀନ ତ ସେ କି କଣୋଗ୍ୟ ସର । ୬ । ବାସବ ତାହାର ଦାସବତହିଁ ହୋଇବେ ନାକି । ଅସିତପକ୍ଷରେ ଶଶୀ ତ କ୍ଷୟ ଲଭେ କଳଙ୍କୀ । ୭ । ପାଶୀକି ମୁକୁନ୍ଦବାସୀକି ମନେ ହସି ନ ଦେବ । ଧନଦଙ୍କୁ କାହୁଁ ବିନଦକେଶା ମନ ବଳିବ । ୮ । କୁବେର ତ ନଳକୁବର ତହିଁ କ୍ଷମତା କାହିଁ । ସୁରଭିତଦେହା ସୁରଭିଷଜେ ରସିବ ନାହିଁ । ୯ । ମାର୍ତ୍ତଣ୍ଡରେ ଜେମା ରତମନା କେବେ ନୋହିବ । ଜ୍ୱଳନେ ସୁଷମା ଜ୍ୱଳନେ ମତେ ନ ସ୍ମୃତିରେ ଲବ । ୧୦ । ଶିଖିବାହନେ ସୁମୁଖୀ ବା ଭଜି ଲଭନ୍ତା ସୁଖ ।

---

ଊନବିଂଶ ଛାନ୍ଦ

୧ । ମସୀକେଶା—କୃଷ୍ଣକେଶଯୁକ୍ତା ରମଣୀ । ୨ । ସୁତା ପରିଣୟ ସୁତାପ —କନ୍ୟାବିବାହର କଷ୍ଟ । ୩ । ମହୀବାସବ—ପୃଥିବୀର ଇନ୍ଦ୍ର ବା ମହୀନ୍ଦ୍ର । ୪ । ନାକରେ—ସ୍ୱର୍ଗରେ, ନାଗେ—ନାଗଲୋକରେ, ପାତାଳରେ । ୫ । ଶାରଙ୍ଗ-ଧରଙ୍କୁ—ଶୃଙ୍ଗନିର୍ମିତ ଧନୁକୁ ଧରିଥିବା ବିଷ୍ଣୁଙ୍କୁ, ରଙ୍କୁନେତ୍ରା— ମୃଗନୟନା, ଚନ୍ଦ୍ର-କଳା; କରିବଦନଜନକ—ହାତୀମୁହାଁ ଗଣେଶଙ୍କ ପିତା ଶିବ । ୬ । ଚତୁରବଦନ—ବ୍ରହ୍ମା; ନତନୁ ତନୁବିହୀନ—କନ୍ଦର୍ପର ତ ଶରୀର ନାହିଁ । ୭ । ବାସବ—ଇନ୍ଦ୍ର, ଦାସବତ—ଭୃତ୍ୟପରି; ଅସିତପକ୍ଷର ଶଶୀ—କୃଷ୍ଣପକ୍ଷର ଚନ୍ଦ୍ର । ୮ । ପାଶୀ—ବରୁଣ, ଧନଦ—କୁବେର, ବିନଦକେଶା—ଘନକେଶା । ୯ । ନଳକୁବର—କୁବେର ପୁତ୍ର, କୁବେର— କୁତ୍ସିତରୂପଧାରୀ, ସୁରଭିଷଜେ—ଦେବବୈଦ୍ୟ ଅଶ୍ୱିନୀକୁମାରଙ୍କ-ଠାରେ । ୧୦ । ମାର୍ତ୍ତଣ୍ଡ—ସୂର୍ଯ୍ୟ, ରତମନା—ଅନୁରକ୍ତଚିତ୍ତ, ଜ୍ୱଳନେ ସୁଷମା

ପଞ୍ଚମରୁ ବଳେ ପ୍ରପଞ୍ଚ ବଳେ ତାହାଙ୍କ ମୁଖ । ୧୧ । ସମରେ ଇତର ଅମରେ ପର କେହ୍ନ ନ ଦିଶେ । ଯକ୍ଷରେ ଚନ୍ଦ୍ରବା ପକ୍ଷରେ ହ୍ରାସ ସ୍ମୃତିରେ ମାନସେ । ୧୨ । ଅନ୍ଧର ପ୍ରକାରେ ଗନ୍ଧର୍ବରେ ତାକୁ କେ ଦେବ । ଭିନ୍ନରେ ଭାବିଲେ କିନ୍ନରେ ବର କାହୁଁ ଆସିବ । ୧୩ । ଗ୍ରହରେ ଯେବେ ଅଗ୍ରହରେ ଖୋଜ ବସିବା ବର । ଧିଷଣ କଚ୍ଛ ଅଭୀଷଣ ଅଭ ନାହିଁ ସୁନ୍ଦର । ୧୪ । ନାଗରେ କେ ଅବା ନାଗରେ ଥିବେ ନ ଥାଇ ଜାଣି । ଭୋଗରେ ସେ ଅଧୋଭାଗରେ ବଡ଼ ଦାରୁଣ ପୁଣି । ୧୫ । ରସାରେ ତ ମୋତେ ସୁସାରେ ନୃପତନୟ କେହି । ରାଜନନ୍ଦନାର ଭାଜନ ହୋଇ ଦିଶଇ ନାହିଁ । ୧୬ । ଆନରେ ତ ଅନୁମାନରେ ତାହାର ଅନୁରୂପେ । ନ ଦିଶେ ସୁଷମା ନ ଦିଶେ ଭୂଷା ସପତଦ୍ୱୀପେ । ୧୭ । କବନବିଦ୍ୟାରେ ଭବନନ୍ଦନଠାରୁ ବଳିବ । ସରସଗୁଣେ ଶ୍ରୀହରଷ ଲଭିଥିବ ଲାଘବ । ୧୮ । ଖଣ୍ଡିତ ନୋହିବା ପଣ୍ଡିତପଣେ ଶେଷକୁ ଜିଣି । ନାରଦଠାରୁ ବିଶାରଦ ହେବ ସଙ୍ଗୀତ ପୁଣି । ୧୯ । ବିଗ୍ରହ ଥାଇ ରବିଗ୍ରହ ପର ପ୍ରତାପୀ ହେବ । ଜେମାର ସଦ୍ଗୁଣ ଯେ ମାର କରଗ୍ରହ କରିବ । ୨୦ । ଶିବକୁ ପ୍ରତ୍ୟହ ଶିବଙ୍କୁ ମନାଇଛୁ କେ ଯୁବା । କାଶୀରେ ଗିରିଜେମା ଶିରେ ଦେଇ ଅସଂଖ୍ୟ ଜବା । ୨୧ । ଗଙ୍ଗାତୀରଙ୍କର ସଂଗାଢ଼ଶଯ୍ୟ ପାବନବନେ । କରିଚି କେ ତପ ଧରି ଚିନ୍ମୟ ଦେହ ଭୁବନେ । ୨୨ । କଳପାନ୍ତ ଯାଏ ଜଳପାନହିଁ ଦେଇ ବରଜ । ଶ୍ୱସନମାନଙ୍କ ଅଶନ କରି ହରିଙ୍କି ଭଜ । ୨୩ । ଜଳପ ତେଜି ସଂକଳପ କରି ଗରିଷ୍ଠ ଫଳ । ତଳପ କରି ଅନଳପ କାଳ ଧରଣୀତଳ । ୨୪ । ଧରକୁ

---

କଳନେ—ଅଗ୍ନିଙ୍କଠାରେ ସୌନ୍ଦର୍ଯ୍ୟ ଥିବା ବିଷୟରେ । ୧୧ । ଶିଖିବାହନ—କାର୍ତ୍ତିକେୟ, ପଞ୍ଚମରୁ······ତାଙ୍କର ମୁହଁ ପାଞ୍ଚରୁ ଅଧିକ ଅର୍ଥାତ୍ ଛଅଟି, ଏ କଥା ସଂସାରରୁ ବାହାର । ୧୨ । ସମରେ—ସମାନଭାରେ, ପର—ଉତ୍କୃଷ୍ଟ । ୧୩ । ଅନ୍ଧର ପ୍ରକାରେ—ଅନ୍ଧଭାବରେ । ୧୪ । ଧିଷଣ କଚ୍ଛ ଅଭୀଷଣ—ବୃହସ୍ପତି କେତେକ ପରିମାଣରେ ଅଭୟଙ୍କର । ୧୫ । ନାଗରେ—ନାଗଲୋକରେ ଏବଂ ନାଗରମାନେ; ଭୋଗରେ—ଫଣାରେ; ଅଧୋଭାଗରେ—ନିମ୍ନଦେଶ ପାତାଳରେ । ୧୮ । କବନ ବିଦ୍ୟାରେ—କବିତ୍ୱ ସ୍ଫୁରଣରେ ଭବନନ୍ଦନ—ଗଣେଶ, ଶ୍ରୀହର୍ଷ—ନୈଷଧ କାବ୍ୟ ପ୍ରଣେତା କବି । ୧୯ । ଶେଷ—ଶେଷଦେବ, ଫଣୀଶ୍ୱର । ୨୦ । ବିଗ୍ରହ—ଶରୀର; ମାର—କନ୍ଦର୍ପ । ୨୧ । ଶିବ—ମହାଦେବ, ଶିବଙ୍କୁ—ନିରନ୍ତର ମଙ୍ଗଳ ନିମିତ୍ତ । ଗିରିଜେମା—ପାର୍ବତୀ ଅନ୍ନପୂର୍ଣ୍ଣା; ଜବା—ମନ୍ଦାରଫୁଲ । ୨୩ । ଜଳ—ପାନହିଁ—ପାଣି ପିଇବା ମଧ୍ୟ, ଶ୍ୱସନ—ପବନ, ଅଶନ—ଭୋଜନ । ୨୪ । ଜଳପ

ପାସୋର ଧରକୁଟର ଅଙ୍କେ ବସି । ଶୟନ ନ ଭଜା ନୟନ ନାସା ଅଗ୍ରେ ନିବେଶି । ୨୫ । ଯେ ଜପିଥିବ ତ ଶେଯପୀଠରେ ଶତବରଷ । ସେ ସିନା ଧରିବ ଏ ସୁନାଗୋଷ୍ଟି କରସାରସ । ୨୬ । ଚରମାଦ୍ରି ଯାଏ ଚରମାନଙ୍କୁ ପେଶିବା ଶିବେ । ନିଦେଶମାଫିକେ ସ୍ୱଦେଶଯାକ ବୁଝି ଅସିବେ । ୨୭ । ବାଳୀବର ବର ଭାବେ ଯା ଛବି ହେବ ପ୍ରକଟ । ରଙ୍ଗାଜୀବେ ଯିବେ ଅସିବେ ଲେଖି ତା ରୂପପଟ । ୨୮ । ମାୟାନର ନରତନୟେ ଜାଣନ୍ତି ଇନ୍ଦ୍ର-ଜାଲେ । ଅଙ୍କା ଦେବ ଦେବ ସେ ଯିବେ ଦେଶ ହେଳବେ ଭଲେ । ୨୯ । ଧୀରପଣେ ପଣେ ଅମରଗୁରୁ ଯିବେ ଓହରି । ପୃଥିବୀରେ ବୀରେ ନ ଥିବେ ଯାହା କଳାକୁ ସରି । ୩୦ । ସମ୍ପଦାରେ ଦରେ ଶଙ୍କିବେ ଯାକୁ କୁଳିଶପାଣି । ବଳି କର୍ଣ୍ଣ କର୍ଣ୍ଣ ଯା ଦାନ ଯଶ ନ ଥିବ ଶୁଣି ।୩୧। ଗୁଣରୂପରୁ ପୁରୁଷତା-ଭାସ ମାନକ ଥିବ । ଅବଧାନ ଧାନ ପ୍ରମାଣେ ଯାହାଠାରେ ହୋଇବ ।୩୨। ସେହି ହେବ ଦେବ ସୁମତମଣ୍ଡଳୀସଂକ୍ରନ୍ଦନ । ଜେମାମଣି ମଣି-ସଂଯୋଗବିଧାନରେ କୁନ୍ଦନ ।୩୩। ସ୍ୱୟମ୍ବର ବରବର୍ଣ୍ଣନା ମନେ ବାଞ୍ଛିବ ଅବା । ମନୋରଥ ରଥସଞ୍ଚାରପଥ କମେ ଜାଣିବା ।୩୪। ଏ ବିଧିରେ ଧିରେ କହନ୍ତି କନ୍ୟାରତନ ଛବି । ତାହାର ସେ ରସେ ବଳିବା ଚିତ୍ତ ପ୍ରଧାନ ଭାବି ।୩୫। ଜନମୀର ନିରବଧିକ ଧନେ ବଳେ ଯେ ମତ ଜାଣି ତାତ ତା ତରଳତା ଲୋଡ଼େ ସୁଗୁଣଖ୍ୟାତ ।୩୬। ବନ୍ଧୁ କୁଳକୁ ଲଜ୍ଜା ନୋହେ କୁଳ ହେଲେ ନିର୍ମଳ । ଗୃକରଙ୍କ ରଙ୍କପଣରୁ ଭୋଜି କରନ୍ତି ମୂଳ ।୩୭। ମହତ୍ତ୍ୱ ମହତ୍ତମମାନେ ପ୍ରବଳାଇ କରନ୍ତି । ଅନନ

---

ଜଳ୍ପ, କଥା ।୨୫। ଧରକୁଟରଅଙ୍କେ—ପର୍ବତଶୃଙ୍ଗସ୍ଥ କୁଡ଼ିଆରେ ।୨୬। କରସାରସ—କରପଦ୍ମ । ୨୭ । ଚରମାଦ୍ରି—ଚରମାଚଳ, ପଶ୍ଚିମସୀମା ଶେଷ; ଶିବେ—ଶୁଭମୁହୂର୍ତ୍ତରେ । ୨୮ । ରଙ୍ଗାଜୀବେ—ଚିତ୍ରକରମାନେ । ୩୦ । ପଣେ ଅମର-ଗୁରୁ—ଅଣୀ ଜଣ ବୃହସ୍ପତି, ଓହରିଯିବେ—ପରାସ୍ତ ହେବେ । ୩୧ । କୁଳିଶ-ପାଣି—ଇନ୍ଦ୍ର; ବଳି, କର୍ଣ୍ଣ—ପ୍ରସିଦ୍ଧ ଦାତା ଦୁଇ ଜଣ, କର୍ଣ୍ଣ—କାନ । ୩୨ । ପୁରୁଷତାଭାସ—ପୌରୁଷର ସୂଚନା ବା ସଙ୍କେତ । ଅବଧାନ—ଚିତ୍ତର ଏକାଗ୍ରତା, ଧାନ ପ୍ରମାଣେ—ଅତି ଅଳ୍ପ ମାତ୍ରାରେ । ୩୩ । ସୁମତମଣ୍ଡଳୀ ସଂକ୍ରନ୍ଦନ—ପଣ୍ଡିତସମୂହର ଇନ୍ଦ୍ର, ଅର୍ଥାତ୍ ଶ୍ରେଷ୍ଠ ପଣ୍ଡିତ, କୁନ୍ଦନ—ସୁବର୍ଣ୍ଣ । ୩୪ । ମନୋରଥରଥ ସଞ୍ଚାରପଥ—ଅଭିଳାଷରୂପ ରଥର ଗତିପଥ ଅର୍ଥାତ୍ ଯେଉଁ ଦିଗରେ ଇଚ୍ଛା ତାହା । ୩୬ । ନିରବଧିକ ଧନେ—ପ୍ରଚୁର ସମ୍ପତ୍ତିରେ ( ମା ଧନ ଖୋଜେ ), ତା ତରଳତା—ଧନର ଅସ୍ଥିରତା, ସୁଗୁଣ

ଅନ ନର ନାନା ସ୍ତବ କରେ ଭରତ । ୩୮ । ତଥାପି ତଥାପି ହୋଇବ ଦେବ ଦୁଃଖ ବଗୃର । ମନୁଜ ମନୁଜନ୍ୟପୀଡ଼ା ନ ରଖନ୍ତୁ ଈଶ୍ବର । ୩୯ । ତରୁଣୀ ତ ରଣୀ କରନ୍ତୁ ତପେ ଦେବଙ୍କୁ ପୂର୍ବେ । ଦେବ କା ଦେବ କଶୋଗ୍ରିକ ଦୁଃଖ ନ ସୁଝି ଏବେ । ୪୦ । ସଚବ ଶଚୀବରତୁଲ୍ୟ ନୃପ ଦୁହେଁ ଏପର । ମାନସମାନ ସମାଧାନକର ନେଲେ ଶର୍ବରୀ ।୪୧। ପ୍ରଭାତପ୍ରଭା ତରଣିଙ୍କ ସୁତ କଲେ ପ୍ରକାଶ । ବାସବ-ବାସବନ୍ତୀ ଦଗ ହେଲା ଯୋଗିନୀ ବେଶ । ୪୨ । ଅମ୍ବର ଅମ୍ବର କଷାୟ ପିନ୍ଧିବାରେ ରସିଲା । ଦଣ୍ଡକ ଦଣ୍ଡ-କମଣ୍ଡଳୁ ଘେନି ସମୁଲ୍ଲସିଲା ।୪୩। ହରଷେ ହରସେବନରେ ମାଳୀ ହେଲେ ବାହାର । ସାରସସାର ଷଟପଦେ ପିଇ କଲେ ଝଙ୍କାର ।୪୪। କାରଣ ହେଲା ସେ ସମୟ କୋକଲୋକ ମୋଦର । ଦରନ୍ତୁ ଉଲୂକେ ନୋହିଲେ କୋରଡ଼ରୁ ବାହାର । ୪୫ । ହାର ନୀହାରପର ହେଲା ସ୍ତନେ ଅଭିସାର । ମାରମାରଗଣ ବରଷା କରୁଁ ହେଲା ଓହର ।୪୬। ହରଣ କୁଲଟା ନୀବୀର କରୁଥିଲେ ଯେ ବାଟ । ବଟପିଚ୍ଛାୟାରେ ଛପିଲେ ଛାଡ଼ି ବହଳ ଖଟ ।୪୭। ଖଟଣୀ ଲୋକେ ଫିଟାଇଲେ ନୃପଦ୍ୱାର କବାଟ । ବାଟଜଗାଙ୍କୁ ଅଭିସାରୀ ଦେଲେ ଭୂଷଣ ପାଟ । ୪୮ । ପାଟବ ତମିସ୍ରପୁଞ୍ଜର ରବି କଲେ ବିପାଟ । ପାଟଇରେ ନାସେ ଆଶ୍ରୟ କଲେ ଅଚଳକୂଟ ।୪୯। କୂଟଯୋଧୀ ଦନୁଜଙ୍କର ଯେଉଁ ଗ୍ରାମ ମାରଣ । ରଣମୁଖେ ସେ ଛୋଟରାୟ ନୃପତର ଶରଣ । ୫୦ । ପରଣସ୍ୟମନ୍ତ୍ରାନନ୍ଦନ ଜାଣ ଏ ଛାନ୍ଦ ନାମ । ଏକ ପଞ୍ଚାଶତ ସଂଖ୍ୟକ ପଦେ ହେଲା ବରାମ । ୫୧ ।

---

ଖ୍ୟାତ—ଜ୍ଞାନର ପ୍ରଶଂସା । ୩୯ । ମନୁଜମନୁଜନ୍ୟପୀଡ଼ା – ମନୁଷ୍ୟର ମାନସିକ ସନ୍ତାପ । ୪୧ । ସଚବ—ମନ୍ତ୍ରୀ; ଶଚୀବର—ଇନ୍ଦ୍ର । ୪୨ । ତରଣିଙ୍କ ସୁତ—ସୂର୍ଯ୍ୟ ସାରଥି ଅରୁଣ; ବାସବବାସବନ୍ତୀଦଗ—ଇନ୍ଦ୍ରଙ୍କ ଅଧିଷ୍ଠିତ ପୂର୍ବଦଗ; ଯୋଗିନୀ-ବେଶ – ତାପସୀ ବେଶ; ଅମ୍ବର...ଗୈରିକବସ୍ତ୍ରରୂପ ରକ୍ତବର୍ଣ୍ଣ ଆକାଶ । ୪୩ । ସାରସସାର – ପଦ୍ମର ମଧୁ ବା ମକରନ୍ଦ । ୪୫ । କୋକଲୋକ—ଚକ୍ରବାକ ରାଜ୍ୟ, ଉଲୂକ – ପେଚା । ୪୬ । ନୀହାରପର—ତୁଷାର ପର ( ଶୀତଳ ) । ମାରମାରଗଣ – କନ୍ଦର୍ପଶର; ଓହର – କ୍ଷୀଣ, ଅଳ୍ପ । ୪୭ । କୁଲଟା—ଅସତୀ ନାରୀ, ନୀବୀ—ସ୍ତ୍ରୀମାନଙ୍କ ଲୁଗାର ଅଣ୍ଟାଗଣ୍ଠି, ବଟପିଚ୍ଛାୟା—ଗଛଗୁଡ଼ିକ । ୪୮ । ଅଭିସାରୀ – ଅଭିସାରିକା ନାୟିକା । ୪୯ । ପାଟବ ତମିସ୍ରପୁଞ୍ଜର—ଘନ ଅନ୍ଧକାରସମୂହର, ବିପାଟ—ବିଦାରଣ, ପାଟଇର—ଚନ୍ଦ୍ରର, ଅଚଳକୂଟ—ପର୍ବତ ଶିଖର । ୫୦ । କୂଟଯୋଧୀ—ମାୟା ଯୁଦ୍ଧକାରୀ । ୫୧ । ପରଣସ୍ୟ ମନ୍ତ୍ରାନନ୍ଦନ—ଆନନ୍ଦପ୍ରଦ ବିବାହ ମନ୍ତ୍ରଣା ।

## ବାଂଶ ଛାନ୍ଦ

ରାଗ—ରାମକେଶ

( ଇନ୍ଦ୍ରଜାଲ ପ୍ରଦର୍ଶନ )

ଶୁଣ ହେ ସୁହୃଦ ଜନେ ନବ ଯୁବରାଜ ଦିନେ ପୁର ବାହ୍ୟ ଉପବନ ମଣ୍ଡପେ ବସି । ରାଜବଲ୍ଲଭ ପ୍ରମୁଖ ସଖାଜନବୃନ୍ଦଙ୍କୁ ସୁଖ ଦେଉଥିଲେ ମୁଖ୍ୟ ଅକ୍ଷଲୀଳାରେ ରସି । ଖଟଣି ସାମନ୍ତ କିଶୋରେ । ଖଟିଥିଲେ ସାବଧାନ ହୋଇ ପାଶରେ । ୧ । ଏ ସମୟେ କୁଞ୍ଜଦ୍ୱାରପାଳ ବେତ୍ର-ଲତାଧର ଧରଣୀ ହୃଦୟ ଶିରସ୍ପରଶ କରି । ଜଣାଇଲା ଦେବ୍ୟ ଅବଧାନକୁ ଆମ୍ଭ ହେ ଦେବ ନଟ ଅଶେଷ ବିଭବ ବେଶସଞ୍ଚାରୀ । ମାୟାମୟ ବିଦ୍ୟା-କୁଶଳ । ତବ ପାଦମୂଳ ଦରଶନରେ ଲୋଳ । ୨ । କସାଇଛୁ କେତେ କ୍ରମେଲକ ତୁରଙ୍ଗ ଚରମେ ଦାମାମା ନାଗରା ଭୂରି ଅଛୁ ଅନେକ । ବୁହାଇଛୁ ମତ୍ତଗଜ ସମଜରେ କରି ସଙ୍ଗ ଜାମ୍ବୁନଦ ଜଗ୍‌ରତମ୍ବୁ ନେପଥ୍ୟ ଯାକ । ଅତ ପଟୁ ତଟ୍ଟୁପଟଳୀ । ମହୋନ୍ନତ ବଳୀବର୍ଦ୍ଦ ବୁହାଇ ଚଳି । ୩ । ସିଂହସଂହନନ ସାରମେୟ ଅଛନ୍ତି ଅପାର ମେଖବୁହା ଗଧ ଅଧଶତ ସମେତେ । ପାଟୀର ଚର୍ଚ୍ଚିତସ୍ତନ ଘଟୀ କଞ୍ଚୁକ ଶୋଭନ ନଟୀ ଦଶ ଗୋଟି ସିଂହଳକଟୀ ସମସ୍ତେ । ଗାନ ନରତନ ରୀତରେ । ଆନ ନର ତ ନ ଥିବେ ପୁଣି କ୍ଷିତରେ । ୪ । ଶୁଣି ଗୋତ୍ରାଧିପ ପୁତ୍ର ମିତ୍ର ସମ୍ମତରେ ନେତ୍ର-କୋଣକୁ କମ୍ପାଇ ଆସୁ ବୋଲି ସୂଚିଲା । ଅବକାଶେ ଭେଟି ନଟ ଯୋଡ଼ି ରହି କରପୁଟ ଜୟ ପୂର୍ବ ସ୍ତବ ଭାଟ ପରି ରଚିଲା । କଳପିଲା ହାଟ କପଟ ।

---

ବାଂଶ ଛାନ୍ଦ

୧ । ମୁଖ୍ୟ ଅକ୍ଷଲୀଳା—ପ୍ରଧାନ ପଶାଖେଳ । ୨ । କୁଞ୍ଜଦ୍ୱାରପାଳ—କୁଞ୍ଜ-ଦ୍ୱାରର ଦ୍ୱାରୀ; ଧରଣୀହୃଦୟ ଶିର ସ୍ପରଶ କରି—ମାଟିରେ ବକ୍ଷ ଓ ମସ୍ତକ ଲଗାଇ ଅର୍ଥାତ୍ ସାଷ୍ଟାଙ୍ଗ ପ୍ରଣାମ କରି । ୩ । କସାଇଛୁ—ଦୃଢ଼ରୂପେ ବାନ୍ଧିଛୁ; କ୍ରମେଲକ—ଓଟ, ତୁରଙ୍ଗ—ଘୋଡ଼ା, ଚରମେ—ପିଠିରେ, ଦାମାମା ନାଗରାଭୂରି—ବାଦ୍ୟବିଶେଷ, ମତ୍ତଗଜସମଜରେ—ବଡ଼ ବଡ଼ ହାତୀସମୂହଦ୍ୱାରା; ଜାମ୍ବୁନଦ··· ସୁନାଜରି ପଡ଼ିଥିବା ତମ୍ବୁ ଏବଂ ନେପଥ୍ୟ ( ବେଶ ) ସବୁ । ତଟ୍ଟୁପଟଳୀ—ଶ୍ରେଷ୍ଠ ଘୋଡ଼ାସବୁ । ୪ । ସିଂହସଂହନନ ସାରମେୟ—ସିଂହପରି ଶରୀରବିଶିଷ୍ଟ କୁକୁର, ମେଖ—କୀଲା (ତମ୍ବୁ ଟାଣିବାପାଇଁ), ପାଟୀର—ଚନ୍ଦନ, କଞ୍ଚୁକ—କାଞ୍ଚୁଲା, ଗାନ ନରତନରୀତରେ—ଗାଇବା ଓ ନାଚିବାରେ । ୫ । ଗୋତ୍ରାଧିପ ପୁତ୍ର—ରାଜପୁତ୍ର,

କଦଳୀତରୁ ତୋରଣ କନକପୁଟ । ୫ । ଯୁବରାଜ ସଙ୍ଗେ ଯାଉଁ ଯେତକ ନଟୀ ଅକାଣ୍ଡ ହେଲେ ନାଟ ଦେଖିବାକୁ ମଣ୍ଡଳୀ ଘେରି । ହୋଇ ତାଙ୍କ ମାୟା ଭ୍ରଂଶ ଜାତ ହେଲେ ରାଜହଂସ ତା ଦେଖି ଯେ ହସିଲା ତାଠାରୁ ସେପରି । ତହୁଁ ପୁଣି ଆକାଶେ ଗୃହି । ଡାକିଲା ରେ କାମଚଣ୍ଡି ରହିଲୁ କାହିଁ । ୬ । ତହୁଁ ଆକାଶରୁ କାଶମିଶା ବୃଦ୍ଧା ଅଟ୍ଟହାସ ସହିତେ ଶୁଭିଲା ଘୋର ଘର୍ଘରସ୍ୱରେ । ସୁରତ ବିନା ନିମିଷ ହୋଇଛୁ ମତେ ବରଷ କର ରେ ମୋର ସନ୍ତୋଷ ନବଳିକଶୋରେ । ଏତେ କହି ପଡ଼ିଲା ଖସି । କାଳରାତ୍ରି ମୂର୍ତ୍ତି ତାଳତରୁ ସଦୃଶୀ । ୭ । ଧବଳ ଝାଞ୍ଜରକେଶା ତହିଁ ପୁଣି ଲୋକହସା କମୁକ ସଦୃଶ ଖୋସା ସଧ କରିଛୁ । କାକ ବକ ପକ୍ଷଟିରି ଦୃଷ୍ଟ ବଦ ଗୃରସୋରି ବେଢ଼ରେ ବସନ୍ତ ତୋରି ଫୁଲ ଘେରିଛୁ । ନେତ୍ର ତରୁକୋଟର ପରି । ଗୋଟାକରେ ଅଛୁ ମାନ ସଫେଦ ତାରି । ୮ । ପୀନସଗଦ ବିକୃତ ନାସାବିଳ ବିନିର୍ଗତ ଲୋମ ନିକୁରମ୍ବ ଚୁମ୍ବେ ଲମ୍ବ ଚିବୁକ । କଞ୍ଚୁକ ହୁଗୁଳି ଗଳିବିଳି ତଳା କୁକ୍ଷିସ୍ଥଳୀ ଲୁଳି ହୋଇଛୁ ଅନ୍ଦୋଳ ଯାହାର ବୃକ । ଶଙ୍ଖ ମଣିମାଳା ଅନେକ । ମଣ୍ଡିଛୁ ସେ ଚଣ୍ଡୀ ଗଳଗଣ୍ଡିଆ ବେକ । ୯ । ଢନ୍ଦୁକ ଇନ୍ଧନ ଗୋରି ଦେହା ପୃଥୁଳପଞ୍ଜରି ଜରାଶୁଷ୍କଲାଙ୍ଗଳୀ କପୋଳ ନିତମ୍ବ । ଘୋଡ଼ାଇଁ କାଷାୟ ବାସେ ଅଧ ଅଧମାଙ୍ଗେ ଦଶେ କାସୀସ ଓଷ୍ଠୀର ଶ୍ୱେତ ଲୋମ-କଦମ୍ବ । ତରୁଣଙ୍କୁ ଗୃହି ସଂକୋଚେ । ରସନା କାମୋଡ଼ି ହସି ଅଳପ ନାଚେ । ୧୦ । ପାଶେ ମିଳି ଯିବା ଯୁବରାଜନଙ୍କୁ ସୁନଧନବା ବିକାର ଆତୁରେ କାମ

---

କଳପିଲ ହଟକପଟ—ମାୟାପୂର୍ଣ୍ଣ ଇନ୍ଦ୍ରଜାଲ କଳନା କଲା, କନକପୁଟ—ସୁନାପୁଟଦିଆ । ୬ । ନଟୀ—ବେଶ୍ୟା, ହୋଇ ତାଙ୍କ ମାୟାଭ୍ରଂଶ—ଖୋସଣୀ ଫିଟି-ଯାଇ । ୭ । କାଶମିଶା—କାଶରୋଗଯୁକ୍ତା, ନିମିଷ—କ୍ଷଣକାଳ । ୮ । ଧବଳଝାଞ୍ଜର-କେଶା—ଯାହାର କେଶ ଧଳା ଓ ପାତଳ, କମୁକସଦୃଶ—ଗୁଆ ପରି କ୍ଷୁଦ୍ର, ସଧକରିଛୁ—କୌତୁକରେ ବାନ୍ଧିଛୁ, କାକବକପକ୍ଷଟିରି—କୁଆ ଓ ବଗ ପକ୍ଷୀ ଖୋସାରେ ଖୋସିଛୁ, ଦୃଷ୍ଟ ବଦ ଗୃରସୋରି—ଦେଖାଯାଉଥିବା ଗୃରସର ବଦ, ବସନ୍ତତୋରି—ହଳଦିଆ ବର୍ଣ୍ଣର ସୁନ୍ଦର ( ଫୁଲ ), ତରୁକୋଟର—ଗଛଖୋଲ । ୯ । ପୀନସଗଦବିକୃତ—ପୀନସ ରୋଗଦ୍ୱାରା ବିକାର ପ୍ରାପ୍ତ, ନିକୁରମ୍ବ—ସମୂହ, କୁକ୍ଷିସ୍ଥଳୀ—ଉଦରଦେଶ, ବୃକ—ବକ୍ଷସ୍ଥଳ ( ସ୍ତନ ), ଗଳଗଣ୍ଡିଆ ବେକ—ଗଳଗଣ୍ଡ ରୋଗଯୁକ୍ତ ସ୍ଥୂଳ ବେକ । ୧୦ । ଢନ୍ଦୁକଇନ୍ଧନ—କେନ୍ଦୁକାଠ, ଜରା—ବାର୍ଦ୍ଧକ୍ୟ, ଶୁଷ୍କଲାଙ୍ଗଳୀ-କପୋଳନିତମ୍ବ—ଗଣ୍ଡଦେଶ ଓ ନିତମ୍ବ ଶୁଖିଲା ନଡ଼ିଆ ଭଳି, କାଷାୟବାସ—ଗେରୁଆ ଲୁଗା, କାସୀସଓଷ୍ଠୀ—ଯାହାର ଓଷ୍ଠର ବର୍ଣ୍ଣ ହୀରାକସ ବର୍ଣ୍ଣ ପରି ଛେଚା ବା ପୀତାଭ, ଲୋମକଦମ୍ବ—ରୋମସବୁ । ୧୧ । ସୁନଧନବା—ପୁଷ୍ପଧନ୍ୱା, କନ୍ଦର୍ପ; ବିକୃତ—ସ୍ୱଭାବର

ଭିଡ଼ଇ ଭୂଜେ । ରଦାବହ୍ମାନବଦନା କର ରସ ଅସ୍ୱାଦନା ଇଷି ଇଷି ଭୃଷି ଶୋଷି ନୟନ ବୃଜେ । ତା ବିକୃତ ଅନ୍ତରହିତ । ହସାଇ ହସାଇ ହେଲ ଅନ୍ତରହିତ । ୧୧ । ପୁଣି ମାୟା ନାଗ ନାକ ନଗରୀ ନାଗରୀଯାକ ଜମା ହୋଇ ଜନ୍ମାଇଲେ ଦିବ୍ୟ ସଙ୍ଗୀତ । ମିଶାଇ ଶଙ୍କରତପଭଞ୍ଜନ-ଭଙ୍ଗୀ କଳାପ ମନ୍ଦମନ୍ଦହାସ ପରିହାସ ଇଙ୍ଗିତ । ମେରୁଧୀର ନୃପକୁମାର । ତେବେ ହେଲେ ନ ସ୍ଖଳିଲ ଧୈର୍ଯ୍ୟ ସାର । ୧୨ । ଏ ସମୟେ ଘନସାର-କସ୍ତୁରୀ-କୁଙ୍କୁମସାର-ଚନ୍ଦନସୁବାସୀ ମନ୍ଦବାତ ବହିଲ । କେବଳ ମାନ ସେ ଜନାଧିନାଥନନ୍ଦନ ବିନା ଇତର ନରଙ୍କ କିଛି ଦୃଶ୍ୟ ନୋହିଲ । ହେଲ ଦିବ୍ୟ ପୁଷ୍ପବରଷା । ହେଲ ସୁରଧରୀପରି ସେ ରଙ୍ଗରସା । ୧୩ । ଶୁଭିଲ ମଣିମା ତାକ ଅଧିପଲାଞ୍ଛନଯାକ ମଧ୍ୟେ ଦିଶିଲ କନକମୟ ପାଲଙ୍କି । ଜାମ୍ବୁନଦ ଚନ୍ଦ୍ର ପ୍ରଭାକର ପରଦାର ପ୍ରଭାବବଶରୁ ପଡୁଥିଲ ପ୍ରଭା ଝଲକି । ମଣ୍ଡପ ନିକଟ ଚତ୍ୱରେ । ଅବତରନ୍ତେ ସେ ଯାନବର ସତ୍ୱରେ । ୧୪ । ଉପବନକୁ ପବନ କେହି କମ୍ପାଉଛି ବନରୁହ ସୁଲୋଚନା ଅନା ବୋଲି କେ ବାଳା । ପରଦା ଧରନ୍ତେ ଟେକି ମନ୍ତ୍ରିଲ ସେ ଧରନ୍ତୀକି ସଖୀ ଅଂସେ ଦେଇ ଭୁଜ ଚମ୍ପକମାଳା । ଝଟ କର ପଡ଼ନ୍ତେ ଦୃଷ୍ଟି । ସରିଗଲ କୁମାରର ବିବେକ ସୃଷ୍ଟି । ୧୫ । ନବସ୍ନେହ ବିଶାରଦ ନୃପାତ୍ମଜ ସେ ଶାରଦ-ସୁଧାମୟୂଖମୁଖୀର ଶୋଭା ବୀକ୍ଷଣେ । ମକରଧ୍ୱଜ ମୋହନ ମୂନଶିଳୀମୁଖ ମୂନ ବାଜି ବିଗତଚେତନ ହୋଇଲା କ୍ଷଣେ । ମୋହନାବସାନେ ଅନାଇ । ଭାବିଲ ଏ ସୁଷମା ତ ଦେଖିଲି ନାହିଁ । ୧୬ । ନୂତନ ତମାଳମାଳ ନୀଳ ଶଇବଳ ବଳ ଦଳିତକଜ୍ଜ୍ୱଳ ଜଳଧର ସଙ୍ଘାତ । ଏ ସବୁ ଛବି ପାତଳ ଏହାର କୁନ୍ତଳତଳ ଶ୍ୟାମର ମରକତରୁ ନୋହେ ତ ଜାତ । ଭ୍ରମରେ କେ ହେଲେ ଭ୍ରମରେ । ବିଗ୍ରହିବ ଅଛି କିଛି ଏହି ସମରେ । ୧୭ । ଲମ୍ବକୁଞ୍ଚିତ

---

ଅନ୍ୟଥା ଭାବ, ବିକୃତ; ଅନ୍ତରହିତ—ଅନନ୍ତ, ପ୍ରଚୁର; ଅନ୍ତରହିତ—ଅନ୍ତର୍ହିତ, ଅଦୃଶ୍ୟ । ୧୨ । ନାଗନାକନଗରୀନାଗରୀଯାକ—ପାତାଳ ଓ ସ୍ୱର୍ଗର ନଗର-ମାନଙ୍କର ଯୁବତୀମାନେ; ମେରୁଧୀର—ଦୃଢ଼ଚିତ୍ତ । ୧୩ । ଘନସାର—କର୍ପୂର; ସୁରଧରୀ—ସ୍ୱର୍ଗ; ରଙ୍ଗରସା—କ୍ରୀଡ଼ାମଞ୍ଚ । ୧୪ । ଅଧିପଲାଞ୍ଛନ-ରାଜଚିହ୍ନ; ଜାମ୍ବୁନଦ—ସୁବର୍ଣ୍ଣ; ପ୍ରଭାକର—ସୂର୍ଯ୍ୟ; ପରଦାର ପ୍ରଭାବବଶରୁ—କନାଟିବାଡ଼ ଆଗରେ ଥିବାରୁ, ଚତ୍ୱର—ଅଗଣା, ଯାନବର—ଶ୍ରେଷ୍ଠଯାନ, ପାଲଙ୍କି । ୧୫ । ବନରୁହସୁଲୋଚନା—ପଦ୍ମନେତ୍ରା, ଅଂସେ—କାନ୍ଧରେ । ୧୬ । ମକରଧ୍ୱଜ···କନ୍ଦର୍ପର ମୋହନକାରକ ଫୁଲଶରର ମୂନ ବାଜି କ୍ଷଣକ ମଧ୍ୟରେ **ଅଜ୍ଞାନ ହୋଇଗଲ, ସୁଷମା—ପରମଶୋଭା । ୧୭ ।** ଶଇବଳ—ଶିଉଳି, ବଳ—

କୋମଳ ସଜଳଜ ପରିମଳ ନୋହେ ତ ମହେନ୍ଦ୍ରନୀଳ ତହିଁକି ତୁଳା । ତମ ତମୋନୁଦଙ୍କର କରଣର ଭୟଙ୍କର ଏ ତ ମଣିଅଛି ହୀର ହେମ-ପିତୁଳା । ଏହା ଦୂଷିତ ଅନଳରେ ନାହିଁ । କଳାପୀର କଳାପେ ତ କଳା ଏ ନାହିଁ । ୧୮ । ଏକା ଏ କାମିନୀ ଧନ୍ୟ ଭଲା ଲଲାଟ ଲାବଣ୍ୟ ସୁନାମୟ କେତକେ ତ ନାହିଁ ଏ ଶିରୀ । ବଳକ୍ଷପକ୍ଷ ଅଷ୍ଟମୀ ସୁଧାଂଶୁ ଖେ ଭ୍ରମି ଭ୍ରମି ଶ୍ରମୁଁ ବହିଅଛି କି ଜମି ଦାଗେ ଏପରି । କି ଚିକ୍କଣ କି ଝଳମଳ । ଦେଖା ନାହିଁ ଲେଖା ଲେଖାପୁରେ ଏମନ୍ତ । ୧୯ । ବିମଳ ସୁନ୍ଦର ଦରପଣ ସହୋଦର ଦରହାସୀର ଭାସୁର ସୁରଞ୍ଜନ କପୋଳ । କେଡ଼େ ମନୋହର ହରମୋହନ ରୁଚି ରୁଚିର କେଳି କଳନ ମନ୍ଦିର ଏ ଗଣ୍ଡସ୍ଥଳ । ଥରେ ଏଥି ଚୁମ୍ବିଲେ ରସେ । ବୋଲାଇବ ନିଖିଳ ତରୁଣେଶ୍ୱର ସେ । ୨୦ । ଆହା ଏ ହେମଲତାଙ୍ଗୀ ଭ୍ରୂଯୁଗ ଭଙ୍ଗ ଭାଙ୍ଗି ଦେଉଛି ନୀଳଭୁଜଙ୍ଗୀ ଗର୍ବକୁ ଖେଳେ । କମ୍ପାଇବ ମନ ମନସିଜ ଶରାସନ ସନକଙ୍କର ଚେତନ ତ ନ ରହିବ ଭଲେ । ଯୁବ ମର୍ମକଣ୍ଟା କତୁରୀ । ସମ୍ବାଦ କି କମ୍ପାଉଛି ଗୋରୀ ଚତୁରୀ । ୨୧ । ସୁଧାରସ ହଳାହଳ ମିଶାମିଶି ଚଳାଚଳ ଯତ୍ନଧୃତବଳାବଳ ବିସ୍ତୁରଶୀଳ । ଚକିତାଲୋକସସମ୍ଭ୍ରମ ଚମୂରୁ ଚକ୍ଷୁଗର୍ବ ମଦବିମର୍ଦ୍ଦନକ୍ଷମ ନେତ୍ରଯୁଗଳ । ଲଞ୍ଜି ମଞ୍ଜୁତର ଅଞ୍ଜନ । ଯୋଗୁଁ ଖଞ୍ଜରୀଟପୁଞ୍ଜ ଗର୍ବଗଞ୍ଜନ । ୨୨ । ନୀଳ ଇନ୍ଦୀବରବର ସୁରଭିବାସର ସରସିଜ ବିଲୋଲ ଶଫର ଏ ଆଦି ଯେତେ । ଶିଖିଲେ ହେଁ ବାରବାର ଏ ନେତ୍ର ଶୋଭାର ଭାର ବହି ମହୀ ମୋହି ପାରିବ କି କାହିଁତେ ।

---

ଶକ୍ର; ଜଳଧରସଙ୍ଘାତ—ମେଘସମୂହ, ଭ୍ରମରେ—ଭଅଁରଠାରେ, ଭ୍ରମରେ—ଭୁଲରେ । ୧୮ । ସଜଳଜପରିମଳ—ପଦ୍ମଗନ୍ଧଯୁକ୍ତ, ମହେନ୍ଦ୍ରନୀଳ—ଇନ୍ଦ୍ରନୀଳ-ମଣି, ତମ—ରାହୁ ବା ଅନ୍ଧକାର, ତମୋନୁଦ—ସୂର୍ଯ୍ୟ ବା ଚନ୍ଦ୍ର; କରଣ—ଶରୀର, କଳାପୀ—ମୟୂର, କଳାପ—ମୟୂରପୁଚ୍ଛ । ୧୯ । ସୁନାମୟକେତକ—ସ୍ୱର୍ଣ୍ଣନିର୍ମିତ କେତକୀଫୁଲ ପାଖୁଡ଼ା; ବଳକ୍ଷପକ୍ଷ—ଶୁକ୍ଳପକ୍ଷ, ସୁଧାଂଶୁ—ଚନ୍ଦ୍ର, ଖେ—ଆକାଶରେ, ଝଳମଳ—କାନ୍ତିଯୁକ୍ତ, ଲେଖା—ଚିତ୍ର, ଲେଖାପୁରେ—ସ୍ୱର୍ଗରେ । ୨୦ । ଦରପଣ-ସହୋଦର—ଦର୍ପଣତୁଲ୍ୟ, ଭାସୁର—ଉଜ୍ଜ୍ୱଳ । ୨୧ । ହେମଲତାଙ୍ଗୀ—ସୁବର୍ଣ୍ଣତୁଲ୍ୟ ଅଙ୍ଗ ଯାହାର, ମନସିଜଶରାସନ—କାମଧନୁ, ସନକ—ପ୍ରସିଦ୍ଧ ସଂଯମୀ ଋଷି । ୨୨ । ସୁଧାରସ—ଅମୃତ, ହଳାହଳ—ବିଷ, ଚକିତାଲୋକ—ସସମ୍ଭ୍ରମ—ଅଦ୍ଭୁତ ଦର୍ଶନରେ ଉଦ୍‌ବିଗ୍ନ, ଚମୂରୁଚକ୍ଷୁ······ତାହାର ନେତ୍ରଦ୍ୱୟ ଚଞ୍ଚଳ ଉଦ୍‌ବିଗ୍ନ ଚମୂରୁମୃଗର ଚକ୍ଷୁ ଗର୍ବ ଧ୍ୱଂସ କରିବାରେ ପାରଗ । ୨୩ । ସୁରଭିବାସରସରସିଜ—ବସନ୍ତକାଳରେ ଫୁଟିଥିବା ପଦ୍ମ, ବିଲୋଲଶଫର—

କି ଆନୀଳ ତରଳତାର । ମସାରନିର୍ମିତ ଖେଳା ମିଳନ୍ଦ ପର । ୨୩ । ମାର ମାରଗତୀ ଗଣି ରଖିବାକୁ ତିଳତୂଣ ବିରଚି ରଚିଛି ଯୋଷା ନାସା କପଟେ । କୀର କି ରହିଛି ଲଭି କରକର ବୀଜାବଳିରଦର ଦମ୍ଭେ ଥିବାରୁ ବିମ୍ବ ନିକଟେ । ନୁଆ ଯଉବନ ଗୁମାନ । ପୁଟଉଲ୍ଲାସରୁ ସ୍ଫୁଟ କରିଛି ଧାନ । ୨୪ । ଏ ଶ୍ରୁତି ଦ୍ୟୁତିପଟଳୀ ଗ୍ରହି କେ ନ ଯିବ ଝଲି କେ ବୋଲେ ହିରଣ୍ୟ ଦଳି ଗଢ଼ିବା ପାଶି । କଞ୍ଜାସନ ରୂପମାନଙ୍କରେ ଏହା ଉପମାନ ରଖି ପାରି ନାହିଁ ହୋଇ ମହାଆୟାସୀ । ଲଜ୍ଜାଲବବିହୀନ ମନେ । ଶଷ୍କୁଳୀ ବୋଲନ୍ତି ଅତି ଦୁଷ୍କୁଳୀ ଜନେ । ୨୫ । ବାଳାର ଦଶନାମ୍ବର ଜିଣିଛି ପକ୍ୱ ବିମ୍ବର ସଉଭାଗ୍ୟ ଅଡ଼ମ୍ବରକୁ ଶୋଣଗୁଣେ । ସିନ୍ଦୂର ମନ୍ଦାର ନବ କିଶଳୟ ବନ୍ଧୁଜୀବ କୁରୁବିନ୍ଦବୃନ୍ଦକୁ ତ ହେଳାରେ ଜିଣେ । ଲେଖିଛି କା ଭାଲେ ଦଇବ । ଏଥୁ ସୁଧାକୁ ବସୁଧା ଲୋକେ ପିଇବ । ୨୬ । ସ୍ୱରୂପ ସରୁଚୁମ୍ବନେ ଥିଲେ ହେଁ ବଳକ୍ଷ ମନେ ରୁଚିର ଚିବୁକର ହୁଅନ୍ତା ସଦୃଶ । ତାହାର ନାହିଁ ସୁରତ ଏହାର ନାହିଁ ଜଗତୀତଳେ ତିଳେ ଉପମିତ ଏଣୁ ଲୋକେଶ । ଅତୁଳ୍ୟ ଏ ବୋଲି ଜଗତେ । ଅଙ୍ଗୁଳିଅଗ୍ରରେ ଚିହ୍ନ ଦେଇଛି ଅନ୍ତେ । ୨୭ । ବିଭାବରୀବର ତୁଳ ଶ୍ରୀମୁଖ କି ବରତୁଳ ମୋ ନେଣ କି ବିରଚୁ ଲଭିଲା ଲୋକନ । ଏହାର ସୁ-ଆଦରଶ ଲଭୁଥିଲେ ଆଦରଶମଣ୍ଡଳରେ ଅଦର ସମ୍ଭବ କେ ଜନ । ଏକାକୁ କି ତୁଳ୍ୟ ଏହାର । ମଳିନ ପଙ୍କସଙ୍କର ନଳିନ ଛାର । ୨୮ । ବାଣୀ ବାଣୀଙ୍କର କର-

---

ଚଞ୍ଚଳ ଦଣ୍ଡି କିର ବା କେବଣ୍ଡି ମାଛ, ଆନୀଳ—ଈଷତ୍ ନୀଳ, ତରଳ ତାର—ଚକ୍ଷୁର ଗୋଲକ, ମସାର—ଇନ୍ଦ୍ରନୀଳମଣି, ମିଳନ୍ଦ—ଭ୍ରମର । ୨୪ । ତିଳତୂଣ—ରାଶିଫୁଲରେ ନିର୍ମିତ ଶରମୁଣା, କୀର—ଶୁଆ ( ନାସାସହିତ ଉପମିତ ), କରକ—ଡାଳିମ୍ବ, ରଦର ଦମ୍ଭେ—ଦନ୍ତବ୍ୟାଜରେ ( ଡାଳିମ୍ବବୀଜ ଦନ୍ତ ସଙ୍ଗେ ଉପମିତ ), ବିମ୍ବ—ବିମ୍ବଫଳ ( ଅଧର ସଙ୍ଗେ ଉପମିତ ); ପୁଟଉଲ୍ଲାସ – ନାକପୁଡ଼ାର ଫୁଲିବା । ୨୫ । ଶ୍ରୁତି—କର୍ଣ୍ଣ, ଦ୍ୟୁତି—ଶୋଭା, ହିରଣ୍ୟ—ସୁବର୍ଣ୍ଣ, ପାଶି—ଫାଶ, କଞ୍ଜାସନ—ବିଧାତା, ବ୍ରହ୍ମା; ମହାଆୟାସୀ—ଅତ୍ୟନ୍ତ ଯତ୍ନଶୀଳ । ଶଷ୍କୁଳୀ—ଚକୁଳିପିଠା ( କର୍ଣ୍ଣ ସଙ୍ଗେ ଉପମିତ ), ଦୁଷ୍କୁଳୀଜନେ—ନୀଚଜାତୀୟ ଲୋକମାନେ । ୨୬ । ଦଶନାମ୍ବର—ଅଧର, ଶୋଣଗୁଣେ—ରକ୍ତିମାରେ, ବସୁଧାଲୋକେ—ମର୍ତ୍ତ୍ୟରେ । ୨୭ । ସରୁଚୁମ୍ବନ—କ୍ଷୀଣଚୁମ୍ବନ ( ଆକୁଞ୍ଚିତବିସ୍ଥାନ), ଉପମିତ – ଉପମାନ, ଲୋକେଶ – ବ୍ରହ୍ମା । ୨୮ । ବିଭାବରୀବର – ଚନ୍ଦ୍ର, ବରତୁଳ – ବର୍ତ୍ତୁଳ, ଗୋଲ; ବିରଚୁ – ବ୍ରହ୍ମାରୁ, ସୁଆଦରଶ – ସୁଖମୟ ଦର୍ଶନ, ଆଦରଶମଣ୍ଡଳ – ଦର୍ପଣମଣ୍ଡଳ, ମଳିନପଙ୍କସଙ୍କର – ଅବିଶୁଦ୍ଧ ପଙ୍କ ମିଶ୍ରଣରୁ

ବିପଞ୍ଚୀ ପଞ୍ଚମ ତାରସ୍ୱର ସ୍ୱର ଜୂର କରିଅଛୁ କି ସତେ । ମଧୁମଧୁ ଝର ଝର ନ ଧରିବ ଏ ମାଧୁରୀଧୁରୀଣତାକୁ ଏପରି ହୋଏ ପରତେ । ମୁଖ- ପେୟ ପୀୟୂଷରସ । ଏ ତ ଶ୍ରୁତିପଥେ ପିଇ ପୀୟୂଷରସ । ୨୯ । ଭଙ୍ଗୀ ଶୁକ ପିକରବ ସୁଭଗରବ ଗରବ ରବାର ବଢ଼ାଇ କରି ଦେଇଛୁ ଦୂର । ବର୍ଣ୍ଣ ବର୍ଣ୍ଣକରେ କରେ କରେ ମହେନ୍ଦ୍ରଲୋକରେ ନ ମିଳିବା ଶିରୀ ଶିରୀଷାଙ୍ଗୀର ଗିର । ଏହି ଗିରେ ସ୍ନେହ ଆଳାପ । ବାଜିବ ଯା କର୍ଣ୍ଣେ ତାର ପୁଣ୍ୟ ଅମାପ । ୩୦ । ଅପୋତ ଶୁଦ୍ଧ କାଞ୍ଚନ କପୋତ କାନ୍ତି ବଞ୍ଚନ ଗଳାର ଲାବଣ୍ୟ ଧନ୍ୟ ଧନ୍ୟ ଏହାର । କମ୍ବୁ ଶମ୍ଭୁଙ୍କ କଳପ ଦର ବୋଇଲେ ଅଳପ ଅର୍ଥାନ୍ତରୁ ଭୟ ରୂପ ହୋଏ ଏହାର । କିଶୋରୀକଣ୍ଠର ଶିରୀକି । କନକ କଳଶ ଗ୍ରୀବା ହେଲେ ସରି କି । ୩୧ । ଅଂସ ଦରନତ ବରସମ୍ପଦ ରମା ରୂପର ପରମ ମୃଦୁଳ ମୂଳ ଗଜଶୁଣ୍ଡାର । ନିର୍ଲୋମ କୋମଳ କକ୍ଷ ହେବ କେଉଁ ଧନ୍ୟ ତୀକ୍ଷ୍ଣକରଜମୂନର ମୁଖ୍ୟସୁଖ ଭଣ୍ଡାର । କେଉଁ ପୁଣ୍ୟେ ଏ ମୃଦୁବାହା । କାହାର ହାରସଙ୍ଗିନୀ ହେବଟି ଅହା । ୩୨ । ଏ ବାହୁଯୁଗଳ ଗଳ ପ୍ରଦେଶରେ ସମୁଜ୍ଜ୍ୱଳ ମୃଦୁଅଳଙ୍କୃତଫଳ ଦେବ ଯାହାର । ମୃଣାଳ- ଲହରୀବଲ୍ଲୀ ପାଶ ଚମ୍ପାମାଳା ବୋଲି ତାହାର ବଦନ୍ତୁ ହୋଇବ କି ବାହାର । ଦେବଲତା ନବ ପଲ୍ଲବେ । ଦେବ କେ ଏ ପଞ୍ଚଶାଖେ ସ୍ୱରୂପ ଲବେ । ୩୩ । ଅଙ୍ଗୁଳି କଳିକାବଳି ଦେଇଅଛୁ କି କବଳି ନବ କୋଶଳଯ୍ୟାବଳି

---

ଉତ୍ଫୁଲ୍ଲ, ନଳିନ—ପଦ୍ମ । ୨୯ । ବାଣୀ—କଥା ଓ ସରସ୍ୱତୀ, କରବିପଞ୍ଚୀ— ହାତରେ ଥିବା ବୀଣା; ଜୂର କରିବା—ନଷ୍ଟ କରିବା; ପୀୟୂଷରସ—ଅମୃତ ରସ, ମଧୁମଧୁ—ବସନ୍ତର ପୁଷ୍ପରସ, ମାଧୁରୀଧୁରୀଣତା—ମାଧୁର୍ଯ୍ୟର ଶ୍ରେଷ୍ଠତା, ମୁଖପେୟ— ମୁହଁରେ ପାନର ଯୋଗ୍ୟ, ଶ୍ରୁତିପଥେ—କାନବାଟେ । ୩୦ । ସୁଭଗ ରବଗରବ—ଧ୍ୱନି ଗର୍ବଜନିତ ସୌଭାଗ୍ୟ, ରବା—ଏକପ୍ରକାର ବୀଣା, ବଢ଼ାଇ —ବଢ଼ିମା, ବର୍ଣ୍ଣବର୍ଣ୍ଣକରେ—ପ୍ରତି ଅକ୍ଷରରେ, କ ରେ—ବ୍ରହ୍ମଲୋକରେ, ମହେନ୍ଦ୍ର ଲୋକରେ—ସ୍ୱର୍ଗରେ, ଗିର—କଥା, ଅମାପ—ପ୍ରଚୁର । ୩୧ । ଅପୋତ —ପ୍ରୌଢ଼, କମ୍ବୁ—ଶଙ୍ଖ, ଶମ୍ଭୁଙ୍କ କଳପ—ଶିବସଦୃଶ, ଦର—ଶଙ୍ଖ ଓ ଭୟ; ଶିରୀ—ସୌନ୍ଦର୍ଯ୍ୟ, କନକ କଳଶଗ୍ରୀବା—ସୁନାମାଠିଆର ବେକ । ୩୨ । ଅଂସ —କାନ୍ଧ, ଦରନତ—ଅଳ୍ପ ଅବନତ, ଗଜଶୁଣ୍ଡା—ହାତୀଶୁଣ୍ଢ, କକ୍ଷ— କାଖ, ତୀକ୍ଷ୍ଣ—ତୀକ୍ଷ୍ଣ, କରଜମୂନ—ନଖମୂନ, ମୁଖ୍ୟସୁଖ—ପ୍ରଧାନ ସୁଖ । ୩୩ । ଅଳଂକୃତ—ଅଳଙ୍କାର, ମୃଣାଳ—ପଦ୍ମନାଡ଼, ବଲ୍ଲରୀ—ଲତା ( ଏଗୁଡ଼ିକ ବାହୁର ଉପମା ହୁଏ ), ଦେବଲତାନବପଲ୍ଲବେ—କଳ୍ପଲତାର ନୂତନ ପତ୍ରରେ, ପଞ୍ଚଶାଖେ—( ପଞ୍ଚମାଙ୍ଗୁଳିରୂପ ଶାଖା ଥିବାରୁ ) କରରେ । ୩୪ । ଅଙ୍ଗୁଳିକଳିକା-

ମୃଦୁଳତାକୁ । ଅନ୍ଧ ନୋହି କେହି ହେଲେ ଗନ୍ଧଫଳରେ ଭୁଲିଲେ ବନ୍ଧନରେ ରୁନ୍ଧିବାର ଉଚିତ ତାକୁ । ଧନ୍ୟ ହୀରାଙ୍କୁରକରଜା । ନିଜଗତି ଯୁବତୀକଦମ୍ବଙ୍କ ରଜା ।୩୪। ଚରମ ଗୁରୁ ନିର୍ମଳ ପରମ ରମ୍ୟ କୋମଳ ଭରମକଦଳୀଦଳଠାରୁ ବଳିବ । ଧରମଠରେ ଧୁରନ୍ଧର କରମବାନ୍ତଜନର ନରମ ସମୟେ କରତଳେ ଖେଳିବ । ଏ କି ଦିବ୍ୟ କାଞ୍ଚନ ମହୀ । ବେଣୀ କଳାଫଣୀ ଗୁଳ ଲାଞ୍ଛନ ଯହିଁ ।୩୫। କୁଚକୁ ଚକ୍ରଯୁଗଳ କନକନଗ ଶ୍ରୀଫଳ ତୁମ୍ବୀ କୁମ୍ଭିକୁମ୍ଭସ୍ଥଳ ଏତେ ଉପମା । ବାଳାର ଏ ପୟୋଧର ସୁଧାସମ୍ପୁଟ-ସୋଦର କଳ ନୋହେ ମହତ୍ତର ଲବଣ୍ୟ ସୀମା । ଏ ଯୋଗ କି ମୋତେ ହୋଇବ । ଛଇଳା ଏ ସ୍ତନେ ମୋ ଗାତ୍ରକି ଛୁଇଁବ । ୩୬ । ପେଟ ଥିଲେ ପଦ୍ମପୁଟପାକ ପ୍ରସିଦ୍ଧ ପୁରଟ ବଟଦଳ ପ୍ରତିଭଟ ଅବା ବୋଲନ୍ତି । ସ୍ତନ ମନସିଜ କେଳି-ବଡ଼ଭୀସୋପାନାବଳିବୟରୁ ସିନା ପ୍ରଜ୍ଜ୍ୱଳ ରହିଛି କାନ୍ତି । ନବ ରୋମରାଜି କପଟ । ଏ କି ବଡ଼ଭୀକି ନୀଳ ରତନ ବାଟ ।୩୭। ବାଳା ଉରୋଜଯୁଗଳ ବ୍ୟାଜ ରଜନୀ-କମଳ ଚୁମ୍ବି ଲୋଭେ ନାଭିବିଳ ଗର୍ଭରୁ ଧାଇଁ । ଅଛି କି ମିଳିନ୍ଦଶ୍ରେଣୀ କି ମରକତନିଃଶ୍ରେଣୀ ବକ୍ଷୋଜ ସୁଷମା ରମା ସଞ୍ଚାର ପାଇଁ । କବା ମାର କରିଛି ମାୟା । ନିଜ ଝଣ୍ଡା ନ ଦଣି ଦଶୁଛି ତା ଛାୟା । ୩୮ । ନବୀନ ବିଳାସବତୀ ତନୁ ତ ନୂତନଦ୍ୟୁତି ତରଙ୍ଗିଣୀ ଏ ତ୍ରିବଳୀ ତାର ଲହରୀ । ନବ ରୋମରାଜି ନୀଳ ଦୀର୍ଘ ସୂକ୍ଷ୍ମ ଶଇବଳ ଗଭୀର ନାଭି ବିମଳତର ଭଉଁରୀ । ଏଥି ଯେବେ ତରୁଣ ଚିତ୍ତ ।

---

ବଳି—ଆଙ୍ଗୁଳିରୂପ ପୁଷ୍ପକଢ଼ସବୁ । କବଳି ଦେଇଛି—ଗ୍ରାସ କରି ଦେଇଛି, ପରାସ୍ତ କରି ଦେଇଛି, ମୃଦୁଳତା—କୋମଳତା, ଗନ୍ଧଫଳ—ଚମ୍ପାକଢ଼ି, ହୀରାଙ୍କୁର କରଜା—ହୀରାର ଅଙ୍କୁର ପରି ନଖ ଯାହାର; ଯୁବତୀକଦମ୍ବ—ଯୁବତୀସମୂହ । ୩୫। ଚରମ—ପୃଷ୍ଠଦେଶ; ଭରମକଦଳୀଦଳ—ସୁନା କଦଳୀପତ୍ର, ନରମ ସମୟେ—କ୍ରୀଡ଼ାବେଳେ, ବେଣୀକଳାଫଣୀ—ବେଣୀରୂପ କଳା ସାପ, ଲାଞ୍ଛନ—କଳଙ୍କ ବା ଚିହ୍ନ । ୩୬ । ଚକ୍ରଯୁଗଳ—ଚକୁଆଚକୋଇ ପକ୍ଷୀ ଦୁହେଁ, କନକନଗ—ମେରୁ ପର୍ବତ, ଶ୍ରୀଫଳ—ନଡ଼ିଆ, ତୁମ୍ବୀ—ଲଉ, କୁମ୍ଭିକୁମ୍ଭ—ହାତୀର ଗଣ୍ଡସ୍ଥଳ, ସୁଧା-ସମ୍ପୁଟସୋଦର—ଅମୃତପୂର୍ଣ୍ଣ ଫରୁଆ ପରି ।୩୭। ପୁରଟବଟଦଳ—ସୁନା ଓଆର ବରପତ୍ର, ପ୍ରତିଭଟ—ସମକକ୍ଷ, କେଳିବଡ଼ଭୀ—କ୍ରୀଡ଼ା ଅଟ୍ଟାଳିକା, ନୀଳରତନବାଟ—ଇନ୍ଦ୍ରନୀଳମଣିରେ ନିର୍ମିତ ପାହାଚ । ୩୮ । ରଜନୀ-କମଳ—ମୁଦ୍ରିତପଦ୍ମ ( ରାତିରେ ପଦ୍ମ ମୁଦ୍ରିତ ଥାଏ ) । ମିଳିନ୍ଦଶ୍ରେଣୀ—ଭ୍ରମରଦଳ ( ରୋମାବଳୀରୂପ ), ମରକତ-ନିଃଶ୍ରେଣୀ—ମରକତମଣିରେ ନିର୍ମିତ ନିଶୁଣୀ, ଝଣ୍ଡା—ପତାକା ।୩୯। ତନୁ—ଶରୀର,

ପଡ଼ମିବ ବଣ୍ଟିବାକୁ ନାହିଁ ଅପ୍ରବୃତ୍ତ । ୩୯ । ପାଳୀର ଚନ୍ଦନଚୀକଟୀ ହଟିଛୁ ଯୁବ କରଟି ରିପୁ ମଧ୍ୟ ପରିପାଟୀ ଲୁଟି ନେବାରେ । ସମସ୍ତେ ପଦାନ୍ତେ ନିତ ବିସର୍ଗ କରୁଛନ୍ତି ସ୍ଥିତ ଡାକ ଡାକ ଡାକ ମଦରେ ଜାଣି ହେବାରେ । ଏହା ଶୋଭା ଭୁବନେ ନାହିଁ । ଅଧର ନିର୍ମିତ ବେଦୀ ମଧ୍ୟରେ କାହିଁ । ୪୦ । ବରବର୍ଣ୍ଣିନୀର ନିରନ୍ତରେ ମନ୍ମଥରଥର ଚକ୍ରଗୃହୁ ନିତମ୍ବକୁ ଦେଖିଲେ ଚିତ୍ତେ । ଜାମ୍ବୁନଦ ଭୂମୀ ଶିରୀ ଅବଲମ୍ବୀ ଫର ପର ହେଉଛନ୍ତି ପରତେ ରତେ କି ହେବ ସତେ । ବିପରୀତେ ରହିଛୁ ପରା । ମନସିଜରାଜାର ବୀର୍ଯ୍ୟ ନାଗରୀ । ୪୧ । ନେତ୍ର ହେଉଛୁ ଅଛନ୍ନ ନେନେ କୋହେ ବିଲୋକନ କନକମୟ ପୁଳିନ ଘନ ଜଘନ । କି ଅବା ମୀନକେତନ ଅଭିଷେକ ସିଂହାସନ କରନ୍ତା ମୋତେ ବସନ ପଙ୍କଜାସନ । ଆସ୍ତରଣ ହୁଅନ୍ତି ସୁଖେ । ନ କରି ନଜର ମନୋଜର ବିଶିଖେ । ୪୨ । ପ୍ରତୀତ ହୁଅଇ ପ୍ରତି ପ୍ରତୀକ କାନ୍ତିସନ୍ତତି ଅନୁରୂପବାନ୍ତ ଅନ୍ତ ମନୋଜବାସ । ନବ ନବନୀତ ନିତ ସାରସ୍ୱର୍ଣ୍ଣ ପରିଣତ ବହଳ ତାମ୍ବୂଲେ ଥିବ ସରୋଜବାସ । ନବ ଲୋମସ୍ତୋମ ହରଷ । ଇନ୍ଦ୍ରଗୋପପୃଷ୍ଠସମ ସୁଶିସ୍ମରଣ । ୪୩ । ଏ ଉରୁ ଶୋଭା ସମ୍ଭାର ନାହିଁ ତ ହେମ ରମ୍ଭାର ଏହା ତୁଳାକୁ କି ଛରଭର ଭରସା । କଲଭ ଲଭିବ ନାସା ଦଣ୍ଡେ କି ଏହା ପ୍ରଶଂସା

---

ନୂତନ ବୃଂହିତତରଙ୍ଗିଣୀ—ନୂତନ ଶୋଭାର ନଦୀ । ୪୦ । ପାଳୀର ଚନ୍ଦନଚୀକଟି—ଚନ୍ଦନସୁବାସିନୀର କଟିଦେଶ, ହଟିଛୁ—ବଳାତ୍କାର କରଛୁ, ଯୁବ—ଯୁବକ, କରଟୀ—ହାତୀ, ଯୁବକରଟିରିପୁ ମଧ୍ୟ ପରିପାଟୀ—ଯୁବକସିଂହର କଟିର ସୌଷ୍ଠବକୁ । ପଦାନ୍ତେ—ବିଭକ୍ତିଯୁକ୍ତ ଶବ୍ଦ ଶେଷରେ ଓ ପାଦତଳେ, ବିସର୍ଗ—'ଃ' ଏହି ବିସର୍ଗ ଚିହ୍ନ (କଟୀ ସଙ୍ଗେ ଏହା ଉପମିତ ହୁଏ), ଡାକ—ଡମରୁ, ଡାକ ଡାକ—ଶବ୍ଦ କର କର । ଅଧର ନିର୍ମିତ······ଯଜ୍ଞ ବେଦୀର ମଧ୍ୟଭାଗରେ ସୂକ୍ଷ୍ମ ନାହିଁ (ସ୍ତ୍ରୀ—ମାନଙ୍କ ବେଦୀବଲଗ୍ନମଧ୍ୟା କୁହାଯାଏ) । ୪୧ । ନିରନ୍ତର—ସାନ୍ଦ୍ର, ନିବିଡ଼ । ଜାମ୍ବୁ-ନଦ···ସୁନା ଲଉ ପର ସୁନ୍ଦର; ଫର ପରି—ଢାଲ ପରି । ୪୨ । କନକମୟପୁଳିନ—ସ୍ୱର୍ଣ୍ଣମୟ ତୀରଭୂମି, ଘନଜଘନ—ନିବିଡ଼ ଜଙ୍ଘ, ବସନ—ଆଚ୍ଛାଦନ ବସ୍ତ୍ର, ପଙ୍କଜାସନ—ବ୍ରହ୍ମା, ଆସ୍ତରଣ—ଆଚ୍ଛାଦନ ବସ୍ତ୍ର, ନଜର—ଦୃଷ୍ଟି, ମନୋଜର ବିଶିଖ—କନ୍ଦର୍ପବାଣ । ୪୩ । ପ୍ରତିପ୍ରତୀକ······· ପ୍ରତି ଇନ୍ଦ୍ରିୟର ଲାବଣ୍ୟସମୂହର ଅନୁରୂପ, ମନୋଜବାସ—କାମଗୃହ, ସ୍ତ୍ରୀଚିହ୍ନ । ସାରସ୍ୱର୍ଣ୍ଣ ପରିଣତ—ଉତ୍କୃଷ୍ଟ ସୁବର୍ଣ୍ଣର ଅବସ୍ଥାନର ପ୍ରାପ୍ତି, ସ୍ତୋମ—ସମୂହ । ଇନ୍ଦ୍ରଗୋପପୃଷ୍ଠ—ସାଧବାଣୀ-ପୋକର ପିଠିପରି । ୪୪ । ଶୋଭାସମ୍ଭାର—ସୌନ୍ଦର୍ଯ୍ୟସଂଗ୍ରହ, ହେମରମ୍ଭା—ସୁବର୍ଣ୍ଣ କଦଳୀ, କରଭ—ମଣିବନ୍ଧଠାରୁ କାଣୀ ଆଙ୍ଗୁଠି ଶେଷ ପର୍ଯ୍ୟନ୍ତ କରତଳର

ରସାଳସା ରସାଶୟ ସଦୃଶଦୃଶା । କି ଭାଗ୍ୟ ଏ ନୟନ ପଥ । ମଣ୍ଡିଲି ପୂର୍ଣ୍ଣ କରିବ କି ମନୋରଥ ।୪୪। ଜଙ୍ଘାତ ହାଟକସ୍ତମ୍ଭ ସଙ୍ଘାତ ଗରବାରମ୍ଭ ସଙ୍ଘାତ ଘାତବିଧିରେ ଅଧ୍ୱରଯୂପ । ଚରଣଯୁଗଳ ଛବି ବରନି ନ ପାରି ଦେବି ରହିଛନ୍ତି ମୂକରୁ ଭାବି ଶ୍ରୀହସ୍ତରୂପ । ଶଶୀଙ୍କ ନ ଜିଣିଲି ମୁଖ । ଦାରି ତାରାଭୟେ ଭଜି ହେଲେ କି ନଖ । ୪୫ । ଗମନ ମତମାତଙ୍ଗରାଜ ରଥ-ଚରଣାଙ୍ଗ ଗରବ ଗରମ ଭଙ୍ଗ ପଟୁଭୂସୀମା । ଶିରୀଷମାଳ ମାଳତୀ ନବୀନ ଲବଙ୍ଗୀ ପ୍ରତିଭଟ ସିନା ଘଟସ୍ତନା ତନୁମୃଦିମା । କି ହେବଟି ସେବିଲେ ପାଶେ । ବିକଚ କମଳବନୀ ପରିଯେ ବାସେ । ୪୬ । ଏପରି ନାଗରମଣୀ ସେବିତ ନାଗରୀମଣି ପ୍ରୀତି ବିନା ଗର ମଣି ତେଜେ ବିଭବ । ମଦନଦର-ଦନ୍ତୀର ଦଶାରେ ଦିବସାନ୍ତର ହୁଅନ୍ତେ ନଟ ପ୍ରକଟ କଲା ପ୍ରଭାବ । ଦିନ ଥାଉ ହେଲା ତ୍ରିଯାମା । ପିନ୍ଧିଲା ବ୍ୟୋମ ଅନ୍ଧାର ସୁନୀଳଜାମା । ୪୭ । ନ ଦିଶିଲେ ସଖୀ ଆଳୀ ଜିଣିଲା ପ୍ରଦୀପାବଳୀ ଜଳି ଲଳିତ ଉଦରୀ ତନୁ କମ୍ପିଲା । ମିଶିଗଲା ଗୃହନେହ ଦିଶିଗଲା ଦୁଇଗାତ୍ର ସପୁଲକ ହୋଇ ସ୍ମରଣରେ କମ୍ପିଲା । ଉରୁଉରୁ କରିଟିବୃନ୍ଦେ । ଜନ୍ମିଲା ବେପଥୁ ଦୁଇ ଶ୍ରୀଅଙ୍ଗ ଯାକେ । ୪୮ । ଧନ ରେ ମୁଁ ମହାଗଜଘୋଷ ମହେନ୍ଦ୍ରତନୁଜ

---

କଦ୍ଧଭାଗ (ଊରୁ ସଙ୍ଗେ ଉପମିତ), କଳଭ—ହାତୀଛୁଆ, ନାସାଦଣ୍ଡ—ଶୁଣ୍ଡ । ରସାଳସା—ରସମୁଗ୍ଧା, ରସାଶୟ ସଦୃଶଦୃଶା—ରସର ଆଧାର ସ୍ୱରୂପ ଚକ୍ଷୁ ଯାହାର । ୪୫ । ହାଟକସ୍ତମ୍ଭ—ସୁନା ଖମ୍ବ, ଗରବାରମ୍ଭସଂଘାତ—ଅହଙ୍କାର ସମୂହର, ଘାତ ବିଧିରେ—ହତ୍ୟା ବ୍ୟାପାରରେ, ଅଧ୍ୱରଯୂପ—ଯଜ୍ଞସ୍ତମ୍ଭ (ଯଜ୍ଞରେ ପଶୁକୁ ଯୂପରେ ବାନ୍ଧି ହତ୍ୟା କରାଯାଏ) । ଶ୍ରୀହସ୍ତରୂପ—ସରସ୍ୱତୀଙ୍କର ହସ୍ତର ରୂପ, ଦାରିତାରି—ତାରକାରୂପ ସ୍ତ୍ରୀମାନେ ( ତାରାମାନେ ଚନ୍ଦ୍ରଙ୍କ ସ୍ତ୍ରୀରୂପେ କଳ୍ପିତ ) । ୪୬ । ଏ ସ୍ତ୍ରୀର ଗତି ମତ୍ତମାତଙ୍ଗରାଜ (ମତ୍ତହସ୍ତୀ ଶ୍ରେଷ୍ଠ)ର, ରଥଚରଣାଙ୍ଗ—(ରଥଚକ୍ର)ର ଗର୍ବ ଧ୍ୱଂସ କରିବାରେ ନିପୁଣ, ପ୍ରତିଭଟ—ପ୍ରତିଯୋଦ୍ଧା, ସମକକ୍ଷ; ତନୁମୃଦିମା—ଶରୀରର ମୃଦୁତା; ବିକଚକମଳବନୀ—ପ୍ରସ୍ଫୁଟିତ ପଦ୍ମବନ । ୪୭ । ନାଗରମଣୀ ସେବିତ···ନାଗକନ୍ୟାମାନେ ଯାହାକୁ ସେବା କରୁଥିଲେ । ନାଗରୀମଣୀ ପ୍ରୀତିକ···ସେହି ନାଗରୀଶ୍ରେଷ୍ଠାର ପ୍ରୀତିତୁଳନାରେ ପ୍ରଚୁର ବିଭବକୁ ଗର ମଣି (ବିଷ ଜ୍ଞାନ କରି), ମଦନଦର ଦନ୍ତୀ—କାମଭୟରୂପ ହସ୍ତୀ; ଦିବସାନ୍ତର—ଦିବାବସାନ, ନଟ—ଐନ୍ଦ୍ରଜାଲିକ, ତ୍ରିଯାମା—ରାତ୍ରି । ୪୮ । ଉପସ୍ଥିତ ସଖୀ ଓ ସଖୀମାନଙ୍କୁ ଦେଖାଗଲା ନାହିଁ । ଜଳି—ଚକ୍‌ଚକ୍ ହୋଇ, ଲଳିତାଉଦରୀ—ଲଳିତ ଉଦରଯୁକ୍ତା (ମାଲ୍ୟା ଯୁବତୀ), ସପୁଲକ—ରୋମାଞ୍ଚିତ, ବେପଥୁ—କମ୍ପ ।

ଧନ ହେ ମୁଁ ସରସିଜକୁଳଦୁଲ୍ଲଲୀ । ଏତେ ମାନ ସଂଲାପରେ ପ୍ରସୂନଶୃପରୋପରେ ଗଲା ମୁର୍ଚ୍ଛାପରି ଦୁଇ ଶରୀର ଝାଳି । ପରସ୍ପର ରଦନବାସ । ନିବଡ଼େ ପୀଡ଼ି ପିଇଲେ ତହୁଁ ପୀୟୂଷ । ୪୯ । ଗର୍ଭକେତକୀ ପାଖୁଡ଼ୀ ଗୋରୀ ସ୍ନେହେ ଦେଲା ଭିଡ଼ି ଚରମରେ ବୁଢ଼ି ବୁଢ଼ି ସଞ୍ଚା ରହିଲା । ଦୁହିଙ୍କ ତାମ୍ବୂଳବୋଳ ମଣ୍ଡି ଦୁଇ ଓଷ୍ଠଦଳ ତହିଁ ଦନ୍ତକ୍ଷତଲକ୍ଷ୍ମୀ ସଞ୍ଚାର ହେଲା । ସୁଖ ବ୍ରହ୍ମାନନ୍ଦ ଅମଳେ । କିଶୋର କିଶୋରୀ ଦୁହେଁ ଅଚେଷ୍ଟ ହେଲେ । ୫୦ । ଏକାଳେ ମୋହନ ଡାକ ବଜାଇ ସେ ନିକଟେକି ଶାବରମନ୍ତ୍ରରେ କି କି ଗାଇଲା ଗୀତ । ମାୟା ଜେମା ଅଦିନଟି ବିଧି ହେଲା ଅପ୍ରକଟ କ୍ରମେ ଅପେ ହେଲା ପୁଣି ଅନ୍ତରହିତ । ଦିବସ ବିବଶ ହୋଇଲା । ରବିକର ମାୟାନିଶାମସୀ ଧୋଇଲା । ୫୧ । ସେ ଦିନ ସେହି ସମୟେ ଚନ୍ଦ୍ରକଳା ସ୍ୱନିଳୟେ ପ୍ରମୋଦମୋଦହୃଦୟେ ପହୁଡ଼ିଥିଲା । ତ୍ରିପୁରସୁନ୍ଦରୀ ପରସାଦୁଁ ଅନଙ୍ଗସୁନ୍ଦର ସମ୍ଭୋଗ ସୁମନୋହର ସ୍ୱପନ ହେଲା । ମାୟା ସ୍ୱପ୍ନଭଙ୍ଗେ ସେ ଦୁହେଁ । ଭିନ୍ନ ହୋଇଲେ ବିରହ ଅନଳଦାହେ । ୫୨ । ତଥାପି ଭୂପୁରନ୍ଦର ସୁତ ଅନଙ୍ଗସୁନ୍ଦର ମରଜି ଧୈର୍ଯ୍ୟମନ୍ଦର ପରି ଉଭାର । ମଦନାଗ୍ନି ନିରନ୍ତର ଦହିଲେହେଁ ହୃଦନ୍ତର ପ୍ରକାଶ ନ କରି ରହୁଥାଏ ଉଭାର । କ୍ରମେ କ୍ରମେ ମାନ ଇଙ୍ଗିତେ । ରାଜବଲ୍ଲଭଙ୍କୁ ଜଣା କରାଏ କେତେ । ୫୩ । ଜୀମୂତ ତମାଳକାନ୍ତ ଚନ୍ଦ୍ରମୁକୁଟ ଭୂଷିତ ଅଚଳାଙ୍ଗ ଭବାନୀନାଥ ଶିବ ଶ୍ରୀରାମ । ରାମଚନ୍ଦ୍ରଦେବ କ୍ଷିତିପୁରନ୍ଦର ହୃଦେ ନିତି କରିବେ କି ନିଜ ତେଜ ପ୍ରକାଶଧାମ । କୁମାର ମୋହନ ଏ ଛନ୍ଦ । ବେଦାଧିକ ପଞ୍ଚାଶତସଂଖ୍ୟକ ପଦ । ୫୪ ।

---

୪୯ । ପ୍ରସୂନଶୃପରୋପରେ—କନ୍ଦର୍ପବାଣରେ, ମୁର୍ଚ୍ଛା ପରି—ମୁର୍ଚ୍ଛା ହେଲା ପରି । ଝାଳିଗଲା—ପରସ୍ପର ମିଶିଗଲା, ରଦନବାସ—ଅଧର । ୫୦ । ଚରମରେ—ପିଠିରେ, ସଞ୍ଚା—ଚିହ୍ନ, ଦନ୍ତକ୍ଷତଲକ୍ଷ୍ମୀ—ଦନ୍ତାଘାତଜନିତ ଶୋଭା, ଅଚେଷ୍ଟ—ଅଜ୍ଞାନ । ୫୧ । ମୋହନଡାକ—ବିମୋହନ ଡମ୍ବରୁ, ରବିକର···ସୂର୍ଯ୍ୟରଶ୍ମି ଦ୍ୱାରା ମାୟାରାତ୍ରିର କାଳିମା ଧୋଇ ହୋଇଗଲା, ଅର୍ଥାତ୍ ମାୟାରାତ୍ରି ଉଭେଇଗଲା; ସୂର୍ଯ୍ୟ କିରଣ ଦିଶିଲା । ୫୨ । ତ୍ରିପୁରସୁନ୍ଦରୀ—ଚନ୍ଦ୍ରକଳାର ଇଷ୍ଟଦେବୀ । ୫୩ । ମରଜି—ହୃଦୟରେ, ଉଭାର—ଦଣ୍ଡାୟମାନ ହୋଇ, ଉଭାର—ଘୋଡ଼ାଇ । ୫୪ । ଜୀମୂତ—ତମାଳକାନ୍ତ—ମେଘ ଓ ତମାଳବୃକ୍ଷ ପରି କମନୀୟ ( ଶ୍ରୀରାମ ), ଅଚଳାଙ୍ଗଭବାନାଥ—ପାର୍ବତୀପତି ( ଶିବ ), ସୀତାପତି ( ଶ୍ରୀରାମ ) ।

# ଏକବିଂଶ ଛାନ୍ଦ

ରାଗ—ଶଙ୍କରାଭରଣ

( ସ୍ୱପ୍ନାନ୍ତ ବିଳାପ )

ଦିବସ ତୃତୀୟଯାମ ସମୟରେ ଦିନେ । ପହୁଡ଼ିଥିଲି କିଶୋରୀରତନ ଭବନେ । ଦେବୀ କଲେ କି କରୁଣା । ସ୍ୱପନେ କି ଯୋଗ ହେଲି ତାହାକୁ ସେ ଜଣା । ୧ । କାତରେ ତରଳତରନେତ୍ରା ନିଦ୍ରା ତେଜି । ଘନାଙ୍କେ ଚଞ୍ଚଳାପରି କୋପରେ ବିରାଜି । ଦୃଷ୍ଟି ନ୍ୟାସ କରି ଅଙ୍କେ । ଖେଳାଇଲି ଦୁଇ ଭୁଜବଲ୍ଲରୀ ପଲଙ୍କେ । ୨ । ଅପାଟଳ ତଳପ ତ କରେ ଦେଇ ଠାଣି । ତୋଳି ତୂଳି ତକିଆତଳକୁ ଗୁହିଁ ପୁଣି । କୁଚ କାଞ୍ଚୁଲି ଫେଡ଼ିଲି । ଉଭାରି ଉରଜପର ଅମ୍ବର ଝାଡ଼ିଲି । ୩ । ପୁଣି ଅଂଶ ଅବତଂସ ଖୋସା ଶିଥିଳାଇ । ବିଜଳି ଚଉଁରୀଗର୍ଭେ ଅଙ୍ଗୁଳି ଗଳାଇ । ଫେରାଇଲି କର୍ଣ୍ଣଭୂଷା । ହୋଇଲି ବିଗତା ଶ୍ୱାସ ଛାଡ଼ି ମୃଗଦୃଶା । ୪ । କମ୍ପାଇ ବନ୍ଧୁକବନ୍ଧୁ ରଦନ-ଚ୍ଛଦନ । ବିକଳେ ଏପରି ଧୀରେ ରଚିଲି ରୋଦନ । ହା ମୋ ପ୍ରାଣ ସହଚର । କି ଦୋଷୁଁ ନୋହୁଛ ମୋରେ ଲୋଚନଗୋଚର । ୫ । କିଶୋରକିଶୋର ଅହେତୁକ ଦୟାଳୁ ହେ । ମୁଁ ଯେବେ ତୁମ୍ଭର ଦରଶନ ଯୋଗ୍ୟ ନୁହେଁ । କାହିଁପାଇଁ ଦେଲ ଦେଖା । ରଖାଇ ମୋ କରରେ ଶରୀର ଭାଗ୍ୟ ରେଖା । ୬ । ଦରଶନ ହେବାଭଳି ନୋହେ ଯେଉଁ ଛାର । କରି କି ତାହାରେ ଆଲିଙ୍ଗନ ଅଙ୍ଗୀକାର । ଅହେ ବିବେକଜଳଧି । ଛଡ଼ାଇ ନେଇ କି ରଙ୍କଅଙ୍କେ ଦେବା ନିଧି । ୭ । ଧରି ଅଙ୍ଗରାଗ ପରି ଜମାଇ ଦେହରେ । ପିଆଇ ଦଶନବାସୁଁ ପୀୟୂଷ ସ୍ନେହରେ । କେଉଁ ଅପରାଧୁ ପୁଣି । ଅପ୍ରକଟ ହେଲ ହେ ସୁନ୍ଦରଶିରୋମଣି । ୮ । ଅକିଞ୍ଚନ ଆଗେ ମଣିମଞ୍ଜୁଷ ପିଠାଇ । ଅନାଇବା କାଳେ ଦେଲ ନୟନ ଫୁଟାଇ । ଏ କି

---

ଏକବିଂଶ ଛାନ୍ଦ

୨ । ଘନାଙ୍କେ ଚଞ୍ଚଳାପରି—ମେଘ କୋଡ଼ରେ ବିଜୁଳି ପରି । ୩ । ଅପାଟଳ ତଳପ—ଗଦି ପ୍ରଭୃତି ମୋଟା ଶେଯ, ତୂଳି—ତୁଳା ରେଜେଇ, ଉଭାରି—ଠିଆ ହୋଇ, ଅମ୍ବର—ଲୁଗା । ୪ । ଅଂସ—କାନ୍ଧ, ଅବତଂସ—ଭୂଷଣ, ବିଗତା-ନିଷ୍ପ୍ରଭ । ୫ । ବନ୍ଧୁକବନ୍ଧୁ—ବନ୍ଧୁକପୁଷ୍ପସଦୃଶ, ରଦନଚ୍ଛଦନ—ଅଧର । ୮ । ଦଶନ

ହୋଇଲା ଜଚତ । ଏବେ ଦୀନଦଶାରେ ଉଦ୍ୟତ ହେଉ ଚଉ ।୯। ବନ୍ଧୁ ହେ ଅନ୍ଧକୁ ଦେଲ ଚକ୍ଷୁଲାଭ ସୁଖ । ଲବମାନେ ନବନେନେ ମାରଦେଲ ନଖ । ନୋହେ ଏତ ପ୍ରଭୁରୀତ । ଅଜ କ ମସ୍ତକେ ଶେଷ ବହିବେ ଜଗତୀ । ୧୦ । ନ କଲେ ପଦ୍ମାଲ୍ଲ ନ କର ସେ ଅଙ୍ଗୀକାର । ଅଙ୍ଗୀକାର କର ପରତ୍ୟାଗ କରିବାର । ନ୍ୟାୟପଥରୁ ଫିଟିଲା । ଶରଣପ୍ରପନ୍ନ ଜନ ଭରସା ତୁଟିଲା । ୧୧ । କ୍ଷଣେ ଖଟି ନାହିଁ ରଙ୍ଗରାଜୀବ ପା ତଳ । ବିନା ଅପରାଧେ ହେଲା ସେ ସ୍ନେହ ପାତଳ । ମନ୍ଦଭାଗିନୀ ତ ମୁହିଁ । ଅପରାଧ ହେବା ସେବା ଭଲି କାଳ କାହିଁ । ୧୨ । ଅକାଳ ଜଳଦମୁକ୍ତ ସଲିଲ-ଶୀକର । ପଡ଼ିବା ସମୟେ ଚଞ୍ଚୁପୁଟେ ଗୃତକର । କାହିଁ ବହ ପବମାନ । ଭାଙ୍ଗିଲା ଗୃତକ ଆଶାତରୁ ପବମାନ । ୧୩ । ଧନ ରେ ମୁଁ ମହାଗଜଘୋଷ ନୃପସୁତ । ଏହି ମନ୍ଦେ ମନ୍ଦି ହାଲାହଳ କି ଅମୃତ । ଦନ୍ତଚେଲ୍ଲ ପିଅଇଲ । ସ୍ୱୈରଇ ଚେତନା ନାଶ୍ଚି ବୋଲି ଜୀଅଇଲ । ୧୪ । ସେ ଅମଳ ସମୟେ କି ଦେଲ ଗାଢ଼େ ଭିଡ଼ି । ଲଗାଇ ମାଣିକ୍ୟମଣିକରକଣ ଚୁଡ଼ୀ । ମୃଦୁ ତନୁକୁ ବାଧିଲା । ତହୁଁ ଦିବ୍ୟଶଉ କି କୋଧକୁ ଆରାଧିଲା ।୧୫। ଅହେ ପଣ୍ଡିତମଣ୍ଡଳମଣ୍ଡଳୀମଣ୍ଡନ । ଅଜ୍ଞାତ ଦୋଷକୁ ରୋଷ ଅଛୁର କି ଘେନ । ଅହେ କ୍ଷମାଗୁଣସୀମା । ଦୋଷ କରଥିଲେ ଉନାବାର କର କ୍ଷମା ।୧୬। ଜଗତୀଭୂଷଣ ହେ କୁସୁମାୟୁଧରୁଚ । ଅଞ୍ଚଳ ପ୍ରସାର ଦନ୍ତେ ମୁଁ ତୃଣ ଧରୁଚ । କରୁଅଛୁ ଦଣ୍ଡବତ । ଶୁଣାଅ ସୁମଧୁର ଭାରତୀ ଖଣ୍ଡବେତ ।୧୭। ବହିବ ଲଗି କଠାଉ ସରବଦା ଶିରେ । ରହିବ ମୁଁ ଜଣେ ହୋଇ ସରବ ଦାସୀରେ । ଅହେ ଶରଦଇନ୍ଦୁମୁଖ । ତାହାଙ୍କ ଚରମାଚରି କର ହେଲେ ରଖ ।୧୮। ଭଜଥିବ ନିଦ୍ରାହାର ବିହାର ବରଜ । ହେଉଥିବ ଯେଉଁ ସେବା ଘେନିବା ମରଜ । ମୁଁ କି ନ ଲଭିବି ରାଜ । ଏକା ମୋ ନୟନପଥେ ଥିବ କି ବିରାଜ । ୧୯ । ଦରଶନସୁଖ-

---

ଦାସୁଁ —ଅଧରରୁ । ୯ । ମଣିମଞ୍ଜୁଷ—ରତ୍ନପୂର୍ଣ୍ଣ ପେଡ଼ି । ୧୦ । ଶେଷ—ସର୍ପରାଜ, ଶେଷଦେବ । ୧୨ । ରଙ୍ଗରାଜୀବପାତଳ—ରକ୍ତପଦ୍ମରୂପ ପାଦର ତଳ; ପାତଳ—କ୍ଷୀଣ । ୧୩ । ସଲିଲଶୀକର—ଜଳବିନ୍ଦୁ, ପବମାନ—ପବନ, ଆଶାତରୁ ପବମାନ-ଆଶାରୂପ ବୃକ୍ଷର ସବୁ ଗଣ୍ଠି ।୧୪। ଦନ୍ତଚେଲ୍ଲ—ଅଧରରୁ ।୧୭। କୁସୁମାୟୁଧରୁଚ୍ଛ—କନ୍ଦର୍ପସୁନ୍ଦର; ଅଞ୍ଚଳ—କାନି ପଣନ୍ତ । ୧୮ । ତାହାଙ୍କ ଚରମାଚରୀ—ଦାସୀଙ୍କ

ଶତମଖଭୂତିଦାନେ । ନ ରଖିବ ଯେବେ ପଦକଞ୍ଜ ସନ୍ନିଧାନେ । ନାସ୍ତି
ନାଶ ଦୋଷ ପାଇ । ଭୁବନଭୂଷଣଦୋଷ ଦେଲଟି ବୁଡ଼ାଇ । ୨୦ ।
ତୁମ୍ଭ ନାମେ ପିଇବି ଅବଶ୍ୟ କାଳକୂଟ । ଗଲେ ଭଣ୍ଡହେବ ଅବା ଲଗି
ଶେଷ ପଟ । ଲୀଳାବାପୀଗର୍ଭେ ଅବା । ପଞ୍ଚ ପ୍ରାଣ ଛାଡ଼ିବି ହେ ତରୁଣ-
ମଧବା । ୨୧ । ଅହା କି ସୁନ୍ଦର ସୁକୁମାର ପ୍ରତିଅଙ୍ଗ । କି ନବୀନ
ଯଉବନ କି ଲୋଲ ଅପାଙ୍ଗ । କି ମୃଦୁଳ ମନ୍ଦହାସ । ସୁଧାରୁ ଧାରକେ
ତୁଳ୍ୟ ସ୍ୱାଦୁ ରଦବାସ । ୨୨ । କି ସରସଗଭୀର ସମ୍ଭାର ଭାଷାଭଙ୍ଗୀ । କି
ପଟୁନାଟଲମ୍ପଟ ଭ୍ରୂବଲ୍ଲୀ ଭୁଜଙ୍ଗୀ । କେଡ଼େ ସୁବାସିତ ତନୁ । ବଳଥିବ
ବାସନ୍ତିକ ଅରବିନ୍ଦ ବିନ୍ଦୁଁ । ୨୩ । ପିଇ ନ ପାଇଲି ଯାହା ବଞ୍ଚିବଟି କେହି ।
ଜୀବିତକୁ ଛାଡ଼ି ଦେହୀ ପାରିବ କି ରହି । ଉପାୟ ତ ଦିଶୁନାହିଁ । କି
କରିବି କାହିଁ ଯିବି ରହିବଟି କାହିଁ । ୨୪ । ଦଣ୍ଡିକର ବିରହ ତ ହେଲା
କଳ୍ପ ପରି । ଚିର ହେଲେ କି ରହି ପାରିବ ଦେହ ଧରି । ମନେ
ପଡ଼ିଲେ ତ ଶଶୀ । ମାର୍ତ୍ତଣ୍ଡମଣ୍ଡଳ ପରି ଗଲାଣି ଅଭ୍ୟସି । ୨୫ । ପ୍ରଳୟ
କାଳ ଅନଳ ଜ୍ୱାଳାରୁ ତ ମୋଟେ । ମଳୟବନ ପବନ ହେଲାଣି
ପରତେ । ମଳୟଜ ଘନସାର । ଗୋଳା ହାଳାହଳଠାରୁ ହେଲାଣି
ଅସାର । ୨୬ । ଲଗିବାସ ଅସି ଆଶୀବିଷରୁ ବଳିଲା । କରପ୍ରାପ୍ୟ
ସୁରତରୁ ଉପଳ ଫଳିଲା । ଭଲା ଭଲା ରେ ଲଲାଟ । ଛୁଇଁବା ବିଶୁଦ୍ଧ
ହେମ ହେଲା ଆରକୂଟ । ୨୭ । ଧିକ ଧିକ ଅବିବେକ ହେ କମଳାସନ ।
ଭୋଗି କରେ ଦେଇ ସୁଧା ସଦୃଶ ଅଶନ । ପୁଣି ନେବାର ଛଡ଼ାଇ ।
ଢେନ ତ ଏ କେଉଁ ବଡ଼ଲୋକର ବଡ଼ାଇ । ୨୮ । ପିତାମହ
ହେବାରୁ କି ପରିହାସ କର । ଛପାଇ ରଖିଛ ମୋର ସଉଭାଗ୍ୟ-
ଶିରୀ । ଏବେ ଅଣ୍ଟିଲା ନାହିଁ କି । ନାସ୍ତି ମରିଯିବାପାଏ
କୁହଟ କାହିଁକି । ୨୯ । ତୁମ୍ଭେ ସତ୍ୟ ଲୋକନାଥ ପରା ଚତୁର୍ମୁଖ ।

---

ପଛରେ ରହିବା ଗୃକରଣୀ ବା ସ୍ୱାନା ଦାସୀ । ୨୦ । ଦରଶନସୁଖ···ଦର୍ଶନସୁଖରୂପ
ଇନ୍ଦ୍ର ସମ୍ପତ୍ତି ଦେବାରେ । ୨୧ । କାଳକୂଟ—ବିଷ, ଲୀଳାବାପୀ—କ୍ରୀଡ଼ା ପୁଷ୍କରଣୀ ।
୨୩ । ସମ୍ଭାର—ପରିପୂର୍ଣ୍ଣତା (ଯୁକ୍ତ) । ୨୫ । ଚିର—ଦୀର୍ଘକାଳସ୍ଥାୟୀ ।୨୬। ମଳୟଜ
—ଚନ୍ଦନ, ଘନସାର - କର୍ପୂର, ହାଳାହଳ—ବିଷ । ୨୭ । ଆଶୀବିଷ—ସାପ,
ସୁରତରୁ—କଳ୍ପଲତା, ଉପଳ—ପଥର, ହେମ—ସୁନା, ଆରକୂଟ—ପିତ୍ତଳ ।
୨୮ । କମଳାସନ—ବିଧାତା, ବ୍ରହ୍ମା; ଅଶନ—ଭୋଜନ ।୨୯। ପିତାମହ—ବ୍ରହ୍ମା ଓ

ମିଥ୍ୟା କର ମୁଁ ସାକ୍ଷାତ ଭୋଗ କଲି ସୁଖ । ଜନନୀଙ୍କାରୁ ନ ଡ଼ର । ପ୍ରଭୁ ହେଲେ ହେଲେ ନାଙ୍କ ଏଡ଼େ ଅବଗୃର । ୩୦ । ଅଧୀରହିଁ ହେଲେ କରେ ପର ଉପକାର । ବଧିରହିଁ ହେଲେ ଶୁଣେ ଅତି ଉଚ୍ଚସ୍ୱର । ଶ୍ରୁତିମଯ୍ସ ଗୋଟିଯାକ । ହୋଇ ତ ନ ଶୁଣ ପରମାର୍ତ୍ତି ଜନ ଡାକ ।୩୧। ଏପରି ସେ ପରଣତ ଶରଦିନ୍ଦୁମୁଖୀ । ବିକଳ ହୁଅନ୍ତେ ଚେତି କୁନ୍ଦଲତା ସଖୀ । ମୁଖ ପୋଛି କୋଳେ ଧରି । ପଗ୍ଚରିଲା କସ ରେ ଅଶ୍ରିତ ଜୀବେଶ୍ୱରୀ । ୩୨ । ପୁନଃ ପୁଚ୍ଛେ ସ୍ୱପ୍ନରେ କି ଦେଖିଲୁ କି କହ । କପଟ ନ କର ମୋରେଁ ଅଛି ଯେବେ ସ୍ନେହ । ମୋ ଶିରର ସବତଟି । କହ କହ ରେ ତରୁଣକଣ୍ଠୀରବ-କଟି ।୩୩। ପ୍ରାଣସଖୀ ବାଣ ଶୁଣି ବିଲମ୍ବ ନ ସହି । ଦେଖାଇ ସମ୍ଭୋଗ ଚିହ୍ନ ସ୍ୱପ୍ନବୃତ୍ତି କହି । କହିଲା ରେ ସ୍ନେହଶୀଳା । ରଖ ମୋତେ ହୋଇ ଦୁଃଖତରଙ୍ଗିଣୀଭେଳା ।୩୪। ଶୁଣି ତା ଚତୁର ଧରି ଜଣାଇଲା ସଖୀ । ଚଉରୁ ଚନ୍ଦ୍ରାକୁ ଦେଇ ଆଜନମସୁଖୀ । ଧାତା ଅଛି ଅନୁକୂଳ । ବିକାଶକୁ ଅଛି ମାନ ତୋ ଭାଗ୍ୟମୁକୁଳ । ୩୫ । ରଜକୀ ନାପିତୀ ଗୋପୀ ମାଲାକାରନାରୀ । ଏମାନଙ୍କଠାରୁ ମୁଁ ଶୁଣିଲି ତଥ୍ୟ କରି । ତାତ ମହାରାଜ ପୁଣି । ତୋର ପରିଣୟ ମଙ୍ଗଳକୁ ହୃଦେ ଗୁଣି । ୩୬ । ଆଜୁଁ ବରଷକ ତଳୁ ଭଲି ମନ୍ତ୍ରୀ ତୁଲେ । ନଟରାଜ ନାମ ମାୟାବୀକି ଡକାଇଲେ । କଲେ ଏହି ଫରମାସ । ବୁଲିବୁ ତୁ ନିଜବିଦ୍ୟା ଘେନ ସବୁ ଦେଶ ।୩୭। ନୃପକୁଳେନ୍ଦ୍ରର ଯେଉଁ ପ୍ରଥମ ତନୁଜ । ରୂପରୁ ଯାହାର ଊଣା ହେବ ମନସିଜ । ବାହୁଯୁଗଳୀର ବଳେ । ଜୟକରି ଯିବ ଧନଞ୍ଜୟକୁ ଯେ ହେଳେ । ୩୮ । ବୀରସେନସୁତ ହାରି ଯା ସାଦୀପଣରୁ । ବରସେ ନ ବାହାରବେ କୁଟ୍ଟିମକୋଣରୁ । ଜାଣି ପଉଗଣ୍ଡ ଶେଷ । ହୋଇଥିବ ଯାର କୈଶୋରତା ପରବେଶ । ୩୯ । ସର୍ପରାଜଦର୍ପ ଯାହା ବିଦ୍ୟା ହରିଥିବ । ବିତରଣଶାଳିଗୁଣେ ଇତର ନ ଥିବ । ଊଣା ହେବେ କର୍ଣ୍ଣ ବଳି । କ୍ଷମାଗୁଣେ କ୍ଷମାରୁ ଯେ ପଡୁଥିବ ବଳି । ୪୦ । ରବିକୁଳବ

---

( ପରିହାସ ପ୍ରିୟ ) ପିତାଙ୍କ ପିତା, କୁଗ୍ରହ—କୋପ । ୩୧ । ଅଧୀର—ମୂର୍ଖ, ବଧିର —କାଲ, ଶ୍ରୁତିମଯ୍ସ—ବେଦଙ୍କ ଅଥଚ ବହୁକର୍ଣ୍ଣଯୁକ୍ତ, ପରମାର୍ତ୍ତି—ଅତି ଦୁଃଖିତ । ୩୩ । ମୋ ଶିରର ସବତଟି—ମୋ ମୁଣ୍ଡ ରାଣ । ୩୫ । ବିନା—ଅଭାବ । ୩୮ । ଧନଞ୍ଜୟ—ଅର୍ଜୁନ ବା ଅଗ୍ନି । ୩୯ । ବୀରସେନସୁତ—ନଳରାଜା, ସାଦୀପଣ —ଅଶ୍ୱାରୋହଣ, ବରସେ—ଦୁଃଖରେ, କୁଟ୍ଟିମକୋଣ—କୁଡ଼ିଆ ଘରର କୋଣ, ପଉଗଣ୍ଡ—ଦଶମବର୍ଷପର୍ଯ୍ୟନ୍ତ ଅବସ୍ଥାକୁ ପୌଗଣ୍ଡ କହନ୍ତି ।୪୦। ବିତରଣଶାଳିଗୁଣ—

କରୁଥିବ ପ୍ରତାପ ଯାହାର । ସମାନ ଶୀତଳ ଗୁଣେ ଯାହାର ନୀହାର । ମନ୍ତ୍ରେ ଜୀବପ୍ରତିଭଟ । ଯେହ୍ନେଟି ଧାର୍ମିକ ସାଧୁ ସଂସର୍ଗଲମ୍ପଟ । ୪୧ । ଅନୀତ ଲୋଲୁପ ପରଦାରାଧନରତ । ଦୁଷ୍କୁଳସମ୍ଭବ ମିଥ୍ୟାବାଦୀ ଅପଣ୍ଡିତ । ଯାହା ସଭାରେ ନ ଥିବେ । ଯା ହାସ ଅଧରୁ ବକ୍ର ନ ଥିବଟି ଲବେ । ୪୨ । ଦେବ କ୍ଷିତିଦେବ ଗୁରୁ ବଇଷ୍ଣବ ଜନ । ସେବନରେ ଶକ୍ତ ହୋଇଥିବ ଯାର ମନ । କର୍ଣ୍ଣପ୍ରିୟ ମୃଦୁଭାଷା । ଯାହା ମୁଖ ରଚୁଥିବ ପୀୟୂଷବରଷା ।୪୩। ସଙ୍ଗୀତେ ଗନ୍ଧର୍ବ ଗର୍ବ ଦେଉଥିବ ଚୂର । ଯାହା ଧୃତ ହୋଇଥିବ ମଣିସାନୁ ସର । ହୋଇଥିବ ମହୋଦ୍ୟମ । ଅମ୍ଭୋଧିରୁ ବଳିଥିବ ଗଭୀରତା ପୁଣ । ୪୪ । ଅସଂଖ୍ୟକ ହୟ ଗଜ ସଂଜ୍ଜ ଯାହାର । ରମାରତିବାନ୍ଧୁ ନାମ କଦମ୍ବ ଯାହାର । ଷଟ ପଞ୍ଚାଶତ ଦେଶ । ଲିପିଭାଷା ଜାଣିବାରେ ଯେଟି ଅସଦୃଶ । ୪୫ । କେଉଁ ଦେଶେ ଥିବ ଏହ୍ନ ବରବର ବର । ତାହା ଆଗେ ପ୍ରକାଶ ତୋ ସମସ୍ୟା ଶାବର । ମାୟା ଜେମା ଭୁଲେ ତାକୁ । ଭେଟ କରାଇବୁ ଦୃଶ୍ୟ ନୋହିବ କାହାକୁ । ୪୬ । ତନ୍ତୁ ଅମ୍ଭ ଆଗେ ତାହା କରିବୁ ପ୍ରକଟ । ନବ ଯୁବରାଜବ୍ୟାଜରୂପ ରମ୍ୟନାଟ । ଫେରମାସି ଏହ୍ନପର । ପେଷିଥିଲେ ପୁଣି ତୋ ଜନକ ଦଣ୍ଡଧାରୀ । ୪୭। ସେ ସେହ୍ନପ୍ରକାରେ ଯାଇ ମହାଗଜଘୋଷ । କରିଥିବ ନିଜ ବ୍ୟାଜ ବିଦ୍ୟାର ପ୍ରକାଶ । ସ୍ୱପ୍ନଭୋଗ ପର ତୋର । ଲଭିଥିବ ତୋ ସଙ୍ଗତ ସେ ରାଜକୁମାର । ୪୮ । ମାୟାଂଶଙ୍କେ ତୋ ବିରହାନଳ ଝାସ ବାଜ । ରାଜସୂନୁ ତନୁ ହୋଇ ଯାଇଥିବ ଭାଜ । ତାହା ଜାଣି କୃପା କର । ଦୁଇକୁଳ ଇଷ୍ଟଦେବୀ ତ୍ରିପୁରସୁନ୍ଦରୀ । ୪୯ । ସ୍ୱପନ ସଙ୍ଗମ ମହୋତ୍ସବବୀଜନାଶା । କଳ୍ପିଥିବେ ସେ ତ କଳ୍ପବଲ୍ଲରୀ ସଦୃଶା । ଧନ ମନ୍ତ୍ର ତାପ ତେଜ । ଅବଶ୍ୟ ହୋଇବେ ଅନୁକୂଳ ହଂସଧ୍ୱଜ । ୫୦ । ଜେମାମଣି ଶୁଣି ସଖୀ ଦେବାର ଦିଲାସା । ଧୃତବୀଜ ନିଜ ଜୀବିତରୁ ଛାଡ଼ି ଆଶା । କର୍ମ ଲାଲରଦାମ୍ବର । ଅଶ୍ରୁବିନ୍ଦୁ ଛନ୍ଦାଇଲା ଉରୋଜ-ଅମ୍ବର । ୫୧ । ବାଳା ଦୁଃଖ ଦେଖି ସଖୀ ଦୁଃଖିତା ହୋଇଲା । ଶୀତବାସ

---

ଦାତୃତ୍ୱ, ନୀହାର—ତୁଷାର, ମନ୍ତ୍ରେ ଜୀବପ୍ରତିଭଟ—ମନ୍ତ୍ରବିଦ୍ୟାରେ ବୃହସ୍ପତିଙ୍କ ସମାନସ୍କନ୍ଧ । ୪୩ । କ୍ଷିତିଦେବ—ବ୍ରାହ୍ମଣ, ସେବନରେ—ସେବା କାର୍ଯ୍ୟରେ । ୪୪ । ଧୃତ—ଧୈର୍ଯ୍ୟ, ମଣିସାନୁ—ସୁମେରୁ ପର୍ବତ, ଅମ୍ଭୋଧି—ସମୁଦ୍ର ।୪୫। ରମା-ରତି···ବିଷ୍ଣୁ ଓ କନ୍ଦର୍ପଙ୍କ ନାମସମୂହ ମଧ୍ୟରୁ ଯାହାର ଗୋଟିଏ ନାମ ହୋଇଥିବ । ୪୬ । ସମସ୍ୟା ଶାବର—କର୍ତ୍ତବ୍ୟ, ଇନ୍ଦ୍ରଜାଲ ବିଦ୍ୟା । ୪୮ । ବ୍ୟାଜବିଦ୍ୟା—କପଟବିଦ୍ୟା, ଇନ୍ଦ୍ରଜାଲ ।୫୦। ହଂସଧ୍ୱଜ—ବ୍ରହ୍ମା ।୫୧। ଦିଲାସା—ସାନ୍ତ୍ୱନା, ଆଶା;

